କସ୍ତୁରିଚରଣ ଦାସ

# ରାତି କଥା କୁହେ

ରାତ୍ରି ମୌନାବତୀ ନୁହେଁ, ମାୟାବିନୀ । କଥା କୁହେ - ଭାଷାତୀତ ଭଂଗିମାରେ, ଇତିହୀନ ଇସାରାରେ - ଅନେକ ଅକୁହା କଥା । କେତେବେଳେ ମିଡ୍‌ନାଇଟ୍ ହୋଟେଲ୍‌ର ଅର୍ଦ୍ଧାଲୋକିତ ଆସରରେ ସେ ରାତ୍ରିର ରଂଗ ନୀଳ ତ ଆଉକେତେବେଳେ ଉର୍ବଶୀ ଆଖିର ଅଂଧକାରରେ ସେ ରାତ୍ରିର ରହସ୍ୟ ସର୍ପିଳ...

ରାତି ଆସେ - ଯେମିତି ଯୋଜନଗଂଧା । ରାତି ବାସେ - ଯେମିତି ରଜନୀଗଂଧା । ଏ ରାତିରେ କେଉଁଠି ହସେ ମଧୁଛଂଦା ତ କେଉଁଠି ବି ବାହୁନେ ଅଳକନଂଦା !

ଦିନେ ରାତିରେ...

ନାମହୀନ ନକ୍ଷତ୍ରର ନିଦ୍ରାଭଂଗ ! ଫେରାର୍ ହୁଏ ଫୁଲବାସ୍ନା...

କରୁଣ ଦିଶେ କାକଜ୍ୟୋସ୍ନା - ତା' ପରେ ?

ରାତିକୁ କଥା କୁହାଇଛଂତି ଅନବଦ୍ୟ ସ୍ପଂଦନ-ଉପନ୍ୟାସକାର ଶ୍ରୀ କସ୍ତୁରିଚରଣ ଦାସ । ଏ କଥନରେ ଅଛି ଚଟୁଳ ଚୁଂବକୀୟତା, ଚାରୁ ଚମତ୍କାରିତା, ଚିତଚୋରା ଚିତ୍ରମୟତା ।



କାନ୍ଦୁରୀଚରଣଦାସ

# ରାତି କଥା କୁହେ

। ୫ ରହସ୍ୟ-ଉପନ୍ୟାସର ଏକତ୍ରିକା ।


ପ୍ରକାଶକ :



କଲ୍ୟାଣୀନଗର, କଟକ-୭୫୩୦୧୩, ଓଡ଼ିଶା

ପ୍ରଥମ ସଂସ୍କରଣ : ୨୦୧୩
ଦ୍ୱିତୀୟ ସଂସ୍କରଣ : ୨୦୧୪

ମୁଦ୍ରଣ :
ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍
କଲ୍ୟାଣୀ ନଗର, କଟକ-୭୫୩୦୧୩, ଓଡ଼ିଶା

ମୂଲ୍ୟ : ₹ ୩୫୦/-


..............................................

## RATI KATHA KUHE

[an anthology of 5 mistery novels]

by **Kanduri Charan Das**


Published by
**KAHANI**
Kalyani Nagar, Cuttack-753013, Odisha

First edition : 2013
Second edition : 2014

Price: ₹ 350/-

**ISBN 978-93-81756-63-8**

ଉତ୍ସର୍ଗ :

ମୋର ଅନେକ ବହିର ଦୁଇ ପ୍ରଖ୍ୟାତ ପ୍ରଚ୍ଛଦଶିଳ୍ପୀ
ମନିସ୍ ସେନ୍ ଓ ଜୀବନ ସେନ୍
ଉଭୟ ଏବେ ଅନେକ ଦୂରରେ, ଆରପାରିରେ...
ସେଇ ଉଭୟଙ୍କୁ ଉତ୍ସର୍ଗ କରୁଛି ଏହି ଏକତ୍ରିକା ।
-ଲେଖକ




ମୁଁ କିଛି ବୁଝିପାରୁନି ଗୀତା ଦେବୀ, ଆପଣ ଅସମୟରେ ହଠାତ୍ କିପରି ବା କାହିଁକି ଆସି ପହଞ୍ଚିଲେ ଏଇ ନରକପୁରୀରେ ?

ଆପଣଙ୍କୁ ଉଦ୍ଧାର କରିବାକୁ ।

ମୋହନର ଆଖି ଯୋଡ଼ାକ ଅନ୍ଧକାରରେ ମଧ୍ୟ ଉଜ୍ଜଳି ଉଠିଲା । ସେ ଯେପରି ଦୀର୍ଘ ଦୁଇବର୍ଷ ପରେ ଆଶାର କ୍ଷୀଣ ଆଲୋକଶିଖାଟିଏ ଦେଖିବାକୁ ପାଇଲା । ଆନନ୍ଦରେ ଅଧୀର ହୋଇଉଠିଲା । ପାଟିରୁ ତା'ର କଥା ଫୁଟିଲା ନାହିଁ ।

ଗୀତା ମହାପାତ୍ର ଆଉ ଟିକିଏ ଲାଗି ବସିଲା । ମୋହନ ଅନ୍ଧକାରର ସେଇ ନିବିଡ଼ତା ଭିତରୁ ଅନୁଭବ କଲା ସେ ଯେମିତି ଲେଉଟି ଯାଉଚି ତା' କଲେଜ ଜୀବନକୁ ! ଏଇଭଳି ଏକ ଅନ୍ଧକାର ରାତିରେ ଦୁହେଁ ଭେଟିଥିଲେ ଦୁହିଁଙ୍କୁ । ଆଃ, ସେ ରାତି ଜୀବନରେ ଥରଟିଏ ଆସିଥିଲା, ଆଉ ହୁଏତ ସେଇ ଥିଲା ଶେଷ ରାତି ।

ତା' ପରେ...

---

-ଏକ-

ଦମ୍‌ଦମ୍ ବିମାନଘାଟୀଠାରୁ ଯେତେବେଳେ ଧୂସର ରଙ୍ଗର ଷ୍ଟୁଡିବେକାର କାର୍ ଖଣ୍ଡିକ ଛାଡ଼ିଲା, ସେତେବେଳେ ସାତଟା ବାଜିବାକୁ ମାତ୍ର କୋଡ଼ିଏ ମିନିଟ୍ ବାକି। ଗୀତା ମହାପାତ୍ର ହାତଘଡ଼ି ଉପରୁ ଚଞ୍ଚଳ ଆଖି ଫେରାଇ ନେଇ, ଡ୍ରାଇଭରକୁ କହିଲା- ଶୀଘ୍ର ଚଲାଅ । କୋଡ଼ିଏ ମିନିଟ୍ ଭିତରେ ଏସ୍‌ପାନେଡରେ ପହଞ୍ଚିବାକୁ ହେବ।

ଡ୍ରାଇଭର ଗାଡ଼ିର ବେଗ ବଢ଼ାଇଦେଲା।

ରହି ରହି ଗୀତା ମହାପାତ୍ରର ଭୂଲତା ଯୋଡ଼ିକ କମ୍ପି ଉଠୁଥିଲା।

ବାରମ୍ବାର ହାତଘଡ଼ି ଉପରେ ଦୃଷ୍ଟି ପହଁରି ଯାଉଥିଲା।

ଆଉ ମାତ୍ର ସାତ ମିନିଟ୍ ବାକି ସାତଟା ବାଜିବାକୁ। ଠିକ୍ ସମୟରେ ପହଞ୍ଚି ନ ପାରିଲେ ମିଡ୍‌ନାଇଟ୍ ହୋଟେଲର ଦରଜା ବନ୍ଦ ହୋଇଯିବ। ଭୁବନେଶ୍ୱରରୁ ଦମ୍‌ଦମ୍, ଦମ୍‌ଦମ୍‌ରୁ ଦିଲ୍ଲୀ, ପୁଣି ଦିଲ୍ଲୀରୁ ଦମ୍‌ଦମ୍ ସଫର ବୃଥା ହୋଇଯିବ। ପୁଣି ହାତଘଡ଼ିକୁ ଚାହିଁ ଚମକି ପଡ଼ିଲା।

ଡ୍ରାଇଭର, ଆଉ ମାତ୍ର ପାଞ୍ଚ ମିନିଟ୍। ଠିକ୍ ସମୟରେ ପହଞ୍ଚି ନ ପାରିଲେ ସର୍ବନାଶ ହୋଇଯିବ।

ଡ୍ରାଇଭର ଗାଡ଼ିର ସ୍ପିଡ୍ ଆଉ ଟିକେ ବେଢ଼ାଇବାକୁ ଚେଷ୍ଟା କଲା। ମାତ୍ର ଗାଡ଼ି ସେତେବେଳକୁ କଲିକତାର ଏକ ରାସ୍ତା ଉପରେ ପଡ଼ିସାରିଥିଲା। ତଥାପି ସେ ଆପ୍ରାଣ ଚେଷ୍ଟା କରୁଥିଲା ଯେତେ ସମ୍ଭବ ଶୀଘ୍ର ଗାଡ଼ିଟାକୁ ଉଡ଼େଇନେଇ ମିଡ୍‌ନାଇଟ୍ ହୋଟେଲ ଦୁଆରେ ଠିଆ କରେଇ ଦେବାପାଇଁ।

ଗୀତା ମହାପାତ୍ର କପାଳରେ ବିନ୍ଦୁବିନ୍ଦୁ ଝାଳ ଜମି ଯାଇଥିଲା । ଆଉ ମାତ୍ର ଦୁଇ ମିନିଟ୍। ତା'ପରେ...

ଗୀତା ମହାପାତ୍ର ଛିଟିକି ପଡ଼ିଲା ଖୁବ୍ ଜୋର୍‌ରେ। ନିଜକୁ ସମ୍ଭାଳି ନେଇ ଚାହିଁଲା ବେଳକୁ ଲୋକ ଜମି ଯାଇଛନ୍ତି ତା' ଗାଡ଼ି ଚତୁଃପାର୍ଶ୍ୱରେ। ଗୋଟାଏ ଗାଡ଼ି ସଙ୍ଗରେ ଧକ୍କା ଲାଗିଛି ତା ଗାଡ଼ିର।

କିନ୍ତୁ ଏଣେ ଆଉ ମିନିଟିଏ ବାକି। ଓହ୍ଲେଇ ଚାଲିଗଲେ ବି ପହଞ୍ଚି ଯାଇହେବ ହୋଟେଲରେ। ମାତ୍ର ତିନିଟା କୋଠା ଛାଡ଼ି ମିଡ୍‌ନାଇଟ୍ ହୋଟେଲ।

ମିଡ୍‌ନାଇଟ୍ ହୋଟେଲ୍

-ଦୁଇ-

ନମସ୍କାର !

ମୋ ନାଁ ଗୀତା ମହାପାତ୍ର।

ଯେଉଁ ଲୋକଟି ଅଧା ଅନ୍ଧାର ଆଲୁଅ ଭିତରେ ଥାଇ ସିଗାରେଟ୍ ଧୂଆଁରେ କୋଠରିଟିକୁ ଧୂମାୟିତ କରିଦେଇଥିଲା, ସେ ଧୀରେଧୀରେ ବୁଲି ଅନେଇଲା ଗୀତା ମହାପାତ୍ର ଆଡ଼େ।

ଓଃ, ତୁମେ ଗୀତା ମହାପାତ୍ର ? ଶୁଣି ଖୁସିହେଲି। ଦେଖି ଆନନ୍ଦିତ ହେଲି। ଚମତ୍କାର ତମ ଚେହେରା। ବୟସ...

ଉଣେଇଶ।

ବେଶ୍, ବେଶ୍। କିନ୍ତୁ ବେଶର ପରିପାଟି, ମେକ୍‌ଅପ୍‌ର ଟେକ୍‌ନିକ୍‌ରେ ତୁମକୁ ଆହୁରି ତଳକୁ ଆସିବାକୁ ହେବ। ଦେଖିଲେ ମନେ ହେବ ସ୍ୱିଟ୍ ସିକ୍‌ସ୍‌ଟିନ୍। ପାରିବ ?

ଗୀତା ମହାପାତ୍ର କେବଳ ମୁଣ୍ଡ ହଲେଇଲା।

ସର୍ତ୍ତ ଜଣା ଅଛି ?

ହଁ।

ସେଇ କଳା ପୋଷାକପରିହିତ ଲୋକଟି ପୁଣି ଧୀରେଧୀରେ ମୁହଁ ବୁଲେଇନେଲା। ମୁଣ୍ଡରେ ତା'ର ଟିଲା ଗୋଟାଏ ଫେଲଟ୍-ହ୍ୟାଟ୍। ମୁହଁରେ ପାଇପ୍। ଆଖିରେ କଳା ଚଷମା। ଗୀତା ମହାପାତ୍ର ଚିହ୍ନିବାକୁ ଚେଷ୍ଟା କରି ବି ଚିହ୍ନିପାରିଲା ନାହିଁ ଭଲକରି।

ପଛରୁ ଜଣେ କିଏ ଡାକିଲା- ଏବେ ଆସନ୍ତୁ ଗୀତା ଦେବୀ। ଆପଣ ପରୀକ୍ଷାରେ ଉତୀର୍ଣ୍ଣ ହୋଇଛନ୍ତି। ଏଣିକି ପ୍ରସ୍ତୁତି ଲୋଡ଼ା। ସମୟ ଆଉ ଅଳ୍ପ। ଆଜି ପ୍ରସ୍ତୁତ ହେବାକୁ ପଡ଼ିବ।

ଗୀତା ମହାପାତ୍ର ଫେରି ଚାହିଁଲା ବେଳକୁ ସେ ଲୋକଟି ଧୀରେଧୀରେ ଆଉ ଗୋଟାଏ ଦୁଆର ଦେଇ ଭିତରକୁ ପଶିଯାଉଛି।

ଗୀତା ମହାପାତ୍ର ତା'ରି ପଥ ଅନୁସରଣ କଲା।

ମିଡ୍‌ନାଇଟ୍ ହୋଟେଲ୍

- ତିନି -

ଭାରି ମୁଲାଏମ୍, ଅତି ଦରଦଭରା। ଗୀତଟିର ସ୍ୱର-ତ୍‌ରଙ୍ଗ କୋଠରିଟିରେ ଭରିଦେଇଛି ଅପୂର୍ବ କାରୁଣ୍ୟ। ଛନ୍ଦା ସହି ପାରିଲା ନାହିଁ। ବନ୍ଦ କରିଦେଲା ରେଡ଼ିଓଟା। ଆଖିରେ ତା'ର ଢଳଢଳ ହେଉଥିଲା ଲୁହ। କଳା ଡୋଳାଯୋଡ଼ିକ ପହଁରୁଥିଲା ସେହି ଲୁହଦରିଆରେ। କେହି ନ ଥିଲେ ଦେଖିବାକୁ। କେହି ନ ଥିଲେ ଉପଭୋଗ କରିବାକୁ।

ଛନ୍ଦା ଚିଠିଟାକୁ ବ୍ଲାଉଜ୍ ଭିତରୁ ବାହାର କରି ଆଉ ଥରେ ପଢ଼ିଲା, ଏଥର କିନ୍ତୁ କଳା ଡୋଳା ବୁଡ଼ି ଲୁହ ଝରିପଡ଼ିଲା ଝରଝର ହୋଇ। ଛନ୍ଦା ବିଚଳିତ ହୋଇପଡ଼ିଲା। କିଛି ତାକୁ ଭଲ ଲାଗିଲା ନାହିଁ। ପୁଣି ସେ ରେଡ଼ିଓଟେଶ ଖୋଲିଦେଲା। ସେଇ ଏକା କଣ୍ଠରୁ ଝରୁଥିଲା-

ମୋର ଅଶ୍ରୁ ମିଶେ ନୀଳ ନୀରେ
ନୟନ ଗାର ଧୋଇଯାଏ ଅକାଳରେ
ଅଶ୍ରୁ ମିଶେ ନୀଳ ନୀରେ।
ମନର ଦେଉଳ ନାଶି
କଳପନା ହୁଏ ବାସି
ଥରି ଥରି ଝରେ ଯେତେ ଆଶା
ପ୍ରାଣ ଊର୍ମି
ମରଇ ଭ୍ରମି
କଟେନା କାଳ ନିଶା....

ଛନ୍ଦା ଆଉ ବସିପାରିଲା ନାହିଁ। ଘରୁ ଗେଟ୍ କାଢ଼ି ବାହାରିଗଲା ପଦାକୁ। ଶ୍ରୀପତି ବାବୁ ଅଫିସରୁ ଫେରୁଥିଲେ। ମଣିଆ ତାଙ୍କ ହାତରୁ ବାଡ଼ିଟା ଓ ଛତାଟା ନେଉଥିଲା। ବାପାଙ୍କୁ ସାମ୍ନାସାମ୍ନି ଦେଖି ଛନ୍ଦା ଟିକେ ବିବ୍ରତ ହୋଇପଡ଼ିଲା। ମୁହଁ ବୁଲେଇ ଆଖିର ଲୁହ ପୋଛି ପକେଇଲା ଟଣତରେ। ଶ୍ରୀପତି ବାବୁ ବୈଠକଖାନାକୁ ଯାଇ ସ୍ନେହଭରା କଣ୍ଠରେ ଡାକିଲେ-

ମିଡ୍‌ନାଇଟ୍ ହୋଟେଲ୍

ଛନ୍ଦା !

ଆଜ୍ଞା !!

ଶୁଣ୍ ତ ମା !

ଛନ୍ଦା ଚୋରଙ୍କ ପରି ଗୋଡ଼ ଚିପିଚିପି ଠିଆ ହେଲା ଯାଇ ଶ୍ରୀପତିବାବୁଙ୍କ ପଛଆଡ଼େ।

କ'ଣ ?

ଗୋଟାଏ ଜରୁରୀ କାମରେ ମୁଁ ଆଜି ଟିକେ ବାହାରକୁ ଯିବି। ଫେରୁଫେରୁ ତିନି ଚାରିଦିନ ଡେରି ହୋଇପାରେ। ମଣିଆକୁ କହିଛି ଜିନିଷପତ୍ର ସଜାଡ଼ିବାକୁ। ତୋର କିଛି ଅସୁବିଧା ହେବ ନାହିଁ ତ ?

ସେତେବେଳଯାଏ ଛନ୍ଦାର କୋହ କମି ନ ଥିଲା। ତେଣୁ ବିଶେଷ କିଛି କହି ନିଜର ଦୁର୍ବଳତା ବାପାଙ୍କ ଆଗରେ ପ୍ରକଶ କରିବାକୁ ତା'ର ଇଚ୍ଛା ନ ଥିଲା। ଅନେକ କଥା କହିବାକୁ ଥିଲେ ମଧ୍ୟ ସେ କିଛି କହିନପାରି କେବଳ କହିଲା, ନା।

ଶ୍ରୀପତି ବାବୁ ଆଉ ଫେରି ଚାହିଁବାକୁ ଅବସର ପାଇନଥିଲେ। ସେ ଗୋଟାଏ ଦରକାରୀ ଫାଇଲ୍ ଭିତରେ ନିଜକୁ ହଜେଇ ଦେଇଥିଲେ।

ଛନ୍ଦା ଧୀରେଧୀରେ ସେଠାରୁ ପାଦ ଉଠାଇ ପୁଣି ତା ନିଜ କୋଠରିକୁ ଚାଲିଯାଇଥିଲା। କୋଠରିଟାରେ ସେତେବେଳଯାଏ ଭରି ରହିଥିଲା କରୁଣତାର ଉତ୍ସ। ସେଇ ଗୀତଟି ଶେଷ ହୋଇନଥିଲା। ଛନ୍ଦା ଘରେ ପହଞ୍ଚି ପୁଣି ବନ୍ଦ କରିଦେଲା ରେଡ଼ିଓଟାକୁ। ନୀରବତା ଭାଙ୍ଗିଲା କାନ୍ଥଘଡ଼ିଟା। ଆଠଟା ବାଜିଲା।

ଛନ୍ଦା ପଲଙ୍କ ଉପରେ ଲୋଟେଇ ଦେଲା ନିଜର ଅଙ୍ଗଲତାକୁ। ନା, ଏହାର ଗୋଟାଏ ଶେଷ ସମାଧାନ କରିବାକୁ ହେବ। ମୁହଁ ବୁଜି ଆଉ ରହି ହେବନି।

ଆଖି ସାମନା କାନ୍ଥରେ ଝୁଲୁଛି ମା'ଙ୍କର ତୈଳଚିତ୍ର। ଛନ୍ଦା ଆଖି ଲାଖିଗଲା ସେଇଠି। ମା' ଆଜି ସେ ପୁରରେ। ସେ ଥିଲେ ହୁଏତ ତା'ର ମନକଥା ବୁଝୁଥାଆନ୍ତେ। ତାକୁ ଏତେ ଘାରି ହେବାକୁ ପଡୁନଥାନ୍ତା। କିନ୍ତୁ କଣ ହେବ ! ଶ୍ରୀପତି ଛୋଟରାୟଙ୍କ କନ୍ୟା ଛନ୍ଦା। ତଥାପି ତା'ର ଦୁଃଖ ! ଲୋକେ ହସିବେ।

ଦେଈ, ଦେଈ ! ମଣିଆ ଡାକିଡାକି ପଶିଆସିଲା।

କଣ କିରେ ? ଛନ୍ଦା ତକିଆ ଉପରୁ ମୁହଁ ଉଠାଇ ଉତ୍ତର ଦେଲା।

ବାବୁ ଡାକୁଛନ୍ତି। ଖାଇ ବସିଛନ୍ତି।

ତୁ ଯା କହିବୁ ମୁଁ ପରେ ଖାଇବି।

ମଣିଆ ଚାଲିଗଲା। ତା ପାଦଶବ୍ଦ ଧୀରେଧୀରେ ମିଳେଇ ଯାଉଥିଲା।

ତା ସଙ୍ଗେସଙ୍ଗେ ଦାନା ବାନ୍ଧୁଥିଲା ଏ ପୃଥିବୀରେ କାହିଁକି ସେ ଜନ୍ମ ହୋଇଚି ?

ମିଡ୍‌ନାଇଟ୍ ହୋଟେଲ୍

ତାର ଜନ୍ମ ନ ହୋଇଥିଲେ ? ପୃଥିବୀ କ'ଣ ପୂର୍ଣ୍ଣାଙ୍ଗ ହୋଇନଥାନ୍ତା? ଯଦିବା ପୂର୍ଣ୍ଣାଙ୍ଗ ହୋଇ ନ ଥାନ୍ତା ହେଲେ ତାର ଜନ୍ମର ପ୍ରୟୋଜନ ଥିଲା। ସେଇଥିପାଇଁ ଜନ୍ମିଚି ସେ ଏ ଧରା ଧାମରେ।

ଧେତ୍, ଯେତେସବୁ ବାଜେ ଭାବନା। ମୁଣ୍ଡ ତଳର ତକିଆଟା ଉଠେଇ ଫିଙ୍ଗିଦେଲା ଛନ୍ଦା। କାନ୍ଥଘଡ଼ିର ପେଣ୍ଡୁଲମଟା ଦୋହଲୁଚି। ଏପାଖ ସେପାଖ। ଛନ୍ଦା ଲକ୍ଷ୍ୟ କଲା। ଏକ ଦୃଷ୍ଟିରେ ଅନେଇ ରହିଲା ସେଇ ପେଣ୍ଡୁଲମଟା ଆଡ଼େ। ଠିକ୍ ତା ମନ ସାଙ୍ଗରେ ତାଳ ଦେଇ ଧାଇଁଚି ସେଇ ପେଣ୍ଡୁଲମଟା। ଛନ୍ଦା ଅନୁଭବ କଲା କାହାର ଗୋଟାଏ କଟାମୁଣ୍ଡ ଯେମିତି ଦୋହଲୁଚି ସେଠି। ରକ୍ତ ଝରୁଛି। ଆଖି ଯୋଡ଼ାକ ଜଳୁଚି ମସାଲ ପରି।

ଛନ୍ଦା ଆଖିବୁଜି ପକେଇଲା। ଘଡ଼ିରେ ନଅଟା ବାଜୁଚି। ଚମକି ପଡ଼ିଲା। ଚିଠିଟାକୁ ବ୍ଲାଉଜ୍ ତଳୁ ବାହାର କରି ଆଉଥରେ ପଢ଼ିଲା। କମ୍ପି ଉଠିଲା ଛାତିଟା। ଟିକିଟିକି କରି ଚିରି ଫିଙ୍ଗି ଦେବାକୁ ମନ ହେଉଥିଲା ଚିଠିଟାକୁ। କିନ୍ତୁ ହାତ ଯୋଡ଼ାକ ତାକୁ ଅବଶ ଲାଗିଲା। ପୁଣି କାହାର ପାଦଶବ୍ଦ ଶୁଣାଗଲା ବାହାରେ। ଛନ୍ଦା ତଡ଼ିତ୍ ବେଗରେ ଚିଠିଟାକୁ ପୁଣି ବ୍ଲାଉଜ୍ ଭିତରେ ରଖିଦେଇ ଗୋଟାଏ ବହି ଧରି ବସିପଡ଼ିଲା ପଲଙ୍କ ଉପରେ।

ଶ୍ରୀପତିବାବୁ ଘର ଭିତରକୁ ପଶି ଆସିଲେ। ଛନ୍ଦା ପଢୁଚି। ଡାକିଲେ-

ଛନ୍ଦା ଅନେଇଲା। ଶ୍ରୀପତିବାବୁ ସଜ ହୋଇ ବାହାରିଛନ୍ତି। ବାତ୍ସଲ୍ୟବୋଳା ହସ ହସି କହିଲେ-ମା ମୋର ଆଜିକାଲି ସବୁ ଭୁଲିଯାଇଛି। ଏଇ ବୁଢ଼ାପୁଅଟାକୁ ବି ଭୁଲି ବସିଲାଣି।

ଆରେ ନ'ଟା ବାଜିଗଲାଣି ପରା। ଇଞ୍ଜେକ୍ସନ ଦେବୁ କାହିଁକି?

ଓଃ! ଛନ୍ଦା ଜିଭ କାମୁଡ଼ି ପକେଇ ଲାଜରେ ମୁଣ୍ଡ ନୋଇଁଲା। ତରବରରେ ଉଠିଯାଇ ଆଲମାରିରୁ ଇଞ୍ଜେକ୍ସନ ସିରିଞ୍ଜଟା କାଢ଼ି ଦୁଇ ମିନିଟ୍ ଭିତରେ ଇଞ୍ଜେକ୍ସନ ଭରି ପ୍ରସ୍ତୁତ ହୋଇଗଲା। ଶ୍ରୀପତି ବାବୁ ଗୋଟିଏ ଚେୟାର ଉପରେ ବସିପଡ଼ି ବାଁ ହାତରୁ ଜାମାଟା ଟେକୁ ଟେକୁ କହିଲେ-ଫେରୁଫେରୁ ତିନି ଚାରିଦିନ ହୋଇପାରେ। ସିରିଞ୍ଜଟା ଆଉ ଇଞ୍ଜେକ୍ସନ୍ ଶିଶିଗୁଡ଼ାକ ମୋ ହାତ ବାକ୍ସରେ ଦେଇ ଦେ। ହଁ, ମୁଁ ନ ଫେରିବା ଯାଏ ଘରେ ଥିବୁ।

ଛନ୍ଦା ନୀରବରେ ସବୁ ଶୁଣିଲା। କେବଳ ମୁଣ୍ଡ ହଲେଇ ସମ୍ମତି ଜଣେଇଲା।

ଡଲୁ ଡ୍ରାଇଭରର ମଟର ହର୍ଣ୍ଣ ଶୁଣାଗଲା। ଶ୍ରୀପତି ବାବୁ ତରତର ହୋଇ ଓହ୍ଲେଇଗଲେ।

ଛନ୍ଦା ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ବିଛଣାରେ ପଡ଼ିଗଲା। ତା' ଦିହରୁ ଗମ୍ ଗମ୍ ହୋଇ ଝାଳ ବୋହିଗଲା।

ମିଡ୍‌ନାଇଟ୍ ହୋଟେଲ୍

-ଚାରି-

ମିଡ୍ ନାଇଟ୍ ହୋଟେଲରୁ ଧୀରେଧୀରେ ବତିଗୁଡ଼ିକ ଲିଭି ଆସୁଥିଲା। ସେଦିନର 'ବିଶେଷ ପ୍ରୋଗ୍ରାମ' ଶେଷ ହୋଇଯାଇଥିଲା ଅଧଘଣ୍ଟାପୂର୍ବରୁ। କିନ୍ତୁ ଭିଡ଼ କମି ନ ଥିଲା ଆଗନ୍ତୁକମାନଙ୍କର।

ଆଉ ଅଧଘଣ୍ଟାଏ ପରେ ହୁଏତ ଜନଶୂନ୍ୟ ହୋଇପଡ଼ିବ ଏହି ବିରାଟ ଘରଟା। ଜୁଆର ପରେ ଭଟ୍ଟା ଆସିବ। ଯାହା କାଠି କୁଟା ଭାସିଭାସି ଆସିବ ଜୁଆର ବେଳେ, ପୁଣି ଭାସି ଭାସି ଚାଲିଯିବ ସବୁ। ତଥାପି କ୍ଷଣକର ଶୋଭା ଲାଖି ରହିବ ଆଖିର।

ଯାହା ଆସିଥିଲା ଆଉ ଚାଲିଗଲା ସେଇଆକୁ କେନ୍ଦ୍ରକରି ଆଳାପ ଜମି ଉଠିଛି ମିଡ୍‌ନାଇଟ୍ ହୋଟେଲରେ। କାହାର ନାଚ ଭଲ, କାହାର ସଙ୍ଗୀତ ମନମୁଗ୍ଧକର, ଇତ୍ୟାଦି ଇତ୍ୟାଦି।

ଯଦୁବାବୁ କିନ୍ତୁ ସାହାଣୀବାବୁଙ୍କୁ ପଚାରୁଥିଲେ-ସେ ଷ୍ଟୁଡିବେକାର କାର ସହିତ ସେ ଜିପ୍‌ଟା କାହିଁକି ଧକ୍‌କା ଲାଗିଲା? ନ ଲାଗିଥିଲେ ତ ଚଳି ଥାଆନ୍ତା।

ସାହାଣୀବାବୁ କହିଲେ- ନ ଲାଗିଥିଲେ ଚଳି ଥାଆନ୍ତା ଯେ, ହୁଏ ତ ନ ଚଳିବାରୁ।

କିନ୍ତୁ ସେ କାରର ଡ୍ରାଇଭର ଆରୋହୀ ସମ୍ବନ୍ଧରେ ବିଶେଷ କିଛି କହିପାରୁନି। କୁଆଡ଼େ ଗଲା, କ'ଣ ହେଲା କିଛି ତାକୁ ଜଣାନାହିଁ। ଯାର କାରଣ କିଛି ଥାଇପାରେ ସାହାଣୀ?

ହୁଏତ ଥାଇପାରେ, ନ ଥାଇ ବି ପାରେ। କଣ ମିଳିବ ସେଥିରୁ? ଦେଖ, ଉଠ୍। ଏଗାରଟା ବାଜିବ। ଯାଇ ଟିକେ ବିଶ୍ରାମ କଲେ କେତେ କଥା।

ସାହାଣୀବାବୁ ଗୋଟିଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରୁ କରୁ କହିଲେ-ଯଦୁ, ଦୀର୍ଘଦିନ ପରେ ଏଭଳି ଗୋଟିଏ ଅବସର ପାଇଚେ। ତୁ ଆଉ ସେସବୁ ଗୋଳମାଳିଆ ଭିତରକୁ ପଶେନା। ମୋର ସନ୍ଦେହ ହେଉଛି, ସେଇ ଜିପ୍‌ଟା ଜାଣି ଜାଣି ସେ ଷ୍ଟୁଡିବେକାର କାରକୁ ଧକ୍‌କା ଦେଇଛି। ଏହା ଏକ୍‌ସିଡେଣ୍ଟ ମୋଟେ ନୁହେଁ ବୋଲି ମୁଁ ବୁଝିପାରୁଛି। ତଥାପି ଆମର ବିଶ୍ରାମ ଲୋଡ଼ା। ଚାଲିଆ।

ମିଡ୍‌ନାଇଟ୍ ହୋଟେଲ

ତୁ ତା'ହେଲେ ଏ ହୋଟେଲକୁ ଆସିଲୁ କାହିଁକି ? ଆମେ ତ ବାଟଗଲା ଲୋକ, ଚାଲିଯାଇ ଥାଆନ୍ତେ। କ'ଣ ଦରକାର ଥିଲା ଏଠାକୁ ଆସିବା ?

ଆରେ ସନ୍ଦେହ ମନ ତ ! ଚାଲିଆସିଥିଲେ। ନାଚ ଦେଖିଲେ, ଗୀତ ଶୁଣିଲେ। ଖାଇବା ପର୍ବଟା ବି ଶେଷ ହେଲା ଏବେ ନିଶ୍ଚିନ୍ତରେ ଶୋଇ ପଡ଼ିବାଟା ହେଲା। ଚାଲେ, ଉଠ୍।

ଯଦୁବାବୁ ତଥାପି ଉଠୁ ନ ଥିଲେ। ଗୋଟାଏ ହୋଟେଲ ବୟ ଆସି ବିନୀତ ସ୍ୱରରେ ଚାଲିଯିବାକୁ କହିଲା। କାରଣ ସେତେବେଳକୁ ଯଦୁବାବୁ ସାହାଣୀବାବୁଙ୍କ ଛଡ଼ା ଦ୍ୱିତୀୟ ଲୋକ ଆଉ କେହି ନଥିଲେ। ହୋଟେଲ ବନ୍ଦ ହେବାର ସମୟ ମଧ୍ୟ ଅଧଘଣ୍ଟାଏ ହେବ ଗଡ଼ିଯାଇଥିଲା।

ଯଦୁବାବୁ ଉଠିଲେ। ସେ ଧୀରେଧୀରେ ପାଦ ପକେଇ ଚାଲୁଥିଲେ। ସାହାଣୀବାବୁଙ୍କ ସିଗାରେଟ୍‌ଟା ଧରି ଆସୁଥିଲା। ଯଦୁବାବୁ ମଟରରେ ଷ୍ଟାର୍ଟ ଦେଇ ଚିନ୍ତା କରୁଥିଲେ ସନ୍ଧ୍ୟା ବେଳର ସେହି ଆକ୍‌ସିଡେଣ୍ଟଟା କଥା।

ଗାଡ଼ି ପାର୍କ ମେନ୍‌ସନ୍ ଗେଟ୍‌ରେ ରହୁଣୁ ନ ରହୁଣୁ ସାହାଣୀବାବୁ ଓହ୍ଲେଇ ରୁମ୍‌କୁ ଚାଲିଗଲେ। ଯଦୁବାବୁ ଗ୍ୟାରେଜରେ ଗାଡ଼ି ରଖୁରଖୁ ଉପରୁ ଶୁଣିଲେ-ରହ ଯଦୁ, ଗାଡ଼ି ଗ୍ୟାରେଜ୍‌ରେ ରଖନା।

ସାହାଣୀବାବୁ ପୁଣି ଉପରୁ ଓହ୍ଲାଇ ଆସି ଗାଡ଼ିରେ ବସିଲେ।

କିରେ ଘଟଣା କ'ଣ ?

ନା ଭାଇ ବିଶ୍ରାମ ଆମ କପାଳରେ ନାହିଁ।

ଆରେ ହେଲା କ'ଣ ?

ଫୋନ୍।

କାହାର ?

ଶ୍ରୀପତି ଛୋଟରାୟଙ୍କ କନ୍ୟା ଛନ୍ଦା ଦେବୀଙ୍କର।

ହୋଇଛି କ'ଣ ?

ଯାହା ହୁଏ।

ମର୍ଡର ?

ନା, ସେମିତିଆ ସମ୍ଭାବନା !

ଠିକଣା ?

କଲେଜ ଷ୍ଟ୍ରୀଟ୍।

-ପାଞ୍ଚ-

ସାହାଣୀବାବୁଙ୍କ ସିଗାରେଟ୍‌ଟା ଜଳି ଜଳି ଝୁଲଗୁଡ଼ାକ ଝଡ଼ି ପଡୁଥିଲା। ସେ ନିବିଷ୍ଟ ଚିତ୍ତରେ ଚିନ୍ତା କରୁଥିଲେ ଛନ୍ଦା ଦେବୀଙ୍କ କଥା। ଏଗୁଡ଼ାକ ନିହାତି ଅସମ୍ଭବ। କୌଣସି କାରଣ ନ ଥାଇ ଟେଲିଫୋନ୍ କୌଣସି ଗୁଇନ୍ଦା ପାଖକୁ କରାଯାଇ ପାରେନା।

ଅଥଚ ଛନ୍ଦା ଦେବୀ ମନା କରିଦେଲେ। କିଛି କାରଣ ନାହିଁ। ଡରରେ ଫୋନ୍ କରି ଦେଇଥିଲି।

ସାହାଣୀବାବୁ ଘଟଣାକୁ ଦୋହରେଇ ଚିନ୍ତା କରୁଥିଲେ।

କାଲି ରାତି ବାରଟା ବେଳେ ଯେତେବେଳେ ସାହାଣୀବାବୁଙ୍କ ଗାଡ଼ି ଯାଇ ଶ୍ରୀପତି ଛୋଟରାୟଙ୍କ ଦୁଆରେ ଭିଡ଼ିଲା, ଛନ୍ଦା ଉପର ମହଲାରୁ ଉତ୍ତଳା ହୋଇ ଛୁଟି ଆସିଥିଲା। ସାହାଣୀବାବୁ ଲକ୍ଷ୍ୟ କରିଥିଲେ ଅଥଚ ପୁଣି ମଝି ସିଡ଼ିରୁ ଫେରିଯାଇ ବସିଲା ଶୋଇଲା ଘରେ। ସାହାଣୀବାବୁ ଗଲେ। ଅସମୟରେ ଟେଲିଫୋନ୍‌ର କାରଣ ପଚାରିଲେ। ଛନ୍ଦା ବିନୀତ ସ୍ୱରରେ କ୍ଷମା ଚାହିଁଲା। କହିଲା-ମୁଁ କେଜାଣି କାହିଁକି ଖୁବ୍ ଡରିଯାଇଥିଲି, ଗୋଟାଏ ଦୁଃସ୍ୱପ୍ନ ଦେଖିଲି କିଏ ଯେପରି ମୋତେ ତଣ୍ଟି ଚିପି ହତ୍ୟା କରିବାକୁ ଧାଇଁ ଆସୁଚି ତା ପରେ....।

ସାହାଣୀବାବୁ କଥା ମଝିରେ ବାଧା ଦେଇ ପଚାରିଥିଲେ-ଆପଣ ଆମ ଠିକଣା ଏତେ ସହସା ଜାଣିଲେ କିପରି ?

ଛନ୍ଦା ଉତ୍ତର ଦେଲା-ବାପା ଆଗରୁ କହିଥିଲେ। କୌଣସି ବିପଦ ପଡ଼ିଲେ ସଙ୍ଗେ ସଙ୍ଗେ ଆପଣଙ୍କୁ ଜଣାଇବା ପାଇଁ ତାଙ୍କର ନିର୍ଦ୍ଦେଶ ଥିଲା।

ସାହାଣୀବାବୁ ଚିନ୍ତା କରୁଥିଲେ। ଛନ୍ଦା କାଲି ଯାହା କହିଲା ସବୁ କଣ ସତ କହିଲା ? ନା-ନା-ମନେ ହେଉଛି ଯେମିତି ଗୋଟାଏ ଭୟ ତା କଣ୍ଠରୋଧ କରିଥିଲା।

ସାହାଣୀବାବୁ ଆଉ ଗୋଟାଏ କଥା ଲକ୍ଷ୍ୟ କରିଥିଲେ। ଛନ୍ଦା ଶୟନକକ୍ଷରେ ଯେଉଁ ବିରାଟ ତୈଳଚିତ୍ରଟି ଟଙ୍ଗା ହୋଇଥିଲା, ଛନ୍ଦା ସେଇଆଡ଼େ ବାରମ୍ବାର ଚାହୁଁଥିଲା। ଆଉ ଯେତେଥର ଚାହୁଁଥିଲା, ସେତେଥର ସେ ତା ଆଖି ଓ ମୁହଁରେ ଚଞ୍ଚଳତାର ଲହରୀ ଦେଖୁଥିଲେ। କାହିଁକି ? କିନ୍ତୁ ସେ ତୈଳଚିତ୍ରଟି ଯେ ଛନ୍ଦା ମା'ର ! ତେବେ ?

ଯଦୁବାବୁ ତେଣୁ ଚିତ୍କାର କରି ଧାଇଁ ଆସିଲେ। ତାଙ୍କ ହାତରେ ସେଦିନର ଖଣ୍ଡିଏ ପ୍ରଭାତୀ ସମ୍ବାଦପତ୍ର। ସେ ସାହାଣୀ ବାବୁଙ୍କ ସାମନା ଚେଆର ଉପରେ ବସିପଡ଼ି କାଗଜଟାକୁ ସାହାଣୀ ବାବୁଙ୍କ ହାତକୁ ବଢ଼େଇ ଦେଇ କହିଲେ, ଶୁଣିଲୁଣି ?

କ'ଣ ?

ଶୁଣ, ମୁଁ ପଢୁଚି।

''ସାନ୍ତାକ୍ରୁଜ୍ ବିମାନଘାଟିରେ ରହସ୍ୟଜନକ ହତ୍ୟା।

ବମ୍ବେ- ଜଣା ପଡ଼ିଛି ଯେ, ବମ୍ବେରେ ଅନୁଷ୍ଠିତ ହେଉଥିବା 'ସୁନ୍ଦରୀ ପ୍ରତିଯୋଗିତା'ରେ ଯୋଗ ଦେବା ପାଇଁ ଗତକାଲି ରାତି ୯ଟାରେ କଲିକତାରୁ ଏକ ସ୍ପେଶାଲ ବିମାନ ଯୋଗେ କେତେକ ଭଦ୍ରମହିଳା ଆସୁଥିଲେ। ଯଥା ସମୟରେ ସେହି ବିମାନ ବମ୍ବେର ସାନ୍ତାକ୍ରୁଜ୍ ଏୟାର ପୋର୍ଟରେ ଅବତରଣ କଲା। ଆନନ୍ଦ କଳରୋଳ ଭିତରେ ମହିଳାମାନେ ବିମାନରୁ ଅବତରଣ କଲେ।

ମାତ୍ର ଅଳ୍ପ ସମୟ ପରେ ଜଣାଗଲା ଯେ ଜଣେ ଭଦ୍ରମହିଳା ସେ ପର୍ଯ୍ୟନ୍ତ ବିମାନରୁ ଓହ୍ଲାଇ ନାହାନ୍ତି। ସେ ତାଙ୍କ ନିଜ ସିଟ୍‌ରେ ବସିଛନ୍ତି। କାରଣ ଅନୁସନ୍ଧାନ କରି ଜଣାଗଲା ଯେ ମହିଳାଟି ମୃତ। ମୃତ୍ୟୁର କାରଣ ଜଣାପଡ଼ିନାହିଁ। ତେବେ ଏହା ଏକ ରହସ୍ୟଜନକ ହତ୍ୟାକାଣ୍ଡ ବୋଲି ଅନୁମାନ କରାଯାଉଛି ।''

ତା ପରେ ?

ନା, ଆଉ କିଛି ନାହିଁ।

ମହିଳାଟିର ନାଁ, ଠିକଣା ?

କିଛି ନାହିଁ।

ବମ୍ବେ ଆଉ କଲିକତା, ଢେର୍ ତଫାତ୍। କିଛି ଲାଭ ନାହିଁ ଚିନ୍ତା କରି। ବରଂ ଛନ୍ଦା ସମ୍ବନ୍ଧରେ ଗୋଟାଏ କିଛି ସମାଧାନ କରିପାରିଲେ ଭଲ ହୁଅନ୍ତା।

ତୁ ଗୋଟାଏ ବଦ୍ଧପାଗଳ ମୁଁ ଦେଖୁଚି ସାହାଣୀ। ବହୁ ସମୟ ପରେ ବହୁ ବାଜେ ଘଟଣାକୁ କେନ୍ଦ୍ର କରି ଖାଲି ସମୟ ଅପବ୍ୟୟ କରୁ। ଛନ୍ଦା ତ ସ୍ପଷ୍ଟ ମନା କରିଦେଲା।

ବୁଝୁଚି-କିନ୍ତୁ ଆମେ ପହଞ୍ଚିବା ମାତ୍ରେ, ସେ ଅଧ ଶିଡ଼ିଯାଏ ଧାଇଁ ଆସି ପୁଣି ଲେଉଟିଗଲା। କାହିଁକି ? ମୋର କ'ଣ ମନେ ହେଉଚି ଜାଣୁ ଯଦୁ ?

କ'ଣ ?

କୌଣସି ଗୋଟାଏ ଅଦୃଶ୍ୟ ଶକ୍ତି ତା ମନକୁ ପରିଚାଳିତ କରୁଚି।

ଧେତ୍, ଯେତେସବୁ ବାଜେ ଭାବନା। ବରଂ ଶାନ୍ତାକ୍ରୁଜ୍ ବିମାନଘାଟିର ଏହି ହତ୍ୟା ରହସ୍ୟ ସମ୍ବନ୍ଧରେ ଆଲୋଚନା କଲେ ବହୁ ନୂଆ ତଥ୍ୟ ମିଳିବ।

ହୁଁ, ସାହାଣୀବାବୁ ଆଉ ଗୋଟାଏ ସିଗାରେଟ୍ ଲଗାଇଲେ।

ଟେଲିଫୋନଟା ଝଣ୍‌ଝଣ୍ ହୋଇ ବାଜି ଉଠିଲା।

ହ୍ୟାଲୋ, ମୁଁ ସାହାଣୀବାବୁ କହୁଛି। ଯଦୁବାବୁ? ହଁ, ଅଛନ୍ତି।

ଯଦୁବାବୁ ରିସିଭରଟା କାନରେ ଲଗାଇଲେ।

କା'ର ସେ ଗାଡ଼ିଟା? ରସା ଗ୍ୟାରେଜ୍‌ରେ? ମିଡ୍ ନାଇଟ୍ ହୋଟେଲ ଭଡ଼ା ନେଇଥିଲା, ତାଙ୍କର ବିଶେଷ ପ୍ରୋଗ୍ରାମ ପାଇଁ? ଆଉ ସେ ଜିପ୍‌ଟା? କ'ଣ କହିଲେ? ନା, ନା ମୁଁ ଭୁଲ୍ ନମ୍ବର ଦେଇନାହିଁ। ମୋର ଯେତେଦୂର ମନେପଡୁଛି, ନମ୍ବରଟା ମୋର ଠିକ୍ ସ୍ମରଣ ଅଛି। ସେ ନମ୍ବରର କୌଣସି ଗାଡ଼ି କଲିକତାରେ ନାହିଁ? ହେଉ ଧନ୍ୟବାଦ। ଯଦୁବାବୁ ରିସିଭରଟା ରଖିଦେଲେ ଯଥା ସ୍ଥାନରେ।

କ'ଣ କିରେ ଯଦୁ?

ନା, କାଲିର ସେଇ ଘଟଣାଟା। ମୋ ମନରେ ଟିକେ ସନ୍ଦେହ ହେବାରୁ ମଟରଭିକେଲକୁ ଫୋନ୍ କରି-ଗାଡ଼ି ଦୁଇଟାର ଓନର କିଏ ବୁଝି ଜଣେଇବାକୁ କହିଥିଲି।

ଜାଣିଲୁ?

ହଁ। କହି ଯଦୁବାବୁ ପୁଣି ସଙ୍ଗେସଙ୍ଗେ ଟେଲିଫୋନ୍ ରିସିଭରଟା ଉଠାଇ ଡାଏଲ୍ ଘୂରେଇଲେ।

ମିଡ୍‌ନାଇଟ୍ ହୋଟେଲ? ଆପଣ ମ୍ୟାନେଜର? ଆଚ୍ଛା କାଲି ଆପଣଙ୍କ ବିଶେଷ ପ୍ରୋଗ୍ରାମ ପାଇଁ ରସା ଗ୍ୟାରେଜରୁ ଯେଉଁ ଷ୍ଟୁଡିବେକାର କାର୍ ଖଣ୍ଡିକ ଭଡ଼ା ଆଣିଥିଲେ, ସଞ୍ଜ ସାଢ଼େ ଛଅଟାରୁ ସାତଟା ଭିତରେ ସେଖଣ୍ଡକ କିଏ ବ୍ୟବହାର କରୁଥିଲା? କ'ଣ କହିଲେ? ବିଶେଷ ପ୍ରୋଗ୍ରାମରେ ଯୋଗଦେବାକୁ ଆସୁଥିବା ନର୍ତ୍ତକୀ ଓ ଗାୟିକାମାନଙ୍କ ପାଇଁ ନିଯୁକ୍ତ ଥିଲା? ଯେତେବେଳେ ସେ ଗାଡ଼ିଟି ଆକ୍ସିଡେଣ୍ଟ ହେଲା, ସେତେବେଳେ ସେଥିରେ କିଏ ଥିଲେ? କହି ପାରିବେନି? ଆଚ୍ଛା ଆଚ୍ଛା, ଅନୁସନ୍ଧାନ କରି ଜଣାଇଲେ ଉପକୃତ ହେବି।

ଯଦୁବାବୁ ରିସିଭରଟା ରଖୁଣୁ ନ ରଖୁଣୁ ସାହାଣୀବାବୁ କହିଲେ, ଶ୍ରୀପତି ବାବୁଙ୍କ ଘରକୁ ଫୋନ୍ କରି ବୁଝିଲୁ ଛନ୍ଦା କ'ଣ କରୁଛି।

ମିଡ୍‌ନାଇଟ୍ ହୋଟେଲ୍

-ଛଅ-

ଗୋଟାଏ ଅଧାପୋଡ଼ା ସିଗାରେଟ୍ ଆଉ ଖଣ୍ଡିଏ ଖଣ୍ଡିଆ ପାଉଁରୁଟି। ଅନ୍ଧାରୁଆ ଘର ଭିତରଟାରେ ମହମ୍‌ବତିଟାଏ ଜଳୁଚି। ଦଉଡ଼ି ଖଟିଖିଆଟା ଉପରେ ବସିଚି ଗୋଟାଏ ଯୁବକ। ବାଁ ହାତରେ ସିଗାରେଟଟା ଜଳୁଚି। ଡାହାଣ ହାତରେ ପାଉଁରୁଟି ଟୁକୁରାଟା।

କାନ୍ଥରେ ଟଙ୍ଗା ହୋଇଚି କେଇଟା ଅଶ୍ଳୀଳ ପୋଷ୍ଟର। ଘରର ମଳିନତା ଦୈନ୍ୟ ସୂଚଉଚି ଯୁବକଟିର। କିନ୍ତୁ ସ୍ୱାସ୍ଥ୍ୟ ଯୁବକଟିର ଅନୁପମ।

ଦୁଆର ମୁହଁରେ କୁକୁରଟାଏ ବସି ଲାଞ୍ଜ ହଲଉଚି। ଯୁବକଟିର କୌଣସି ଆଡ଼େ ଦୃଷ୍ଟି ନାହିଁ। ହଠାତ୍ କୁକୁରଟା କେଁ କେଁ ହୋଇ ଚିତ୍କାର କରି ଉଠିଲା। ଯୁବକଟି ଚମକି ପଡ଼ିଲା। କିଏ?

ଗୋଟାଏ ଅସ୍ପଷ୍ଟ ଛାୟାମୂର୍ତ୍ତି ପଶି ଆସୁଥିଲା ଭିତରକୁ।

ଯୁବକଟି ଚିତ୍କାର କରି ଉଠିଲା।

ଚାଲିଯାଅ ତୁମେ। ଏଇ ମୁହୂର୍ତ୍ତରେ ବାହାରିଯାଅ ମୋ ଘରୁ। ମୁଁ ତୁମକୁ ବାରମ୍ବାର ମନା କରୁଛି। ତମ ପ୍ରସ୍ତାବରେ ମୁଁ ଏକମତ ହୋଇପାରିବି ନାହିଁ।

ଅସ୍ପଷ୍ଟ ଛାୟାମୂର୍ତ୍ତିଟା ହସି ଉଠିଲା, ଆଜି ରାତିକ ମୁଁ ତୁମକୁ ସମୟ ଦେଉଛି ମୋହନ। ତୁମେ ଚିନ୍ତା କର। ଟଙ୍କାରେ ତୁମର ଖୁବ୍ ପ୍ରାୟୋଜନ ଅଛି। ମା' ବୁଢ଼ୀ ତୁମର ମୃତ୍ୟୁଶଯ୍ୟାରେ। ତୁମେ ମୋ ପ୍ରସ୍ତାବ ଗ୍ରହଣ କର।

ମୋହନର କିନ୍ତୁ ସେଇ ଏକା ଜିଦ୍- ନା, ନା, ତମେ ଚାଲିଯାଅ ଏଠୁ। ଯାହା କହିଛ ମୁଁ ବହୁତ କରିଛି। ଆଉ କିଛି କରିପାରିବି ନାହିଁ। ମା' ମୋର ଶୁଖି ଶୁଖି ମରୁ। ମୁଁ ଖାଇବାକୁ ନ ପାଇ ପେଟ ବିକଳରେ ମରେ- କିନ୍ତୁ ତମ ଘୃଣ୍ୟ ପ୍ରସ୍ତାବକୁ ମୁଁ ଗ୍ରହଣ କରିପାରିବି ନାହିଁ। ତମେ ଚାଲିଯାଅ ଏଠୁ। ଏଇ ମୁହୂର୍ତ୍ତରେ ଚାଲିଯାଅ।

ମୁଁ ଯାଉଛି। କିନ୍ତୁ ଯିବା ଆଗରୁ କହି ଯାଉଛି, ଆଉ ଥରେ ତୁମେ ଭଲକରି ଚିନ୍ତା କର ମୋହନ।

ମୋହନ ଆଉ କିଛି ଉତ୍ତର ଦେଲା ନାହିଁ। ଦୁଇହାତର ବେଷ୍ଟନୀ ଭିତରେ ମୁହଁଟାକୁ ଲୁଚେଇ ଦେଇ ବସିରହିଲା। ସେଇ ଅସ୍ପଷ୍ଟ ଛାୟାମୂର୍ତ୍ତିଟା ଯେମିତି ଧୀରେଧୀରେ ପ୍ରବେଶ କରିଥିଲା, ସେମିତି ଧୀରେ ଧୀରେ ଅପସରି ଗଲା।

ସଇତାନ୍, ରାସ୍କେଲ୍ !!

ମୋହନ ଉଠିପଡ଼ି କାନ୍ଥରେ ଟଙ୍ଗା ହୋଇଥିବା କଳା କୋଟ୍‌ଟା କାନ୍ଧରେ ପକାଇ ଘରୁ ବାହାରି ପଡ଼ିଲା। ଦୁଇ ତିନିଟା ଲେନ୍ ଅତିକ୍ରମ କରି ସେ ଗୋଟାଏ ଅନ୍ଧାରୁଆ ଗଳି ଭିତରେ ପଶିଲା। ଅତି ସଂକୀର୍ଣ୍ଣ। କେଇଟା ଗ୍ୟାସବତି ଅସ୍ପଷ୍ଟ ହେଇ ଜଳୁଚି। ମୋହନ ନିଜ ପାଦଧ୍ୱନିର ପ୍ରତିଧ୍ୱନି ଶୁଣି ବେଳେବେଳେ ଚମକି ଉଠୁଥିଲା।

ଗୋଟାଏ ଦରଜା ପାଖରେ ଠିଆ ହେଇ କରାଘାତ କଲା।

କବାଟ ଖୋଲିଗଲା।

ମୋହନ ଭିତରକୁ ପଶିଲା। ଜଣେ ଲୋକ ଗୋଟାଏ ଚେୟାରରେ ବସି କ'ଣ କାଗଜପତ୍ର ଘାଣ୍ଟୁଛି।

ମୋହନର ପାଦଶବ୍ଦ ବାରି ସେମିତି ବସିରହି ପଚାରିଲା-ହଠାତ୍, ଅସମୟରେ?

ନା, ମୋତେ ଗୋଟାଏ ସୁଚିନ୍ତିତ ପଥ ଦେଖେଇବାକୁ ହେବ। ନ ହେଲେ ମୁଁ ପାଗଳ ହୋଇଯିବି।

ଲୋକଟି ବୁଲି ଚାହିଁଲା, କିନ୍ତୁ ମୁଁ କ'ଣ କରିବି କହ। ମୋର ଯେ କୌଣସି ଉପାୟ ନାହିଁ। ତୋ' ପଛରେ ଖୁଣର ଅପରାଧ। ମୁଁ କେମିତି ତତେ ବଞ୍ଚେଇବି? ଆତ୍ମଗୋପନ କରି ରହିବା ଛଡ଼ା ତୋର ପଦାକୁ ବାହାରିବାର ଉପାୟ ନାହିଁ।

କିନ୍ତୁ ଖୁଣ୍ ତ ମୁଁ କରିନାହିଁ

ସେକଥା ତୁ ସିନା କହୁଚୁ, ଆଇନ୍ କ'ଣ ତୋ କଥା ଶୁଣିବ?

ତା' ହେଲେ?

ତୋତେ ତା' ହୁକୁମ ତାମିଲ୍ କରିବାକୁ ପଡ଼ିବ। ତୋର ଯାହା ହେଉ ପଛେ, ସେ ତୋତେ ଛାଡ଼ିବ ନାହିଁ। ତା ସ୍ୱାର୍ଥ ସାଧନ ପଥରେ କୌଣସି ଅନ୍ତରାୟ ସୃଷ୍ଟି କଲେ ସେ ମୋତେ କ୍ଷମା କରିବ ନାହିଁ। ପଳ ପଳ କରି ଜଳେଇ ପୋଡ଼େଇ ମାରିବ।

ମୁଁ ଯଦି କଲିକତା ଛାଡ଼ି ଚାଲିଯାଏ?

ପାରିବୁ ନାହିଁ ମୋହନ। କେଉଁଠି ହେଲେ ଆତ୍ମଗୋପନ କରିପାରିବୁ ନାହିଁ। ତା' ଶ୍ୟେନଦୃଷ୍ଟିରୁ କେହି ଆଜିଯାଏ ବର୍ତ୍ତି ନାହାନ୍ତି। ତୁ ତ ଅତି ସାଧାରଣ ଲୋକ।

ତେବେ....

ତୋତେ ତା' ଦାସତ୍ୱ ସ୍ୱୀକାର କରିବାକୁ ପଡ଼ିବ।

କିନ୍ତୁ ମୁଁ ତ ଯା ଚାହିଁ ନ ଥିଲି !

କିଏ ଚାହିଁଥିଲା କହ? ମୁଁ କ'ଣ ଚାହିଁଥିଲି? କୌଣସି ଆଲୋକପ୍ରାପ୍ତ ମନୁଷ୍ୟ ଏଇଆ କ'ଣ ଚାହେଁ? ପରିସ୍ଥିତି ସବୁ କରାଏ ମୋହନ। ଆମର ପରିସ୍ଥିତି ଆମକୁ ଏ ଜନ୍ତା ଭିତରେ ପକେଇଚି। ଏଠାରୁ ନିସ୍ତାର ନାହିଁ। ନା, ନିସ୍ତାର ନାହିଁ। ତୁ ଫେରିଯାଏ। ମୋ ଉପରେ ଗୋଟାଏ ଭୀଷଣ ଦାୟିତ୍ୱର ବୋଝ ମୋତେ ସୁଚାରୁରୂପେ ପରିଚାଳନା କରିବାକୁ ପଡ଼ିବ। ତା ନ ହେଲେ ମୃତ୍ୟୁର କାଳଫାଶ ମୋତେ ଆଲିଙ୍ଗନ କରିବ। ତୁ ଫେରିଯା ମୋହନ। ତା ଦାସତ୍ୱ ସ୍ୱୀକାର ଛଡ଼ ଅନ୍ୟ ବାଟ ଆଉ କିଛି ନାହିଁ।

ମୋହନ ଯେମିତି ଆଣିଥିଲା, ସେମିତି ଫେରିଗଲା। ବସିବାକୁ ବି କେହି କହିଲାନି ତାକୁ। ପୁଣି ସେଇ ଗଳିରାସ୍ତା। ଅନ୍ଧାରୁଆ। ସଂକୀର୍ଣ୍ଣ। ପାଦର ପ୍ରତିଧ୍ୱନି।

ମୋହନ କଳା କୋଟ୍ ଭିତରେ ଦେହଟାକୁ ଘୋଡ଼େଇ ଆଗଉଥିଲା। ମୁଣ୍ଡ ଭିତରେ ତା'ର ଭାବନାର ଚକ ଘୂରୁଥିଲା। କି ଦୁର୍ଯୋଗରେ ସେ ଘରୁ ଗୋଡ଼ କାଢ଼ିଥିଲା କେଜାଣି। ଉଚ୍ଚଶିକ୍ଷିତ ମୋହନ। ବିଶ୍ୱବିଦ୍ୟାଳୟର ଡିଗ୍ରୀ ତା' ନାଁ ପଛ ଆଡ଼େ ଅଛି। କେତେ ଆଶା, କେତେ କଳ୍ପନା ତା ଜୀବନ କାନନରେ ପାଖୁଡ଼ା ମେଲିଥିଲା। ସବୁ କ'ଣ ଅକାଳରେ ଝଡ଼ି ପଡ଼ିବ?

ମେନ୍‌ରୋଡ଼ ଉପରୁ ଗୋଟାଏ ମଟର ଫୋକସ ଆସି ତା' ମୁହଁ ଉପରେ ପଡ଼ିଲା। ଚମକି ପଡ଼ିଲା ମୋହନ। ଗୁଞ୍ଜିହେଇ ଠିଆ ହେଇପଡ଼ିଲା ଗୋଟାଏ କାନ୍ଥକଡ଼କୁ।

ମଟରଟା ଚାଲିଗଲା। ମୋହନର ଆଖି ପଡ଼ିଗଲା ଆରୋହୀ ଉପରେ।

ଛନ୍ଦା! ମୋହନର ଗୋଡ଼ଯୋଡ଼ାକ ଚଞ୍ଚଳ ହୋଇଉଠିଲା। କିନ୍ତୁ ମଟରଟା ଦୂରେଇ ଯାଇଥିଲା ଆହୁରି ଦୂରକୁ। ମୋହନ ଆଗେଇ ଯାଇଥିଲା ଯେତିକି, ପଛେଇ ଆସିଲା ସେତିକି। ପୁଣି ସେଇ ସଂକୀର୍ଣ୍ଣ ଗଳି ରାସ୍ତା। ମିଞ୍ଜି ମିଞ୍ଜିଆ ଆଲୁଅ। ଅନ୍ଧାରୁଆ କୋଠରି। କୁକୁରଟା ପୁଣି କେଁ କେଁ ହେଇ ଉଠିଲା। ଏଥର ମୋହନ ତାକୁ ମାଡ଼ି ଦେଇଛି।

ଦରଜା ଖୋଲି ଡିଆସିଲି ଜଳେଇଲା। କିନ୍ତୁ ମହମ୍‌ବତିଟା ଜଳି ଜଳି ଶେଷ ହୋଇଯାଇଛି। ମହମ୍ ପୁଳାଏ ତରଳି ଜମି ଯାଇଛି ଖଣ୍ଡିଆ ଟେବୁଲଟା ଉପରେ।

ମିଡ୍‌ନାଇଟ୍ ହୋଟେଲ୍

-ସାତ-

ମରିଆ ଆଣି ଛନ୍ଦା ହାତରେ ଖଣ୍ଡେ ଚିଠି ଦେଇଗଲା। ଡାକରେ ଆସିଛି। ପରିଚିତ ଅକ୍ଷର। କିନ୍ତୁ ଛନ୍ଦାର ହାତଟା କାଲୁଆ ହୋଇଗଲା। ଚିଠି ଖଣ୍ଡିକ ଖସିପଡ଼ିଲା ତଳେ। ଛନ୍ଦା ଆଉଥରେ ତାକୁ ତଳୁ ଉଠାଇବାକୁ ଭରସା କଲାନାହିଁ।

ଘରର ତୈଳଚିତ୍ରଟା ଆଡ଼େ ଅନେଇଲା। ଆଖିରୁ ଲୁହ ଝରି ପଡୁଥିଲା। ପ୍ରାଣ ଭିତରେ ସତେକି ତୋଫାନ୍ ଉଠେଇଚି ! ବିକଳ ସ୍ୱରରେ ଚିତ୍କାର କରି ଉଠିଲା-ମା, ମା ! ତୁ କାହିଁକି ମତେ ଇମିତି ଦହଗଞ୍ଜରେ ପକେଇଚୁ ? ମୋତେ ଜନ୍ମ ନ କରିଥିଲେ କଣ ଚଳି ନଥାନ୍ତା ? ଯଦିବା ଜନ୍ମ ଦେଲୁ; ସେତିକିବେଳେ ତଣ୍ଟିଚିପି ନ ଦେଲୁ କିଆଁ ?

ଛନ୍ଦା ଆଖି ବୁଜି କଇଁକଇଁ ହୋଇ କାନ୍ଦି ଉଠିଲା।

ବାହାର ଦୁଆର ଖୋଲିବା ଶବ୍ଦ ଶୁଣି ଛନ୍ଦା ବିଚଳିତ ହୋଇ ପଦାକୁ ଚାହିଁଲା। ସାହାଣୀବାବୁ ଧୀରେଧୀରେ ପ୍ରବେଶ କରୁଛନ୍ତି। ଛନ୍ଦା ପଲଙ୍କ ଉପରୁ ଗୋଟାଏ ଚଦର ତରବର କରି ତଳେ ଫିଙ୍ଗିଦେଲା। ଚିଠିଟା ଲୁଚିଗଲା ସେଇ ଚଦର ତଳେ।

କ'ଣ ହୋଇଛି ଆପଣଙ୍କର ? ଟେଲିଫୋନ୍ କରିଥିଲି। ଶୁଣିଲି ଦେହ ଭଲନାହିଁ। ଚିଠିଟା ଲୁଚିଗଲା ସେଇ ଚଦର ତଳେ।

କ'ଣ ହୋଇଛି ଆପଣଙ୍କର ? ଟେଲିଫୋନ୍ କରିଥିଲି। ଶୁଣିଲି, ଦେହ ଭଲନାହିଁ। ହଠାତ୍ ଅସୁସ୍ଥ ହେବାର କାରଣ ?

ଛନ୍ଦା ହସିବାକୁ ଚେଷ୍ଟା କଲା। କିନ୍ତୁ ସେ ହସ ଯେ କୃତ୍ରିମ, ନିଜେ ତାହା ଛନ୍ଦା ଅନୁଭବ କଲା।

କହିଲା-ମୁଣ୍ଡଟା ବୁଲଉଛି। ଖୁବ୍ ଦୁର୍ବଳ ଲାଗୁଛି। ଜର ଜର ମଧ୍ୟ ଲାଗୁଛି ଟିକେ। ହେ ଯା' ହେଉ, ହଠାତ୍ ଆପଣ ଯେ !

ମିଡ୍‌ନାଇଟ୍ ହୋଟେଲ୍

କିଛି କାମ ନାହିଁ। ଯାଉଥିଲି, ଚାଲି ଆସିଲି। କିନ୍ତୁ ଛନ୍ଦା ଦେବୀ ମୋର କାହିଁକି ମନେ ହେଉଛି, ଆପଣ ମୋତେ ବହୁତ ବହୁତ କଥା ଲୁଚଉଛନ୍ତି। କାହିଁକି, କୁହନ୍ତୁ ତ ?

ଛନ୍ଦା ଆଉ ଥରେ ହସିଲା।

ଆପଣଙ୍କ ସନ୍ଦେହୀ ମନ ଭିତରେ ସନ୍ଦେହର କଣିକା ଦାନା ବାନ୍ଧିଛି। ସେଥିପାଇଁ ଆପଣ ମୋତେ କାହିଁକି ଜଗତର ପ୍ରତ୍ୟେକ ଲୋକଙ୍କୁ ସନ୍ଦେହ କରୁଥିବେ। ଚା' ଖାଇବେ ?

ସାହାଣୀବାବୁ ଛନ୍ଦା ମୁହଁକୁ ଅନେଇଥିଲେ।

ଛନ୍ଦା ମଣିଆକୁ ଡାକି ଚା' ପାଇଁ କହିଲା।

ସାହାଣୀବାବୁ ପଚାରିଲେ-ଶ୍ରୀପତି ବାବୁ କୁଆଡ଼େ ଯାଇଛନ୍ତି ?

କହି ପାରିବିନି। ତିନି ଚାରି ଦିନ ଆସିବେନି ବୋଲି କହୁଥିଲେ।

ବ୍ୟବସାୟ କିପରି ଚାଲିଚି ?

କେଜାଣି, ସେ କଥା ବାପା ଜାଣନ୍ତି ।

ଆଚ୍ଛା ଛନ୍ଦା ଦେବୀ, ଏ ତୈଳଚିତ୍ରଟି କାହାର ?

ମୋ ମା'ଙ୍କର।

କେତେ ବର୍ଷ ହେଲା ତାଙ୍କର ବିୟୋଗ ଘଟିଲାଣି ?

ମତେ ଯେତେବେଳେ ଆଠବର୍ଷ ହୋଇଥିଲା।

ମା' ଆପଣଙ୍କୁ ବୋଧହୁଏ ଖୁବ୍ ସ୍ନେହ କରୁଥିଲେ ?

କିଛି ମନେ ନାହିଁ।

ମନେ ପକେଇବାକୁ ଚେଷ୍ଟା କଲେ ?

ବହୁତ ଥର ଚେଷ୍ଟା କଲିଣି, କିନ୍ତୁ କିଛି ମନେ ପଡୁନାହିଁ। ମା'ଙ୍କ ପରିବର୍ତ୍ତେ ବାପାଙ୍କ ସ୍ନେହ ଆଦର ଆସି ଆଖିପତାରେ ଜମିଯାଉଛି। ମା' ଦୂରେଇ ଯାଉଛନ୍ତି।

ଆଚ୍ଛା, ମୁଁ ଯାଉଛି। ଆସି ବିରକ୍ତ କରିଗଲି, କ୍ଷମା କରିବେ।

ସାହାଣୀବାବୁ ଚାଲିଗଲେ। ଅଳ୍ପକ୍ଷଣ ପରେ ମଣିଆ ଚା' ଧରି ଆସି ପହଞ୍ଚିଲା। ଘର ଖାଲି। ଛନ୍ଦା ତକିଆରେ ମୁହଁ ଗୁଞ୍ଜି-ଶୋଇଚି। ଡାକିଲା, ଦେଈ, ଦେଈ, ଚା-ବାବୁ କୁଆଡ଼େ ଗଲେ ?

ସେ ପଳେଇଲେଣି। ଚା ଫେରେଇ ନେଇ ଯା'।

ମଣିଆ ଚାଲି ଯାଉ ଯାଉ ତଳ ଚଦରଟା ତା ଗୋଡ଼ରେ ଛନ୍ଦି ହୋଇପଡ଼ିଲା। ତା ତଳେ ଚିଠିଟା ପଡ଼ିଛି। ମଣିଆ ପୁଣି ଥରେ ତଳୁ ଚିଠିଟା ଉଠେଇ ଛନ୍ଦା ହାତକୁ ବଢ଼େଇଦେଲା-

ଛନ୍ଦା ଚିତ୍କାର କରି ଉଠିଲା-ଚିଠି, ଚିଠି, ଚିଠି ! ନେଇ ଯା ସେ ଚିଠି, ଲୋଡ଼ାନାହିଁ ମୋର।

ମିଡ଼୍‌ନାଇଟ୍ ହୋଟେଲ୍

ଛନ୍ଦା ଚିଠିଟାକୁ ଫିଙ୍ଗିଦେଲା ମଣିଆ ଉପରକୁ। କିନ୍ତୁ ଚିଠିଟା ଖିଡ଼ିକି ଡେଇଁ ତଳେ ଯାଇ ପଡ଼ିଲା ଠିକ୍ ସାହାଣୀ ବାବୁଙ୍କ ପାଦ ପାଖରେ। ସେ ଅଟକି ଗଲେ। ଚିଠିଟାକୁ ଉଠେଇ ଦେଖିଲେ-'ଛନ୍ଦା ଦେବୀ'। ଉପରକୁ ଚାହିଁଲେ, କାହାରି ମୁହଁ ଦିଶୁନି। ମଟରର ବସିଲେ ଯାଇ। ସାବଧାନ ସହକାରେ ଖୋଲିଲେ ଚିଠିଟି। ଅଳ୍ପ କେଇଧାଡ଼ି ଲେଖା-

ଛନ୍ଦା,

କ'ଣ ଲେଖିବି ତତେ? ବର୍ତ୍ତମାନ ମଧ୍ୟ ମୁଁ ଭୀଷଣ ଅନ୍ଧକାରରେ। ବାହାରର ଆଲୋକ ମୋତେ ଛୁଇଁ ପାରୁନାହିଁ। କେତେଦିନ ଏମିତି ଚଳିବ? ମୁଁ ଯେଉଁ ପରିସ୍ଥିତିରେ ତାହା ତୋତେ ଆଗରୁ ଲେଖି ଜଣେଇଥିଲି। ଭଗବାନ କାହିଁକି ମୋର ଭେଟ କରେଇଥିଲେ ତୋ ସଙ୍ଗରେ? ଏହିଭଳି ଆଉ କିଛିଦିନ ରହିଲେ ମୁଁ ଜୀବନ୍ତ ପଚି ସଢ଼ିଯିବି। ତଥାପି ଉପାୟ ନାହିଁ। ମିଥ୍ୟା ପ୍ରମାଣିତ କରେଇ ପାରିବି ନାହିଁ। ପୂର୍ବ ଚିଠିରେ ତୋତେ ତ ମୋର ସବୁକଥା ଜଣେଇଚି। ଇସ୍....ସେ କି ଘୃଣ୍ୟ ପ୍ରସ୍ତାବ ମୋ ମୁକ୍ତି ପାଇଁ ! ତୁ ଏଡ଼େ ବଡ଼ ଦୁଷ୍କର୍ମଟାଏ କରିବୁ ନାହିଁ। ନା, ନା-ମୋର ଏଇ ଅନ୍ଧକାର ଭିତରେ ଜୀବନ୍ତ ସମାଧି ହେଉ ପଛେ -ତୁ ସେ ଘୃଣ୍ୟ ପ୍ରସ୍ତାବ ପାଇଁ ମୋତେ ଭାବିବୁ ନାହିଁ। ସମ୍ଭବ ହେଲେ ମୋତେ ଟିକେ ଦେଖା କରିବୁ।

ତୋର
ପ୍ରିୟତମା

ସାହାଣୀବାବୁ ପୁଣି ମଟରରୁ ଓହ୍ଲାଇଲେ। ଛନ୍ଦା ମୁହଁମାଡ଼ି ଶୋଇଚି। ସାହାଣୀବାବୁଙ୍କର ପାଦଶବ୍ଦ ତା' ଭାବର ଗତିରୋଧ କରିପାରିଲା ନାହିଁ। ସେ ଚିଠି ଖଣ୍ଡିକ ଅତି ସନ୍ତର୍ପଣରେ ଛନ୍ଦା ଟେବୁଲ୍ ଉପରେ ରଖି ଦେଇ ଧୀରେଧୀରେ ତଳକୁ ଓହ୍ଲେଇ ଆସିଲେ।

ସମସ୍ୟାର ଘନଘଟା।

ସାହାଣୀବାବୁ ମଟରରେ ଷ୍ଟାର୍ଟ ଦେଲେ।

-ଆଠ-

ଯଦୁ ! ଯଦୁ!

ସାହାଣୀ ବାବୁଙ୍କ ଧ୍ୱନି ପ୍ରତିଧ୍ୱନି ସୃଷ୍ଟି କଲା ଘରଟା ଭିତରେ। ସାମନା ଟେବୁଲ୍ ଉପରେ ସାହାଣୀ ବାବୁଙ୍କ ନାମରେ ଖଣ୍ଡେ ଚିଠି ରଖା ହେଇଚି। କ୍ଷିପ୍ର ହସ୍ତରେ ସାହାଣୀ ବାବୁ ସେ ଖଣ୍ଡିକ ପଢ଼ିଲେ-

ସାହାଣୀ,

ଅତି ଜରୁରୀ ମନେ କରି ମୁଁ ବମ୍ବେ ଯାଉଚି। ତତେ ବହୁତ ଜାଗାକୁ ଫୋନ୍ କରି ପାଇଲି ନାହିଁ। ପ୍ଲେନ୍‌ଛାଡ଼ିବା ସମୟ ହୋଇଗଲାଣି। ମୋତେ ଶୀଘ୍ର ଦମ୍‌ଦମ୍ ଯିବାକୁ ହେବ। ବମ୍ବେରେ ପହଞ୍ଚି ସର୍ବଶେଷ ବିବରଣୀ ଜଣେଇବି। ମୋ ଯିବାଟା ଉପରେ ବିଶେଷ ଗୁରୁତ୍ୱ ଦେବୁ ନାହିଁ। କାରଣ ମୋ ଭାବନା ହୁଏତ ତୋର କୌଣସି କାର୍ଯ୍ୟରେ ଲାଗିପାରିବ ନାହିଁ।

ଯଦୁ !

ସାହାଣୀବାବୁ ଚିଠିଟା ଟେବୁଲ୍ ଉପରେ ରଖିଦେଇ ଚେଆର ଉପରେ ବସି ପଡ଼ିଲେ। ସମସ୍ୟାଟାର ଗତି ତ ଭଲ ନୁହେଁ। କ'ଣ କୁଆଡ଼େ କେମିତି ଯେପରି ଗୋଟାଏ କିନ୍ତୁ ରହିଯାଉଚି। କଣ ସେଇ କିନ୍ତୁଟା ?

ଛନ୍ଦା ପାଖକୁ ଚିଠି ଆସିଚି। କିଏ ଲେଖିଚି ସେ ଚିଠି ? କିଏ ଛନ୍ଦାର ପ୍ରିୟତମ ? ତା ବିରୁଦ୍ଧରେ କେଉଁ ହତ୍ୟା ଅପରାଧ ? କିଏ ବା ତାକୁ ଅନ୍ଧକାର ଭିତରେ ବୁଡ଼େଇ ରଖିଚି ? ଧେତ୍! ସବୁଗୁଡ଼ା ମିଶି ମୁଣ୍ଡ ଭାରି ହୋଇଯାଉଚି। ଏଣେ ପୁଣି ଯଦୁ ବମ୍ବେ ଯାଉଚି। କାହିଁକି ? ସବୁ ଦିନେ ସେଇଟା ପିଲା ହୋଇ ରହିଯିବ।

ସାହାଣୀ ବାବୁ ଗୋଟାଏ ସିଗାରେଟ୍ ଧରେଇଲେ।

ତାହେଲେ ପୋଲିସ୍ ବିଭାଗର ଅଜ୍ଞାତରେ ଗୋଟାଏ ବିରାଟ ଅପରାଧର ଜାଲ ବିଛା ହେଉଛି। ହେଉ। କ'ଣ ଲାଭ ଅଛି ଆପେଆପେ ଯାଇ ଗୋଲକଧନ୍ଦାରେ ଧନ୍ଦି ହେବାକୁ ?

ସାହାଣୀ ବାବୁଙ୍କ ଭାବନା ଜାଲ୍ ଛିଣ୍ଡେଇ ଟେଲିଫୋନ୍‌ଟା ବାଜି ଉଠିଲା।

ମିଡ୍‌ନାଇଟ୍ ହୋଟେଲ୍

ହ୍ୟାଲୋ ? ହଁ, ମୁଁ ସାହାଣୀ କହୁଛି। ସାନ୍ତାକ୍ରୁଜ୍ ବିମାନଘାଟିର ସେଇ ତରୁଣୀର ମୃତ୍ୟୁ ? ମୁଁ କାଗଜରେ ପଢ଼ିଥିଲି। କ'ଣ କହିଲେ ? ତାହା ରହସ୍ୟଜନକ ହତ୍ୟା ପରି ମନେ ହେଉଛି ? ହଁ-କେଉଁଠି ? ମୋତେ ଅନୁସନ୍ଧାନ କରିବାକୁ ପଡ଼ିବ ? ବେଶ୍। ଠିକଣା ଏଆର୍ ଓୟେଜ୍ ଅଫିସରୁ ଆଣିବାକୁ ହେବ ? ଆଚ୍ଛା ମୁଁ ବର୍ତ୍ତମାନ ଥାନାକୁ ଯାଉଛି। ଆପଣ ଅଛନ୍ତି ତ ? ହେଉ, ନମସ୍କାର।

ସାହାଣୀବାବୁ ରିସିଭରଟା ଯଥା ସ୍ଥାନରେ ରଖିଦେଇ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲେ। ଏତିକିବେଳେ ପୁଣି ଯଦୁ ନାହିଁ। ତା' ପ୍ରକୃତି ସବୁଦିନ ଏମିତି। ଅସଲ କାମ ବେଳକୁ ଖୋଜିଲେ ମିଳେନି। କିନ୍ତୁ ଛନ୍ଦା କଥା କ'ଣ ହେବ ? ତା ଉପରେ ନଜର ରଖିବା ବିଶେଷ ପ୍ରୟୋଜନ ଥିଲା। ଛନ୍ଦା ହୁଏତ ଆଜି ତା' 'ପ୍ରିୟତମ' ସହିତ ଦେଖା କରିବାକୁ ଯିବ। ଚିଠିଟା ସେ ପଢ଼ିଥିବ ତ ? ଯଦି ନ ପଢ଼ିଥାଏ ? ସବୁଗୁଡ଼ାକ ଗୋଳମାଳିଆ ସମସ୍ୟା। ସାହାଣୀବାବୁ ଟିକିଏ ବିଶ୍ରାମ ଚାହୁଁଥିଲେ। କିନ୍ତୁ ବିଶ୍ରାମ ତାଙ୍କୁ ପ୍ରସନ୍ନ ହେଉଛି କାହିଁ ? ପୁଣି ନୂଆ କେସ୍। ବମ୍ବେ ସାନ୍ତାକ୍ରୁଜ ବିମାନଘାଟୀରେ ହତ୍ୟା। ତଦନ୍ତ ହେବ କଲିକତାରେ। ହେଉ।

ହାତଘଡ଼ିରେ ୫ଟା ବାଜୁଚି। ଯଦୁ ବମ୍ବେରେ ପହଞ୍ଚି ସାରିବଣି। ହଠାତ୍ କିଛି ନ କହି ବମ୍ବେ ଚାଲିଗଲା !! ହୁଏତ ଯେଉଁଦିନ ସେ ଖବରକାଗଜରେ ସେଇ ହତ୍ୟା ରହସ୍ୟଟି ପଢ଼ିଥିଲା, ସେଇଦିନଠାରୁ ତା ମନରେ ଗୋଟାଏ ଧାରଣା ଖେଳି ବୁଲୁଥିଲା। ସେଇଟା ଆଜି ଉଗ୍ର ହୋଇ ଉଠିଛି। ଯାଉ । ଭଲ ହୋଇଛି। ଶୀଘ୍ର ଏହାର ଗୋଟାଏ ସମାଧାନ କରିହେବ।

ସାହାଣୀବାବୁ ରାସ୍ତାକୁ ଓହ୍ଲେଇ ପଡ଼ିଲେ। ଅସଂଖ୍ୟ ଭାବନା କଣିକା ତାଙ୍କ ମୁଣ୍ଡରେ ଫୁଟି ଉଠୁଥିଲା। ସହରର କୋଳାହଳ ଜମି ଉଠିଥିଲା। ଟ୍ରାମ୍, ବସ୍ ଗାଡ଼ି ଘୋଡ଼ା ମଣିଷ ସମସ୍ତେ ସେପରି ନିଜ ନିଜ ଭିତରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ କରିଛନ୍ତି। ସାହାଣୀବାବୁ ଗୋଟାଏ ରେଷ୍ଟୁରାଣ୍ଟରେ ପଶିଲେ। ସିଗାରେଟଟା ଶେଷ ହୋଇଯାଇଥିଲା।

କପେ କଫି-

ଆଉ ?

ନା ।

କୋଳାହଳ। କେଉଁଠି ଟିକିଏ ଶାନ୍ତି ନାହିଁ। ରେଡ଼ିଓରେ ସମ୍ବାଦ ପରିବେଷଣ ଚାଲିଛି-

ସିଂହଳରେ ପ୍ରଧାନମନ୍ତ୍ରୀଙ୍କୁ ବିପୁଳ ସମ୍ବର୍ଦ୍ଧନା। ଆଜି ଅପରାହ୍ନରେ ସେ ତାଙ୍କ ପୁତ୍ର ଓ ରାଜ୍ୟଗୋଷ୍ଠୀ ବିଭାଗ ସେକ୍ରେଟାରୀ ଶ୍ରୀଯୁକ୍ତ ଦେଶାଇଙ୍କ ସହ ସିଂହଳରେ ପଦାର୍ପଣ କଲେ।

ମିଡ୍‌ନାଇଟ୍ ହୋଟେଲ୍

ଘରୋଇ ମନ୍ତ୍ରୀ ପଞ୍ଚବାର୍ଷିକ ଯୋଜନା ପ୍ରଚାର ସପ୍ତାହ ଉଦ୍‌ଘାଟନ କରି କହିଲେ, ଖାଦ୍ୟବସ୍ତ୍ରର ସମସ୍ୟା ଦୂର ନ ହେଲେ ସ୍ୱାଧୀନତାର ଆନନ୍ଦ ଉପଲବ୍ଧି କରିହେବନାହିଁ।

ବମ୍ବେ 'ସୁନ୍ଦରୀ ପ୍ରତିଯୋଗିତା'ରେ ଗୀତା ମହାପାତ୍ର ମିସ୍ ଇଣ୍ଡିଆ ନିର୍ବାଚିତ ହୋଇଛନ୍ତି।

ଲୋକସଭାର ଡେପୁଟି ସ୍ପିକର ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲେ।

ଏହାପରେ ଶୁଣନ୍ତୁ ବିସ୍ତାରିତ ଖବର...

ରେଷ୍ଟୁରାଣ୍ଟରେ ଗୋଟାଏ ଆଲୋଡ଼ନ ସୃଷ୍ଟି ହୋଇଥିଲା। ଗୀତା ମହାପାତ୍ର ମିସ୍ ଇଣ୍ଡିଆ ରୂପେ ନିର୍ବାଚିତ ହୋଇଛନ୍ତି। ତାଙ୍କ ସମ୍ବନ୍ଧରେ ସବିଶେଷ ବିବରଣୀ ଜାଣିବା ପାଇଁ ସମସ୍ତେ ଉତ୍କଣ୍ଠିତ ହୋଇ ରେଡ଼ିଓକୁ ଚାହିଁ ରହିଲେ।

କେତେ ?

ଟଙ୍କାଏ।

ସାହାଣୀବାବୁ ଗୋଟିଏ ପାଞ୍ଚଟଙ୍କିଆ ନୋଟ୍ ଦେଲେ। ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି ଭାବିବାକୁ ଲାଗିଲେ। ରେଡ଼ିଓ ଚାଲିଥିଲା,....ପ୍ରଧାନମନ୍ତ୍ରୀ ଆଜି ସକାଳେ ବିମାନ ଯୋଗେ ସିଂହଳ ଯାତ୍ରା କରିଛନ୍ତି। ସେ ସେବାରେ ତିନିଦିନ ରହି ବୌଦ୍ଧ ଜୟନ୍ତୀ ଉଦ୍‌ଯାପନ ଉତ୍ସବରେ ଅଂଶଗ୍ରହଣ କରିବେ। ଯିବା ପଥରେ ୧୧/୫୦ ମିନିଟ୍ ସମୟରେ ନିମ୍ବାକମ୍ ବିମାନଘାଟିଠାରେ ଅବତରଣ କରିଥିଲେ। ମାନ୍ଦ୍ରାଜର ଲାଟ, ମୁଖ୍ୟମନ୍ତ୍ରୀ ଏବଂ ଅନ୍ୟାନ୍ୟ ମନ୍ତ୍ରୀମାନେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ। ତା'ପରେ ରତ୍ନମାଲନା ବିମାନଘାଟି ଅଭିମୁଖରେ ଯାତ୍ରା...

ନିଅନ୍ତୁ।

ଉଁ।

ପଇସା ନିଅନ୍ତୁ।

ସାହାଣୀବାବୁ ପଇସା ଉଠେଇ ନେଇ ଉଠିଗଲେ। ପୋଲିସ ଷ୍ଟେସନ ଯିବାକୁ ହେବ।

ଏ ଟ୍ୟାକ୍‌ସି !!

ମିଡ୍‌ନାଇଟ୍ ହୋଟେଲ୍

-ନଅ-

ଛନ୍ଦା ଟହଲୁଥିଲା। ଏ ମୁଣ୍ଡରୁ ସେ ମୁଣ୍ଡ। ମା'ଙ୍କ ତୈଳଚିତ୍ର ଆଡ଼େ ଚାହିଁ ଅଟକି ଯାଉଥିଲା। ଆଖିରେ ଫୁଟି ଉଠୁଥିଲା ନିଃଶବ୍ଦ ଭାବ-ତରଙ୍ଗ। ନାଲି ଫୁଲ ଫୁଟି ଉଠୁଥିଲା ମୁହଁରେ। ପୁଣି ପଇଁତରା।

ଦେଇ, ଦେଇ!!

ମଣିଆ କବାଟ ବାଡ଼େଇଲା। ଭିତରୁ ଉତ୍ତର ପାଇଲା ନାହିଁ। ଛନ୍ଦା ପୁଣି ଶୋଇଲା। ସେ କିଛି ଗୋଟାଏ ସମାଧାନ କରିପାରୁନାହିଁ। ଯିବ ନା ନାହିଁ?

ମଣିଆ ପୁଣି ଡାକିଲା।

କ'ଣ କିରେ?

ବାବୁ ଡାକୁଛନ୍ତି।

ବାପା ଅଇଲେଣି?

ହଁ।

ଛନ୍ଦା ଉଠି ପଡୁଥିଲା ଆନନ୍ଦରେ। ମା'ଙ୍କ ତୈଳଚିତ୍ର ଉପରେ ଆଖି ପଡ଼ିଗଲା। ମୁହଁ ଶୁଖିଗଲା। ଧୀରେ କବାଟ ଖୋଲିଲା। ମଣିଆ ଚାଲି ଯାଇଥିଲା। ଶ୍ରୀପତିବାବୁ କ୍ଲାନ୍ତ ହୋଇ ଆରାମ ଚେୟାର ଉପରେ ଦେହଟା ଲମ୍ବେଇ ଦେଇଥିଲେ। ଛନ୍ଦା ଯାଇ ଠିଆ ହେଲା।

ମିଡ୍‌ନାଇଟ୍ ହୋଟେଲ୍

କ'ଣ ଦେହ ଭଲ ନାହିଁ?

.......

ମୁହଁଟି ଶୁଖିଯାଇଛି ଯେ ମା'ର।

ନାଁ, ଶୋଇଥିଲି।

କିଏ? ଦେଖିଲୁ ମଣିଆ।

ସାହାଣୀବାବୁ ନମସ୍କାର କଲେ।

ଶ୍ରୀପତିବାବୁ ପ୍ରତିନମସ୍କାର ଜଣାଇଲେ।

ଆଜି ଫେରିଲେ?

ଏଇ ତ ଫେରୁଚି। ହଠାତ୍ ଆପଣ?

ସେପରି କିଛି କାରଣ ନାହିଁ। ଅକାରଣରେ କ'ଣ ପ୍ରବେଶ ମନା?

ସାହାଣୀବାବୁ ହସିଲେ। ଶ୍ରୀପତି ବାବୁ ଭାବୁଥିଲେ।

ତା ପରେ। କୁଆଡ଼େ ଯାଇଥିଲେ?

ମୁଁ? ନା ଏମିତି। ବମ୍ବେରେ ଟିକେ କାମ ଥିଲା, ଦିଲ୍ଲୀ ବି ଗଲି। ବ୍ୟବସାୟ ସଂକ୍ରାନ୍ତୀୟ କେତେକ କାମ ଶେଷ କରି ଫେରୁଚି।

ମୁଁ ଆସୁଚି। ଆପଣ କ୍ଲାନ୍ତ

ନା, ନା, ମା ! ସାହାଣୀ ବାବୁଙ୍କ ଚା'.....

ଛନ୍ଦା ଚାଲି ଯାଇଥିଲା। ଶ୍ରୀପତି ବାବୁ କଥ ଅସମାପ୍ତ କରି ମଣିଆକୁ ଡାକିଲେ।

ବୁଝିଲେ ସାହାଣୀବାବୁ। ଆଜିକାଲି ଯାହା ଦିନ କାଳ ହେଲାଣି, ଏଥିରେ କାହାରି ଉପରେ ନିର୍ଭର କରି ହେଉନାହିଁ। ଅସତ୍ୟ ବ୍ୟାପିଗଲାଣି। ସତ୍ୟର ସତ୍ତା ଧୀରେ ଧୀରେ ଲୋକ ହୋଇଆସୁଚି।

ହଠାତ୍ କାହିଁକି....

ନାଁ, ମୋର ଜଣେ ପାର୍ଟନର ଉପରେ ବିଶ୍ୱାସ କରି ମୋର ଏହି ଅଭିଜ୍ଞତା ଜନ୍ମିଚି। ଚା' ଖାଆନ୍ତୁ।

ଆପଣ?

ନାଁ। ମୁଁ ଏ ଯାଏ ଗାଧୁଆପାଧୁଆ କରିନାହିଁ। ଏଇ ଫେରିଲି ତ!

ଆପଣ ନିତ୍ୟକର୍ମ ଶେଷ କରନ୍ତୁ। ମୁଁ ଟିକେ ଛନ୍ଦା ଦେବୀଙ୍କ ରୁମ୍‌କୁ ଯାଉଛି।

ଛନ୍ଦା ଓହ୍ଲେଇ ଆସୁଥିଲା। ସାହାଣୀବାବୁ ଖାଲି କପ୍‌ଟା ଡିସ୍ ଉପରେ ଥୋଇ ଉଠୁ ଉଠୁ ପୁଣି ବସିଲେ।

ମିଡ୍‌ନାଇଟ୍ ହୋଟେଲ୍

କୁଆଡ଼େ ବାହାରିଲୁଣି ମା ?

ମୁଁ ମିତା ଘରକୁ ଯିବି। ତାର ଆଜି ଜନ୍ମଦିନ।

ତା' ପାଇଁ ନେଲୁ କ'ଣ ?

ଗୋଟାଏ ନେକ୍‌ଲେସ୍।

ସଅଳ ଫେରିଆସିବୁ।

ଛନ୍ଦା ମୁଣ୍ଡ ଟୁଙ୍ଗାରିଲା। ଚାଲିଗଲା। ସାହାଣୀ ବାବୁ ହାତ ଘଡ଼ିକୁ ଚାହିଁଲେ। ୯ଟା୨୫।

ଆପଣ ବସନ୍ତୁ ସାହାଣୀବାବୁ। ମୁଁ ଟିକେ ନିତ୍ୟକର୍ମ ଶେଷ କରେ।

ନା, ଆଉ ଦିନେ ଆସିବି। ଅନେକ କାମ ଅଛି।

ଛନ୍ଦା ଟ୍ୟାକ୍‌ସିରେ ଉଠୁଥିଲା।

ସାହାଣୀବାବୁ ଆଉ ଗୋଟାଏ ଟ୍ୟାକ୍ସି ଧରିଲେ।

ସୁବର୍ଣ୍ଣ ସୁଯୋଗ, ସାହାଣୀବାବୁଙ୍କ ମନ ପୂରି ଉଠିଥିଲା। ସେ ହୁଏତ ଛନ୍ଦାର ପ୍ରିୟତମ ସହିତ ଭେଟିବାର ସୁଯୋଗ ପାଇବେ। ତା' ପରଠୁ ଆରମ୍ଭ ହେବ ତାଙ୍କ ଅନୁସନ୍ଧାନର ପ୍ରଥମ ଅଧ୍ୟାୟ। ଘାଟି ପରେ ଘାଟି ପାର ହୋଇ, ଗଣ୍ଠି ପରେ ଗଣ୍ଠି ଫିଟେଇ ସାହାଣୀ ବାବୁ ପହଞ୍ଚିବେ ଲକ୍ଷ୍ୟସ୍ଥଳରେ।

ଆଗ ଟ୍ୟାକ୍‌ସିଟା ହରିସନ ରୋଡ଼ ଯାଏ ଆସି ହାବଡ଼ା ଆଡ଼କୁ ମୋହିଁଲା।

ସାହାଣୀବାବୁଙ୍କ ଟ୍ୟାକ୍‌ସି ମଧ୍ୟ ସେଇ ଆଡ଼େ ଧାଇଁଲା।

ହାବଡ଼ା ବ୍ରିଜ୍।

ସାହାଣୀବାବୁଙ୍କ ଭାବନା ଗୋଳମାଳିଆ ହୋଇଗଲା। ହାବଡ଼ା ଷ୍ଟେସନ

ଟ୍ୟାକ୍‌ସି ଅଟକିଲା। ତରୁଣୀଟିଏ ଓହ୍ଲାଇ ସିଧା ପହଞ୍ଚିଲା ସେକେଣ୍ଡ କ୍ଲାସ ଟିକେଟ କାଉଣ୍ଟର୍‌ରେ। ତା' ପଛେ ପଛେ ସାହାଣୀ ବାବୁ। ତରୁଣୀଟି ରେଜା ଗଣି ବ୍ୟାଗରେ ଭରିଲା ବେଳକୁ ପଛକୁ ଚାହିଁଲା। ସାହାଣୀବାବୁ ତା' ଆଡ଼କୁ ବଲ୍ ବଲ୍ କରି ଚାହିଁଛନ୍ତି।

ତରୁଣୀଟି ଚାଲିଗଲା।

ସାହାଣୀବାବୁ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ସେଇଠି ଠିଆ ହୋଇ ରହିଲେ। ଏଡ଼େ ବଡ଼ ଭୁଲ୍ ତାଙ୍କ ଜୀବନରେ ଏହି ପ୍ରଥମ।

-ଦଶ-

ଠିକ୍ ଭୋର୍ ୫ଟାରେ ସାହାଣୀବାବୁଙ୍କ ଟାଇମ୍‌ପିସ୍‌ଟା ବାଜି ଉଠିଲା। ଆଖିପତା ଫିଟୁନାହିଁ। ସାହାଣୀବାବୁ ଆଖିବୁଜି ବାଥ୍‌ରୁମ୍ ଭିତରେ ପଶିଲେ। ନିତ୍ୟକର୍ମ ଶେଷକରି ପ୍ରସ୍ତୁତ ହେବାକୁ ହେବ।

ଟେଲିଫୋନ୍‌ଟା ବି ବାଜି ଉଠିଲା। ସାହାଣୀବାବୁ ବାଥ୍‌ରୁମ୍‌ରୁ ଲେଉଟି ଆସି ରିସିଭରଟା କାନରେ ଦେଲେ-

ମୁଁ ସାହାଣୀବାବୁ କହୁଛି। ଆପଣ ? ଛନ୍ଦା ଦେବୀ, ଆପଣଙ୍କର ସର୍ବନାଶ ହୋଇଛି ? ମାନେ ? ହଁ, ତା'ପରେ ? ଶ୍ରୀପତିବାବୁ ଅଚେତ ହୋଇ ଶୋଇଛନ୍ତି ? ମୁଁ ହେଇ ଯାଉଛି।

ରିସିଭରଟା ରଖିଦେଲେ। ବାଥ୍‌ରୁମ୍ ଭିତରକୁ ପଶି ମୁହଁଟା ଧୋଇ ପକେଇ ସଙ୍ଗେସଙ୍ଗେ ବାହାରିପଡ଼ିଲେ।

ଡାକ୍ତର ଇଞ୍ଜେକ୍ସନ ଦେଉଥିଲେ। ସାହାଣୀବାବୁ କବାଟ ଆଡ଼େଇ ଭିତରକୁ ପଶିଲେ। ଛନ୍ଦା ନର୍ବାକ୍ ହୋଇ ଠିଆ ହୋଇଥିଲା।

ଝଡ଼।

ଶ୍ରୀପତିବାବୁଙ୍କ ଓଠ ଥରି ଉଠି ବନ୍ଦ ହୋଇଗଲା।

ସାହାଣୀବାବୁ ଡାକିଲେ- ଶ୍ରୀପତିବାବୁ, ଶ୍ରୀପତିବାବୁ।

ଶ୍ରୀପତିବାବୁ ଆଖି ମେଲିଲେ।

ତୋଫାନ୍। ଜଙ୍ଗଲ। ଗୋଲାପ ଫୁଲ।

ପୁଣି ଆଖି ବନ୍ଦ ହୋଇଗଲା।

ଡାକ୍ତରବାବୁଙ୍କ ମୁହଁକୁ ଚାହିଁଲେ।

ଡାକ୍ତର କହିଲେ- ବିଷ। ଉତ୍କଟ। ଆଶା କମ୍। ଚେଷ୍ଟା କରୁଚି।

ସିରିଞ୍ଜଟା ଶ୍ରୀପତିବାବୁଙ୍କ ଦେହରେ ଫୋଡ଼ିଲେ।

ରାଜମୁକୁଟ।....କଳାନାଗ।

ସାହାଣୀବାବୁ ଡାକ୍ତରଙ୍କ ମୁହଁକୁ ଆଶାୟୀ ଆଖିରେ ଚାହିଁଲେ। ଡାକ୍ତରବାବୁ ମୁଣ୍ଡ ଟୁଙ୍ଗାରିଲେ-

ନା, ଏ ପ୍ରଳାପ ବି ନୁହେଁ।

ଛନ୍ଦା ମୂର୍ତ୍ତିଟିଏ ପରି ଠିଆ ହୋଇଥିଲା।

ବାଲିଝଡ଼, ତୋଫାନ।

ଶ୍ରୀପତିବାବୁଙ୍କ ମୁଣ୍ଡଟା ମୋଡ଼ି ହୋଇଗଲା। ଡାକ୍ତରବାବୁ ହାତଟାକୁ ଶେଯ ଉପରେ ଥୋଇ ଦେଇ ଉଠି ଆସିଲେ। ଛନ୍ଦା ଚିତ୍କାର କରି କାନ୍ଦି ଉଠିଲା।

ମିଡ୍‌ନାଇଟ୍ ହୋଟେଲ୍

କ'ଣ ଆପଣ ଭାବୁଛନ୍ତି ଡାକ୍ତରବାବୁ ?

ବିଷର ପ୍ରତିକ୍ରିୟା ।

କ'ଣ ତାଙ୍କୁ ହତ୍ୟା କରା ହୋଇଛି ? ସେ ଆତ୍ମହତ୍ୟା କରିଛନ୍ତି ?

କଠିନ ପ୍ରଶ୍ନ, ପୋଷ୍ଟମର୍ଟମ ନ କଲାଯାଏ କିଛି ବୁଝି ହେବନାହିଁ ।

ସାହାଣୀବାବୁ ଦ୍ୱିତୀୟ ପ୍ରଶ୍ନ କଲେ ନାହିଁ । ସିଧା ଉଠିଗଲେ ଛନ୍ଦା ରୁମ୍‌କୁ । ସବୁଗୁଡ଼ାକ କିପରି ଇତସ୍ତତଃ । ବିକ୍ଷିପ୍ତ । ଛନ୍ଦା ମା'ଙ୍କର ତୈଳଚିତ୍ରଟି ମାଟିରେ ପଡ଼ିଛି । ଚିତ୍ରଟି ଉପରେ ବହୁ ପଦାଘାତର ଚିହ୍ନ ସ୍ପଷ୍ଟ ହୋଇ ଦିଶୁଚି । ରୁମ୍‌ଟା ଯେପରି ବାହୁନି ବାହୁନି କାନ୍ଦୁଚି । ସାହାଣୀବାବୁ ଘରଟା ଉପରେ ନଜର ବୁଲେଇ ଆଣି ପୁଣି ତଳକୁ ଲେଉଟି ଆସିଲେ । ଛନ୍ଦା ସେମିତି ମୁହଁମାଡ଼ି କାନ୍ଦୁଚି । ଡାକ୍ତରବାବୁ ଚାଲିଗଲେଣି ।

ସାହାଣୀବାବୁ ଛନ୍ଦାକୁ ଟାଣି ଆଣି ଗୋଟାଏ ଚେଆରରେ ବସେଇଲେ । ପଚାରିଲେ-

ଛନ୍ଦା କଇଁକଇଁ ହୋଇ କାନ୍ଦୁଥିଲା ।

X X X

ସେ କ'ଣ ଆତ୍ମହତ୍ୟା କରିଛନ୍ତି ?

ଛନ୍ଦା ଉତ୍ତର ଦେଇପାରିଲା ନାହିଁ । କରୁଣ ଆଖିରେ ସାହାଣୀବାବୁଙ୍କ ମୁହଁକୁ ଚାହିଁଥିଲା ।

ଆପଣ କାଲି କେତେବେଳେ ଫେରିଲେ ?

ସାଢ଼େ ଏଗାରଟାରେ ।

ଫେରି ଶ୍ରୀପତିବାବୁଙ୍କ ସଙ୍ଗରେ ଦେଖା କରିଥିଲେ ?

ନା ।

କାହିଁକି ?

ସେ ଶୋଇ ପଡ଼ିଥିଲେ ।

ଆଜି ସକାଳୁ କିପରି ଜାଣିଲେ ସେ ସଂଜ୍ଞା ହରେଇ ଶୋଇଛନ୍ତି ?

ମୁଁ ସାଢ଼େ ଚାରିଟାରେ ତାଙ୍କୁ ଡାକିଲି ।

କାହିଁକି ?

ସବୁଦିନେ ଡାକେ । ଇଞ୍ଜେକ୍‌ସନ ଦିଏ ।

କି ଇଞ୍ଜେକ୍ସନ ?

ସେ ରୋଜ ଦିନରେ ଦୁଇଥର ଇଞ୍ଜେକ୍‌ସନ ନିଅନ୍ତି ।

ତା'ପରେ ?

ବାପା ଶୁଣିଲେନି ।

ଆପଣ କ'ଣ ଭାବିଲେ ?

ମୁଁ ଭାବିଲି ହୁଏତ କ୍ଳାନ୍ତ ହୋଇ ଶୋଇପଡ଼ିଛନ୍ତି।

ସେଉଠୁ ?

ଦେହରେ ହାତ ମାରିଲି। ହେମାଳ ଲାଗିଲା। ହଲେଇଲି, ଉଠିଲେନି। ମୁହଁକୁ ଚାହିଁଲି, ଅସ୍ୱାଭାବିକ ମନେହେଲା।

ସାହାଣୀବାବୁ ଲେଖିଲେ, ହୁଁ।

ଆଗେ ଡାକ୍ତର ଓ ପରେ ଆପଣଙ୍କୁ ଫୋନ୍ କଲି। ଆପଣଙ୍କର କଣ ମନେହୁଏ ?

ମୁଁ କିଛି ବୁଝିପାରୁନାହିଁ।

ତାଙ୍କୁ କେହି ହତ୍ୟା କରିଛନ୍ତି ବୋଲି ଆପଣ ଭାବୁଛନ୍ତି ?

ଆଉ କ'ଣ ସେ ଆତ୍ମହତ୍ୟା କରିଛନ୍ତି ବୋଲି ଆପଣଙ୍କର ଧାରଣା ?

ମୁଁ କିଛି ଭାବି ପାରୁନି ସାହାଣୀବାବୁ। ମୋତେ ଆପଣ ବିରକ୍ତ କରନ୍ତୁ ନାହିଁ। ହଠାତ୍ ଭଗବାନ କାହିଁକି ଯେ ମୋ ଉପରେ ନିର୍ଦ୍ଦୟ ହେଲେ....

ସାହାଣୀବାବୁ ଉଠିଯାଇ ଶ୍ରୀପତିବାବୁଙ୍କୁ ଦେଖିଲେ। ମୁହଁରେ ଆତଙ୍କର କୌଣସି ଲକ୍ଷଣ ନାହିଁ। ଦେହରେ ଆଘାତର କିଛି ହେଲେ ଗୋଟାଏ ଦାଗ ନାହିଁ। ତେବେ ? ସାହାଣୀବାବୁ ଥାନାକୁ ଟେଲିଫୋନ୍ କରି ସମ୍ବାଦ ଜଣାଇଦେଲେ। ପୋଷ୍ଟମର୍ଟମ୍ ପରେ ହୁଏତ ସମସ୍ତ ରହସ୍ୟ ଧରାପଡ଼ିବ।

ଛନ୍ଦା ଚାଲି ଯାଉଥିଲା।

ସାହାଣୀବାବୁ ଡାକିଲେ।

ଛନ୍ଦା ଶିଡ଼ିର ପାହାଚ ଉପରେ ଅଟକିଲା। ଆପଣ ମୋତେ ବର୍ତ୍ତମାନ କିଛି ପଚାରନ୍ତୁ ନାହିଁ ସାହାଣୀବାବୁ। ମୋ ମନର ଅବସ୍ଥା ଆପଣ ବୁଝିପାରିବେ ନାହିଁ।

ଛନ୍ଦା ପୁଣି ଧୀରେଧୀରେ ଆଗେଇଲା। ସାହାଣୀବାବୁ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ। ମଣିଆ ଶ୍ରୀପତିବାବୁଙ୍କ ପଲଙ୍କ ତଳେ ବସି ଆଖିରୁ ଲୁହ ଗଡ଼ଉଥିଲା। ସାହାଣୀବାବୁ ତାକୁ ପାଖକୁ ଡାକିଲେ।

ଆରେ ମଣି, ତୋ ବାବୁଙ୍କୁ କିଏ ମାରିଚି ?

ମଣିଆ ଆଁହୁରି ଜୋର୍‌ରେ ଭୋ ଭୋ ହୋଇ କାନ୍ଦିଉଠିଲା। ସାହାଣୀବାବୁ ଆଉ କିଛି ପଚାରିଲେ ନାହିଁ। ଖାଲି ଲେଖିଲେ।

-ଏଗାର-

ପୁଣି ମିଡ଼୍‌ନାଇଟ୍ ହୋଟେଲରେ 'ସ୍ପେଶାଲ ପ୍ରୋଗ୍ରାମ'। ମିସ୍ ଇଣ୍ଡିଆଙ୍କୁ ଅଭିନନ୍ଦନ ଦିଆଯିବ। ସଙ୍ଗେସଙ୍ଗେ ବହୁ ନୃତ୍ୟଗୀତର ଆୟୋଜନ କରାଯାଇଛି। ବମ୍ବେରୁ କେତେକ ଚିତ୍ରତାରକା ଆସୁଛନ୍ତି। ଭାରତର ପ୍ରସିଦ୍ଧ ଗାୟକମାନଙ୍କ ଭିତରୁ ମଧ୍ୟ କେତେକ ଯୋଗ ଦେଉଛନ୍ତି। ସ୍ଥାନୀୟ ଦୈନିକ ପତ୍ରିକାଗୁଡ଼ିକରେ ସମ୍ବାଦଟି ମନୋରମ ଭାବରେ ପରିବେଷିତ ହୋଇଛି।

ସାହାଣୀବାବୁ ଧୂମକୁଣ୍ଡଳୀକୁ ଚାହିଁଛନ୍ତି। ଧୀରେଧୀରେ ଜମାଟବନ୍ଧା ଧୂଆଁ ପତଳା ହୋଇଯାଉଛି, ପୁଣି ଜମି ଯାଉଛି। ତାଇରି ପୃଷ୍ଠାଟା ଆହୁରି ଜଟିଳ ହୋଇଉଠୁଛି। କୌଣସି ସମସ୍ୟା ନ ଥାଇ ଧୀରେଧୀରେ ବହୁ ସମସ୍ୟା ଦେଖାଦେଲାଣି।

ଛନ୍ଦା ଶୋଇଛି।

ଏ କେଇଦିନ ହେବ ତା' ଖିଆପିଆରେ ଠିକ୍ ଠିକଣା ନାହିଁ। ଆଖିରୁ ଲୁହଧାର ଶୁଖିନାହିଁ। ମଝିରେ ମଝିରେ ପୋଲିସ୍ ଅଫିସର ଆସି ବିରକ୍ତ କରି ଯାଉଛନ୍ତି। ସାହାଣୀବାବୁ ଘଣ୍ଟାଏ ଛାଡ଼ି ଆର ଘଣ୍ଟାକୁ ଆସି ପହଞ୍ଚୁଛନ୍ତି। ଘର, ଦ୍ୱାର, କାନ୍ଥ ସବୁଠି ଯେପରି କ'ଣ ଉଣ୍ଡୁଛନ୍ତି। ପୁଣି ଆସି ଛନ୍ଦା ରୁମ୍‌ରେ ପହଞ୍ଚି ଏଣୁ ତେଣୁ ଦରକାରୀ, ଅଦରକାରୀ କେତେ ପ୍ରଶ୍ନ ପଚାରି ଫେରିଯାଉଛନ୍ତି। ଛନ୍ଦାକୁ କିଛି ଭଲ ଲାଗୁନାହିଁ। କେହି ତା ମନ ବୁଝୁନାହାନ୍ତି। କେହି ତାକୁ ବୁଝିବାକୁ ଚେଷ୍ଟା କରୁନାହାନ୍ତି। ମା'ଙ୍କ ତୈଳଚିତ୍ରଟା ଓଲଟା ହୋଇ ଟଙ୍ଗା ହୋଇଛି। ତେଣିକି ଆଉ ଛନ୍ଦା ଚାହିଁପାରୁନି।

X X X

ମିଡ଼୍‌ନାଇଟ୍ ହୋଟେଲ୍

ମୋହନ ତା'ର ସେଇ ଅନ୍ଧାରୁଆ ଘରଟି ଭିତରେ ପଇଁତରା ମାରୁଚି। ଲକ୍ଷ କୋଟି ଭାବନା ଭିତରେ ସେ ଉବୁଟୁବୁ ହେଉଛି। ଯେମିତି କାହାର ପଦଧ୍ୱନିକୁ ପ୍ରତୀକ୍ଷା କରି ସେ ଚମକି ପଡୁଛି। ମନ ତା'ର ବିଦ୍ରୋହ କରି ଉଠୁଛି। ମୁକ୍ତି! ମୁକ୍ତି! କେବେ ଆଉ? କେତେ ଅତଳ ତଳକୁ ଗଲେ ସେ ଭେଟିବ ମୁକ୍ତିକୁ?

ଆଉ ମିଡ୍‌ନାଇଟ୍ ହୋଟେଲ୍ ! ଯେଉଁଠି ଗୀତା ମହାପାତ୍ର ଭେଟିଥିଲା ଗୋଟାଏ ଅଦ୍ଭୁତ ଛାୟାମୂର୍ତ୍ତିକୁ, ସେଇଠି ସେ ପୁଣି ଥରେ ଭେଟିଛି।

ନମସ୍କାର।

ଯେଉଁ କଳା ପୋଷାକପିନ୍ଧା ଲୋକଟି ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଠିଆ ହୋଇ ସିଗାରେଟ୍ ଧୂଆଁରେ କୋଠରିଟିକୁ ଧୂମାୟିତ କରିଦେଇଥିଲା, ସେ ଧୀରେଧୀରେ ବୁଲି ଅନେଇଲା ଗୀତା ମହାପାତ୍ର ଆଡ଼େ।

ସାବାସ୍! ମୁଁ ସନ୍ତୁଷ୍ଟ ହୋଇଛି।

କିନ୍ତୁ ମୁଁ ଫେରିଯିବାକୁ ଚାହେଁ।

ଯିବ, ଯିବ, ଅଲବତ୍ ଯିବ।

କେବେ?

ସେଇ କଳାମୂର୍ତ୍ତିଟି ହସି ଉଠିଲା।

ସର୍ତ୍ତ ମନେ ଅଛି?

ଗୀତା ମହାପାତ୍ର ମୁହଁରେ ଶଙ୍କା ଫୁଟିଉଠିଲା।

ନିଅ ତୁମର ପାରିଶ୍ରମିକ।

ଚଟାଣ ଉପରୁ ଗୀତା ମହାପାତ୍ର ନୋଟ ବଣ୍ଡିଲ୍ କେଇଟା ଗୋଟେଇଲା।

ଏବେ ଯାଇପାର। କାଲି ପାଇଁ ପ୍ରସ୍ତୁତ ହୁଅ।

ସେଇ କଳା ପୋଷାକପରିହିତ ଲୋକଟି ପୁଣି ମୁହଁ ବୁଲେଇ ନେଲା। ଗୀତା ମହାପାତ୍ର ନୋଟ୍ ବିଡ଼ାଗୁଡ଼ାକ ଉପରେ ଦୃଷ୍ଟି ଜମେଇଥିଲା।

X X X

ସାହାଣୀବାବୁଙ୍କ ମାର୍କୋଭିଜ୍ ସିଗାରେଟରୁ ଧୂଆଁ ଉଠୁଥିଲା। ଶ୍ରୀପତିବାବୁଙ୍କ ପୋଷ୍ଟମଟମ୍ ରିପୋର୍ଟଟା ଟେବୁଲ୍ ଉପରେ ପଡ଼ିଥିଲା।

ମର୍ଡ଼ର। ଶ୍ରୀପତି ଛୋଟରାୟଙ୍କୁ ଶୀତଳ ମୃତ୍ୟୁ ଆଲିଙ୍ଗନ କରିଚି। କିଛି ସେ ବୁଝିପାରିନାହାନ୍ତି। ଜାଣିପାରି ନାହାନ୍ତି। ଉତ୍କଟ ବିଷ ପ୍ରୟୋଗ କରାହୋଇ ତାଙ୍କୁ ହତ୍ୟା କରାହୋଇଛି। ଆଉ କାମ ଏତେ ନିପୁଣ ଭାବରେ ସମାପନ ହୋଇଛି ଯେ କେହି ତାର ଟେର୍ ପାଇନାହାନ୍ତି। କିନ୍ତୁ କାହିଁକି? କି ଉଦ୍ଦେଶ୍ୟରେ କିଏ ତାଙ୍କୁ ହତ୍ୟା କରିଛି? ଆଉ

ଠିକ୍ ସମାନ ଭାବରେ, ସମାନ ବିଷ ପ୍ରୟୋଗ କରାହୋଇ ହତ୍ୟା କରାହୋଇଛି ଲୀଳା ମଜୁମଦାରକୁ। ବମ୍ବେ, ଆଉ କଲିକତା: ଏତେ ଦୂରତା ଭିତରେ ଚମତ୍କାର ସାମଞ୍ଜସ୍ୟ!

ଛନ୍ଦା ପ୍ରକୃତରେ ଭାଙ୍ଗି ପଡ଼ିଛି। ସେ ହୁଏତ ମିଛ କହିନି। ସେଦିନର ସେ ଚିଠିଟା ମିଥ୍ୟା ହୋଇପାରେ। 'ମିତା' ଜନ୍ମଦିନକୁ ସେ ପ୍ରକୃତରେ ଅଭିରାମବାବୁଙ୍କ ଘରକୁ ଯାଇଥିଲା, ଫେରିଛି ବହୁତ ରାତିରେ। ମିତା ଠିକ୍ ପ୍ରିୟତମ, ତା'ହେଲେ ମିଥ୍ୟା? ଚିଠିଟା କିଏ ଫୋପାଡ଼ିଲା କେଜାଣି! ଆଉ କିଏ? ଶ୍ରୀପତିବାବୁଙ୍କ ପାର୍ଟନର ସମ୍ବନ୍ଧରେ ଛନ୍ଦାକୁ କିଛି ଜଣାନାହିଁ। ସେଦିନ ବମ୍ବେରୁ ଫେରି ଶ୍ରୀପତିବାବୁ ଯାହା କଥା କହି ଦୁଃଖ ପ୍ରକାଶ କରୁଥିଲେ କିଏ ସେ?

ଲୀଳା ମଜୁମଦାରର ବାପା କହିଲେ- ଲୀଳା ମରିଚି, ସେଥିପାଇଁ ସେ ଦୁଃଖିତ ନୁହନ୍ତି। କାରଣ ତା' ଭଳି ସନ୍ତାନ କୁଳର କଳଙ୍କ। ପ୍ରାୟ ଛ' ମାସ ହେବ ଘର ସହିତ ଲୀଳାର ବିଶେଷ କୌଣସି ସମ୍ପର୍କ ନଥିଲା। ତା' ଛଡ଼ା ସେ ବିଶ୍ୱାସ କରିପାରୁ ନାହାନ୍ତି ଲୀଳାକୁ କେହି ହତ୍ୟା କରିଛି ବୋଲି। ତାଙ୍କର ଦୃଢ଼ ବିଶ୍ୱାସ, ଲୀଳା ଆତ୍ମହତ୍ୟା କରିଛି। କିନ୍ତୁ ବିଶ୍ୱାସର ହେତୁ କ'ଣ ହୋଇପାରେ ଲୀଳାର ବାପା ରାୟ ବାହାଦୂର ରାସବିହାରୀ ମଜୁମଦାର କହିଲେ ନାହିଁ। ଯେତେ ଯାହା ପଚାରିଲେ ବି ସେ କହିଲେ- ମୋ ମନ କହୁଚି, ଲୀଳା ଆତ୍ମହତ୍ୟା କରିଚି। କିନ୍ତୁ ଲୀଳାର ପୋଷ୍ଟମଟମ ରିପୋର୍ଟଟା ରାସବିହାରୀବାବୁଙ୍କ ବିରୁଦ୍ଧରେ ସାକ୍ଷ୍ୟ ହେଉଛି। ତଥାପି ରାୟବାହାଦୂର ରାସ ବିହାରୀ ମଜୁମ୍ଦାରଙ୍କ ଆଖିକୋଣରେ ଲୁହର ସଂକେତ ମିଳିଚି। ମୁହଁରେ ଯେତେ କଠୋର କଥା ସେ କହିଚନ୍ତି, ଅନ୍ତରଟା ସେ ଭଳି ଟାଣ ହୋଇପାରିନାହିଁ। ତାଙ୍କର ଏକମାତ୍ର ସନ୍ତାନ ଲୀଳା। କେମିତି ତା'ର ମୃତ୍ୟୁ ସେ ସହ୍ୟ କରନ୍ତେ? ହୁଏତ ଆଗରୁ ସେ ପ୍ରସ୍ତୁତ ହୋଇଥିଲେ ଏଇଭଳି ଗୋଟାଏ କିଛି ଶୁଣେଇବାକୁ। ଲୀଳା ତ ମରିଛି। ଗୋଳମାଳ ଭିତରକୁ ପଶି କ'ଣ ହେବ?

ସାହାଣୀବାବୁଙ୍କ ସିଗାରେଟ୍‌ରୁ ଝୁଲଗୁଡ଼ାକ ଝଡ଼ିପଡ଼ିଲା।

-ବାର-

ଗୀତା ମହାପାତ୍ର ହସୁଥିଲା ।

ତା' ରୁମ୍‌ଟିରେ ବସିଥିଲେ କେତେଜଣ ସୁଦର୍ଶନ ଯୁବକ ଆଉ କେତୋଟି ଯୁବତୀ । ଗୀତା ମହାପାତ୍ର ଯେମିତି ସେ ଘରର ବାୟୁମଣ୍ଡଳକୁ ଅତି ହାଲ୍‌କା କରି ଧରିଥିଲା ।

ସିଗାରେଟ୍ ଧୂଆଁ ଓ ତାସ୍ ଖେଳ ଚାଲିଥିଲା ରୁମ୍‌ଟି ଭିତରେ । ଗୀତା ମହାପାତ୍ର ପିଆନୋ ଉପରେ ଦେହଭାର ନଦି ଚାହିଁ ହସୁଥିଲା ଏମାନଙ୍କ ଆଡ଼େ । ଯେମିତି ଗୋଟିଏ ଛୋଟ ଆଡ୍ଡା ଜମି ଉଠିଥିଲା ଗୀତା ମହାପାତ୍ର ରୁମ୍‌ରେ ।

ବାହାରୁ କବାଟରେ କିଏ ଖଟ୍ ଖଟ୍ କଲା । ଗୀତା ମହାପାତ୍ର ନିଜେ ଯାଇ ଦରଜାଟା ଖୋଲିଲା ।

ଆପଣ ?

ହଁ, ଆପଣ ମୋତେ ଚିହ୍ନି ନାହାନ୍ତି ।

ଉଦ୍ଦେଶ୍ୟ ?

କିଛି ନୁହେଁ, ଆପଣଙ୍କ ପାଖରେ ଟିକେ କାମ ଥିଲା ।

ମୋ ପାଖରେ ? ମୋର ବର୍ତ୍ତମାନ ସମୟ ନାହିଁ । ଯଦି ଅଟୋଗ୍ରାଫ ନେବାର ଥାଏ, ତା'ହେଲେ ଶୀଘ୍ର ଖାତାଟା ଦିଅନ୍ତୁ ।

ନା, ଫଟୋଗ୍ରାଫ୍ କିମ୍ବା ଅଟୋଗ୍ରାଫ୍ ପାଇଁ ମୁଁ ଆପଣଙ୍କ ପାଖକୁ ଆସିନାହିଁ । ଆସିଛି ଗୋଟାଏ ମର୍ଡ଼ର କେସ୍ ତଦନ୍ତରେ । ମୋ ନାଁ ମି. ସାହାଣୀ । ସି.ଆଇ.ଡି. ଇନ୍ସପେକ୍ଟର ।

ଓଃ-ନମସ୍କାର ।

ଧନ୍ୟବାଦ, ଆଶା କରେ ଏଥର ସାହାଯ୍ୟ କରିବେ ।

ନିଶ୍ଚୟ, ନିଶ୍ଚୟ । ଭିତରକୁ ଆସନ୍ତୁ । ମୋର ବନ୍ଧୁମାନଙ୍କ ସହିତ ଆପଣଙ୍କର ପରିଚୟ କରେଇଦିଏ ।

ନା, ଦରକାର ନାହିଁ । ହାତରେ ସମୟ ଅଳ୍ପ । ତା'ଛଡ଼ା ମୁଁ ଜାଣିଥିଲେ ଏ ଅସମୟରେ ଆସି ଆପଣଙ୍କୁ ବିରକ୍ତ କରି ନଥାନ୍ତି ।

ନା, ନା, ମିଃ ସାହାଣୀ, ବ୍ୟାପାର କ'ଣ ଜାଣନ୍ତି ? ଆପଣମାନେ ହେଲେ ସରକାରୀ ଲୋକ। ଦେଶର ଓ ଜାତିର ଶାନ୍ତିରକ୍ଷା ପାଇଁ ଆପଣମାନେ ନ ଖାଇ ନ ପିଇ ପରିଶ୍ରମ କରୁଛନ୍ତି, ଆଉ ଆମେ ଏତିକି ତ୍ୟାଗ ସ୍ୱୀକାର କରିପାରିବୁ ନାହିଁ ? ବେଶ୍, ଆପଣ ଏଇପାଖ ଘରକୁ ଆସନ୍ତୁ। ନିରୋଳାରେ ବସି କଥାବାର୍ତ୍ତା ହେବା। ଚାଲନ୍ତୁ, ମୁଁ ଟିକେ ଚା' ପାଇଁ କହି ଆସେ।

ସାହାଣୀବାବୁ ପାଖ ରୁମ୍‌ରେ ବସିଲେ। ବେଶ୍ ଆଧୁନିକ ରୁଚିସମ୍ପନ୍ନ ରୁମ୍‌ଟି। ବିଶେଷକରି ତୈଳଚିତ୍ର କେତେଖଣ୍ଡି ରୁମ୍‌ଟିର ଦାମ ବଢ଼େଇ ଦେଇଚି।

ହଁ, ମି. ସାହାଣୀ ! ମୁଁ ଏଥର ପ୍ରସ୍ତୁତ ହେଇ ଆସିଚି ଆପଣଙ୍କ କଥା ଶୁଣିବା ପାଇଁ, ଆରମ୍ଭ କରନ୍ତୁ।

ଆପଣମାନେ ଯେଉଁଦିନ ବମ୍ବେ ଗଲେ- ମାନେ ବିଉଟି କମ୍ପିଟେସନରେ ଯୋଗ ଦେବାପାଇଁ, ସେଦିନ ଆପଣମାନଙ୍କ ବିମାନ ସାନ୍ତାକ୍ରୁଜ ବିମାନ ବନ୍ଦରରେ ପହଞ୍ଚିଲା ବେଳକୁ ଲୀନା ମଜୁମଦାରର ମୃତଦେହ ଉଦ୍ଧାର କରା ହୋଇଥିଲା। ସେଇ ଲୀନା ମଜୁମଦାରକୁ ଆପଣ ଚିହ୍ନନ୍ତି ?

ଆଗରୁ ଚିହ୍ନି ନଥିଲି। ସେଇଦିନ ତାଙ୍କ ସହିତ ଆଳାପ ହୋଇଥିଲା।

ଝିଅଟିର ସ୍ୱଭାବ କେମିତି ?

ମନ୍ଦ ନଥିଲା। ବିଚାରୀ ବମ୍ବେ ପହଞ୍ଚି ପାରିଲା ନାହିଁ।

ତା' ହତ୍ୟା ମୂଳରେ କାହାର କାହାର କ'ଣ ଉଦ୍ଦେଶ୍ୟ ଥାଇପାରେ ବୋଲି ଆପଣ ଭାବୁଚନ୍ତି ?

ହତ୍ୟା ?

ଗୀତା ମହାପାତ୍ର ଖିଲି ଖିଲି ହୋଇ ହସି ଉଠିଲା।

ଆପଣ ହସେଇଲେ ମି: ସାହାଣୀ ! ବିଚାରୀ ହାର୍ଟଫେଲ୍ କଲା। ହୁଏତ ଆଗରୁ କେବେ ପ୍ଳେନ୍ ଚଢ଼ିବାର ସୌଭାଗ୍ୟ ଯୁଟି ନଥିଲା, ତେଣୁ...

ଗୀତା ମହାପାତ୍ର ସାହାଣୀ ବାବୁଙ୍କ ଚାହାଣିରୁ ଯେମିତି ଗୋଟାଏ କଳା ନାଗର ଛାଇ ଦେଖିଲା। କଥା ଅସମାପ୍ତ ରହିଗଲା।

ହୁଁ, ହାର୍ଟଫେଲ୍ କଲା ବିଚାରୀ। ଆପଣ ଠିକ୍ ଜାଣନ୍ତି ?

ନା, ମାନେ ସମସ୍ତେ ସେଇଆ କହିଲେ।

ଆଚ୍ଛା ଗୀତା ଦେବୀ ! ଆପଣଙ୍କୁ ବମ୍ବେ ପଠାଇବା ଦିଗରେ କିଏ ସାହାଯ୍ୟ କରିଥିଲା ?

ମୋତେ ? କାହିଁକି ? ମୁଁ ଏକା ଯିବାକୁ କ'ଣ ସମର୍ଥ ନୁହେଁ ?

ନିଶ୍ଚୟ, ନିଶ୍ଚୟ, କିନ୍ତୁ ଆପଣଙ୍କ ପାରିବାରିକ ଜୀବନ...

ମି. ସାହାଣୀ, ମୋ ପାରିବାରିକ ଜୀବନ ସମ୍ବନ୍ଧରେ ଚର୍ଚ୍ଚା କରିବାର କୌଣସି ଅଧିକାର ଆପଣଙ୍କର ନାହିଁ। ଆପଣଙ୍କର ଯଦି କାମ ଶେଷ ହୋଇଥାଏ, ଯାଇପାରନ୍ତି।

ସାହାଣୀବାବୁ ଗୋଟାଏ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ।

ଆହା, ମୋ କଥାଟା ଆଗ ଶେଷ ହେଉ। ମୁଁ କ'ଣ କହୁଥିଲି କି, ଆପଣଙ୍କ ପାରିବାରିକ ଜୀବନ ଆପଣଙ୍କୁ ବନ୍ଧେ ଫେଠାଇବାରେ ଅନୁକୂଳ ଥିଲା ନା ପ୍ରତିକୂଳ ଥିଲା?

ଠକ୍, ଠକ୍ ଠକ୍।

ଉପର ଫ୍ଲାଟ୍‌ରେ କାହାର ପାଦଶବ୍ଦ ଶୁଣାଗଲା। ସାହାଣୀ ବାବୁ ଓ ଗୀତା ଦେବୀ ଦୁହେଁ ଏକାବେଳକେ ଉପରକୁ ଚାହିଁଲେ।

କିଏ?

ଉପର ଫ୍ଲାଟର କେହି ହୋଇଥିବ।

ପୁଣି ସେଇ ଶବ୍ଦ।

ଏ ମୁଣ୍ଡରୁ ସେ ମୁଣ୍ଡ ଓ ସେ ମୁଣ୍ଡରୁ ଏ ମୁଣ୍ଡ କିଏ ଯେପରି ଘୂରି ବୁଲୁଚି। କିନ୍ତୁ ପାଦଶବ୍ଦର ଗୋଟାଏ ବିଶେଷତ୍ୱ ଥିଲା। ସାଧାରଣ ପାଦଶବ୍ଦଠାରୁ ସେ ଯେପରି ଭିନ୍ନ। ସାହାଣୀ ବାବୁ ସେ ଆଡ଼େ କାନ ଠିଆ କରି ପଚାରିଲେ-

ଆପଣ ତା'ହେଲେ କହିବାକୁ ଚାହାନ୍ତି ଲୀଳା ମଜୁମଦାର ହାର୍ଟଫେଲ୍ କରିଚି?

ନା, ନା, ମି. ସାହାଣୀ। ଠିକ୍ ମୁଁ ଏ କଥା କହୁନାହିଁ। ସମସ୍ତେ ସେଇଆ କହିଲେ।

ଉପର ମହଲାର ପାଦଶବ୍ଦ ଥମି ନ ଥିଲା।

ଉପର କିଏ ରହନ୍ତି କହିପାରିବେ?

ଦୁଃଖିତ, କାରଣ ମୋର ଏଠାରେ କାହାରି ସହିତ ପରିଚୟ ନାହିଁ। ଦୁଇ ତିନିଦିନ ପାଇଁ ଆସିଛି, ପୁଣି ଚାଲିଯିବି।

ଆଚ୍ଛା ମୁଁ ତା'ହେଲେ ଉଠେ। ଆପଣଙ୍କୁ ଅସମୟରେ ବିରକ୍ତ କଲି। କ୍ଷମା କରିବେ।

କାଲି ଆପଣ ଉତ୍ସବରେ ଯୋଗ ଦେଉଛନ୍ତି ତ?

ଆଶା ତ କରିଛି। ହେଉ, ଧନ୍ୟବାଦ-ନମସ୍କାର।

ନମସ୍କାର।

ଉପରର ପାଦଶବ୍ଦ ତଥାପି କମିନଥିଲା। ସାହାଣୀବାବୁ ଚାଲି ଯାଉଯାଉ ଭାବିଲେ-

ଏହା କିପରି ସମ୍ଭବ? ଦୁଇଟି ଯୁକ୍ତ ପାଦର ଶବ୍ଦ କଦାପି ଏପରି ହୋଇନପାରେ। ଗୋଟିଏ ଶବ୍ଦ ଗୁରୁ, ଅନ୍ୟଟି ଲଘୁ। ଲୋକଟିର ପାଦର ନିଶ୍ଚୟ କୌଣସି ଦୋଷ ଅଛି।

ମିଡ୍‌ନାଇଟ୍ ହୋଟେଲ୍

ତା'ହେଲେ, ସମସ୍ତଙ୍କର ଧାରଣା ଲୀଳା ମଜୁମଦାର ହାର୍ଟଫେଲ୍ କରିଛି। ଚମତ୍କାର ଷଡ଼ଯନ୍ତ୍ର। ନିଶ୍ଚୟ କୌଣସି ବୁଦ୍ଧିମାନ ଲୋକର କାରସାଦି। କିନ୍ତୁ କିଏ ସେଇ ବ୍ୟକ୍ତି ?

ସାହାଣୀବାବୁ ଅନ୍ୟମନସ୍କ ଭାବରେ ଗାଡ଼ିରେ ଷ୍ଟାର୍ଟ ହେଉଥିଲେ। ତାଙ୍କ ଗାଡ଼ି ଆଗରେ ଆସି ଠିଆହେଲା ଆଉ ଗୋଟିଏ ଗାଡ଼ି। ଡାକ୍ତର ପ୍ରାଣତୋଷ ତାଲୁକଦାର ଗାଡ଼ିରୁ ଓହ୍ଲେଇଲେ।

ନମସ୍କାର ସାହାଣୀବାବୁ, କଣ ଖୁଣ୍ ?

ମାନେ ?

ମୁଁ ଏଇମାତ୍ର ଫୋନରେ ଖବର ପାଇଲି ମିଡ୍ ନାଇଟ୍ ହୋଟେଲରେ କିଏ ଜଣେ ସିରିଅସ୍....

କିନ୍ତୁ ମୁଁ ତ କିଛି ଜାଣି ନାହିଁ। ହେଇ ଗୀତା ମହାପାତ୍ରଙ୍କ ସଙ୍ଗରେ ଦେଖାକରି ଫେରୁଛି।

ଆଶ୍ଚର୍ଯ୍ୟ, ଆପଣ ମୋ ସଙ୍ଗରେ ଆସନ୍ତୁ ତ।

ଦୁହେଁ ଭିତରକୁ ପଶିଲେ।

ମ୍ୟାନେଜର ଆଶ୍ଚର୍ଯ୍ୟ ହୋଇ କହିଲେ,

ନା, ଏଠାରୁ ତ କେହି ଫୋନ୍ କରି ନାହାନ୍ତି। ମୁଁ ତ ପ୍ରାୟ ଅଧଘଣ୍ଟା ହେବ ଏଇଠି ଅଛି। ତିନିଟା ଫୋନ୍ ରିସିଭ୍ କରିଛି ସତ, ମାତ୍ର ଫୋନ୍ ତ କେଉଁଠାକୁ କରା ହୋଇନାହିଁ।

ଆଶ୍ଚର୍ଯ୍ୟ ! ! ମୁଁ କ'ଣ ତା'ହେଲେ ଭୁଲ୍ ଠିକଣା ଶୁଣିଲି ? ନା, ତ। ମୋର ସ୍ପଷ୍ଟ ମନେ ପଡୁଛି ଗୋଟାଏ ଆତଙ୍କିତ ସ୍ୱର-

''ଆପଣ ଶୀଘ୍ର ମିଡ୍‌ନାଇଟ୍ ହୋଟେଲକୁ ଚାଲିଆସନ୍ତୁ। ସିରିଅସ୍ କଣ୍ଡିସନ୍, ହୁଏତ-ଅଳ୍ପ ସମୟ ଭିତରେ ମୃତ୍ୟୁ ହୋଇପାରେ।'' ତା'ପରେ ରିସିଭରଟା ରଖିଦେଲା। ନା ପଚାରିବାକୁ ଅବସର ମିଳିଲା ନାହିଁ।

ଅସମ୍ଭବ ଡାକ୍ତରବାବୁ। ଆମ ହୋଟେଲରେ ଫୋନ୍ ଏଇ ଗୋଟିଏ। ମୁଁ ପ୍ରାୟ ଅଧଘଣ୍ଟା ହେଲା ଏଇଠି ଅଛି। ତା'ଛଡ଼ା କେହି ଏଠି ଅସୁସ୍ଥ ଥିବାର ସମ୍ବାଦ ତ ମୁଁ ପାଇନାହିଁ। ଆପଣ ନିଶ୍ଚୟ ଭୁଲ୍ ଠିକଣା ଶୁଣିଛନ୍ତି।

ଭୁଲ୍ ଠିକଣା ! କିନ୍ତୁ ମୋର ମନେପଡୁଛି ମୁଁ ସ୍ପଷ୍ଟ ଶୁଣିଲି ମିଡ୍ ନାଇଟ୍ ହୋଟେଲ। ଆଚ୍ଛା, ଛାଡ଼ନ୍ତୁ। ଆସନ୍ତୁ ସାହାଣୀବାବୁ। ଆପଣଙ୍କୁ ଅଯଥା ବିରକ୍ତ କଲି।

ଦୁଇଜଣଙ୍କ ଗାଡ଼ି ମୁହାଁଇଲା ଦୁଇଆଡ଼େ।

-ତେର-

ମୋତେ କ୍ଷମା କର, ମୁଁ ଆଉ ପାରିବି ନାହିଁ। ଯାହା କରିଛି ଯଥେଷ୍ଟ କରିଛି। ମୋତେ ହତ୍ୟା କର, ମୋ ମାଂସପିଣ୍ଡୁଳାକୁ ଟିକି ଟିକି କରି କୁକୁର ଶିଆଳଙ୍କୁ ଖୁଆଅ, କିନ୍ତୁ ନା, ଆଉ ମୁଁ ପାରିବି ନାହିଁ।

ସେଇ କଳା ପୋଷାକପରିହିତ ଲୋକଟା ଆହୁରି ଜୋର୍‌ରେ ମୋହନର ହାତଟାକୁ ମୋଡ଼ିବାକୁ ଲାଗିଲା। ହାଡ଼ଗୁଡ଼ାକ ତା'ର କଡ଼ କଡ଼ ଡାକୁଥିଲା। କ୍ରମେ ସେ ଚେତା ହରେଇ ଭୂଇଁରେ ଲୋଟି ପଡ଼ିଲା।

ମହମ୍‌ବତିଟାର ମହମ୍‌ଗୁଡ଼ାକ ତରଳି ଯାଇଥିଲା। ଦପକିନା ନିଭିଗଲା। ସବୁ ନୀରବ ନିଶ୍ଚଳ। କେବଳ ଭାରି ପାଦଶବ୍ଦ କେଇଟା ଧୀରେଧୀରେ ଦୂରେଇ ଯାଉଥିଲା।

ମୋହନର ଯେତେବେଳେ ଚେତା ହେଲା, ସେ ଅନୁଭବ କଲା ଯେପରି କାହା କୋଳରେ ମୁଣ୍ଡ ରଖି ସେ ଶୋଇଚି। କିଟିକିଟିଆ ଅନ୍ଧାର। କିଛି ଦିଶୁ ନାହିଁ। ଖାଲି ଅନୁଭବ। ଧୀରେ ହାତ ବୁଲେଇଲା। ଚିତ୍‌କାର କରି ଉଠିଲା-କିଏ ?

ଗୋଟିଏ କମ୍ପିତ ବ୍ୟଥିତ ସ୍ୱର,

ମୁଁ ଗୀତା ମହାପାତ୍ର।

ଗୀତା ଦେବୀ, ଆପଣ...ମୁଁ କିଛି....

ବୁଝି ପାରିବେ ନାହିଁ। ମୁଁ କିନ୍ତୁ ଅନେକ କିଛି ବୁଝିସାରିଲିଣି। ଯେଉଁଦିନ ଆପଣ ମୋତେ ଦମ୍ ଦମ୍ ଏୟାରପୋର୍ଟରୁ ମଟର ଡ୍ରାଇଭର କରି ଘେନିଆସିଲେ ମିଡ୍‌ନାଇଟ୍ ହୋଟେଲକୁ, ସେଦିନ ମୁଁ ପ୍ରଥମେ ଆପଣଙ୍କୁ ଦେଖିଥିଲି। ତା'ପରେ ଅନେକ କଥା ଆପଣଙ୍କ ସମ୍ବନ୍ଧରେ ଜାଣିଲି। ଆଉ ଆଜି...

ନା, ନା ଗୀତା ଦେବୀ, ଆପଣ ଏଇ ମୁହୂର୍ତ୍ତରେ ଏ ସ୍ଥାନ ତ୍ୟାଗ କରି ଚାଲି ଯାଆନ୍ତୁ। ମୁଁ ଗୋଟାଏ ସଇତାନ, ଗୋଟାଏ ବଦମାସ, ଗୋଟାଏ ଖୁଣୀ।

ଗୀତା ମହାପାତ୍ର ମୋହନ ମୁହଁରେ ହାତ ଦେଲା।

ଥାଉ, ମୁଁ ସବୁ ଶୁଣିଛି। ଆପଣ ଯେ ଜଣେ ନିର୍ଦ୍ଦୋଷ ବ୍ୟକ୍ତି, ଆଉ ଆପଣଙ୍କ ବିରୁଦ୍ଧରେ ହତ୍ୟାର ମିଥ୍ୟା ଅଭିଯୋଗ କରାଯାଇଛି, ସେ କଥା ମୋତେ ଅଜଣା ନାହିଁ।

ମୋହନ ଉଠି ବସିଲା। ସେ ଯେପରି ଲକ୍ଷେଦିନ ପରେ ଗୋଟିଏ ମନର ମଣିଷ ପାଇଛି।

ଆପଣ ଜାଣନ୍ତି ଗୀତା ଦେବୀ ମୁଁ ନିର୍ଦ୍ଦୋଷ ?

ଖାଲି ସେତିକି ନୁହେଁ, ଆପଣ ଯେ ଜଣେ ଚରିତ୍ରବାନ୍ ନିଷ୍ଠାପରାୟଣ ଯୁବକ, ସେ କଥା ମଧ୍ୟ ମୁଁ ଜାଣିଛି।

କିଏ ଆପଣଙ୍କୁ ମୋ ସମ୍ବନ୍ଧରେ ଏତେଗୁଡ଼ାଏ ଧାରଣା ଦେଲା ? ମୁଁ କିଛି ବୁଝି ପାରୁନି ଗୀତା ଦେବୀ, ମୋତେ ସବୁ ଖୋଲି କୁହନ୍ତୁ।

ସେ ସବୁ ଜାଣି ଆପଣଙ୍କର କିଛି ଲାଭ ହେବନାହିଁ। ମୁଁ ଜାଣିଛି, ଏଇ କ'ଣ ଯଥେଷ୍ଟ ନୁହେଁ ?

ମୁଁ କିଛି ବୁଝିପାରୁନି ଗୀତା ଦେବୀ, ଆପଣ ଅସମୟରେ ହଠାତ୍ କିପରି ବା କାହିଁକି ଆସି ପହଞ୍ଚିଲେ ଏଇ ନରକପୁରୀରେ ?

ଆପଣଙ୍କୁ ଉଦ୍ଧାର କରିବାକୁ।

ମୋହନର ଆଖି ଯୋଡ଼ାକ ଅନ୍ଧକାରରେ ମଧ୍ୟ ଉଜଳି ଉଠିଲା। ସେ ଯେପରି ଦୀର୍ଘ ଦୁଇବର୍ଷ ପରେ ଆଶାର କ୍ଷୀଣ ଆଲୋକଶିଖାଟିଏ ଦେଖିବାକୁ ପାଇଲା। ଆନନ୍ଦରେ ଅଧୀର ହୋଇଉଠିଲା। ପାଟିରୁ ତା'ର କଥା ଫୁଟିଲା ନାହିଁ।

ଗୀତା ମହାପାତ୍ର ଅ.ଉ ଟିକିଏ ଲାଗି ବସିଲା। ମୋହନ ଅନ୍ଧକାରର ସେଇ ନିବିଡ଼ତା ଭିତରୁ ଅନୁଭବ କଲା ସେ ଯେମିତି ଲେଉଟି ଯାଉଚି ତା' କଲେଜ ଜୀବନକୁ। ଏଇଭଳି ଏକ ଅନ୍ଧକାର ରାତିରେ ଦୁହେଁ ଭେଟିଥିଲେ ଦୁହିଁଙ୍କୁ। ଆଃ, ସେ ରାତି ଜୀବନରେ ଥରଟିଏ ଆସିଥିଲା, ଆଉ ହୁଏତ ସେଇ ଥିଲା ଶେଷରାତି। ତା' ପରେ...

ମଉନ ରହିଲ ଯେ !

ମୋହନର ଭାବନା ଭାଙ୍ଗିଗଲା।

ନା, ଗୀତା ଦେବୀ। ଆପଣଙ୍କ କଥା ଶୁଣି ମୋତେ ହସ ମାଡୁଚି । ମୁକ୍ତି ? ମୋ ଜୀବନରେ ହୁଏତ ନାହିଁ।

କାହିଁକି ?

ମୁଁ ଯେଉଁମାନଙ୍କ ହାତରେ ପଡ଼ିଚି, ସେମାନଙ୍କ କବଳରୁ କେହି କେବେ ମୁକ୍ତି ପାଇନି।

ଆଚ୍ଛା ମୋହନ ବାବୁ, ସେମାନେ କିଏ ଆପଣ କହିପାରିବେ ? ତାଙ୍କର ପରିଚୟ....

ଗୀତା ମହାପାତ୍ର ହାତରେ ଭୀଷଣ ବେଦନା ଅନୁଭବ କଲା। ହଠାତ୍ ସେ କଥାର ମୋଡ଼ ବୁଲେଇ କହିଲା-ଥାଉ, କ'ଣ ମିଳିବ ସେମାନଙ୍କ ପରିଚୟରୁ ? ଆପଣଙ୍କୁ ଛାଡ଼ିଦେଇ ଆସିବି ମୁକ୍ତ ଆକାଶ ତଳେ।

ମୋହନ ହସିଲା। ସେ ହସର ଶବ୍ଦ ଗୀତା ମହାପାତ୍ର ବୁଝି ପାରିଲା ନାହିଁ। ହାତଧରି ଟାଣିଲା- ଉଠନ୍ତୁ ମୋହନ ବାବୁ। ବର୍ତ୍ତମାନ ଏଇଟା ସୁବର୍ଣ୍ଣ ସୁଯୋଗ। ସେମାନେ କେହି ନାହାନ୍ତି। ମୋ ଗାଡ଼ି ବାହାରେ ଅପେକ୍ଷା କରିଛି। ମୁଁ ଆପଣଙ୍କୁ ଛାଡ଼ିଦେଇ ଆସିବି ଦୂରରେ, ବହୁତ ଦୂରରେ।

ମିଡ୍‌ନାଇଟ୍ ହୋଟେଲ୍

ଆଉ ଆପଣ ?

ମୁଁ! ମୋ କଥା ଛାଡ଼ନ୍ତୁ।

କାହିଁକି ?

ମୋତେ କେହି ଦୟା କରିବେ ନାହିଁ।

ଗୀତା ମହାପାତ୍ର ଗୋଟାଏ ଦୀର୍ଘନିଃଶ୍ୱାସ ପକାଇଲା।

ମୋହନ ଛାତି ଉପରେ ଅନୁଭବ କରୁଥିଲା ଗୀତା ମହାପାତ୍ରର ଉଲଙ୍ଗ ଦେହର ସ୍ପର୍ଶ। କେମିତି ଧୀରେ ଧୀରେ ସେ ସତେଜ ହୋଇଉଠୁଥିଲା। ଗୀତା ମହାପାତ୍ରର ଦୀର୍ଘଶ୍ୱାସ ଯେମିତି ତା' ଦୀର୍ଘଶ୍ୱାସଠାରୁ ଆହୁରି ବେଦନାଜଡ଼ିତ ପରି ମନେହେଲା। ମୋହନ ଦୁଇ ହାତରେ ଗୀତା ମହାପାତ୍ରକୁ ଖୁବ୍ ନିବିଡ଼ ଭାବରେ ଭିଡ଼ି ଧରିଲା। ଗୀତା ମହାପାତ୍ର ନିଶ୍ଚିନ୍ତରେ ଆଉଜିଗଲା।

କିନ୍ତୁ ପୁଣି ଗୀତା ମହାପାତ୍ର ତା' ବାଁ ହାତରେ ଭୀଷଣ ବେଦନା ଅନୁଭବ କଲା। ସେ ଚଞ୍ଚଳ ହୋଇଉଠିଲା। ମୋହନ ଦେହ ସହିତ ଦେହ ମିଶାଇ ଆରାମରେ ଘୁମେଇ ପାରିଲା ନାହିଁ। ବାଁ ହାତରେ ବେଦନା ବଢୁଥିଲା। ଶେଷକୁ ଗୀତା ମହାପାତ୍ର ଚିତ୍କାର କରି ଉଠିଲା–

କ'ଣ ହେଲା ?

ମୋହନ ଚଞ୍ଚଳ ହୋଇପଡ଼ିଲା।

ନା, କିଛି ନୁହେଁ। ମୁଁ ଯେପରି ଗୋଟାଏ କଳାଛାଇ ଦେଖିଲି। ମୋରି ଆଡ଼କୁ ମାଡ଼ି ଆସୁଛି।

କାହିଁ ? ସେ ହୁଏତ ପୁଣି ଆସିଲାଣି। ଆପଣ ଚାଲି ଯାଆନ୍ତୁ ଗୀତା ଦେବୀ। ତା ନ ହେଲେ ଆମ ଦୁହିଁଙ୍କୁ ସେ ନିର୍ଦ୍ଦୟ ଭାବରେ ହତ୍ୟା କରିବ।

ଗୀତା ମହାପାତ୍ର ଉଠିଲା, ମୋହନ ହାତ ଧରି ଉଠେଇଲା।

ଏଠାରେ ଆଉ ଦଣ୍ଡେ ରହି ହେବନି ମୋହନ ବାବୁ, ଆପଣ ଆସନ୍ତୁ। ମୋ କଥା ରଖନ୍ତୁ। ମୁଁ ଆପଣଙ୍କ ବନ୍ଧୁ। ମୋତେ ଅବିଶ୍ୱାସ କରନ୍ତୁ ନାହିଁ। ଯଦି ମୁଁ ଆପଣଙ୍କର କେବେ କୌଣସି ଉପକାର କରିନପାରେ, ତେବେ ଜାଣିରଖନ୍ତୁ କୌଣସି ଅପକାର କରିବି ନାହିଁ।

ଗୀତା ମହାପାତ୍ର ମୋହନର ଦୁର୍ବଳ ଦେହଟାକୁ ସନ୍ତର୍ପଣେ ଚଲାଇ ବାହାରକୁ ନେଲା।

ମିଡ୍‌ନାଇଟ୍ ହୋଟେଲ୍

-ଚଉଦ-

ମିଡ୍‌ନାଇଟ୍ ହୋଟେଲରେ ବିଶେଷ ପ୍ରୋଗ୍ରାମ।

ସହରର ଧନୀ, ମାନୀ, ଜ୍ଞାନୀଜନଙ୍କର ଅପୂର୍ବ ସମାବେଶ।

ମିସ୍ ଇଣ୍ଡିଆଙ୍କୁ ଅଭିନନ୍ଦନ ଦିଆଯିବ।

ହୋଟେଲର ମ୍ୟାନେଜର ଆରମ୍ଭ କଲେ-

ଲେଡିଜ୍ ଆଣ୍ଡ୍ ଜେଣ୍ଟେଲମେନ୍! ଆଜିର ଏହି ଉତ୍ସବରେ ଯୋଗଦେବା ପାଇଁ ଯେଉଁମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା, ଯେଉଁମାନେ ଭାରତ ଓ ଭାରତ ବାହାରେ ଯଶସ୍ୱୀ, ସେମାନଙ୍କ ମଧ୍ୟରୁ ଓସ୍ତାଦ୍ ଆଲି ଆକବର ଖାଁ, ଓସ୍ତାଦ୍ ବିଲଶମ୍ଭତ ଖାଁ, ଲତା ମଙ୍ଗେସ୍‌କର, ହେମନ୍ତ କୁମାର, ଆଶା ଭୋସଲେ, ନୃତ୍ୟ ପଟିୟସୀ ବୈଜୟନ୍ତୀ ମାଳା, କୁକୁ, ଚିତ୍ରାଭିନେତା ରାଜକପୁର, ଦିଲ୍ଲୀପ କୁମାର ଦେବାନନ୍ଦ, ଜନିଓ୍ୱାକର, ଉତ୍ତମ କୁମାର ଓ ଚିତ୍ରାଭିନେତ୍ରୀ ନରଗିସ୍, ଗୀତାବାଲୀ, ନୂତନ, ମଧୁବାଲା, ସୁଚିତ୍ରା ସେନ୍ ଓ ଆହୁରି ଅନେକ ଆମର ଏହି ଉତ୍ସବଟିରେ ଯୋଗଦାନ କରି ନ ପାରି ଶୁଭବାର୍ତ୍ତାମାନ ପଠାଇଛନ୍ତି । ଆମ୍ଭର ଆଜିର ଏହି ଉତ୍ସବର ପ୍ରଧାନ ଅତିଥି ହଲିଉଡ୍‌ର ବିଖ୍ୟାତ ଚିତ୍ର ପରିଚାଳକ ମିଷ୍ଟର ଷ୍ଟିଫେନ୍‌ସନ୍। ଆପଣମାନେ ଏଥର ଆଜିର ପ୍ରୋଗ୍ରାମ ଉପଭୋଗ କରନ୍ତୁ। ପ୍ରଥମେ ମିସ୍ ଇଣ୍ଡିଆ କୁମାରୀ ଗୀତା ମହାପାତ୍ର....

ଆଲୋକ ଲିଭିଗଲା। ଷ୍ଟେଜ୍ ଉପରୁ ଧୀରେଧୀରେ ସ୍କ୍ରିନ୍ ଘୁଞ୍ଚିଗଲା। ରଙ୍ଗମଞ୍ଚର ଗୋଟାଏ କୋଣରେ କ୍ଷୀଣ ଆଲୋକଶିଖା ଦିଶୁଥିଲା। ଧୀରେଧୀରେ ତାହା ବଢ଼ିବାକୁ ଲାଗିଲା। ଦିଶିଲା ଗୋଟିଏ ସୁନ୍ଦରୀ ତନ୍ଦ୍ରା ଅଳସରେ ଘୁମେଇ ରହିଚି। ଆଲୋକ ବଢୁଥିଲା ତନ୍ଦ୍ରା ଛିଡୁଥିଲା। ହଠାତ୍ ସୁନ୍ଦରୀର ଆଖିପତାରୁ ତନ୍ଦ୍ରାର ପାଖୁଡ଼ା ଝଡ଼ିପଡ଼ିଲା, ସେ ସଚେତନ ହୋଇ ଚାରିଆଡ଼େ ଚାହିଁଲା। ଗଛପତ୍ରରେ ସବୁଜିମା ଭରି ରହିଛି। ବାୟୁମଣ୍ଡଳରେ ଫୁଲକତା ପୂରି ରହିଛି। ଚାହିଁଲା ଏଣେ ତେଣେ, ସବୁ ଯେମିତି ସବୁଜ, ସୁନ୍ଦର। ନିଜ ଦେହକୁ

ଅନେଇଲା। ପରିବର୍ତ୍ତନ ହେଠି କି। ଦେହସାରା ଖେଳିଗଲା ଶିହରଣ। ମୁହଁରେ ଫୁଟି ଉଠିଲା ହସଫୁଲ। ଅଙ୍ଗ ଅବୟବରେ ଧାଇଁଗଲା ଜାଗରଣର ଲହରୀ। ସେ ଧାଇଁଲା, ଏଣେତେଣେ, ସବୁ ନୂତନ। ଯେମିତି କେତେକାଳ ଘୁମେଇ ପଡ଼ିଥିଲା ସେ। ସେଇ ଘୁମ ଭିତର ଦେଇ କେତୋଟି ଋତୁ ଅତିବାହିତ ହୋଇଯାଇଛି। ଆଜି କିନ୍ତୁ ଆସିଚି ବସନ୍ତ।

ପାଦ ତା'ର ଥରି ଉଠିଲା। ହାତ ତାର କମ୍ପି ଉଠିଲା। ଯେମିତି କେଉଁ ଅଜଣାର ଆବାହନୀ ସୁର ବାଜି ଉଠିଲା ତା' କାନେ କାନେ। ନାଚିଲା ସେ ଛନ୍ଦେ ଛନ୍ଦେ। ସଜୀବ କରି ତୋଳିଲା ତା କାମନାକୁ। ଏଇ ରୂପ, ଏଇ ସୌନ୍ଦର୍ଯ୍ୟ, ଆଉ ଏଇ କଳା ପାଇଁ ସାଥୀ ଲୋଡ଼ା। ସାଥୀ ହରାର ଜୀବନ ସତେ କି ଦୁଃଖଦାୟକ। ଜୀବନ ଜଳିଯାଏ, ପୋଡ଼ିଯାଏ ମନର ସବୁ ଆଶା ଆକାଂକ୍ଷା ଅଭିଳାଷ। କିନ୍ତୁ ସାଥୀ କାହିଁ?

ସାଥୀ ନାହିଁ, ସାଥୀ ନାହିଁ-

ଗୋଟିଏ ଭିକ୍ଷୁ ଗୀତ ଗାଇ ଗାଇ ଆସୁଥିଲା। ଗୀତର ମର୍ମ୍ମ ଅତ୍ୟନ୍ତ କରୁଣ।

ଜଗତରେ କେହି କାହାରି ସାଥୀ ନୁହନ୍ତି। ଦିନ ଦୁଇଟାର ଖେଳଘର। ପାଣି ପବନରେ ଧୂଳିଘର ଧୋଇଯିବ, ଉଡ଼ିଯିବ। ଯେ ଯାହା ବାଟରେ ବାହୁଡ଼ି ଯିବେ- କିଏ କାହାର ବନ୍ଧୁ? କିଏ କାହାର ପ୍ରିୟ? କିଏ କାହାର ସାଥୀ?

ସାଥୀ ନାହିଁ, ସାଥୀ ନାହିଁ।

ଭିକ୍ଷୁଟି ଗୀତ ଗାଇ ଚାଲିଗଲା।

ସମସ୍ତେ ସ୍ଥିରଦୃଷ୍ଟିରେ ଚାହିଁଥିଲେ ବିରହିଣୀ ନର୍ତ୍ତକୀଟି ଆଡ଼େ। ବେଦନର ବୋଝ ଯେମିତି ସେ ବୋହି ପାରୁନାହିଁ, ଯୌବନର କାଉଁରୀ ଯେମିତି ତାକୁ ମତୁଆଲା କରିଚି। ସେ ଖୋଜୁଚି ଗଛଲତାର ଉହାଡ଼ରେ, ଶୁଷ୍କପତ୍ରର ତଳେ ତଳେ। ପଣତ କାନିର ଆଡୁଆଳରେ, କେହି ନାହିଁ, କିଛି ନାହିଁ। ତା ହେଲେ କ'ଣ....

ରଙ୍ଗମଞ୍ଚରେ ଖେଳି ବୁଲୁଥିଲା କରୁଣତାର ଲହରୀ।

ପ୍ରିୟ ତା'ର ଆସିଲା। କିନ୍ତୁ ତାକୁ ଯେପରି ବନ୍ଦୀ କରି ରଖିଥିଲା କେଉଁ ସପନପୁରୀର ରାଜକୁମାରୀ। ତଥାପି ବିରହିଣୀ ତା ପ୍ରିୟକୁ ଦେଖି ନାଚି ଉଠିଲା ଆନନ୍ଦ ଆଉ ଆଗ୍ରହରେ। ନୃତ୍ୟର ଛନ୍ଦେ ଛନ୍ଦେ ଫୁଟି ଉଠିଲା ବସନ୍ତର ସ୍ୱାଗତିକା। ଯେମିତି ବସନ୍ତ ଆସିଚି ରଙ୍ଗମଞ୍ଚରେ, ସ୍ପର୍ଶ ଅନୁଭବ କରୁଛନ୍ତି ଦର୍ଶକ ମଣ୍ଡଳୀ। ସବୁ ମଧୁର, ସବୁ ସରସ, ସବୁ ଉପଭୋଗ୍ୟ।

ହଠାତ୍ ଝାଏଁ କିନା ଗୋଟାଏ ଶବ୍ଦ ହେଲା।

ଅନ୍ଧକାର।

ପୁଣି ବତିଗୁଡ଼ାକ ଜଳି ଉଠିଲା।

ମାଇକ୍‌ରୁ ଶୁଭୁଥିଲା-

ମିସ୍ ଇଣ୍ଡିଆଙ୍କ ବିରହିଣୀ ନୃତ୍ୟ ଦେଖିଲେ। ଶୁଣନ୍ତୁ ସବିତା ଦେବୀଙ୍କ ଆଧୁନିକ। ଗୀତ ଆରମ୍ଭ ହେବା ଆଗରୁ ମାଇକରୁ ଗୋଳମାଳିଆ ସ୍ୱରରେ ଶୁଣାଗଲା, ଡାକ୍ତର ବାବୁ, ଶୀଘ୍ର ଏଣେ ଆସନ୍ତୁ। ସିରିଅସ୍ କଣ୍ଡିସନ୍। ଗୀତ ଆରମ୍ଭ ହୋଇଯାଇଥିଲା, ମାତ୍ର ସାହାଣୀବାବୁ ମାଇକର ସେଇ ଅସ୍ପଷ୍ଟ କଥା କେଇପଦ ସ୍ପଷ୍ଟ ଶୁଣି ପାରିଥିଲେ।

ସେ ଚଞ୍ଚଳ ହୋଇଉଠିଲେ। କିନ୍ତୁ ଦର୍ଶକମଣ୍ଡଳୀ ସ୍ଥିର ହୋଇ ବସିଥିଲେ। ସବିତା ଦେବୀଙ୍କ ଲଳିତ କଣ୍ଠର ଗୀତ ସମସ୍ତଙ୍କୁ ସ୍ତବ୍ଧ କରିଥିଲା।

ସାହାଣୀବାବୁ ଚେଆରରୁ ଉଠିଲେ। ଆଉ ସେ ସ୍ଥିର ହୋଇ ବସିପାରିଲେ ନାହିଁ। ଧୀରେଧୀରେ ଆଗେଇଗଲେ ଗ୍ରୀନ୍‌ରୁମ୍ ଆଡ଼କୁ। ହୁଏତ କିଛି ଗୋଟାଏ ଏପରି ଦେଖିବେ, ଯାହା ପାଇଁ ସେ ପ୍ରସ୍ତୁତ ହୋଇଯାଇନଥିବେ।

କିନ୍ତୁ ଏ କ'ଣ ?

ଗୀତା ମହାପାତ୍ର ଶୋଇଛନ୍ତି ଗୋଟାଏ ଖଟ ଉପରେ। ପ୍ରାୟ ଅଭ୍ୟନ୍ତରର ସମସ୍ତ କର୍ମୀ ଜମି ଯାଇଛନ୍ତି ସେଠାରେ। ଡାକ୍ତର ତାଲୁକଦାର ଇଞ୍ଜେକ୍ସନ୍ ଭରି ସିରିଞ୍ଜଟା ଫୋଡ଼ିବାକୁ ପ୍ରସ୍ତୁତ ହେଉଛନ୍ତି।

ସାହାଣୀବାବୁ ସମସ୍ତଙ୍କୁ ଦେଖିଲେ। ସାହାଣୀବାବୁଙ୍କୁ ସମସ୍ତେ ଦେଖିଲେ। କିନ୍ତୁ କେହି ଯେପରି କାହାରିକୁ ଦେଖିନାହାନ୍ତି। ସାହାଣୀବାବୁ ଫେରିଆସୁଥିଲେ। କ'ଣ ଭାବି ପୁଣି ଲେଉଟିଗଲେ। ମାତ୍ର ଡାକ୍ତର ତାଲୁକ୍‌ଦାର ଏ ପର୍ଯ୍ୟନ୍ତ ସିରିଞ୍ଜଟା ଧରିଛନ୍ତି। ତରଳ ଔଷଧଗୁଡ଼ାକ କାଚ ନଳି ଭିତରେ ପୂର୍ଣ୍ଣ ହୋଇ ରହିଛି। ଡାକ୍ତର ତାଲୁକଦାର ସ୍ପିରିଟ୍ ତୁଳା ଗୀତା ମହାପାତ୍ର ହାତରେ ଘଷୁଛନ୍ତି। ସାହାଣୀବାବୁ ଗୀତା ମହାପାତ୍ର ପାଖକୁ ଯାଇ ଦଣ୍ଡେ ଠିଆହେଲେ। ମୁହଁକୁ ଚାହିଁଲେ। ଡାକ୍ତର ତାଲୁକଦାର ଖାଲି କହିଲେ- ଫିଟ୍।

ସାହାଣୀବାବୁ ଫେରିଲେ। ବାହାରେ ଦର୍ଶକମଣ୍ଡଳୀ ମନ୍ତ୍ରମୁଗ୍ଧ ପରି ବସି ଗୀତ ଶୁଣୁଥିଲେ। ସେ କିନ୍ତୁ ସିଧାସିଧା ସେଠାରୁ ବାହାରି ଆସି ଆପଣା କାର୍ ଖଣ୍ଡିକରେ ବସି ଷ୍ଟାର୍ଟ ଦେଲେ। ମନରେ ଭାବନା ଚକ ଘୂରୁଥିଲା ତେବେ ?

ମିଡ୍‌ନାଇଟ୍ ହୋଟେଲ୍

-ପନ୍ଦର-

ମଣିଆ କହିଲା-ଦେଇ ନାହାନ୍ତି।

ସାହାଣୀବାବୁ ହାତ ଘଡ଼ିକୁ ଚାହିଁଲେ। ନ'ଟା ବାଜିବାକୁ ଆଉ ଦଶ ମିନିଟ୍ ବାକି ଅଛି। ଚାଲି ଚାଲି ହୋଇ ଆଗେଇଗଲେ ଛନ୍ଦାର ଶୟନକକ୍ଷକୁ। ନୂଆ କିଛି ନାହିଁ।

କିଏ ?

ମୁଁ ମଣିଆ।

ଶୁଣ୍। ଦେଈ କୁଆଡ଼େ ଯାଇଛନ୍ତି ?

କହି ପାରିବିନି ବାବୁ। କହି ଯାଇଛନ୍ତି ଫେରୁ ଫେରୁ ଡେରି ହେବ।

ଆଉ କିଏ ସଙ୍ଗରେ ଥିଲା ?

ନା।

କାନ୍ଥରେ ଓଲଟା ହେଇ ଟଙ୍ଗା ହୋଇଥିବା ଫଟୋଟାକୁ ସାହାଣୀବାବୁ ସିଧା କରିଦେଲେ। ଫଟୋ ଫ୍ରେମରୁ କାଚଗୁଡ଼ାକ ଭାଙ୍ଗିଯାଇଛି। ମଣିଆ ଏକ ଧ୍ୟାନରେ ସେ ଆଡ଼େ ଅନେଇଥିଲା। ସାହାଣୀବାବୁଙ୍କ ଆଖିରେ ଆଖି ମିଳିଯିବାରୁ ସେ ଟିକିଏ ଚଞ୍ଚଳ ହୋଇପଡ଼ିଲା।

ଏ ଫଟୋ କାହାର କିରେ ?

ବାବୁଆଣୀଙ୍କର।

ତୁ ତାଙ୍କୁ ଦେଖିଚୁ ?

ହଁ ବାବୁ, ଏଇ ଘରେ ମୋ ବାଳ ପାଚିଲା। ଛୁଆଟି ଦିନରୁ ଏଇଠି।

ବାବୁଆଣୀ ତୋର କେମିତି ଲୋକ ଥିଲେ ?

ମଣିଆ ନୀରବ ରହିଲା।

କିରେ, ମଉନ ରହିଲୁ ଯେ ?

ସେ କଥା ପଚାରନ୍ତୁ ନାହିଁ ଆଜ୍ଞା ! ବାବୁଙ୍କୁ ସେ ଦିନେ ହେଲେ ଶାନ୍ତି ଦେଇନାହାନ୍ତି।

କାହିଁକି ? ବାବୁଙ୍କ ସହିତ ସେ କ'ଣ ଭାରି କଳି କରୁଥିଲେ ?

ନାହିଁ ଆଜ୍ଞା। ସେ ସବୁ କହିବା କଥା ନୁହେଁ। ଆପଣ ମୋତେ କିଛି ପଚାରନ୍ତୁ ନାହିଁ। ବାବୁ ମୋତେ ନିୟମ ଦେଇ ମନା କରିଛନ୍ତି। କାଲେ ଦେଈ ଶୁଣିବେ।

ମୁଁ ତୋ' ଦେଈଙ୍କ ଆଗରେ କହିବି ନାହିଁ। କ'ଣ ସତ କହିଲୁ।

ନାହିଁ ବାବୁ, ମୁଁ ଠାକୁରଙ୍କୁ ଅନେକ ନିୟମ କରିଛି। ଛାତି ଫାଟିଯିବ ପଛେ, ମୁହଁ ଫିଟିବ ନାହିଁ।

ସାହାଣୀବାବୁ ନୀରବ ରହିଲେ। ଭଲ କରି ସେ ଫଟୋଟା ଆଡ଼େ ଥରେ ଅନେଇଲେ। ପୁଣି ପଚାରିଲେ-

ଆଚ୍ଛା ମଣି ! ତୋ ବାବୁ କୋଉଠି ବାହା ହେଇଥିଲେ କି ?

ସେ ଆଜ୍ଞା ଅନେକ କଥା ! ବାବୁଙ୍କର ଦେଶ ବୁଲିବା ଭାରି ଖିଆଲ ଥିଲା। ଥରେ କାମାକ୍ଷା ଯାଇଥିଲେ। ଫେରିଲେ ବାବୁଆଣୀଙ୍କ ସାଙ୍ଗରେ ଧରି। ଘରେ ବଡ଼ବାବୁଙ୍କୁ କହିଲେ, ଏହାଙ୍କୁ ମୁଁ ବିବାହ କରିଛି। ବଡ଼ବାବୁ ଗୋଟାଏ ଭଲ ଘରେ ସମ୍ବନ୍ଧ ପକାଇ ଜବାବ ଛିଣ୍ଡେଇଥିଲେ। ଛୋଟବାବୁଙ୍କର କାର୍ତ୍ତି ଦେଖି ସେ ବିଛଣାରେ ପଡ଼ିଲେ ଯେ ଆଉ ଉଠିଲେ ନାହିଁ।

ମଣିଆ ଲୁଗାକାନିରେ ଆଖି ପୋଛିଲା।

ତଳେ କାହାର ପାଦଶବ୍ଦ ଓ ପାଟିଗୋଳ ଶୁଣି ମଣିଆ ଦଉଡ଼ିଗଲା। ପଛେପଛେ ସାହାଣୀବାବୁ ଯାଇ ଦେଖିଲେ, ଛନ୍ଦା ଭିତରକୁ ପଶୁଚି। ଯେମିତି ବାହାରେ କାହାକୁ ବିଦାୟ ଅଭିନନ୍ଦନ ଜଣେଇ ସେ ଭିତରକୁ ପଶୁଚି। କିନ୍ତୁ ମୁହଁରେ ସରାଗର କୌଣସି ଲକ୍ଷଣ ନାହିଁ।

ଆଗରେ ସାହାଣୀବାବୁଙ୍କୁ ଦେଖି ସେ ଏପରି ଚମକି ପଡ଼ିଲା ଯେମିତି ଆଖି ଆଗରେ ମୃତ୍ୟୁର କଳାଛାଇ ନୃତ୍ୟ କରୁଛି। ବହୁ କଷ୍ଟରେ ନିଜକୁ ସମ୍ଭାଳି ନେଇ ଛନ୍ଦା ପଚାରିଲା- ଆପଣ ?

ହଁ ମୁଁ, ଆପଣଙ୍କୁ ପ୍ରତୀକ୍ଷା କରିଥିଲି। ଆପଣଙ୍କ ଅନୁପସ୍ଥିତି ମଧ୍ୟ ମୋତେ ଶଙ୍କିତ କରିଥିଲା। ହଠାତ୍ ଆପଣ କୁଆଡ଼େ ଚାଲି ଯାଇଥିଲେ କି ?

ମୁଁ ଯାଉ ନଥିଲି। ମାତ୍ର ଗୀତା ମହାପାତ୍ର ମୋତେ ବାଧ୍ୟ କଲେ। ନିହାତି ଟାଣି ନେଲେ। ମିଡ୍ ନାଇଟ୍ ହୋଟେଲରେ ତାଙ୍କୁ ଆଜି ଅଭିନନ୍ଦନ ଦିଆହେଲା। ଆପଣ ଜାଣି ନାହାନ୍ତି ?

ଓଃ ! ଆପଣ ତା' ହେଲେ ଗୀତା ମହାପାତ୍ରଙ୍କୁ ଚିହ୍ନନ୍ତି ?

ଛନ୍ଦା କେବଳ ମୁଣ୍ଡ ଟୁଙ୍ଗାରି ଉପରକୁ ଉଠିଗଲା। କପାଳରେ ତା'ର ଝାଳ ଜମି ଯାଇଥିଲା। ସେ ହୁଏତ ଆଉ ଠିଆ ହୋଇପାରୁନଥିଲା।

ପଛେପଛେ ସାହାଣୀବାବୁ ଗଲେ। ଛନ୍ଦା ଘରେ ପଶି ପଲଙ୍କ ଉପରେ ଲୋଟି ପଡ଼ିଥିଲା। ଯେମିତି କ୍ଳାନ୍ତିର ବିଷ ତା' ଲୋମେ ଲୋମେ ଭରି ରହିଛି।

ମିଡ୍‌ନାଇଟ୍ ହୋଟେଲ୍

ସାହାଣୀବାବୁ ଲେଉଟି ଆସିଲେ। କିଛି ବୁଝି ହେଉନାହିଁ। ଛନ୍ଦା ହଠାତ୍ ତାଙ୍କୁ ଦେଖି କଳା ପଡ଼ିଗଲା କାହିଁକି? ତା'ର ବା ଗୀତା ମହାପାତ୍ର ସହିତ ପରିଚୟ ହେଲା କିପରି? କାହିଁ, ସେ ତ ମିଡ୍ ନାଇଟ୍ ହୋଟେଲରେ ତାଙ୍କୁ ଦେଖିଲେ ନାହିଁ।

ଲେଉଟି ତଳେ ବସିଲେ। କିଏ ଆସିଥିଲା ଛନ୍ଦାକୁ ଛାଡ଼ିବା ପାଇଁ? ଶ୍ରୀପତିବାବୁଙ୍କ ମୃତ୍ୟୁରହସ୍ୟ ଏ ପର୍ଯ୍ୟନ୍ତ ରହସ୍ୟାବୃତ। ତା'ହେଲେ?

ଗୋଟାଏ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ। ମଣିଆ ଆଣି କପେ ଚା ଥୋଇଗଲା।

ଛନ୍ଦା ଘରୁ ଆଲୋକ ଲିଭିଗଲା। ସାହାଣୀବାବୁ ଲକ୍ଷ୍ୟ କଲେ। ହୁଏତ ଆଜି ଆଉ କିଛି ପଚାରି ହେବନାହିଁ। ମଣିଆ ଆସି ବିନୀତ ସ୍ୱରରେ କହିଲା, ଦେଈ କହିଲେ ତାଙ୍କ ଦେହ ଭଲ ନାହିଁ। ଆପଣ କାଲି ଆସିବେ।

ସାହାଣୀବାବୁ ମଣିଆ ମୁହଁକୁ ଚାହିଁଲେ। ଚା' କପ୍‌ରୁ ଥଣ୍ଡା ଚା'ତକ ନିଃଶେଷ କରି ଉଠିଲେ। ମୁଣ୍ଡଟା ଭୀଷଣ ଭାରି ଭାରି ଲାଗୁଥିଲା। ପୁଣି ଗୋଟାଏ ସମସ୍ୟା। ଶ୍ରୀପତିବାବୁ କାମାକ୍ଷା କନ୍ୟାକୁ ବାହା ହୋଇଥିଲେ। ସେ ଜୀବନ ଭରି ଶ୍ରୀପତିବାବୁଙ୍କୁ ଜଳେଇଛି।

ମଣିଆ କବାଟ ବନ୍ଦ କଲା।

ସାହାଣୀବାବୁ ପାହାଚରୁ ତଳକୁ ଓହ୍ଲେଇଲେ। ମନେହେଲା, କିଏ ଯେପରି ତାଙ୍କୁ ଦେଖି ଅନ୍ଧକାରରେ ଲୁଚିଯାଉଛି। ସାହାଣୀବାବୁଙ୍କ ଦେହରେ ବିଜୁଳି ଖେଳିଗଲା। ସେ ଚଞ୍ଚଳ ହୋଇଉଠିଲେ। ପଦଧ୍ୱନି ଅନୁସରଣ କଲେ। କିଏ? କିଏ ଧାଇଁ ପଳାଉଛି। ସାହାଣୀବାବୁ ପଛେପଛେ ଛୁଟିଲେ। ଗୋଟାଏ ଅନ୍ଧକାର ଗଳି। କେଇଟା ଗ୍ୟାସ୍ ପୋଷ୍ଟର ଲାଇଟ୍ ଥରି ଥରି ଜଳୁଛି। ଲୋକଟା ଧାଉଁଛି। ଠିକ୍ ଚିହ୍ନି ହେଉନାହିଁ। ଯେମିତି ଗୋଟାଏ ଅସ୍ପଷ୍ଟ ଛାୟାମୂର୍ତ୍ତି ପଛରେ ସାହାଣୀବାବୁ ଗୋଡ଼େଇଛନ୍ତି। ଗୋଟାଏ ମୋଡ଼। ଆବର୍ଜନା। ତା'ପରେ ଆହୁରି ଗୋଟାଏ ସରୁ ଗଳି। ସାହାଣୀବାବୁ ଆଉ କାହାରିକୁ ଦେଖିପାରିଲେ ନାହିଁ। ସେହି ସରୁଗଳିଟି ମିଶିଛି ଯାଇ ମେନ୍‌ରୋଡ଼ରେ। ଗୋଟାଏ ମଟର ଷ୍ଟାର୍ଟ ହେବାର ଶବ୍ଦ। ସାହାଣୀବାବୁ ଦ୍ରୁତପଦରେ ଆଗେଇଗଲେ।

ଆଖିକୁ ବିଶ୍ୱାସ କରିପାରିଲେ ନାହିଁ। ଡାକ୍ତର ତାଲୁକଦାରଙ୍କ ମଟର ଆଗେଇଯାଉଛି। ତାଲୁକଦାର ନିଜେ ଡ୍ରାଇଭ୍ କରୁଛନ୍ତି।

ସାହାଣୀବାବୁ ସ୍ତମ୍ଭିତ୍ ହୋଇ ଠିଆ ହୋଇଗଲେ। ତା'ହେଲେ କ'ଣ.....

-ଖୋଳ-

ଡାକ୍ତର ତାଲୁକଦାରଙ୍କ ଘରୁ ବତିଟା ହଠାତ୍ ଲିଭିଗଲା। ସାହାଣୀବାବୁ ପରଦା ପଛପଟରେ ଠିଆ ହୋଇ ଅପେକ୍ଷା କରୁଥିଲେ। ପ୍ରାୟ ଅଧଘଣ୍ଟା ହେବ ସେ ତାଲୁକଦାରଙ୍କ ଘରେ ଅଲକ୍ଷ୍ୟରେ ପଶିଛନ୍ତି! ନାନା ଭାବନା ଓ ଚିନ୍ତା ତାଙ୍କ ମୁଣ୍ଡକୁ ଗୋଳେଇ ଘାଣ୍ଟି ପକାଉଚି। କିନ୍ତୁ ତାଙ୍କ ଭାବନା ଓ ଚିନ୍ତାଧାରାକୁ ଗୋଟାଏ ନିର୍ଦ୍ଦିଷ୍ଟ ମାର୍ଗରେ ଚଳାଇ ନେବାକୁ ତାଲୁକାଦରଙ୍କ ଠାରେ କୌଣସି ଲକ୍ଷଣ ଦେଖାଯାଉନାହିଁ। ତାଲୁକଦାର ଏତେବେଳ ଯାଏ କେବଳ ଗୋଟାଏ ପତ୍ରିକା ପଢୁଥିଲେ। ଏପରି ନିବିଷ୍ଟ ଚିତ୍ତରେ ପଢୁଥିଲେ ଯେ, ସାହାଣୀବାବୁଙ୍କର ମନେ ହେଉଥିଲା ଯେପରି କୌଣସି ଗୋଟାଏ ଲେଖାକୁ ସେ ଗଭୀର ମନଯୋଗ ସହକାରେ ପାଠ କରୁଛନ୍ତି। ଆଉ ସେ ଦୁଇଟି ପୃଷ୍ଠାକୁ ପ୍ରାୟ ଛ'ଥର ପଢ଼ିଛନ୍ତି।

ନା, ଆଉ କିଛି ସୋରଶବ୍ଦ ନାହିଁ। ହୁଏତ ଡାକ୍ତର ତାଲୁକଦାର ଶୋଇପଡ଼ିଲେ। ସାହାଣୀବାବୁ ଧୀରେ ଧୀରେ ପଦାକୁ ବାହାରୁଥିଲେ। ଫୋନ୍‌ଟା ବାଜି ଉଠିଲା। ସାହାଣୀବାବୁ ପୁଣି ପରଦା ଆଡୁଆଳରେ ଲୁଚି ପଡ଼ିଲେ। ଡାକ୍ତର ତାଲୁକଦାରଙ୍କ ଟିକିଏ ବିରକ୍ତିମିଶା ସ୍ୱର ଶୁଣାଗଲା-

ହ୍ୟାଲୋ? କିଏ ? ଗୀତା ଦେବୀ? କ'ଣ ହେଇଚି? ଛନ୍ଦା ଦେବୀ ଅଚେତ୍ ହୋଇପଡ଼ିଛନ୍ତି? ଆପଣ କେଉଁଠୁ କହୁଛନ୍ତି? ତାଙ୍କରି ଘରୁ? ନା, ସେ କିଛି ନୁହେଁ। ବୋଧହୁଏ ଏଯାଏ ତାଙ୍କର ନର୍ଭସନେସ୍ କଟି ନାହିଁ। ମୋର ଯିବା ପ୍ରୟୋଜନ ହେବନାହିଁ। ଆପଣ ସେହି ଔଷଧ ଦିଅନ୍ତୁ...ହଁ, ହଁ, ମୋହନ ବାବୁ ଆସିଛନ୍ତି? କ'ଣ କହିଲେ?.... କିନ୍ତୁ ଆଜି ତାଙ୍କର ଆସିବାର ଥିଲା ଯେ... ସାଢ଼େ ଦଶଟାବେଳେ? ବାରଟା ବାଜିଲାଣି ଯେ! ତାଙ୍କର ଏ ସମୟରେ ଉପସ୍ଥିତି ଖୁବ୍ ପ୍ରୟୋଜନ। ହଁ ଗୀତା ଦେବୀ, ଆପଣ ଖୁବ୍ ପ୍ରୟୋଜନ ବୋଧ କଲେ ମୋତେ ଯିବାକୁ ଫୋନ୍ କରିବେ। ରହିଲି, ଶୁଭରାତ୍ରି...

ଲାଇଟ୍ ଆଉ ଜଳି ନ ଥିଲା। ଡାକ୍ତରଙ୍କ ଶୋଇଲା ଘରେ ଫୋନ୍‌ଟା ଥିଲା। ସେ ରିସିଭରଟା ରଖି ଦେବାର ଶବ୍ଦ ହେଲା।

ସାହାଣୀବାବୁ ଚିନ୍ତିତ ହୋଇପଡ଼ିଲେ।

ତା'ହେଲେ ଡାକ୍ତର ତାଲୁକଦାର....

ମିଡ୍‌ନାଇଟ୍ ହୋଟେଲ୍

ସାହାଣୀବାବୁ ଘଟଣାଟାକୁ ଆଉ ଥରେମନେ ପକାଇଲେ। ସେଦିନ ଶ୍ରୀପତି ବାବୁଙ୍କ ମୃତ୍ୟୁଶଯ୍ୟା ପାଖରେ ସେ ଭେଟିଥିଲେ ତାଲୁକଦାରଙ୍କୁ, ଶ୍ରୀପତିବାବୁଙ୍କ ମୃତଶରୀରଟାର ପରୀକ୍ଷକ ରୂପେ। ଆଉ ଥରେ ଭେଟିଥିଲେ ମିଡ୍ ନାଇଟ୍ ହୋଟେଲରୁ ଲେଉଟିଲା ବେଳେ, ପୁଣି ଆଜି ଭେଟିଲେ ସେଇ ମିଡ୍‌ନାଇଟ୍ ହୋଟେଲ୍‌ରେ ଗୀତା ମହାପାତ୍ରର ସଂଜ୍ଞାହୀନ ଦେହ ପାଖରେ, ଇଞ୍ଜେକ୍ସନ ଦେବାର ପୂର୍ବ ମୁହୂର୍ତ୍ତରେ। ଆଜି ଆଉ ଥରେ ଗୋଟାଏ ଅସଂଗତ ପରିସ୍ଥିତିରେ। ପୁଣି ଏଇକ୍ଷଣି ଭେଟିଲେ।

ଧୀରେଧୀରେ କବାଟଟା ଖୋଲିବାର ଶବ୍ଦ ହେଲା। ସାହାଣୀବାବୁଙ୍କ ଭାବନା ଅସମାପ୍ତ ରହିଗଲା। ହୁଏତ ତାଲୁକଦାର ଶୋଇନାହାନ୍ତି। ତାଙ୍କ କାନରେ କ'ଣ କବାଟ ଖୋଲିବା ଶବ୍ଦଟା ବାଜି ନାହିଁ ? କିଏ ପଶିଲା ଘର ଭିତରେ ?

ସାହାଣୀବାବୁ ଅନ୍ଧକାର ଭିତରେ ଲକ୍ଷ୍ୟ କଲେ, ଗୋଟାଏ କଳା ପୋଷାକପରିହିତ ଲୋକ ଧୀରେଧୀରେ ଆଗେଇ ଯାଉଚି। ସାହାଣୀବାବୁ ତା କାର୍ଯ୍ୟକଳାପକୁ ଲକ୍ଷ୍ୟ କରିବାକୁ ଚେଷ୍ଟା କଲେ। କିନ୍ତୁ ଘନ ଅନ୍ଧକାର ଭିତରେ ତାଙ୍କ ଆଖିକୁ କିଛି ଦିଶିଲା ନାହିଁ।

ଖୁଡ୍ ଖାଡ୍....ଧଡାସ...

କ'ଣ ଯେମିତି ଗୋଟାଏ ଭାରି ଜିନିଷ ଖସିପଡ଼ିଲା। ଧପ୍‌କିନା ଆଲୁଅଟା ଜଳି ଉଠିଲା। ଡାକ୍ତର ବାବୁ ଉଠିପଡ଼ି ପାଟି କଲେ। ଆଉ କିଛି ନାହିଁ। ହଠାତ୍ କାହିଁକି ଚାକରକୁ ଡାକ ପକାଇଲେ। ନିଦ ମଳମଳ ଆଖିରେ ଭାଗୀରଥି ଆସିଲା।

ଏ ଘରେ କିଏ ପଶିଥିଲା ?

ଘରେ ?

ହଁ, ହଁ, ଘରେ। ଏଇକ୍ଷଣିକା ମୁଁ ଏଇଠି ଗୋଟାଏ ପତ୍ରିକା ଆଉ ଗୋଟାଏ ଖାତା ରଖିଥିଲି, କିଏ ନେଲା ?

ପତ୍ରିକା, ଖାତା ? ମୁଁ ତ ଦେଖିନାହିଁ ଆଜ୍ଞା !

ହେଇ, ହେଇ ଦେଖିଲୁ, ଆଲମାରୀଟା ଖୋଲା। ଔଷଧପତ୍ର ଶିଶିଗୁଡ଼ାକ ତଳେ କୁଢ଼େଇ ହେଇ ପଡ଼ିଚି।

ଆପଣ ତ ଏଇ ଘରେ ଶୋଇଥିଲେ ଆଜ୍ଞା, ମୁଁ କିଛି ଜାଣିପାରିନାହିଁ।

ଦେଖିଲୁ, ସବୁ ଘରେ ଲାଇଟ୍ ଜଳେଇ ଦେଖ। ଏ ତ ବଡ଼ ଆଶ୍ଚର୍ଯ୍ୟ କଥା ! ଖାଲି ଆଖିକୁ ଟିକିଏ ତନ୍ଦ୍ରା ଆସିଛି କି ନାହିଁ, ବାସ୍।

ସାହାଣୀବାବୁ ବିଚଳିତ ହୋଇପଡ଼ିଲେ। ହୁଏତ ଆଉ ଅଳ୍ପ ସମୟ ପରେ ତାଙ୍କର ଉପସ୍ଥିତି ଜଣାପଡ଼ିଯିବ। ସେ ପଛବାଟ ଦରଜା ଦେଇ ଚାଲିଯାଉଥିଲେ। ହଠାତ୍ କାହା ସହିତ ଧକ୍‌କା ଲାଗିଲା। ଆଉଜଣକ ପଡ଼ି ଯାଉ ଯାଉ ନିଜକୁ ସମ୍ଭାଳି ନେଇ ପୁଣି ଉଠି

ପଳେଇଲା। ତା' ହାତରୁ କଣଟାଏ ଖସି ପଡ଼ିଲା। ସାହାଣୀବାବୁ ସେଇଟାକୁ ଗୋଟେଇ ନେଇ ତା' ପଛେ ପଛେ ଧାଇଁଲେ। ମାତ୍ର ସେ ଏପରି କ୍ଷିପ୍ର ଗତିରେ କେଉଁଠି କେଉଁ ବାଟ ଦେଇ ଲୁଚିଗଲା, ସାହାଣୀବାବୁ କିଛି ଜାଣିପାରିଲେ ନାହିଁ। ମନେହେଲା, ସେ ଯେପରି ଏ ଘରର ବହୁ ଦିନର ପରିଚିତ। ଡାକ୍ତରବାବୁଙ୍କ ଘରର ଅନ୍ଧିକନ୍ଧି ତାକୁ ଜଣାଅଛି। ସେ ଆଉ କାଳ ବିଳମ୍ବ ନକରି ଶିଢ଼ି ବାଟେ ତଳକୁ ଓହ୍ଲେଇ ଗଲେ।

ଉପରେ ଗହଳଚହଳ ବଢ଼ିଯାଇଥିଲା । ପ୍ରାୟ ସମସ୍ତେ ଉଠିପଡ଼ିଲେ। ସାହାଣୀବାବୁ ଗେଟ୍ ବାହାରକୁ ଯାଇ ଗୋଟାଏ ଲାଇଟ୍ ପୋଷ୍ଟ ତଳେ ଠିଆ ହୋଇ ଦେଖିଲେ, ତାଙ୍କ ହାତରେ ସେଇଟା ଖଣ୍ଡେ 'ମେଡିକାଲ ଜର୍ଣ୍ଣାଲ୍'। ସେ ଖଣ୍ଡେ ଦୂର ଆଗେଇ ଯାଇ ଗୋଟାଏ ସରୁ ଗଳି ଭିତରେ ପଶିଲେ। ରହସ୍ୟ ଯେମିତି ଘନେଇ ଆସୁଛି। କିନ୍ତୁ ଶ୍ରୀପତି ବାବୁଙ୍କ ହତ୍ୟାକାରୀ ?

ସାହାଣୀବାବୁ ଯାଇ ଛନ୍ଦା ଦୁଆରରେ କରାଘାତ କଲେ।

ବାହାରକୁ ସବୁ ନିଶ୍ଚଳ ମନେ ହେଉଥିଲା। ରାତିର ଗଭୀରତା ଭିତରେ ସମସ୍ତେ ଯେମିତି ଶୋଇ ପଡ଼ିଛନ୍ତି।

କେହି ଶୁଣିଲେ ନାହିଁ। ସାହାଣୀବାବୁ ପୁଣି କରାଘାତ କଲେ ଜୋର୍‌ରେ, ଆହୁରି ଯୋର୍‌ରେ।

ତଥାପି ନୀରବ। ମନେ ହେଉଥିଲା, ସେ ଯେପରି ଏକ ମୃତନଗରୀର ବିକ୍ଷ ଉପରେ ଠିଆ ହୋଇ ମୃତ୍ୟୁକୁ ଅପେକ୍ଷା କରୁଛନ୍ତି। କେଜାଣି କାହିଁକି ତାଙ୍କ ମନ ଭିତରଟାରେ ରାତ୍ରିର ଅନ୍ଧକାରଠାରୁ ଆହୁରି ଗଭୀର ଅନ୍ଧକାର ଜମି ଯାଇଥିଲା।

ପୁଣି ସେ କବାଟରେ ଆଘାତ କରିବାକୁ ଯାଉଛନ୍ତି, କିପରି ଗୋଟାଏ ବୀଭତ୍ସ ଶବ୍ଦ କାନରେ ବାଜିଲା। ସାହାଣୀବାବୁ ଚିହିଙ୍କି ପଡ଼ିଲେ। ଧେତ୍-ପେଚାଟାଏ ବୋବାଇଲା। ହସ ମାଡ଼ିଲା। ଏତେ ଦୁର୍ବଳ ସେ ହୋଇପଡ଼ିଛନ୍ତି ?

ପୁଣି ଜୋର୍‌ରେ କରାଘାତ କଲେ। ଏଥର କବାଟ ଖୋଲିଲା ମଣିଆ। କମ୍ପିତ ସ୍ୱରରେ କହିଲା, ଆପଣ, ଏତେ ରାତିରେ...

ଦେଉ ?

ଶୋଇଛନ୍ତି !

ଆଉ କିଏ ଅଛି ?

ଆଉ ? ନା ତ !

ଗୀତା ଦେବୀ ?

ଚାଲିଗଲେଣି ।

କେତେବେଳୁ ?

ଘଣ୍ଟାଏ ହେବ ।

କାହିଁକି ଆସିଥିଲେ ?

ଦେଈଙ୍କ ସାଙ୍ଗରେ କାମ ଥିଲା ।

ଆଉ କିଏ ଆସିଥିଲା ?

ନା ।

ମୋହନ ?

ସେ କିଏ ?

ଚିହ୍ନୁନି ବୋଧେ ?

ନାଇଁ ଆଜ୍ଞା ।

ଆଚ୍ଛା ଗିଲାସେ ପାଣି ଆଣିଲୁ ।

ମଣିଆ ପାଣି ପାଇଁ ଗଲା । ସାହାଣୀବାବୁ ଗୋଟାଏ ଚେଆର ଉପରେ ବସି ସେଇ 'ମେଡିକାଲ ଜର୍ଣ୍ଣାଲ'ଟାକୁ ଓଲଟେଇଲା କ୍ଷଣି, ହଠାତ୍ ଗୋଟାଏ ପୃଷ୍ଠା ବାହାରି ପଡିଲା । ସେ ପୃଷ୍ଠାଟିରେ ବହୁ ପେନ୍‌ସିଲ ଗାର ଟଣା ହୋଇଥିଲା । ସାହାଣୀବାବୁ ବିଷୟଟି ଉପରେ ଆଖି ବୁଲେଇ ନେଲେ । ନିକଟରେ ଯେଉଁ ହତ୍ୟାକାଣ୍ଡ ଦୁଇଟି ଘଟିଛି, ସେଥିରେ ଯେଉଁ ବିଷ ପ୍ରୟୋଗ କରାଯାଇଛି, ସେହି ବିଷ ସମ୍ବନ୍ଧରେ ଗୋଟିଏ ଗବେଷଣାପୂର୍ଣ୍ଣ ଲେଖା ।

ମଣିଆ ପାଣି ଆଣି ଦେଲା । ସାହାଣୀବାବୁ ପାଣି ଗିଲାସକ ପିଇଦେଇ ଉଠୁ ଉଠୁ କହିଲେ- ଖୁବ୍ ସାବଧାନ ମଣି, କିଛି ଅଘଟଣ ଘଟିବାର କୌଣସି ଲକ୍ଷଣ ଦେଖିଲେ ମୋତେ ସଙ୍ଗେସଙ୍ଗେ ଟେଲିଫୋନ୍ କରିବୁ । ଦେଈଙ୍କି କହିଦେବୁ ସାବଧାନରେ ଥିବେ ।

ମଣିଆ ଦୁଆରେ ବନ୍ଦ କଲା ।

କିନ୍ତୁ କି ଆଶ୍ଚର୍ଯ୍ୟ ! ପୁଣି କିଏ ଯେମିତି ସାହାଣୀବାବୁଙ୍କୁ ଦେଖି ଆତ୍ମରକ୍ଷା କରିବାକୁ ଛୁଟି ପଳେଇଯାଉଛି ! ସାହାଣୀବାବୁ ତା'ପଛେ ପଛେ ଗୋଡ଼େଇଲେ । ସେଇ ସରୁ ଗଳି । ତା'ପରେ ଯେ ଯେପରି କୁଆଡ଼େ ଅଦୃଶ୍ୟ ହୋଇଗଲା । ଆଶ୍ଚର୍ଯ୍ୟ !

ସାହାଣୀବାବୁ କପାଳରୁ ଝାଳ ପୋଛି ଗୋଟାଏ ମାର୍କୋଭିଚ୍ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ ।

ମିଡ୍‌ନାଇଟ୍ ହୋଟେଲ୍

-ସତର-

ମିସ୍ ଗୀତା ମହାପାତ୍ରଙ୍କ 'ହଲିଉଡ୍' ଯାତ୍ରା।

ହଲିଉଡ୍‌ର ବିଖ୍ୟାତ ଡାଇରେକ୍ଟର ମିଷ୍ଟର ଷ୍ଟିଭେନ୍‌ସନ୍ ଗତକାଲି ମିଡ୍‌ନାଇଟ୍ ହୋଟେଲରେ ଗୀତା ମହାପାତ୍ରଙ୍କ ସହିତ ଚୁକ୍ତି କରିଛନ୍ତି। ତାଙ୍କର ଆଗାମୀ ଏକ ପ୍ରସିଦ୍ଧ ଚିତ୍ରରେ ମିସ୍ ଇଣ୍ଡିଆ ଓରଫ ଗୀତା ମହାପାତ୍ର ନାୟିକା ହେବେ। ଚିତ୍ରଟି ଭାରତର ଗୋଟିଏ ସତ୍ୟ ଘଟଣା ଉପରେ ଲିଖିତ। ମିଷ୍ଟର ଷ୍ଟିଭେନସନ୍ ଭାରତକୁ ଆସିଥିଲେ ତାଙ୍କର ଆଗାମୀ ବହିଟିର ନାୟିକା ଅନୁସନ୍ଧାନରେ। ଗୀତା ମହାପାତ୍ରଙ୍କ ତାଙ୍କ ଆଗାମୀ ଚିତ୍ରର ନାୟିକା ରୂପେ ସେ ସ୍ଥିର କରିଛନ୍ତି। ଅବଶ୍ୟ ଚିତ୍ରଟିର ଗଳ୍ପ ଇତ୍ୟାଦି ଲେଖା ହୋଇଯାଇଛି, ତଥାପି ସୁଟିଂ ଆରମ୍ଭ ହେବାକୁ ଆହୁରି ଦୁଇ ମାସ ବାକି ଅଛି। ଗୀତା ମହାପାତ୍ର ଦୁଇ ମାସ ପରେ ହଲିଉଡ୍ ଯାତ୍ରା କରିବେ। ଚୁକ୍ତି ସ୍ୱାକ୍ଷରିତ ହୋଇଯାଇଛି।

ଏହା ଭାରତ ପକ୍ଷରେ ଅତ୍ୟନ୍ତ ଆନନ୍ଦ ଓ ଗୌରବର କଥା। ଆଜିଯାଏ କୌଣସି ଭାରତୀୟ ଚିତ୍ରାଭିନେତ୍ରୀ ବିଦେଶରେ ବିଶେଷତଃ 'ହଲିଉଡ୍'ର କୌଣସି ଚିତ୍ରର ନାୟିକା ହେବାର ସୌଭାଗ୍ୟ ଅର୍ଜନ କରିନଥିଲେ। ଆମେ ଗୀତା ମହାପାତ୍ରଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେସଙ୍ଗେ ତାଙ୍କର ସଫଳତା କାମନା କରୁଛୁ।

ସାହାଣୀବାବୁ ଟା' ଟେବୁଲରେ ଖବରକାଗଜରେ ଏହି ସମ୍ବାଦଟି ଉପରେ ଆଖି ବୁଲେଇ ନେଇ ସ୍ତବ୍ଧ ହୋଇଗଲେ। ଆଖିକୁ ବିଶ୍ୱାସ କରିପାରିଲେ ନାହିଁ। ସବୁ ଯେମିତି ଯାଦୁବିଦ୍ୟା ପରି ମନେହେଲା। କାଲି ରାତିର ଘଟଣା, ଆଜି କେଉଁଠି ତା'ର ଖିଅ ଖୋଜିବେ? ନା' ଆହୁରି ଜଟିଳ ହୋଇ ଉଠିଲା। ତା'ହେଲେ କାଲି ସେ ଅଧା ଅନ୍ଧାର ଅଧା ଆଲୁଅ ଭିତରେ ତାଲୁକଦାରଙ୍କ ଘରେ ଯେଉଁ କଳା ଛାୟାମୂର୍ତ୍ତିଟିକୁ ଭେଟିଥିଲେ, ଯାହାକୁ ଅନୁମାନ କରୁଥିଲେ ଗୀତା ମହାପାତ୍ର ହୋଇଥିବ ଅବା, ସେ ତା'ହେଲେ ଅନ୍ୟ ଜଣେ?

ମିଡ୍‌ନାଇଟ୍ ହୋଟେଲ୍

ଧେତ୍! ଯେତେସବୁ ଗୋଳମାଳିଆ ସମସ୍ୟା। ଘଟଣା- ଗୁଡ଼ାକ ଏପରି ବିକ୍ଷିପ୍ତ ଆଉ ଆକସ୍ମିକ ଭାବରେ ଘଟୁଛି ଯେ, କାହାରି ସହିତ କାହାରି ଯୋଗସୂତ୍ର ସ୍ଥାପନ କରିବା ପାଇଁ ମଝିରେ କୌଣସି ବାଟ ରହୁନାହିଁ।

ଚାକର ଖଣ୍ଡିଏ ଭିଜିଟିଂ କାର୍ଡ଼ ଆଣି ସାହାଣୀବାବୁଙ୍କ ହାତକୁ ବଢ଼ାଇଦେଲା।

ରାୟବାହାଦୂର ରାସବିହାରୀ ମଜୁମଦାର।

ସାହାଣୀବାବୁ କିଛି ଭାବି ପାରିଲେ ନାହିଁ। ହଠାତ୍ ରାୟବାହାଦୂରଙ୍କ ଆକସ୍ମିକ ଆବିର୍ଭାବ କାହିଁକି? ନିଜେ ସେ ଉଠିଯାଇ ସସମ୍ମାନେ ପାଛୋଟି ଆଣିଲେ।

ମୁଁ ଆଶା କରି ନଥିଲି।

ସେଦିନ ଆପଣ ଲୀଳା କଥା ମୋତେ ପଚାରି ପଚାରି ଫେରି ଆସିଲେ। ମନଟା ମୋଟେ ଭଲ ନଥିଲା। ଯେତେହେଲେ ସେ ମୋର ରକ୍ତ ତ! ଅବଶ୍ୟ ଅମାନିଆ ହୋଇ ସେ ବିଉଟି କମ୍ପିଟିସନରେ ଯୋଗ ଦେବାକୁ ଚାଲିଯାଇଥିଲା। ରାୟବାହାଦୁର ବଂଶର କଳଙ୍କ। ତଥାପି ଯୁଗ ବଦଳିଗଲାଣି। ଲୀଳା 'ମିସ୍ ଇଣ୍ଡିଆ' ହୋଇପାରିଥିଲେ ଶତମୁଖରେ ତା'ର ପ୍ରଶଂସା ଶୁଣା ଯାଇଥାଆନ୍ତା। ମୋର ଧାରଣା ବଦଳିଛି। ସେଦିନ ଆପଣଙ୍କୁ କହୁଥିଲି ସେ ଆତ୍ମହତ୍ୟା କରିଛି। ଏବେ ବୁଝୁଛି ତାକୁ ହତ୍ୟା କରାଯାଇଛି। ସେଇଥିପାଇଁ...

ରାୟବାହାଦୂର କଥା ଶେଷ କରିପାରିଲେ ନାହିଁ । ଆଖି ତାଙ୍କର ଛଳଛଳ ହୋଇଆସିଲା। ସାହାଣୀବାବୁ ବ୍ୟସ୍ତ ହୋଇପଡ଼ିଲେ।

ଆପଣ କିଛି ଭାବନ୍ତୁ ନାହିଁ। ଲୀଳା ଦେବୀ ଆଉ ଫେରିବେ ନାହିଁ । ମାତ୍ର ଏହା ସତ୍ୟ ଯେ, ତାଙ୍କ ହତ୍ୟାକାରୀ ଦିନେନାଦିନେ ଧରାପଡ଼ିବ।

କ'ଣ ଜାଣନ୍ତି ସାହାଣୀବାବୁ, ସେଇ ଥିଲା ରାୟବାହାଦୂର ବଂଶର ଏକମାତ୍ର ପ୍ରତୀକ। ମୁଁ କିନ୍ତୁ ଆଭିଜାତ୍ୟ ମୋହରେ ଲୀଳାକୁ ବହୁ ଦୂରକୁ ଠେଲି ଦେଇଥିଲି। ଆଧୁନିକ ଦୃଷ୍ଟିଭଙ୍ଗିଠାରୁ ବହୁ ପଛରେ ରହିଯାଇ ଲୀଳା ଆଚରଣକୁ ଘୃଣା କରୁଥିଲି। ଆଜି କିନ୍ତୁ ତାର ପରିଣାମ ଭୋଗୁଛି। ମୋର ଯେ ସେ କି ଯନ୍ତ୍ରଣା, ଆପଣ ଅନୁଭବ କରିପାରିବେ ନାହିଁ।

ସାହାଣୀବାବୁ ହଠାତ୍ କୌଣସି ଉତ୍ତର ଦେଇ ପାରିଲେ ନାହିଁ। ସତରେ ରାୟବାହାଦୂରଙ୍କ ଦୁଃଖ ସାହାଣୀବାବୁଙ୍କ ମନକୁ ତରଳାଇ ଦେଇଥିଲା।

ବର୍ତ୍ତମାନ ମୋର ପ୍ରତିଶୋଧର ଲିପ୍ସା ଜାଗିଛି। ଯାହାହେଉ ପଛେ ଆପଣ ଲୀଳାର ହତ୍ୟାକାରୀକୁ ଖୋଜି ବାହାର କରନ୍ତୁ। ମୁଁ ତାକୁ ଏପରି ଶାସ୍ତି ଦେବି, ଏପରି ଶାସ୍ତି ଦେବି ଯେ....

ରାୟବାହାଦୂରଙ୍କ ଆଖି ହଠାତ୍ ଗୋଟାଏ ଯାଗାରେ ଅଟକି ଗଲା। ଟେବୁଲ ଉପରେ ରଖା ହୋଇଥିବା 'ମେଡିକାଲ ଜର୍ଣ୍ଣାଲ୍'ଟାକୁ ଓଲଟାଉ ଓଲଟାଉ ସେହି ପେନ୍‌ସିଲ ଦାଗ ଦିଆ

ପୃଷ୍ଠାଟା ପାଖରେ ସେ ଅଟକିଗଲେ। ସେଠାରେ ତାଙ୍କର ଝିଅ ଲୀଳାର ନାଁ ଦେଖି ତାଙ୍କ ଆଖି ଆହୁରି ବିକଳ ହୋଇଉଠିଲା। ସେ ବିଷୟଟିକୁ ମନଯୋଗ ସହକାରେ ପାଠ କଲେ।

ଲୀଳା ମଜୁମ୍‌ଦାର ଓ ଶ୍ରୀପତି ଛୋଟରାୟଙ୍କ ପ୍ରତି ଯେଉଁ ବିଷ ପ୍ରୟୋଗ କରାହୋଇଛି, ତାହା ଏତେ ଉତ୍କଟ ଆଉ ଏତେ ଭୟାବହ ଯେ ଆଜିଯାଏ ମେଡିକାଲ ବିଭାଗରେ ମଧ୍ୟ ସେପରି ବିଷର ସନ୍ଧାନ ମିଳିନାହିଁ। ତେବେ ଏପରି ବିଷ ସମ୍ବନ୍ଧରେ ଲୋକମୁଖରୁ ନାନାକଥା ଶୁଣାଯାଏ। କେହି କେହି କହନ୍ତି,ଗୁଣି ଗାରେଡ଼ି ବଳରେ ସାଧକମାନେ ବିଷାକ୍ତ ଜନ୍ତୁମାନଙ୍କଠାରୁ ଏପରି ବିଷ ସଂଗ୍ରହ କରୁଥିଲେ। ଏବେ ମଧ୍ୟ ପାର୍ବତୀୟ ଅଞ୍ଚଳମାନଙ୍କରେ ଦଳେ ଦଳେ ଯାଯାବର ଜାତୀୟ ଲୋକ ଅଛନ୍ତି, ଯେଉଁମାନଙ୍କ ପାଖରେ ଏପରି ବିଷର ସନ୍ଧାନ ମିଳିଥାଏ। ସେମାନେ ଶତ୍ରୁପକ୍ଷୀୟମାନଙ୍କୁ ହତ୍ୟା କରିବା ପାଇଁ ଏହା ପ୍ରୟୋଗ କରିଥାଆନ୍ତି। ଏ ବିଷ କେବଳ ଦେହର କୌଣସି ଅଂଶକୁ ସ୍ପର୍ଶ କରି ପାରିଲେ ଯଥେଷ୍ଟ। ଲୀଳା ମଜୁମଦାରଙ୍କୁ ତନ୍ନ ତନ୍ନ କରି ପରୀକ୍ଷା କରାଯାଇ ତାଙ୍କ ଦେହର କୌଣସି ସ୍ଥାନରେ ସାମାନ୍ୟ କ୍ଷତଚିହ୍ନଟିଏ ମଧ୍ୟ ମିଳିନଥିଲା। କିନ୍ତୁ ଦେହରୁ ଉତ୍କଟ ବିଷ ପ୍ରତିକ୍ରିୟାର ସନ୍ଧାନ ମିଳିଥିଲା। ଠିକ୍ ସମାନ ଲକ୍ଷଣ ଦେଖା ଦେଇଥିଲା ଶ୍ରୀପତି ଛୋଟରାୟଙ୍କ ଶରୀରରେ...

ତେବେ ?

ରାୟବାହାଦୂର ହଠାତ୍ ପ୍ରଶ୍ନ କରି ସାହାଣୀବାବୁଙ୍କ ମୁହଁକୁ ଅନେଇଲେ।

ମୋର ଏ ସମ୍ବନ୍ଧରେ କିଛି ଧାରଣା ନାହିଁ। ଆପଣ ପ୍ରାଚୀନ ଲୋକ। ଏପରି ବିଷ ସମ୍ବନ୍ଧରେ କିଛି ଶୁଣିଛନ୍ତି ?

ରାୟବାହାଦୂର ମଉନ ହୋଇ କିଛି ସମୟ ବସି ରହିଲେ। ତାପରେ ଧୀରେଧୀରେ କହିଲେ-ଜଣେ କିନ୍ତୁ ଏ ସମ୍ବନ୍ଧରେ ହୁଏତ ଯଥେଷ୍ଟ କହି ପାରିଥାଆନ୍ତେ, ସେ କିନ୍ତୁ ନିଜେ ଏହି ବିଷପ୍ରକ୍ରିୟାରେ ନିହତ।

କିଏ ?

ଶ୍ରୀପତି ଛୋଟରାୟ।

ଆପଣ ତାଙ୍କୁ ଜାଣନ୍ତି ?

ବିଶେଷ ନୁହେଁ। ତେବେ ସେ ଏହିପରି ଗୋଟିଏ ଯାଯାବରୀ କନ୍ୟାକୁ ବିବାହ କରିଥିଲେ। ମୁଁ ଭାବୁଥିଲି ତା'ଠିରାରୁ ସେ ହୁଏତ ଏହିପରି ଉତ୍କଟ ବିଷ ସମ୍ବନ୍ଧରେ କିଛି ଶୁଣିଥିବେ, ମୁଁ ଶୁଣିଥିଲି ଶ୍ରୀପତି ଛୋଟରାୟଙ୍କର ଗୋଟିଏ କନ୍ୟା ଥିଲା। ଆପଣ ହୁଏତ ତାକୁ ପଚାରିଲେ କିଛି ଜାଣିପାରନ୍ତେ।

ସାହାଣୀବାବୁ ତନ୍ମୟ ହୋଇ ଯେପରି କ'ଣ ଭାବୁଥିଲେ। ରାୟବାହାଦୂର ତାଙ୍କ ଭାବନାରେ ବାଧାଦେଇ ପକେଟରୁ ଗୋଟିଏ ନୋଟ୍ ବଣ୍ଡଲ୍ ବାହାର କରି ଟେବଲ

ଉପରେ ଥୋଇ କହିଲେ- ଏତକ ରଖନ୍ତୁ। ଲୀଳା ତଦନ୍ତର ପ୍ରାରମ୍ଭିକ ଖର୍ଚ୍ଚ ସ୍ୱରୂପ। ଯଦି ଆହୁରି ଅଧିକ ଲାଗେ ମୁଁ ଅକୁଣ୍ଠିତ ଚିତ୍ତରେ ଆପଣଙ୍କୁ ସାହାଯ୍ୟ କରିବି। ମୁଁ କିନ୍ତୁ ଲୀଳାର ହତ୍ୟାକାରୀକୁ ଚାହେଁ।

ସାହାଣୀବାବୁ ନୋଟ୍ ବଣ୍ଡଲଟି ରାୟବାହାଦୂରଙ୍କ ହାତକୁ ବଢ଼ାଇ ଦେଇ କହିଲେ- ଟଙ୍କାର ପ୍ରୟୋଜନ ହେଲେ ମୁଁ ନିଶ୍ଚୟ ଯାଇ ଆପଣଙ୍କ ପାଖରେ ହାଜର ହେବି। କିନ୍ତୁ ବର୍ତ୍ତମାନ ନୁହେଁ।

ରାୟବାହାଦୂର ଗ୍ରହଣ କରୁନଥିଲେ। ସାହାଣୀବାବୁ ତାଙ୍କ ପକେଟରେ ଭରିଦେଇ କହିଲେ- ଆପଣ ନିଶ୍ଚିତ ହୁଅନ୍ତୁ। ମୁଁ ଏଥିପାଇଁ ସାଧ୍ୟାତୀତ ଚେଷ୍ଟା କରିବି।

ସାହାଣୀବାବୁ ଚିନ୍ତାସାଗରରେ ନିମଗ୍ନ ହୋଇଗଲେ। ରାୟବାହାଦୂର ଉଠୁଥିଲେ। ସାହାଣୀବାବୁଙ୍କୁ ନମସ୍କାର ଜଣାଇ ଧୀରେ ଧୀରେ ପଦାକୁ ବାହାରି ପଡ଼ିଲେ। ସାହାଣୀବାବୁଙ୍କର ପ୍ରତିନମସ୍କାର କରିବାକୁ ମଧ୍ୟ ଖିଆଲ ନଥିଲା।

ସାହାଣୀବାବୁ ଭାବୁଥିଲେ। ଆଜି ଶ୍ରୀପତି ଛୋଟରାୟ ବଞ୍ଚିଥିଲେ, ହୁଏତ ରାୟବାହାଦୂରଙ୍କ ମୁହଁରୁ ଶୁଣିବା ପରେ ପରେ ଶ୍ରୀପତି ଛୋଟରାୟଙ୍କ ଉପରେ ସନ୍ଦେହ ପୁଞ୍ଜୀଭୂତ ହୋଇ ଥାଆନ୍ତା। ସେ ମୃତ। କିନ୍ତୁ ତାଙ୍କ ଝିଅ ଛନ୍ଦା, ସେ ଯେ ଜୀବିତ। ତା' ଗତିବିଧି, ଚାଲିଚଳଣ କାହିଁ ଏ ପର୍ଯ୍ୟନ୍ତ ତ ସାହାଣୀବାବୁଙ୍କ ଦୃଷ୍ଟି ସେଆଡ଼େ ବଙ୍କେଇ ନ ଥିଲା ?

ଛନ୍ଦା, ସେ ଶ୍ରୀପତି ଛୋଟରାୟଙ୍କ କନ୍ୟା। ତା'ର ମା' ଯାଯାବରୀ। ମଣିଆ ସେ କଥା ସେଦିନ କହିଥିଲା। କିନ୍ତୁ ସାହାଣୀବାବୁ ସେଆଡ଼େ ଏତେଟା ଦୃଷ୍ଟି ଦେଇ ନଥିଲେ। ଆଜି ରାୟବାହାଦୂର ଆସି ହୁଏତ ସାହାଣୀ ବାବୁଙ୍କର ଉପକାର କରିଛନ୍ତି। 'ପାର୍ବତୀୟ ଅଞ୍ଚଳମାନଙ୍କରେ ଯାଯାବର ଜାତୀୟ ଦଳେ ଦଳେ ଲୋକ ଅଛନ୍ତି, ଯେଉଁମାନଙ୍କଠାରୁ ଏପରି ବିଷର ସନ୍ଧାନ ମିଳିଥାଏ।' ଛନ୍ଦା ଯାଯାବରୀ କନ୍ୟା।

ସାହାଣୀବାବୁ 'ମେଡିକାଲ ଜର୍ଣ୍ଣାଲ'ଟାକୁ ଆଉ ଥରେ ଦେଖିବା ପାଇଁ ହାତ ବଢ଼ାଇଲେ। ନାହିଁ। ରାୟବାହାଦୂର ହାତରେ ଧରିଥିଲେ। ବୋଧହୁଏ ନେଇ ଯାଇଛନ୍ତି। କିନ୍ତୁ ଡାକ୍ତର ତାଲୁକଦାର, ଗୀତା ମହାପାତ୍ର, ଛନ୍ଦା, ଏମାନେ ସମସ୍ତେ ମିଶି... ନା, ନା, ଛନ୍ଦା ନିଜେ କିପରି ନିଜର ବାପାକୁ ହତ୍ୟା କରିବ ? ଅସମ୍ଭବ ! ତଥାପି ଛନ୍ଦା ଯାଯାବରୀ କନ୍ୟା।

-ଅଠର-

ରାତି ବାରଟା ବାଜିଲା। ସାହାଣୀବାବୁଙ୍କ ଧୈର୍ଯ୍ୟବନ୍ଧ ଭାଙ୍ଗିବା ଉପରେ। ସେଇ ଯେ ନଅଟା ବେଳୁ ସେ ଛନ୍ଦାର ଶୟନକକ୍ଷରେ ଲୁଚି ବସିଛନ୍ତି, ଏ ପର୍ଯ୍ୟନ୍ତ ଆଉ ମୁକ୍ତ ପବନ ତାଙ୍କ ଦେହରେ ବାଜିନାହିଁ। ସେ ଲକ୍ଷ୍ୟ କରିଛନ୍ତି, ଛନ୍ଦା ଆଜି ଯେପରି ଅପେକ୍ଷାକୃତ ପୁଲକିତ ଅଛି। ବେଳେବେଳେ ଗୁଣୁ ଗୁଣୁ ହୋଇ ଗୀତ ଗାଉଛି। ବହି ଖଣ୍ଡେ ମେଲେଇ ପଢ଼ି ବସୁଛି। ଘଡ଼ିକି ଚାହୁଁଛି। ରେଡ଼ିଓ ବଜଉଚି। ପୁଣି ସିଡ଼ିପାଏ ଯାଇ କାହାକୁ ଚାହିଁ ଆସୁଚି।

ସାହାଣୀବାବୁ ବହୁ ଆଶା କରି ଲୁଚି ବସିଛନ୍ତି। ସବୁ ଘଟଣାକୁ ବିଶ୍ଳେଷଣ କରି ତାଙ୍କର ମନେ ହେଉଚି, ଯେପରି ଦୁଇଟିଯାକର ହତ୍ୟାରହସ୍ୟ ଏଇ ଘରଟିରେ ଲୁଚି ରହିଛି। କିନ୍ତୁ କାହିଁ? ଦୀର୍ଘ ତିନିଘଣ୍ଟା ଅତିବାହିତ ହୋଇଯାଇଥିଲେ ସୁଦ୍ଧା ଏ ପର୍ଯ୍ୟନ୍ତ କୌଣସି କ୍ଷୀଣ ଆଶାର ଶିଖାଟିଏ ସେ ଦେଖୁନାହାନ୍ତି।

କାନ୍ଥଘଡ଼ିଟା ଟିକ୍ ଟିକ୍ ହୋଇ ଚାଲିଚି। ପେଣ୍ଡୁଲମ୍‌ଟା ଯେପରି ଜିଭ ଲହଲହ କରୁଛି। ଛନ୍ଦା ଘରର ଇଲେକ୍‌ଟ୍ରିକ୍ ଲ୍ୟାମ୍ପଟା ଲିଭିଥିଲେ ମଧ୍ୟ ଛନ୍ଦା ଆରାମରେ ଘୁମେଇ ପାରୁନାହିଁ। ସେ ଯେପରି ପ୍ରତି ମୁହୂର୍ତ୍ତରେ କାହାର ଉପସ୍ଥିତି ପ୍ରତ୍ୟାଶା କରୁଛି। କେବଳ ସେତିକି ମାତ୍ର ସାହାଣୀ ବାବୁଙ୍କର ଆଶାଭରସା।

ଆହୁରି ଅଧଘଣ୍ଟା ବିତିଗଲା।

ସାହାଣୀବାବୁ ସେ ଘରେ କାହାର ଧୀର ପଦଧ୍ୱନି ଶୁଣିପାରିଲେ। ଛନ୍ଦା ଆଖିରେ ବୋଧହୁଏ ତନ୍ଦ୍ରା ଘାରି ଆସୁଥିଲା। ସେ ଯେପରି କାହାର ଧୀର ସ୍ୱର ଶୁଣିଲେ।

ଛନ୍ଦା।

ଛନ୍ଦା ଦୁଃସ୍ୱପ୍ନ ଦେଖି ଚମକି ପଡ଼ିଲା ପରି, ବିଛଣାରୁ ଉଠି ପଡ଼ି ଚିତ୍କାର କରି ଉଠିଲା- ମୋହନ !

ଧୀରେ, କାନ୍ଥବାଡ଼ର ମଧ୍ୟ କାନ ଅଛି।

ଏତେ ଡେରି ମୋହନ, ମୁଁ ଯେ ଆଉ ସହିପାରୁନାହିଁ।

ଉପାୟ ନ ଥିଲା ଛନ୍ଦା। ଚାରିଆଡ଼େ ସତର୍କ ପ୍ରହରୀ। କେତେଥର ଯେ ବ୍ୟର୍ଥ ହୋଇ ଫେରିଲିଣି. ତା'ର ହିସାବ ଦେଇପାରିବି ନାହିଁ।

ମୋ ଚିଠି ପାଇଥିଲ?

ହଁ।

ତମର ମତ କ'ଣ?

ମୋର କିନ୍ତୁ ସନ୍ଦେହ ହେଉଛି। ଯା ମୂଳରେ କୌଣସି ଦୁରଭିସନ୍ଧି ନାହିଁ ତ? ଏତେ ଝଡ଼ଝଞ୍ଜା ପରେ ଶେଷରେ ଯଦି ଚିରଦିନ ପାଇଁ ବିଚ୍ଛେଦ ହେବାକୁ ପଡ଼େ।

ନା ମୋହନ, ସେ କଥା କହ ନାହିଁ। ବେଳେବେଳେ ମୋର ମନ କ'ଣ ହୁଏ ଜାଣ ? ସବୁ କଥା ଖୋଲି ସାହାଣୀବାବୁଙ୍କୁ କହିଦେବି। ପୁରି ପ୍ରାଣଟା ଥରି ଉଠେ। କେବଳ ତମରି ପାଇଁ। ଆଚ୍ଛା ସତ କୁହ ତ, ତମେ କ'ଣ ପ୍ରକୃତରେ ହତ୍ୟା ଅପରାଧରେ ଅପରାଧୀ ?

ମୋର କିଛି ମନେନାହିଁ ଛନ୍ଦା। ମତେ ଯେତେବେଳେ ସର୍ଦ୍ଦାର ହୁକୁମ ଦେଲା, ଆଜି ରାତିରେ ତୁମକୁ କଲିକତା ଯାଇ ଦୁଇଦିନ ଭିତରେ କାର୍ଯ୍ୟ ହାସଲ କରି ଫେରିଆସିବାକୁ ପଡ଼ିବ, ମୁଁ ସେତେବେଳେ ତୀବ୍ର ପ୍ରତିବାଦ ଜଣେଇଲି। କହିଲି, ମୁଁ ପାରିବି ନାହିଁ, ନା, ମୋ ଦ୍ୱାରା ଏହା ମୋଟେ ସମ୍ଭବ ହେବନାହିଁ। ସର୍ଦ୍ଦାର ତୀକ୍ଷ୍ଣ ସ୍ୱରରେ କହିଲା, ତତେ ଅଲବତ୍ ଯିବାକୁ ହେବ। ମୁଁ ଉତ୍ତପ୍ତ କଣ୍ଠରେ ଜବାବ ଦେଲି, ନା, ନା, ନା। ସେ ଧଡ଼ାସ କରି ମୋ ଗାଲରେ ଗୋଟାଏ ଚାପୁଡ଼ା ବସେଇଲା। ମୋ ପରିସ୍ଥିତି କଥା ଭୁଲିଯାଇ ମୁଁ ସର୍ଦ୍ଦାରକୁ ମଧ୍ୟ ଆକ୍ରମଣ କଲି। ଆଉ ମୋର କିଛି ମନେନାହିଁ। ତା'ପରେ ଯେତେବେଳେ ଜ୍ଞାନ ହେଲା ଦେଖିଲି ମୋରି ଠାରୁ ଅଳ୍ପ ଦୂରେ ସର୍ଦ୍ଦାରର ରକ୍ତାକ୍ତ ଦେହଟା ପଡ଼ିଚି। ତା' ତଳି ପେଟରେ ଗୋଟାଏ ଛୁରା ଭୁକିଛି। ମୁଁ ଆର୍ତ୍ତ ଚିତ୍କାର କରି ଉଠିଲି। ସେତିକିବେଳେ ବାହାରୁ କବାଟରେ କାହାର କରାଘାତ ଶୁଣିଲି। ପାଟି ଶୁଣିଲି, ପୋଲିସ୍, ପୋଲିସ୍। ମୁଁ କିଛି ଭାବିଚିନ୍ତି ସ୍ଥିର କରିବା ପୂର୍ବରୁ ଗୋଟିଏ କଳାପୋଷାକପରିହିତ ଲୋକ ଆସି ମୋ ହାତଧରି ମୋତେ ଗୋଟାଏ ଗୁପ୍ତ ଦ୍ୱାର ବାଟେ ପଦାକୁ ନେଇଗଲା। ଗୋଟାଏ ଅନ୍ଧାରୁଆ ମଟରଗାଡ଼ି ଭିତରେ ବସେଇ, ଗାଡ଼ି ଚଳାଉ ଚଳାଉ କହିଲା-ମୋହନ, ତୁମେ ଖୁବ୍ ଅନ୍ୟାୟ କରିଚ। ଅନ୍ତତଃ ଲୋକଟାକୁ ହତ୍ୟା କରିବା ତୁମର ଉଚିତ୍ ନ ଥିଲା। ତଥାପି ମୁଁ ତୁମର ବନ୍ଧୁ, ମୋ ସହିତ ଯେଉଁଦିନ ଶତ୍ରୁତା ଆରମ୍ଭ କରିବ ସେଦିନ ମୁଁ ତୁମର ଏହି ହତ୍ୟାରହସ୍ୟ ପୋଲିସ୍ ଆଗରେ କହିଦେଇ, ଚିରଦିନ ପାଇଁ ତମ ଆଶା ଆକାଂକ୍ଷାର ପଥରୁଦ୍ଧ କରିଦେବି। ସେଇଦିନଠାରୁ ମୁଁ ଲୋକଟାର ହାତମୁଠାରେ ରହିଲି। ସେ ମୋତେ ତା' ଇଚ୍ଛା ଅନୁସାରେ, ନାନା ଧମକ ଦେଖାଇ, ପ୍ରଲୋଭନ ଦେଖାଇ ନିଜର କାମ ହାସଲ କରି ଚାଲିଲା। ଶେଷରେ ତୋ ଉପରେ...

ଥାଉ ମୋହନ ଥାଉ। ଆଉ ମୁଁ ଶୁଣିପାରିବି ନାହିଁ। କିନ୍ତୁ ଏଭଳି ନରକ ଯନ୍ତ୍ରଣା ଆଉ କେତେଦିନ ଭୋଗିବା ? ଆମର ଯେଉଁ ସର୍ବନାଶ ହେବାର ହୋଇଯାଇଛି। ତାହାଠାରୁ ଆଉ ବେଶି କ'ଣ ହୋଇପାରିବ ବା ସେମାନେ କରିପାରିବେ ? ମୋ ପ୍ରସ୍ତାବରେ ରାଜି ହୁଅ ମୋହନ।

ମୁଁ କ'ଣ ମନା କରୁଛି ଛନ୍ଦା ? କିନ୍ତୁ ସେହି ଲୋକଟା...

କିଏ ସେହି ଲୋକଟା ? ଆଜିଯାଏ ତମେ ତାକୁ ଚିହ୍ନି ପାରିନ ନାହିଁ।

ନା, ଛନ୍ଦା, ଚିହ୍ନିବାର ସୌଭାଗ୍ୟ ଆଜିଯାଏ ହେଲାନାହିଁ, ଖାଲି ସେହି କଳାଛାୟା, ସିଗାରେଟ୍ ପାଇପ୍, ଧୂଆଁ। ଯେମିତି ସବୁ ଧୂଆଁଳିଆ ହୋଇ ରହିଯାଉଚି, ଜୀବନଟା ହୁଏତ ସେମିତି ଧୂଆଁଳିଆ ହୋଇ ରହିଯିବ।

ମିଡ୍‌ନାଇଟ୍ ହୋଟେଲ୍

ତମେ କ'ଣ କହୁଛ ମୋହନ, ଏଡ଼େ ଦୁର୍ବଳ ତମେ ? କେବେ ଏପରି ମନର ବଳ ହରେଇଲ ?

ତୁ ସେକଥା ବୁଝିପାରିବୁ ନାହିଁ। ତୋ' ପ୍ରସ୍ତାବରେ ରାଜି ହୋଇ, ମୁଁ ତୋତେ ଚିରଦିନ ପାଇଁ ହରେଇ...

ମୋହନ ହଠାତ୍ ଅଟକିଗଲା। ସେ ଯେପରି କାହାର ଉପସ୍ଥିତି ଅନୁଭବ କରି ଶିହରି ଉଠିଲା।

ମୁଁ ଯାଉଛି ଛନ୍ଦା ସମୟ ହେଇଗଲାଣି, ଆଉ ଅପେକ୍ଷା କରି ହେବନାହିଁ।

ସଙ୍ଗେସଙ୍ଗେ ମୋହନ ଉଠିଲା। ଛନ୍ଦା ଆଉ ପଦେ କଥା କହିବା ଆଗରୁ ସେ ଖଣ୍ଡେ ଦୂର ଆଗେଇ ଯାଇଥିଲା।

ଯେପରି ସେ ଯନ୍ତ୍ରଚାଳିତ ପରି କାହାର ଆଜ୍ଞା ପାଳନ କରୁଛି।

ସାହାଣୀବାବୁ ଅନୁଭବ କଲେ, କିନ୍ତୁ ଅନୁସରଣ କରିପାରିଲେ ନାହିଁ। ଏପରି ଅବସ୍ଥାରେ ସେ ବସିଥିଲେ ଯେ ପଦାକୁ ବାହାରିବାର ଉପାୟ ନଥିଲା। ତାହେଲେ ତାଙ୍କ ଉପସ୍ଥିତି ଛନ୍ଦା ଜାଣିପାରିବ।

ସାହାଣୀବାବୁ ସେଉଠୁ ତଳକୁ ଚାହିଁଲେ। ମୋହନ ଆଗେ ଆଗେ ଗୋଟିଏ ଅସ୍ପଷ୍ଟ ଛାୟା ଆଗେଇ ଚାଲିଚି। କିଏ ସେହି ଛାୟାମୂର୍ତ୍ତି ? ମନେ ହେଉଚି, ଯେପରି ଡାକ୍ତର ତାଲୁକଦାରଙ୍କ ଘରେ ସେଦିନ ରାତିରେ ଏହାକୁ ଭେଟିଥିଲେ।

କିନ୍ତୁ ମୋହନ, କିଏ ସେ ? କେଉଁଠି ରୁହେ ? କାହା ନିର୍ଦ୍ଦେଶରେ ପରିଚାଳିତ ହୁଏ ? ବମ୍ବେର କେଉଁଠି କାହାକୁ ସେ ହତ୍ୟା କରିଛି ? ଏ ହତ୍ୟାରହସ୍ୟ ସହିତ ମୋହନ ଜଡ଼ିତ ନୁହେଁ ତ ?

ସାହାଣୀବାବୁ କେବଳ ଭାବୁଥିଲେ। ତଳ ମହଲାରେ ଫୋନ୍‌ଟା ବାଜି ଉଠିଲା ଏତେ ରାତିରେ ?

ଛନ୍ଦା ଧୀରେଧୀରେ ଓହ୍ଲେଇଗଲା ତଳକୁ। ସାହାଣୀବାବୁ ସୁବିଧା ପାଇଲେ ଛନ୍ଦା ରୁମ୍‌ରୁ ବାହାରିଯିବା ପାଇଁ।

ହ୍ୟାଲୋ ? ହଁ, ହଁ, ଆସିଥିଲେ। ଆପଣଙ୍କ ସହଯୋଗ ମୋତେ ନୂଆ ଜୀବନ ଦେଇଛି। ମୁଁ ଜୀବନରେ ଆପଣଙ୍କୁ ଭୁଲି ପାରିବି ନାହିଁ। କିନ୍ତୁ ସେ ମୋ ପ୍ରସ୍ତାବରେ ରାଜି ହେଉନାହାନ୍ତି। କ'ଣ କରିବି ? ହଁ, ହଁ। ବୁଝିଲି ଯେ, କିନ୍ତୁ ଉପାୟ ନାହିଁ। ସେ ଯାହା ଡରରେ ଆଗେଇବାକୁ ଭରସା କରିପାରୁନାହାନ୍ତି ତାକୁ ଆପଣ ଚିହ୍ନନ୍ତି ? କିନ୍ତୁ ମୁଁ କ'ଣ କରିବି କିଛି ଭାବି ପାରୁନାହିଁ। କ'ଣ କହିଲେ ? ଆପଣ ତାକୁ ଚିହ୍ନନ୍ତି ? ମୋତେ ତା' ନାଁ କହିଦେବେ ? ତା'ହେଲେ ତ କଥା ନାହିଁ। ତା'ର ସବୁ ଅପରାଧ କାହାଣୀ ମୁଁ ଶୁଣିବାକୁ ଚାହେଁ। ଏଁ, ସର୍ତ୍ତ, ଉଇଲ ? ମୁଁ ତ କିଛି ଜାଣିନାହିଁ।

ମହେଶ୍ୱର ବାବୁଙ୍କ ପାଖରେ ଅଛି? କିନ୍ତୁ ଆପଣଙ୍କର ଲାଭ? ଖାଲି ଦେଖିବେ? ମୁଁ କିନ୍ତୁ କିଛି ଜାଣିନାହିଁ। କିନ୍ତୁ ଆପଣ ଯଦି ମୋର ସେତିକି କରିପାରନ୍ତେ, ମୁଁ ବଦଳରେ ଖାଲି ଉଇଲ୍ ଦେଖେଇବା କଥା ନୁହେଁ, ଚାହିଁଲେ ଦେଇ ମଧ୍ୟ ଦିଅନ୍ତି। ହଁ, ହଁ ମୁଁ କଥା ଦେଉଛି। ନମସ୍କାର।

ଛନ୍ଦା ଟେଲିଫୋନ୍ ରିସିଭରଟା ଯଥା ସ୍ଥାନରେ ରଖିଦେଇ ହଠାତ୍ ବତି ସୁଇଚ୍‌ଟା ଟିପିଦେଲା। ସାହାଣୀବାବୁ ଆଶା କରି ନଥିଲେ। ତଥାପି ସେ ଝଟ୍‌କିନା ଗୋଟାଏ ଆଲମାରୀ କଡ଼ରେ ଲୁଚିଗଲେ। ଛନ୍ଦା ସେଇଠି ଗୋଟାଏ ସୋଫା ଉପରେ ବସିପଡ଼ିଲା। ଅଳ୍ପ ସମୟ ମୁଣ୍ଡରେ ହାତ ଦେଇ ଅନାବନା କେତେ କ'ଣ ଭାବି ଚାଲିଲା, ତା ପରେ ଛନ୍ଦା ମଣିଆକୁ ଡାକିଲା। ମଣିଆ ନିଦ ମଳ ମଳ ଆଖିରେ ଆସି ଠିଆ ହେଲା।

ଆଚ୍ଛା ମଣି, ତୁ ଜାଣିଚୁ ବାପା କୌଣସି ଉଇଲପତ୍ର କାହା ନାଁରେ କିଛି କରିଛନ୍ତି?

ନା, ମୋର ତ କିଛି ମନେ ପଡୁନାହିଁ।

ଆଚ୍ଛା ମଣି, ଆମ ଆଟର୍ଣ୍ଣି ମହେଶ୍ୱର ବାବୁଙ୍କୁ ଚିହ୍ନିଚୁ?

ହଁ। କଣ ହେଲା?

ତାଙ୍କ ପାଖରେ ବାପା କି କାଗଜପତ୍ର ଦେଇଛନ୍ତି?

ନା, ମୁଁ କିଛି ଜାଣିନାହିଁ। କିନ୍ତୁ ଗୋଟାଏ କଥା ମୁଁ ଥରେ ବାବୁଙ୍କ ମୁହଁରୁ ଶୁଣିଥିଲି।

କ'ଣ?

ଏଇ ଆପଣଙ୍କ ଗତ ଜନ୍ମଦିନ ରାତିରେ। କେତେ ଭଦ୍ରଲୋକ ଆସିଥିଲେ। ମହେଶ୍ୱରବାବୁ ଥିଲେ, ରାୟବାହାଦୂର ଥିଲେ, ଡାକ୍ତରବାବୁ, ନନ୍ଦବାବୁ ଆହୁରି କେତେ ବାବୁମାନେ ଥିଲେ। ଖିଆପିଆ ଭିତରେ କ'ଣ କଥା ପଡୁ ପଡୁ ଡାକ୍ତରବାବୁ କହିଲେ, ଆଚ୍ଛା ଶ୍ରୀପତି ବାବୁ, ଆପଣଙ୍କର ଏହି ଅକଳନ ସମ୍ପତ୍ତିର କୌଣସି ବ୍ୟବସ୍ଥା କରୁନାହାନ୍ତି, ଧରନ୍ତୁ ହଠାତ୍ ଆପଣ ଦିନେ ହାର୍ଟଫେଲ୍ କଲେ, ତା'ପରେ?

ସେଦିନ ବାବୁ ଖାଲି ହସିଲେ, ଆଉ କହିଲେ ସେସବୁ କାମ ବଢ଼ିଛି ଡାକ୍ତରବାବୁ। ମୁଁ ହଠାତ୍ ମରିଗଲେ ବି ମହେଶ୍ୱର ବାବୁ ବଞ୍ଚିଥିବେ, ମୋ ଉଇଲପତ୍ର ତାଙ୍କ ପାଖରେ ନିରାପଦରେ ଅଛି।

କାହିଁ, ତୁ ତ ମତେ ଏ କଥା କେବେ କହି ନ ଥିଲୁ।

ମୋର କ'ଣ ମନେଥିଲା ଦେଇ! କେତେ କଥା ଏଇ ଅଙ୍ଗେ ନିଭେଇଚି, ସବୁ ଯଦି ମନେରଖି ଥାଆନ୍ତି, ଆଜିଯାକେ ବଞ୍ଚି ପାରନ୍ତି କେମିତି!

ହଉ ତୁ ଯା, କାଲି ଟିକେ ମହେଶ୍ୱର ବାବୁଙ୍କ ପାଖକୁ ଯିବା। ତୁ ମୋ ସଙ୍ଗରେ ଯିବୁ।

ମଣିଆ ଚାଲିଯାଉଥିଲା, ଛନ୍ଦା କହିଲା, ବତିଟା ନିଭେଇ ଦେଇ ଯା ମଣି, ଆଲୁଅ ମୋତେ ଆଉ ମୋଟେ ଭଲ ଲାଗୁନାହିଁ।

ମିଡ୍‌ନାଇଟ୍ ହୋଟେଲ୍

-ଉଣେଇଶ-

''ଡାକ୍ତର ପଚାରିଲେ, ହଠାତ୍ ଯଦି ଆପଣଙ୍କର ହାର୍ଟଫେଲ ହୁଏ ?''

କେଉଁ ଡାକ୍ତର ? ଖୁବ୍ ଜୋର୍‌ରେ ସାହାଣୀବାବୁ ଗାଡ଼ିର ବ୍ରେକ୍‌ଟାକୁ ଚାପିଧରି ଆକ୍‌ସିଡେଣ୍ଟରୁ ବଞ୍ଚିଗଲେ ।

ଡାକ୍ତର ତାଲୁକଦାର ମଧ୍ୟ ନିଜ ଗାଡ଼ିକୁ ବଞ୍ଚେଇଲେ ।

ମୁଁ ଖୁବ୍ ଅନ୍ୟମନସ୍କ ଥିଲି ।

ମୁଁ ମଧ୍ୟ ଗୋଟାଏ ସିରିଅସ ରୋଗୀର ଲକ୍ଷଣ ଯାହା ଦେଖି ଆସିଲି ମୋ ଏତେଦିନର ଡାକ୍ତରୀ ଜୀବନରେ ସେପରି ରୋଗ କେବେ ଦେଖିନଥିଲି ।

ମୁଁ ମଧ୍ୟ !

ଆପଣ ?

ହଁ, ଦୀର୍ଘ ଏତେ ବର୍ଷର ଗୁଇନ୍ଦା ଜୀବନଯାତ୍ରା ଭିତରେ ଏପରି ଅପରାଧୀ କେବେ ମୋର ଦୃଷ୍ଟିଗୋଚର ହୋଇନଥିଲା, ଯାହା ଆଜି ଶୁଣିଲି ।

ଦୁଇଜଣଙ୍କ ଗାଡ଼ି ଦୁଇଆଡ଼କୁ ଚାଲିଗଲା ।

ମିଡ୍‌ନାଇଟ୍ ହୋଟେଲ୍

-କୋଡ଼ିଏ-

ବାରଟି ଛୋଟଛୋଟ କାଚ ଶିଶି। ତା ଭିତରେ ଅଳ୍ପ ଅଳ୍ପ ତରଳ ପଦାର୍ଥ, ସବୁ ଗୁଡ଼ିକର ରଙ୍ଗର ପ୍ରାୟ ସାମଞ୍ଜସ୍ୟ ଅଛି। ସବୁ ଶିଶୁଗୁଡ଼ିକ ଠିପି ଉପରେ ଲେଖାଅଛି କେଉଁ ଅଞ୍ଚଳରୁ ତାହା ସଂଗୃହୀତ। ଏଗାରଟି ଶିଶି ପରେ ବାର ନମ୍ବର ଶିଶିଟି ଖାଲି। ତହିଁରେ କୌଣସି ତରଳ ପଦାର୍ଥ ନାହିଁ, କିମ୍ବା ଠିପି ଉପରେ କିଛି ଲେଖାନାହିଁ।

ସାହାଣୀବାବୁ ଘରଟିର ଅନ୍ୟାନ୍ୟ ଆଡ଼େ ଆଖି ବୁଲାଇଲେ। କେବଳ ଶିଶି ଆଉ ଔଷଧ। କିନ୍ତୁ ଏହି ''ବିଷ ପରୀକ୍ଷା ବିଭାଗ'' ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ଡାକ୍ତର ତାଲୁକଦାର ହୁଏତ ବିଭିନ୍ନ ଅଞ୍ଚଳରୁ ବିଷ ସଂଗ୍ରହ କରି ପରୀକ୍ଷା କରୁଛନ୍ତି। ସାହାଣୀବାବୁ ଆଉ ଥରେ ସବୁ ଶିଶିଗୁଡ଼ିକ ଉପରେ ଆଖି ବୁଲାଇ ନେଲେ। ସବୁ ଶିଶିଗୁଡ଼ିକ ଉପରେ ଗୋଟିଏ ଗୋଟିଏ ପାର୍ବତୀୟ ଅଞ୍ଚଳର ନାଁ ଲେଖା ହୋଇଛି। କିନ୍ତୁ ବାର ନମ୍ବର ଶିଶିଟି ଖାଲି କାହିଁକି ?

ସେ କ'ଣ ଗୋଟାଏ ମାଡ଼ି ପକେଇ ତଳକୁ ଚାହିଁଲେ। ଗୋଟାଏ ମୂଷା, ଗୋଟାଏ ଶଶା ଏବଂ ଗୋଟାଏ ବିରାଡ଼ି ଚଟାଣ ଉପରେ ପଡ଼ିଛନ୍ତି। ସବୁ ଗୁଡ଼ିକ ମୃତ। ହୁଏତ ଅଳ୍ପ ସମୟ ଆଗରୁ ଡାକ୍ତର ତାଲୁକଦାର ତାଙ୍କ ପରୀକ୍ଷା ଏହି ନିରୀହ ଜୀବଗୁଡ଼ିକ ଉପରେ ଆରମ୍ଭ କରିଥିଲେ।

କିନ୍ତୁ ବାର ନମ୍ବର ଶିଶି ? ତା'ହେଲେ ଏଇଟି କ'ଣ ଖାଲି ହୋଇଚି ଲୀଳା ମଜୁମଦାର ଆଉ ଶ୍ରୀପତି ଛୋଟରାୟଙ୍କ ପାଇଁ ? କଣ ଗୋଟାଏ ଖଡ୍ ଖଡ୍ ଶବ୍ଦ ଶୁଣି ସାହାଣୀବାବୁ ଚମକି ପଡ଼ିଲେ। ଭଲକରି ଚାହିଁ ଦେଖିଲେ, ସାମନା ଟେବୁଲ୍ ତଳେ କ'ଣ ଗୋଟାଏ ଚକ୍‌ଚକ୍ ଦିଶୁଛି। ନଇଁପଡ଼ି ଅନେଇଲେ। ଗୋଟାଏ କଳା ବିରାଡ଼ି, ମୃତ୍ୟୁ ଯନ୍ତଣାରେ ଛଟପଟ ହେଉଛି। ଉଠିଲା ବେଳକୁ ଦେଖିଲେ, ଟେବଲ ଉପରେ ଗୋଟାଏ ଖାତା। ପୃଷ୍ଠାଟିରେ ଅଳ୍ପ କେଇଧାଡ଼ି ଲେଖା ହୋଇଛି।

''୭ ନମ୍ବର। ୬ ଘଣ୍ଟା ପରେ। କେବଳ ଘାରିବାକୁ ଆରମ୍ଭ କରିଚି। ମନୁଷ୍ୟ ପକ୍ଷରେ... ଦେଖାଯାଉ। ୬ ନମ୍ବର ଠାରୁ ବିଶେଷ ମାରାତ୍ମକ ନୁହେଁ। ୧=୫୦। ୨=୭୫। ୩=୨୫। ୪=୪୫। ୫=୨୦। ୬=୨୭। ୭=

ଆଉ ତେଣିକି କିଛି ନାହିଁ। ସାହାଣୀବାବୁ ଆଉ ଟିକେ ଆଗେଇଲେ। ଗୋଟାଏ କାଚବାଡ଼ ସେ ପାଖରେ ଗୋଖର ସାପଟିଏ ଜିଭ ଲହ ଲହ କରୁଛି। ଆହୁରି କେତେ ଜାତିର ସାପ କାଚବାଡ଼ ସେପାଖରେ ଖେଳୁଛନ୍ତି। ସାହାଣୀବାବୁଙ୍କ ମୁଣ୍ଡ ଗୋଳମାଳ ହୋଇଗଲା।

ଅଦ୍ଭୁତ ଲୋକ ତ ଏଇ ଡାକ୍ତର ତାଲୁକଦାର ! ଅଣ୍ଡର ଗ୍ରାଉଣ୍ଡ ଭିତରେ ଏପରି ଗୋଟିଏ ପରୀକ୍ଷାଗାର ନିର୍ମାଣର ଅର୍ଥ ନିଶ୍ଚୟ ଲୋକଚକ୍ଷୁର ଅନ୍ତରାଳକୁ ଚାଲିଆସିବା ଛଡ଼ା ଆଉ କ'ଣ ହୋଇପାରେ ? କିନ୍ତୁ ଏହା କାହିଁକି ?

ମିଡ୍‌ନାଇଟ୍ ହୋଟେଲ୍

ହଠାତ୍ ତାଙ୍କ କାନରେ ଏକ ନାରୀକଣ୍ଠର ସ୍ୱର ବାଜିଲା। ଯେପରି ଦୂରରୁ କେଉଁଠୁ ଭାସି ଆସୁଛି। ପୁଣି ବନ୍ଦ ହୋଇଗଲା, ଆଉ କିଛି ଶୁଭିଲା ନାହିଁ। ସାହାଣୀବାବୁ ସବୁ ଆଡ଼କୁ ଅନେଇ ଆଉ କୌଣସି ଆଡ଼େ ଯିବାର ବାଟ ନ ପାଇ ଫେରି ଆସୁଥିଲେ। ଦେଖିଲେ ଗୋଟାଏ ସାନ ଦୁଆର। ପେଲିଦେଲେ, ଖୋଲିଗଲା।

ଗୋଟିଏ ଛୋଟ ରୁମ୍। କେତୋଟି ବହି ଆଲମାରୀ। ବେଶ୍ ପରିଷ୍କାର ପରିଚ୍ଛନ୍ନ। ଗୋଟିଏ ଛୋଟ ଟେବୁଲ, କେତେକ କାଗଜପତ୍ର। ଟେବୁଲ ଉପରେ ଗୋଟିଏ ଟାଇପ୍‌କରା କାଗଜ ରଖାଯାଇଥିଲା। ସାହାଣୀବାବୁ ସେଇଟାକୁ ପଢ଼ିଲେ। ଯାହା ମନେହେଲା, ସେଇଟା କୌଣସି ଗୋଟାଏ ଉଇଲର ନକଲ। ସାରମର୍ମ ହେଉଛି... ମୋର ସମସ୍ତ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ ମୋର କନ୍ୟା....ସେ ଯଦି ନିଜ ଇଚ୍ଛାରେ ବିବାହ କରେ ଏବଂ ସେ ବିବାହ ଯଦି କୋର୍ଟ ମାଜିଷ୍ଟ୍ରେଟ୍‌ଙ୍କ ସମ୍ମୁଖରେ ଦୁଇଜଣଙ୍କ ସମ୍ମତିରେ ହୋଇଥାଏ, ତା'ହେଲେ ମୋ କନ୍ୟାର ଯଦି କୌଣସି କାରଣରୁ ମୃତ୍ୟୁ ହୁଏ ତେବେ ତା'ର ସ୍ୱାମୀ ସେ ସମ୍ପତ୍ତିର ଉତ୍ତରାଧିକାରୀ ହୋଇପାରିବ।

ଭାରି ଅଦ୍ଭୁତ ତ ! ସାହାଣୀବାବୁ ମନକୁମନ ଭାବିଲେ। କିନ୍ତୁ ଆହୁରି ଅଦ୍ଭୁତ ଡାକ୍ତର ତାଲୁକଦାର। ଏଇଟା ତା'ହେଲେ କ'ଣ ଶ୍ରୀପତି ଛୋଟରାୟ ଉଇଲର କପି ! ହୁଏତ ଅନ୍ୟ କାଳେ କେହି ଜାଣିଯିବା ଭୟରେ କାହାରି ନାଁ ଏହା ଭିତରେ ଡାକ୍ତର ତାଲୁକଦାର ରଖିନାହାନ୍ତି। ଆଚ୍ଛା, ଦେଖାଯାଉ।

ଏଣୁ ତେଣୁ ଖାତାପତ୍ର ଦି' ଚାରିଖଣ୍ଡ ଘଣ୍ଟାଘେଣ୍ଟା କରି ସାହାଣୀବାବୁ ଆଉ କିଛି ପାଇଲେ ନାହିଁ। ସେଠାରୁ ଉଠି ଧୀରେ କବାଟଟି ବନ୍ଦ କଲେ। ପ୍ରାୟ ଅଧଘଣ୍ଟା ବିତିଗଲାଣି। କାଳେ ଡାକ୍ତର ତାଲୁକଦାର ତାଙ୍କର ଏହି ସୁରକ୍ଷିତ ଶୀତଳ ମୃତ୍ୟୁନଗରୀକୁ ପଶି ଆସିବେ, ସେଥିପାଇଁ ସେ ଧୀରେଧୀରେ ପଦାକୁ ବାହାରି ଆସିଲେ। ହୁଏତ ତାଙ୍କର ଆଉ ଅନୁସନ୍ଧାନ କରିବାକୁ କିଛି ନଥିଲା।

ସେଠାରୁ ସେ ସିଧା ବାହାରିଲେ ଆଟର୍ଣ୍ଣି ମହେଶ୍ୱର ବାବୁଙ୍କ ଘରକୁ। ତାଙ୍କ ପାଖରେ ଶ୍ରୀପତି ବାବୁ ଯଦି କୌଣସି ଉଇଲ ରଖିଯାଇ ଥାଆନ୍ତି। କାରଣ କାଲିଠୁଁ ସେ ଟେଲିଫୋନ୍‌ରେ ଉଇଲ୍ କଥା ଶୁଣିବାପରଠାରୁ ମହେଶ ବାବୁଙ୍କ ପାଖକୁ ଯିବେ ଯିବେ ହୋଇ ଯାଇ ପାରିନାହାନ୍ତି। ତା ଛଡ଼ା ଆଜି ଡାକ୍ତର ତାଲୁକଦାରଙ୍କ ଉଇଲ ସହିତ ଯଦି ଶ୍ରୀପତିବାବୁଙ୍କ ଉଇଲ ମିଳେ, ତା'ହେଲେ...

କିନ୍ତୁ ଦୁର୍ଯୋଗ। ମହେଶ୍ୱରବାବୁ ଘଣ୍ଟାକ ପୂର୍ବରୁ କ'ଣ ଗୋଟାଏ ବିଶେଷ କାର୍ଯ୍ୟରେ ପାଟନା ବାହାରିଗଲେ। ସାହାଣୀ ବାବୁ ବ୍ୟର୍ଥ ହୋଇ ଫେରିଲେ।

ଛନ୍ଦା ଘର କବାଟ ମୁକୁଳେଇ ଭିତରକୁ ପଶିଲେ। ଡାକ୍ତର ତାଲୁକଦାର ସେଠାରେ ବସିଛନ୍ତି। ମଣିଆ ତାଙ୍କ କାନ ପାଖରେ କ'ଣ ଫୁସ୍ ଫୁସ୍ କରି କହୁଚି। ସାହାଣୀ ବାବୁ ହଠାତ୍ ପଶିଯିବା କ୍ଷଣି ମଣିଆ ଟିକିଏ ଚଞ୍ଚଳ ହୋଇପଡ଼ିଲା। ସାହାଣୀବାବୁ ଲକ୍ଷ୍ୟ କଲେ। ଡାକ୍ତର ତାଲୁକଦାରଙ୍କ ନମସ୍କାରର ପ୍ରତିନମସ୍କାର ଜଣାଇ ମଣିଆକୁ ପଚାରିଲେ-କିରେ, ଦେଈ କାହାନ୍ତି ?

ସେ କୁଆଡ଼େ ଯାଇଛନ୍ତି ଆଜ୍ଞା।

କୁଆଡ଼େ ?

କହି ପାରିବି ନାହିଁ।

ଡାକ୍ତର ତାଲୁକଦାର ଉଠୁଥିଲେ। ସାହାଣୀବାବୁ କହିଲେ, ବସନ୍ତୁ, ବସନ୍ତୁ, ମୁଁ ଚାଲିଯାଉଛି।

ନା, ମୋର ମଧ୍ୟ କାମ ଅଛି। ଛନ୍ଦା ଦେବୀଙ୍କୁ ଦେଖିବାକୁ ଆସିଥିଲି। ସେ ତ ନାହାନ୍ତି। ତା'ପରେ, ଆଉ ସବୁ ଖବର କ'ଣ ?

ମନ୍ଦ ନୁହେଁ, ଧୀରେ ଧୀରେ ପ୍ରୋଗ୍ରେସ କରୁଛି।

ଡାକ୍ତର ତାଲୁକଦାର ମଣିଆ ଆଡ଼େ ଅନେଇ କହିଲେ, ଦେଈ ଆସିଲେ କହିବୁ ମୁଁ ଆସିଥିଲି। ସେଇ ଔଷଧ ଖୁଆଉଥିବୁ। ସମ୍ଭବ ହେଲେ ଘଣ୍ଟେ ଦି'ଘଣ୍ଟା ଛାଡ଼ି ଆଉ ଥରେ ଆସିବି।

ତାଲୁକଦାର ଚାଲିଗଲେ।

ସାହାଣୀବାବୁ ମଣିଆକୁ ଡାକି ପଚାରିଲେ, ଡାକ୍ତର ତାଲୁକଦାରଙ୍କ ଏ ଘର ସହିତ କେତେ ଦିନର ସମ୍ବନ୍ଧ ?

ସେ ବହୁତ ଦିନର ଆଜ୍ଞା !

ହୁଁ।

ଡାକ୍ତର ଲୋକ କିମିତିକା ?

ଖୁବ୍ ଭଲ।

ହଠାତ୍ ଝଡ଼ବେଗରେ ପଶି ଆସିଲା ଗୀତା ମହାପାତ୍ର। ସାମନାରେ ସାହାଣୀ ବାବୁଙ୍କୁ ଦେଖି ଠିଆ ହୋଇଗଲା । ମଣିଆ ଆଡ଼େ ଚାହିଁ କହିଲା, ଡାକ୍ତରବାବୁ ଆସିଥିଲେ ?

ହଁ, ଏଇତ ବାହାରିଗଲେ।

କ୍ଷମା କରିବେ ସାହାଣୀବାବୁ, ଗୋଟାଏ ଜରୁରୀ କାମରେ ଆସିଥିଲି।

କ'ଣ, ସେନ୍‌ସଲେଶ୍ ନା ଖୁଣ୍ ?

ସେ ସବୁ କିଛି ନୁହେଁ। ଟିକିଏ ଘରୋଇ କାମ ଥିଲା। ଆଚ୍ଛା, ଆସୁଛି। ହଁ ମଣି, ଯଦି ଡାକ୍ତରବାବୁ ଶୀଘ୍ର ଫେରନ୍ତି କହିଦେବୁ ମୁଁ ଆସିଥିଲି।

ଗୀତା ମହାପାତ୍ର ଚାଲିଗଲା।

ସାହାଣୀବାବୁ ଚୁପ୍ ହୋଇ ବସି ରହିଲେ । ସବୁ ଗୋଳମାଳ ହୋଇଯାଉଛି। ଗୀତା ମହାପାତ୍ର ଛନ୍ଦା କଥା ତ କିଛି ପଚାରିଲା ନାହିଁ ? ହୁଏତ ବର୍ତ୍ତମାନ ଯେ ଛନ୍ଦା ଘରେ ନାହିଁ ସେ କଥା ସେ ଜାଣିଚି। ଆହୁରି ଜାଣିଥିଲା ଡାକ୍ତରବାବୁ ଏଠାରେ ଥିବେ ଏବଂ ଆହୁରି ମଧ୍ୟ ସେ ଜାଣିଛି ଡାକ୍ତରବାବୁ ଏଠାକୁ ଶୀଘ୍ର ଫେରିବେ !

ସାହାଣୀବାବୁ ଗୋଟାଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲେ। ଦେଖାଯାଉ...

-ଏକୋଇଶ-

ଆରେ ଯଦୁ, ଖବର ନାହିଁ, ଅନ୍ତର ନାହିଁ; ଏକେବାରେ ନିଧଡ଼କ। ତୋ ଚେହେରା କାହିଁକି ଇମିତି ହୋଇଯାଇଚି କିରେ?

ଯଦୁବାବୁ ଗୋଟାଏ ଚେୟାର ଉପରେ ଧଡ଼ାସ କିନା ବସି ପଡ଼ୁ ପଡ଼ୁ କହିଲେ, ମରିଥିଲେ ଆସି ଲୋକେ ଭୁଲନ୍ତେଣି। ଖୁବ୍ ଅସୁସ୍ଥ ହୋଇପଡ଼ିଲି।

ଅସୁସ୍ଥ! ଅଥଚ ମୋତେ କିଛି ଜଣେଇଲୁନି।

କ'ଣ ହୋଇଥାଆନ୍ତା? ବରଂ ତୋ' କାମରେ କ୍ଷତି ହୋଇଥାଆନ୍ତା। ତୁ ହୁଏତ ଛୁଟି ଯାଇ ଥାଆନ୍ତୁ ବମ୍ବେ। ଆଚ୍ଛା କହିଲୁ, କ'ଣ କେତେଦୂର ଆଗେଇଚୁ?

ମୋର ତ ଅନେକ କଥା ଅଛି। ତୁ ଆଗ କ'ଣ କରି ଆସିଲୁ, କ'ଣ କେତେଦୂର ଆଗେଇଚୁ।

ମୋର ତ ଅନେକ କଥା ଅଛି। ତୁ ଆଗ କ'ଣ କରି ଆସିଲୁ କହିବୁ। ଯା' ଆଗ ଗାଧୁଆ ପାଧୁଆ, ଖିଆପିଆ ଶେଷ କର।

X X X

ବିଶେଷ କିଛି ନୁହେଁ। ତେବେ ହଁ, ସଂକ୍ଷେପରେ କହୁଚି ଶୁଣ। ଲୀଳା ମଜୁମଦାରକୁ ହତ୍ୟା କରା ହୋଇଛି, ସେ କଥା ତ ଜାଣୁ। ଠିକ୍ ତାରି ବାଁ ପାଖ ସିଟ୍‌ଟା ଥିଲା ଗୀତା ମହାପାତ୍ରର, ଡାହାଣ ପାଖ ସିଟ୍‌ଟା ପାରୁଲ ଦେବୀଙ୍କର। ଆଗ ଓ ପଛରେ ଯେଉଁ ଦୁଇଜଣ ଭଦ୍ରମହିଳା ବସିଥିଲେ, ସେଥିରୁ ଜଣକର ନାଁ ମୈତ୍ରେୟୀ ଦାସ, ଆଉଜଣେ ନୀଳିମା ସେନ୍। ଏଇ ଚାରିଜଣ ଭିତରୁ କିଏ ଯେ ଲୀଳା ମଜୁମଦାରକୁ ହତ୍ୟା କରିଛି, ସେହି ରହସ୍ୟ ଅନୁସନ୍ଧାନ କରିବାକୁ ଯାଇ ମୁଁ ଆଉ ଗୋଟାଏ ଘଟଣାର ଖିଅ ପାଇଲି।

କଥାଟା ହେଉଛି, ବମ୍ବେର ନିଉ ହୋଟେଲ ବୋଲି ଗୋଟିଏ ଆଧୁନିକ ଧରଣର ହୋଟେଲ ଥିଲା। ତା'ର ମାଲିକ ଥିଲେ ଜଣେ ବଙ୍ଗାଳି ଭଦ୍ରବ୍ୟକ୍ତି। ତାଙ୍କ ନାଁ ରମାପଦ ସେନ। ହୋଟେଲଟା ଜମିଥିଲା ବେଶ୍।

କିନ୍ତୁ କିଛିଦିନ ପରେ ବମ୍ବେର ପୋଲିସ୍ ବିଭାଗ ଖବର ପାଇଲେ ଯେ, ତା ଭିତରର ଏକ ଗୋପନ ପ୍ରକୋଷ୍ଠରେ ଜୁଆ ଆଡ୍‌ଡା ଏବଂ ମଦ୍ୟପାନ ଧମାଧମ ଚାଲିଛି। ପୋଲିସ୍ ବିଭାଗ ତାର ଚାକ୍ଷୁସ ପ୍ରମାଣ ନ ପାଇ କିଛି କରିପାରୁନଥିଲେ। ହଠାତ୍ ଦିନେ ସେ ହୋଟେଲରେ ଗୋଟାଏ ଖୁଣ୍ ହେଲା। ସେ ଖୁଣ୍ ପୁଣି ଅଦ୍ଭୁତ ଧରଣର।

ହୋଟେଲ ମାଲିକର ଗୋଟାଏ ସେକ୍ରେଟାରୀ ଥିଲା, ତା ନାଁ ଗଙ୍ଗାରାମ୍। ଯାହା କିଛି ଅନ୍ୟାୟ ଅତ୍ୟାଚାର ହୋଟେଲ ମାଲିକ କରୁଥିଲା, ସେଇ ଗଙ୍ଗାରାମ ମାଧ୍ୟମରେ। କିନ୍ତୁ ଏପରି ଏକ ସମୟ ଆସିଲା, ଯେତେବେଳେ ଗଙ୍ଗାରାମ ଆଉ ହୋଟେଲ ମାଲିକ ମଧ୍ୟରେ ମନୋମାଳିନ୍ୟ

ଘଟିଲା । ସେଉଠୁ ହୋଟେଲ ମାଲିକ ରମାପଦବାବୁ ଆତଙ୍କ ଗଣିଲେ। ଯେ କୌଣସି ସମୟରେ ସେ ବିପନ୍ନ ହୋଇପାରନ୍ତି ଭାବି, ଗଙ୍ଗାରାମକୁ ମାରିଦେବା ପାଇଁ ଷଡ଼ଯନ୍ତ କଲେ।

ରମାପଦ ମୋହନ ନାମରେ କେଉଁଠୁ ଗୋଟିଏ ଶିକ୍ଷିତ ଯୁବକକୁ ଯୋଗାଡ଼ କଲା। ସେ ଖୁବ୍ ଭଦ୍ର, ଏସବୁ ଗୋଳମାଳିଆ କାଣ୍ଡ କାରଖାନା ଭିତରେ କେବେ ପଶି ନ ଥିଲା। ମାତ୍ର ଅବସ୍ଥାଚକ୍ରରେ ସେ ରମାପଦ ହାତରେ ଧରାପଡ଼ିଲା।

ମଜା ହେଲା କ'ଣ ନା, ଦିନେ ଗଙ୍ଗାରାମକୁ ରମାପଦ କହିଲା, ମୋହନକୁ ତା'ର କଲିକତାର କୌଣସି ଗୋଟିଏ ବାନ୍ଧବୀ ପାଖକୁ କ'ଣ ନେବା ପାଇଁ ପଠା। ରମାପଦ ଜାଣିଥିଲା, ମୋହନ ସେଥିରେ ରାଜି ହେବ ନାହିଁ। ଗଙ୍ଗାରାମ ମୋହନକୁ କହିଲା, କିନ୍ତୁ ମୋହନ ମନା କଲା। ରମାପଦର ନିର୍ଦ୍ଦେଶ ଥିଲା, ଯେକୌଣସିମତେ ମୋହନକୁ ରାଜି କରେଇବାକୁ ହେବ। କଥାରେ ନ ହେଲେ ମାଡ଼ରେ। ଶେଷକୁ ତାହାହିଁ ହେଲା। ଗଙ୍ଗାରାମ ଓ ମୋହନ ଭିତରେ ଭୀଷଣ ମାରଧର ଆରମ୍ଭ ହୋଇଗଲା। ଶେଷରେ ଦେଖାଗଲା, ଗଙ୍ଗାରାମ ଖୁଣ୍ ହୋଇଛି। ଆଉ ତାକୁ ଖୁଣ କରିଛି ମୋହନ।

କିନ୍ତୁ ସବୁଠୁ ମଜାକଥା ହେଉଛି, ସେଇଟା ରମାପଦର ପ୍ଲାନ ଥିଲା। ଏମାନଙ୍କର ମାଡ଼ଗୋଳ ବେଳେ ଘରୁ ଆଲୁଅ ଲିଭେଇ ଦିଆ ହୋଇଥିଲା ଏବଂ ଆଉ ଜଣକୁ ନିର୍ଦ୍ଦେଶ ଦିଆ ହୋଇଥିଲା, ସେଇ ଗୋଳମାଳ ଭିତ୍‌ରେ ସେ ଯେପରି ଗଙ୍ଗାରାମ ପେଟରେ ଛୁରୀ ଭୁଙ୍କେଇ ଦିଏ। ସବୁ ରମାପଦର ପ୍ଲାନିଂ ଅନୁସାରେ ହେଲା, କିନ୍ତୁ ଖୁଣୀ ମୋହନ ବୋଲି ରମାପଦ ମୋହନକୁ କହି ତା' ହାତମୁଠାରେ ରଖିଲା।

ପୋଲିସ୍ ଆସିଲା ବେଳକୁ ଗଙ୍ଗାରାମର ଲାସ୍ ଥିଲା, କିନ୍ତୁ ରମାପଦ, ମୋହନ କିମ୍ୱା ହୋଟେଲର କୌଣସି ମୁଖିଆ ବ୍ୟକ୍ତି ନ ଥିଲେ। ସେଇଦିନଠାରୁ ମୋହନର କିମ୍ବା ରମାପଦର ସଂଧାନ ଆଉ ପୋଲିସ୍ କରିପାରିନାହିଁ।

ବାସ୍ ସେତିକି ମୋର ଲୋଡ଼ା ଥିଲା। ସାହାଣୀବାବୁ ଆନନ୍ଦରେ କୁରୁଳି ଉଠିଲେ।

ମାନେ? ଯଦୁବାବୁ ବିସ୍ମୟରେ ଚାହିଁଲେ ସାହାଣୀ ମୁହଁକୁ।

ତା'ପରେ ସବୁ ମିଳିଯାଉଛି। ମୁଁ ରମାପଦ, ମୋହନ ଏବଂ ତାର ଅନ୍ୟାନ୍ୟ ସହକାରୀ ସମସ୍ତଙ୍କୁ ପାଇଛି। ସମସ୍ତେ ଏଇଠି, ମାନେ ଏଇ କଲିକତାରେ ଅଛନ୍ତି। ଦୁଇ ଦୁଇଟି ହତ୍ୟାକାଣ୍ଡ ସେଇ ରମାପଦ ଓରଫ ଡାକ୍ତର ତାଲୁକଦାର ଚତୁରତା ସହକାରେ ସମ୍ପନ୍ନ କରିଛନ୍ତି ଆଉ କଟକର ନିଜ ହୋଟେଲ ବଦଳରେ କଲିକତାରେ ମିଡ୍ ନାଇଟ୍ ହୋଟେଲ ଗଢ଼ି ଉଠିଛି। ଭାରି ଚମତ୍କାର ଯଦୁ। ଷ୍ଟୋରିଟି ଭାରି ଇଣ୍ଟରେଷ୍ଟିଂ।

ତୋ କଟକର ଘଟଣାର ଜେର ଟାଣି ମୁଁ କହୁଛି ଶୁଣ୍। ମୋହନ ପ୍ରକୃତରେ ନିରପରାଧ। ବିଚରା ହତଭାଗ୍ୟ। ସେ ଛନ୍ଦାକୁ ଉନ୍ଦାଏ। ଅବଶ୍ୟ କେଉଁଠୁ କିପରି ତାଙ୍କ

ପ୍ରଣୟର ସୂତ୍ରପାତ, ମୁଁ ସେ ଖବର ରଖିନାହିଁ। ଯା ହେଉ ମୋହନ ଗରିବ। କୌଣସି କାରଣରୁ ହେଉ ସେ ବମ୍ବେରେ ରମାପଦ ହାତରେ ଧରାପଡ଼ିଛି। ରମାପଦ ହୁଏତ ମୋହନ ଆଉ ଛନ୍ଦା ସମ୍ବନ୍ଧରେ ସବୁକଥା ଜାଣେ, ଆଉ ଖାଲି ସେତିକି ନୁହେଁ, ଶ୍ରୀପତି ବାବୁଙ୍କ ପରିବାର ସମ୍ବନ୍ଧରେ ତାକୁ ସବୁ ଜଣା ଥିଲା। ସେ ଜାଣିଥିଲା ଶ୍ରୀପତି ବାବୁଙ୍କ ଘରେ ଏପରି ଏକ ପ୍ରକାର ବିଷ ଅଛି, ଯାହାକୁ ପାଇଲେ ସେ କାମ ଏତେ ସହଜରେ ହାସଲ କରିବ, ଯାହା ଚନ୍ଦ୍ର ସୂର୍ଯ୍ୟ ପର୍ଯ୍ୟନ୍ତ ଜାଣିପାରିବେ ନାହିଁ।

କଥା ମଝିରେ ଯଦୁବାବୁ ବାଧାଦେଇ କହିଲେ, ଶ୍ରୀପତିବାବୁଙ୍କ ଘରେ ବିଷ ?

ସେ ଆଉଗୋଟିଏ ରୋମାଞ୍ଚକର କାହାଣୀ। ପରେ ଶୁଣିବୁ ! ହଁ, ରମାପଦ ଜାଣିଥିଲା ଏକା ମୋହନ ଛଡ଼ା ଶ୍ରୀପତି ବାବୁଙ୍କ ଘରୁ ଆଉ କେହି ତାହା ସଂଗ୍ରହ କରିପାରିବେ ନାହିଁ। ମୋହନକୁ ହାତରେ ନ ରଖିଲେ ମଧ୍ୟ ତା' ଉଦ୍ଦେଶ୍ୟ ସଫଳ ହେବନାହିଁ। ଏଣେ ରଙ୍ଗାରାମକୁ ହଟେଇବାକୁ ହେବ। ସତରେ ଯଦୁ ଚମତ୍କାର ପ୍ଲାନିଂ, ଗୋଟିଏ ଟେକାରେ ଦୁଇଟି ଚଢ଼େଇ ଚିତ୍‌ପଟାଙ୍ଗ୍।

ମୋହନ ଜାଣିଲା ସେ ଖୁଣୀ ଆଉ ରମାପଦ ତା' ରକ୍ଷକ। ଶେଷରେ ରମାପଦ କଲିକତା ଫେରି ଆସି ଡାକ୍ତର ତାଲୁକଦାର ରୂପେ ଦେଖାଦେଲେ। ମିଡ୍ ନାଇଟ୍ ହୋଟେଲ ପ୍ରତିଷ୍ଠା କଲେ। ମୋହନ ସାହାଯ୍ୟରେ ଶ୍ରୀପତିବାବୁଙ୍କ ଘରୁ ବିଷ ନେଇ ଦୁଇ ଦୁଇଟି ହତ୍ୟାକାଣ୍ଡ ଘଟାଇଲେ। ବର୍ତ୍ତମାନ ସୁଦ୍ଧା ସମାଜରେ ଯେ ଜଣେ ସମ୍ଭ୍ରାନ୍ତବ୍ୟକ୍ତି। ଅଦ୍ଭୁତ ।

ଯଦୁବାବୁ ସବୁ ଶୁଣିସାରି କହିଲେ, 'ତୁ କିମିତି ଅନୁମାନ କରୁଚୁ ଯେ ରମାପଦ ଆଉ ତାଲୁକଦାର ଏକ ବ୍ୟକ୍ତି ?

ମୁଁ ସବୁ ପ୍ରମାଣ ପାଇଚି। ତୋତେ ମଧ୍ୟ ଦେଖେଇବି। ମଝିରେ ମୋହନ ଅଛି। ତୁ ଯାହା କହ ଯଦୁ, ବମ୍ବେର ରମାପଦ ଆଉ କଲିକତାର ତାଲୁକଦାର ଏକ ବ୍ୟକ୍ତି।

ତା'ହେଲେ ଡାକ୍ତର ତାଲୁକଦାରଙ୍କ ଏଇ ଦୁଇଟି ମର୍ଡର ମୂଳରେ କି ଉଦ୍ଦେଶ୍ୟ ଥିଲା ବୋଲି ଭାବୁଚୁ ?

ପ୍ରଥମେ- ତାଲୁକଦାର ଗୀତା ମହାପାତ୍ରକୁ ବିଉଟି କମ୍ପିଟେସନରେ ଯୋଗ ଦେବାକୁ ପଠାଇଥିଲା। ତା ମୂଳରେ ମଧ୍ୟ ଉଦ୍ଦେଶ୍ୟ ଥିଲା। ଏଇ କମ୍ପିଟେସନର ଦୁଇମାସ ପୂର୍ବରୁ ହଲିଉଡ଼ର ଜଣେ ବିଖ୍ୟାତ ଡିରେକ୍ଟର ଘୋଷଣା କରିଥିଲେ ଏ ବର୍ଷ ଯିଏ 'ମିସ୍ ଇଣ୍ଡିଆ' ହେବ, ତାକୁ ସେ ତାଙ୍କର ଗୋଟାଏ କି ଚିତ୍ରରେ ହିରୋଇନ୍ କରିବେ। ତାଲୁକଦାର ନିଶ୍ଚୟ ସେ ସମ୍ବାଦ କାଗଜରୁ ପଢ଼ିଥିଲେ, ଆଉ ସେ ଗୀତା ମହାପାତ୍ରକୁ ସଂଗ୍ରହ କରି ତା'ର ସମସ୍ତ ବ୍ୟୟଭାର ବହନ କରି ବମ୍ବେ ପଠାଇଥିଲେ। ଧୂର୍ତ୍ତ ଲୋକ ତ ! ହୁଏତ ସେ ଦେଖିଲେ, ଲୀଳା ମଜୁମଦାର କମ୍ପିଟେସନ୍‌ରେ ଯୋଗ ଦେଲେ ଗୀତା ମହାପାତ୍ରର ଚାନ୍‌ସ ନାହିଁ। ତେଣୁ 'ମୂଳୁ ମାରିଲେ ଯିବ ସରି'।

ମିଡ୍‌ନାଇଟ୍ ହୋଟେଲ୍

ବୁଝିଲି। କିନ୍ତୁ ଗୀତା ମହାପାତ୍ରଙ୍କୁ ଏତେ ଟଙ୍କାପଇସା ଦେଇ ବମ୍ବେ ପଠାଇଲେ, ସେ ବିଜୟି ହେଲା, ସେଥିରେ ତାଲୁକାଦାରଙ୍କ ଲାଭ ?

ଆରେ ଏତିକି ଅନୁମାନ କରି ହେଉନାହିଁ ? ହୁଏତ ଗୀତା ମହାପାତ୍ର ସହିତ ଚୁକ୍ତି ହେଇଛି, 'ମିସ୍ ଇଣ୍ଡିଆ' ହେବା ପରେ ମଧ୍ୟ ସେ ଚୁକ୍ତି ଅନୁଯାୟୀ ତାଲୁକଦାରଙ୍କ ସବୁ କଥା ମାନିବ। ଫଳରେ ହଲିଉଡ୍‌ରୁ ଗୀତା ମହାପାତ୍ରଙ୍କୁ ମିଳୁଥିବା ମୋଟା ଅଙ୍କର ଟଙ୍କାଟା ତାଲୁକଦାରଙ୍କ ପକେଟ ଭାରି କରିବ

ବାଃ ! ଚମତ୍କାର ପରିକଳ୍ପନା ତ ! ମାନିଲି। ଆଉ ଶ୍ରୀପତି ଛୋଟରାୟ ?

ତା'ର ମଧ୍ୟ ଉଦ୍ଦେଶ୍ୟ ଅଛି । ସେଇଟାକୁ ମୁଁ ଏ ପର୍ଯ୍ୟନ୍ତ ଉଦ୍‌ଘାଟନ କରି ପାରିନାହିଁ। ଅବଶ୍ୟ ଶ୍ରୀପତିବାବୁଙ୍କ ଆଟର୍ଣ୍ଣି ମହେଶ୍ୱରବାବୁ ଫେରିଆସିଲେ ସବୁ ରହସ୍ୟ ଉଦ୍‌ଘାଟନ ହୋଇଯିବ। ବର୍ତ୍ତମାନ ମଧ୍ୟ ସେଇ ଉଇଲ୍ ପାଇଁ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର ଚାଲିଛି।

ଉଇଲ୍ ?

ହଁ, ଶ୍ରୀପତିବାବୁ ଗୋଟାଏ ଉଇଲ୍ ତାଙ୍କ ଆଟର୍ଣ୍ଣିଙ୍କ ପାଖରେ ରଖିଯାଇଛନ୍ତି, ଯାହା ତାଲୁକଦାର ଜାଣନ୍ତି। ଆଉ ସେ ଉଇଲ୍ ସମ୍ବନ୍ଧରେ ମଧ୍ୟ ଏବେ ଛନ୍ଦା ତାଙ୍କ ଆଟର୍ଣ୍ଣିଙ୍କଠାରୁ ସବୁକଥା ବୁଝି ଆସିଛି। ମୁଁ ଛନ୍ଦାକୁ ପଚାରିଲେ ସବୁ ଜଣାପଡ଼ନ୍ତା, ମାତ୍ର ହୁଏତ ସବୁ ପଣ୍ଡ ହୋଇଯିବ। ସେଇଥିପାଇଁ ମୁଁ ମହେଶ୍ୱର ବାବୁଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିଛି।

ବେଶ୍, ଭଲ କଥା। ତା'ହେଲେ ମୋର ଛୁଟି ଭାଇ। ଏକେତ ଦୁର୍ବଳ ହୋଇ ପଡ଼ିଛି। ଏଣେ ମଧ୍ୟ ତୁ ମନ୍ଦିରର ଚୂଡ଼ା ମାରି ଆଣିଲୁଣି-ମୁଁ ନିଶ୍ଚିନ୍ତ।

ଯଦୁବାବୁ ଏତକ କହି ଆରାମ ଚଉକିଟା ଉପରେ ଗୋଡ଼ହାତ ଲମ୍ବେଇ ଦେଇ ଆଖିବୁଜି ପକେଇଲେ।

ଆରେ ନା ନା, ତତେ ଆଜି ଡାକ୍ତର ତାଲୁକଦାରଙ୍କ 'ମୃତ୍ୟୁ ବନ୍ଦର' ଦେଖେଇବାକୁ ନେବି। ଦେଖିବୁ ମଣିଷ ଜୀବନକୁ ନିରାପଦରେ ପବନ ସହିତ ମିଶେଇ ଦେବାକୁ ସେ କିପରି ଗବେଷଣାଗାର ସ୍ଥାପନ କରିଛନ୍ତି।

ଆଚ୍ଛା !

ଭାରି ଚମତ୍କାର କିନ୍ତୁ। ତା ଭିତରେ ପଶିଲେ ପ୍ରାଣ ଶିହରି ଉଠିବ।

ତା ହେଲେ ମୁଁ ପ୍ରସ୍ତୁତ ହେଉଛି।

ଅଲବତ୍। ଆଜି ମିଡ୍ ନାଇଟ୍ ହୋଟେଲରେ ବଡ଼ ପ୍ରୋଗ୍ରାମ ଅଛି। ଡାକ୍ତର ତାଲୁକଦାର ସିଆଡ଼େ ଅଟକିବେ। ଇତ୍ୟବସରରେ ଆମେ ତ ତାଙ୍କ 'ମୃତ୍ୟୁ ବନ୍ଦର' ଭିତରେ ରଣପୋତ ଭିଡ଼େଇବା। ଦେଖାଯିବ ଯାହା ଥିବ କପାଳରେ।

-ବାଇଶ-

ଅତି ଧୀରେ ଏବଂ ସନ୍ତର୍ପଣରେ ପ୍ରବେଶ କଲେ ସାହାଣୀବାବୁ। ପଛେ ପଛେ ଯଦୁବାବୁ। କିଟିକିଟିଆ ଅନ୍ଧାର, ମୁହଁକୁ ମୁହଁ ଦିଶୁନାହିଁ। ନିଶୂନ୍!

ସାହାଣୀବାବୁ ଓ ଯଦୁବାବୁ ଗୋଟାଏ ଜାଗାରେ ପ୍ରାୟ ପାଞ୍ଚ ମିନିଟ୍ ଯାଏ ଛିଡ଼ା ହୋଇ ରହିଲେ। ଅନ୍ଧାର ଆଖି ସହିଗଲା। ଝାପ୍ସା ଝାପ୍ସା ଦିଶିଲା ସବୁ। ଆଜି ଯେ ତାଲୁକଦାରଙ୍କ ପରୀକ୍ଷାଗାରଟା କାହିଁକି ଅନ୍ଧାର, ସାହାଣୀବାବୁ ବୁଝିପାରିଲେ। ନିଶ୍ଚୟ ଡାକ୍ତର ତାଲୁକଦାର ମିଡ୍‌ନାଇଟ୍ ହୋଟେଲରେ। କିନ୍ତୁ ସାହାଣୀବାବୁ ବତି ସୁଇଚ୍‌ରେ ହାତ ଦେବାକୁ ସାହସ କରିପାରିଲେ ନାହିଁ। ଉପରେ ଚାକର ଅଛନ୍ତି। ମୋଟେ ନିରାପଦ ନୁହେଁ।

ସେମାନେ ଗୋଟିଏ ଜାଗାରେ ଠିଆ ହୋଇଥିଲେ। ଡାକ୍ତର ତାଲୁକଦାରଙ୍କ ପରୀକ୍ଷାଗାରଟା ଯେପରି ବିରାଟ ପାଟି ମେଲାକରି ଗୋଟିକ ପରେ ଗୋଟିଏ ଗିଳି ପକେଇବ।

ସାହାଣୀବାବୁ ପକେଟରୁ ଟର୍ଚ୍ଚ ବତିଟା ବାହାର କରିବାକୁ ଯାଉଛନ୍ତି, ଖୁଡ୍‌କିନା କ'ଣ ଗୋଟାଏ ଶବ୍ଦ ହେଲା, ସେ ଚୁପ୍ ହୋଇଗଲେ। ପୁଣି ନୀରବ। ହୁଏତ ଶଶା, ମୂଷା ବା ବିରାଡ଼ି କେହି ମୃତ୍ୟୁଯନ୍ତ୍ରଣାରେ ଛଟପଟ ହେଉଛି। ପୁଣି ସେ ଆଉ ଥରେ ଟର୍ଚ୍ଚ ଜଳାଇବାକୁ ଯିବେ, ଦେଖିଲେ ତାଙ୍କଠାରୁ ମାତ୍ର ଜେଇ ଗଜ ବ୍ୟବଧାନରେ ଗୋଟିଏ ଅତି କ୍ଷୁଦ୍ର ଆଲୋକ ଜଳି ଉଠିଲା।

କିଏ ?

ଗୋଟାଏ ଅସ୍ପଷ୍ଟ ଛାଇ ଭଳି ଦିଶୁଛି। ଏମାନେ ଲକ୍ଷ୍ୟ କଲେ ସେହି ପେନ୍‌ସିଲ୍ ଟର୍ଚ୍ଚର ଆଲୋକଟା ଧୀରେ ଧୀରେ ଆଗକୁ ଓ ପଛକୁ ଚାଲବୁଲ କରୁଚି।

ସାହାଣୀବାବୁ ନୀରବରେ ଠିଆ ହୋଇ ରହିପାରିଲେ ନାହିଁ, ଯଦୁବାବୁ ତାଙ୍କୁ ଅଟକେଇଲେ। ସେଇ ଅସ୍ପଷ୍ଟ ଛାୟାମୂର୍ତ୍ତିଟା ତାଲୁକଦାରଙ୍କ ପରୀକ୍ଷାଗାରରେ କ'ଣ ଯେପରି ମନୋନିବେଶ କରି ଖୋଜୁଥିଲା। ଯଦୁବାବୁ ଲକ୍ଷ୍ୟ କରୁଥିଲେ। ମନେ ହେଉଥିଲା, ସେ ଯେପରି ଗୋଟାଏ କିଛି ବିଶେଷ ପ୍ରୟୋଜନୀୟ ପଦାର୍ଥ ଖୋଜୁଛି।

ଯଦୁବାବୁ ଚୁପ୍ ଚୁପ୍ ପଚାରିଲେ, କିଏ କିରେ ସାହାଣୀ?

ଠିକ୍ ତ ଅନୁମାନ କରି ହେଉନି।

ଡାକ୍ତର ତାଲୁକଦାର ନୁହନ୍ତି ତ?

ବୋଧହୁଏ ନା, କାରଣ ତାଙ୍କ ଘରେ ସେ ଚୋରପରି ଅଣ୍ଡାଳନ୍ତେ କାହିଁକି?

ଧୀରେଧୀରେ ସେ ଛାୟାମୂର୍ତ୍ତିଟା ଚଞ୍ଚଳ ହୋଇପଡୁଥିଲା। ହଠାତ୍ ଗୋଟାଏ ଜାଗାରେ ସ୍ଥିର ହୋଇ ଠିଆ ହେଇଗଲା। ହୁଏତ ସେ ତା' ଲକ୍ଷ୍ୟବସ୍ତୁ ପାଇଚି।

ତା'ପରେ ଧୀରେଧୀରେ ଗୋଟିଏ ଗୋଟିଏ ଗୁପ୍ତଦ୍ୱାର ଖୋଲି ପଦାକୁ ବାହାରିଲା। ସାହାଣୀବାବୁ ଓ ଯଦୁବାବୁ ପଛେ ପଛେ ବାହାରିଗଲେ। ଛାୟାମୂର୍ତ୍ତିଟା ପାଇଁ ଗୋଟାଏ କଳା ମଟର ଗାଡ଼ି ଅପେକ୍ଷା କରିଥିଲା। ସଙ୍ଗେସଙ୍ଗେ ଛାଡ଼ିଦେଲା।

ସାହାଣୀ ବାବୁ ବିଶ୍ୱାସ କରିପାରିଲେ ନାହିଁ, ସେଇଟା ଡାକ୍ତର ତାଲୁକଦାରଙ୍କ ଗାଡ଼ି। ସେ ଯଦୁବାବୁଙ୍କୁ ସେହି ଗାଡ଼ି ପଛେ ପଛେ ଗାଡ଼ି ଛୁଟେଇବାକୁ କହିଲେ।

ଦୁଇ ତିନିଟା ଅନ୍ଧାରୁଆ ଗଳିରାସ୍ତା। ତା'ପରେ ଗୋଟାଏ ସଂକୀର୍ଣ୍ଣ ଗଳି। ମୋଡ଼ରେ ଗାଡ଼ି ଅଟକେଇ ଡାକ୍ତର ତାଲୁକଦାର ସେଇ ଗଳି ଭିତରେ ପଶିଲେ, ଯେଉଁଠି ସାହାଣୀବାବୁ ଗୋଟାଏ ଛାୟାମୂର୍ତ୍ତିକୁ ଅନୁସରଣ କରି ଆବିଷ୍କାର କରିଥିଲେ ଡାକ୍ତର ତାଲୁକଦାରଙ୍କୁ। ସାହାଣୀବାବୁ ଦୂରରେ ଗାଡ଼ି ଅଟକେଇଲେ। ଅନୁସରଣ କଲେ ତାଲୁକଦାରଙ୍କୁ।

ସେମାନେ ଆସୁଥିଲେ। ଡାକ୍ତର ତାଲକୁଦାରଙ୍କ ସହିତ ଗୀତା ମହାପାତ୍ର ଏବଂ ମୋହନ। ଯଦୁବାବୁ ଓ ସାହାଣୀବାବୁ ଲକ୍ଷ୍ୟ କଲେ। ତିନି ଜଣ ଯାକ ତାଲୁକଦାର ଗାଡ଼ିରେ ବସିଲେ। ତା'ପରେ ଗାଡ଼ି ଛାଡ଼ିଦେଲା।

କେଉଁଆଡ଼େ? ଯଦୁବାବୁ ଯଥେଷ୍ଟ ଦୂରତ୍ୱ ରଖି ସେମାନଙ୍କୁ ଅନୁସରଣ କରୁଥିଲେ। ରାସ୍ତାଘାଟରେ କୋଳାହଳ କମି ନ ଥିଲା। ଗାଡ଼ି ଆଗଉଥିଲା।

ମିଡ୍‌ନାଇଟ୍ ହୋଟେଲ୍ ଦୁଆରରେ ଡାକ୍ତର ତାଲୁକଦାରଙ୍କ ଗାଡ଼ି ଅଟକିଲା। ମୋହନ ଓ ଗୀତା ମହାପାତ୍ର ଓହ୍ଲେଇଗଲେ। ଡାକ୍ତର ତାଲୁକଦାର ଗାଡ଼ି ଭିତରେ ବସି ରହିଲେ ଅନେକ ସମୟ।

ମିଡ୍‌ନାଇଟ୍ ହୋଟେଲ୍

ପୁଣି ଗୀତା ମହାପାତ୍ର ଫେରିଲା। ଏଥର ଡାକ୍ତର ତାଲୁକଦାର ଗଲେ ତା ସଙ୍ଗେ ସଙ୍ଗେ।

ମିଡ୍‌ନାଇଟ୍ ହୋଟେଲ ଭିତରେ ଜୁଆର ଆସିଥିଲା। ଲୋକ ଗହଳି, ନୃତ୍ୟ ଗୀତ, ଆଲୋକ ସଜ୍ଜା,ସବୁ ମିଶି ହଜେଇ ଦେଇଥିଲା ମଣିଷ ମନକୁ।

ଯଦୁବାବୁ ଓ ସାହାଣୀ ବାବୁ ଭିତରକୁ ପଶିଲେ। ସାହାଣୀ ବାବୁଙ୍କ ମନ ଆନନ୍ଦରେ ନାଚି ଉଠୁଥିଲା। ଆଜି ହୁଏତ ଶେଷ ଯବନିକାପାତ କରିପାରିବେ ସେ। ଦୀର୍ଘଦିନର ଶ୍ରମ ତାଙ୍କର ସାର୍ଥକ ହେବ।

ନୃତ୍ୟ ଚାଲିଥିଲା।

ଡାକ୍ତର ତାଲୁକଦାର କିମ୍ବା ଗୀତା ମହାପାତ୍ର କେହି ଦିଶୁନଥିଲେ। ସାହାଣୀବାବୁ ସ୍ଥିର ହୋଇ ରହିପାରିଲେ ନାହିଁ। ହୁଏତ କେଉଁ ଗୁପ୍ତକକ୍ଷରେ ବହୁ ଗୁପ୍ତମନ୍ତ୍ରଣା ଚାଲିଛି। ସାହାଣୀବାବୁ ଭିତରକୁ ପଶିବା ପୂର୍ବରୁ ଥରେ ବାହାରକୁ ଯାଇ ଥାନାକୁ ଟେଲିଫୋନ୍ କରିଆସିବେ ବୋଲି ବାହାରିଗଲେ।

ଆଶ୍ଚର୍ଯ୍ୟ! ଜବାବ ମିଳିଲା-ପୋଲିସ୍ ଇନ୍‌ସ୍ପେକ୍ଟର ଏବଂ ଅନ୍ୟ କେତେଜଣ ସଶସ୍ତ୍ର ବାହିନୀ ଛଦ୍ମବେଶରେ ମିଡ୍‌ନାଇଟ୍ ହୋଟେଲରେ ଅଛନ୍ତି। ସେମାନଙ୍କୁ ଇତିପୂର୍ବରୁ ଟେଲିଫୋନ୍ କରାହୋଇ ଅଣା ହୋଇଛି ଏବଂ ସାହାଣୀବାବୁ ନିଜେ ଟେଲିଫୋନ୍ କରି ପ୍ରାୟ ଘଣ୍ଟାକ ଆଗରୁ ଥାନାକୁ ଏ ସମ୍ବାଦ ଜଣାଇଛନ୍ତି।

ରିସିଭରଟା ଯଥାସ୍ଥାନରେ ରଖିଦେଇ ସାହାଣୀବାବୁ ହତଭମ୍ଭ ଭାବରେ ଠିଆ ହୋଇରହିଲେ। ଘଟଣାଟା କିପରି ଖାପଛଡ଼ା ମନେହେଲା।

ଫେରିଆସି ଯଦୁବାବୁଙ୍କୁ ସେ ଖୋଜି ପାଇଲେ ନାହିଁ। ବ୍ୟାପାର କଣ?

ନୃତ୍ୟଗୀତର ଲହରୀ ମିଡ୍‌ନାଇଟ୍ ହୋଟେଲର ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖିଥିଲା।

ସାହାଣୀବାବୁ ଯଦୁବାବୁଙ୍କୁ ଖୋଜୁଥିଲେ। ଭାବୁଥିଲେ ଘଟଣାଟା କଥା। କିନ୍ତୁ ପୋଲିସ୍ ଇନ୍‌ସ୍ପେକ୍ଟର ଯେ ଆସିଛନ୍ତି, କାହିଁ? ତାଙ୍କୁ ସେ ଦେଖୁନାହାନ୍ତି ତ କେଉଁଠି।

ସାହାଣୀବାବୁ ସ୍ଥିର ଭାବରେ ଠିଆ ହୋଇପାରିଲେ ନାହିଁ। ଧୀରେଧୀରେ ଭିତରକୁ ପଶିଲେ। ଗ୍ରୀନ୍‌ରୁମ୍‌ରେ ପ୍ରାୟ ଅଧିକାଂଶ ଝିଅ। ସମସ୍ତେ 'ମେକ୍‌ଅପ୍'ରେ ବ୍ୟସ୍ତ। କେହି କାହାରି ଆଡ଼କୁ ଚାହିଁବର ଅବକାଶ ନାହିଁ। ଆହୁରି ଭିତରକୁ ଆଗେଇଲେ। ତେଣିକି ତେଣିକି ସବୁ ନିରୋଳା ପରି ମନେ ହେଉଛି।

କିଏ?

ସାହାଣୀବାବୁଙ୍କୁ ଦେଖି କିଏ ଯେପରି ଆତ୍ମଗୋପନ କରିବାକୁ ଧାଇଁ ପଳାଉଛି। ସାହାଣୀବାବୁ ପକେଟର ରିଭଲଭରଟାକୁ ଜୋର୍‌ରେ ଜାବୁଡ଼ି ଧରି ଛାୟାମୂର୍ତ୍ତିଟାର ପଛେ ପଛେ ଧାଇଁଲେ। ଗୋଟିଏ ସରୁ ପଥ, ତା'ପରେ ହଠାତ୍ ଅଟକିଗଲେ। ଅନ୍ଧାର କିଟି କିଟି। ସେ ଛାୟାମୂର୍ତ୍ତିଟା ଯେମିତି ସେଇଠି କୋଉଠି ମିଳେଇଗଲା।

ସାହାଣୀବାବୁ ସ୍ଥିର ହୋଇ ଦଣ୍ଡେ ଠିଆ ହେଲେ। କେଉଁଠି କିଛି ଶବ୍ଦ ନାହିଁ। ନିଶୂନ୍। ପକେଟରୁ ଟର୍ଚ୍ଚ ବାହାର କରି ତଳମୁହାଁ କରି ଜଳେଇଲେ। ଗୋଟିଏ ଛୋଟ ଲୁହା ସିଡ଼ି ଭିତରକୁ ଲମ୍ବିଯାଇଛି।

ସାହାଣୀବାବୁ ରିଭଲଭରଟ ବାଗେଇ ଧରି ଧୀରେ ଧୀରେ ସେଇ ସିଡ଼ିର ପାହାଚ ଉପରେ ପାଦ ଥାପିଲେ। ତଳକୁ, ଆହୁରି ତଳକୁ ଲମ୍ବିଯାଇଛି। ଭିତରେ ଆଲୋକଶିଖା ଦିଶୁଛି। ସାହାଣୀ ବାବୁ ଆଗେଇଗଲେ। ଛାତିଟା ପଡୁଥିଲା, ଉଠୁଥିଲା। ମନେ ହେଉଥିଲା ଡାକ୍ତର ତାଲୁକଦାରଙ୍କ ସେଇ ପରୀକ୍ଷାଗାର ଅପେକ୍ଷା ଏହା ଯେପରି ଆହୁରି ଭୟଙ୍କର। ମିଡ୍ ନାଇଟ୍ ହୋଟେଲ ଭିତରେ ଯେ ଏପରି ଏକ ଗୁପ୍ତ ସ୍ଥାନ ରହିପାରେ, ସେ କଥା ସାହାଣୀବାବୁ ଇତିପୂର୍ବରୁ କେବେ କଳ୍ପନା କରିପାରିନଥିଲେ।

''ନା, ନା, ତୁମେ ମୋ କଥା ମାନିବାକୁ ବାଧ୍ୟ।''

ଗୋଟାଏ ମୋଟା କଣ୍ଠର ଆବାଜ୍ ବାହାରି ଆସି ମିଳେଇଗଲା। ସାହାଣୀବାବୁ ବୁଝିପାରିଲେ ନାହିଁ ସ୍ୱରଟା ଆସିଲା କେଉଁ ଦିଗରୁ। ମାତ୍ର ସେ ସିଡ଼ିର ପାହାଚ ପରେ ପାହାଚ ଅତିକ୍ରମ କରି ଆଗଉଥିଲେ।

ଭିତରେ ଗୋଟାଏ ପ୍ରଶସ୍ତ ହଲ୍ ଘର। ଜୁଆଖେଳ ଚାଲିଚି। ମଦ୍ୟପାନ ଚାଲିଚି। ଅସଂଯତ ବେଶରେ କେତୋଟି ନାରୀ ପରିବେଷଣ କରୁଛନ୍ତି। ଆହୁରି...

ସାହାଣୀବାବୁଙ୍କ ଆଖି ବୁଜି ହୋଇଗଲା। ସେ ହୁଏତ ଶେଷ ପାହାଚଟା ଅତିକ୍ରମ କରିଗଲେ ଧରାପଡ଼ିଯିବେ। କାରଣ ସେଉଠୁ ହଲ୍ ଘରଟା ଆରମ୍ଭ। ଫାଙ୍କା। କେଉଁଠି ହେଲେ ଦେହ ଢାଙ୍କିବାକୁ ଜାଗା ନାହିଁ।

ଇସ୍ କି ଅଶ୍ଳୀଳ ଅଙ୍ଗଭଙ୍ଗୀ ସେଇ ଝିଅଗୁଡ଼ାଙ୍କର । ହଠାତ୍ ଗୋଟାଏ ଗୋଳମାଳ ଆରମ୍ଭ ହୋଇଗଲା କାହିଁକି ? ଜୁଆଖେଳରେ ଜଣେ ଜଣକଠାରୁ ସମସ୍ତ ଟଙ୍କା ନେଇଯାଇଛି। ଗୋଳମାଳ ବଢ଼ି ଉଠିଲା। ଧସ୍ତାଧସ୍ତି।

ସାହାଣୀବାବୁ ଅସ୍ଥିର ହୋଇପଡ଼ିଲେ। ତାଙ୍କ ହାତ ଆଙ୍ଗୁଳିଟା ପିସ୍ତଲ ଘୋଡ଼ିଆ ଉପରେ ଥରୁଥିଲା।

ଇସ୍, ଇଏ କ'ଣ ଗୀତା ମହାପାତ୍ର ?

ଅର୍ଦ୍ଧଉଲଗ୍ନ ଚାଇନା ଝିଅଙ୍କ ଭଳି ଦେହରେ ସାମାନ୍ୟ ଆବରଣ। ସେ ପଶିଆସିଲା

ସେଇ କୋଳାହଳ ଭିତରକୁ। ଯେଉଁମାନେ ଟେବୁଲରୁ ଉଠି ପଡ଼ିଥିଲେ, ଧୀରେ ଧୀରେ ସେମାନେ ବସିପଡ଼ିଲେ। ଗୀତା ମହାପାତ୍ର ଦୁଇଟା ସିଗାରେଟ୍ ବାହାର କରି ଦୁଇଜଣଙ୍କ ମୁହଁରେ ଧରାଇଦେଲା। ଡିଆସିଲି ଜଳେଇ ଦେଲା। ଗୋଟାଏ ଅଶ୍ଳୀଳ ଇଙ୍ଗିତ କରି ଠିଆ ହୋଇ ରହିଲା ଦୁଇଜଣଙ୍କ ମଝିରେ। ଦୁହେଁ ସିଟ୍‌ରେ ବସିଲେ। ପୁଣି ଖେଳ ଆରମ୍ଭ କରିଦେଲେ। ଗୋଳମାଳ ଥମିଗଲା।

ସାହାଣୀବାବୁ ଖାଲି ଲକ୍ଷ୍ୟ କରୁଥିଲେ, ଆଉ ନିଜର ବିପନ୍ନ ଅବସ୍ଥା କଥା ଚିନ୍ତା କରୁଥିଲେ, କେଉଁ ମୁହୂର୍ତ୍ତରେ ଯେ:..

ହଠାତ୍ ଆଲୋକ ଗୁଡ଼ାକ ଲିଭିଗଲା। ସାହାଣୀବାବୁ କୁଆଡ଼କୁ ଯିବେ କ'ଣ କରିବେ ସ୍ଥିର କରିବା ପୂର୍ବରୁ କାହାର ସ୍ପର୍ଶ ଅନୁଭବ କଲେ। ସଙ୍ଗେସଙ୍ଗେ ଶୁଣିଲେ-ମୁଁ ଯଦୁ, ଚାଲିଆ ମୋ ସହିତ।

ଶୀଘ୍ର ସାହାଣୀବାବୁ ଆଗେଇଗଲେ। ତା'ପରେ ପୁଣି ଘରର ବତୀଗୁଡ଼ାକ ଜଳି ଉଠିଲା।

ଗୋଟାଏ ଅନ୍ଧାରୁଆ କୋଠରି ଭିତରେ ଯଦୁବାବୁ ଓ ସାହାଣୀବାବୁ ପଶିଲେ। ବାହାରର ସବୁ ଦୃଶ୍ୟ ଦେଖି ହେଉଥିଲା, କିନ୍ତୁ ସେମାନଙ୍କୁ କେହି ଦେଖିପାରୁନଥିଲେ।

ଯଦୁବାବୁ ସାହାଣୀ ବାବୁଙ୍କ କାନ ପାଖରେ ଚୁପି ଚୁପି କହିଲେ, ବୁଝିଲୁ ସାହାଣୀ ! ତୋ' ଅନୁମାନ ସତ୍ୟ। କାଲି ମୋ ଆଗରେ ଯେପରି ଘଟଣାର ବିଶ୍ଳେଷଣ କରୁଥିଲୁ, ଠିକ୍ ସେଇଆ। କିନ୍ତୁ ତା'ଛଡ଼ା ବି ଅନେକ କଥା ଅଛି, ଯାହା ତୁ ଜାଣିନାହୁଁ।

ମାନେ ?

ମୁଁ ବି ପୁରାପୁରି ବୁଝିପାରିନାହିଁ। ଏଇଖିଣା ଇନ୍ସପେକ୍ଟର ସତ୍ୟଜିତ୍ ବାବୁଙ୍କ ସହିତ ମୋର ଭେଟ ହୋଇଥିଲା। ସେ ଏଇ ପାଖ ରୁମ୍‌ରେ ଅଛନ୍ତି। ତାଙ୍କୁ ଏ ଘଟଣା ସମ୍ବନ୍ଧରେ କେହି ଜଣେ ଟେଲିଫୋନ୍‌ରେ ସବୁକଥା କହିଛି। କିନ୍ତୁ କିଏ ଯେ କହିଛି, ସେ କଥା ସତ୍ୟଜିତ୍‌ବାବୁ ବହୁ ଚେଷ୍ଟାକରି ଜାଣିପାରିନାହାନ୍ତି।

ଘଟଣାଟା ଭାରି ଚମତ୍କାର କିନ୍ତୁ। ଶ୍ରୀପତି ଛୋଟରାୟ ତାଙ୍କ ଆଟର୍ଣ୍ଣି ପାଖରେ ଗୋଟାଏ ଅଦ୍ଭୁତ ଧରଣର ଉଇଲ୍ ରଖିଯାଇଛନ୍ତି। ଯାହାର ଅର୍ଥ- ସେ ମରିବା ପରେ ଯଦି ତାଙ୍କ କନ୍ୟା କାହାକୁ ସ୍ୱଇଚ୍ଛାରେ ବିବାହ କରେ, ଆଉ ସେ ବିବାହ ଯଦି ଆଇନସମ୍ମତ ହୁଏ, ତେବେ ତାଙ୍କ ସମସ୍ତ ସମ୍ପତ୍ତିର ଅଧିକାରୀ କନ୍ୟା ଜାମାତା ଦୁହେଁ ହେବେ।

ସାହାଣୀ ବାବୁ କଥା ମଝିରେ ବାଧା ଦେଇ କହିଲେ, ସେ କଥା ମୁଁ ଜାଣେ। ଆଉ ସେଇ ଉଇଲର ନକଲ ମୁଁ ଡାକ୍ତର ତାଲୁକଦାରଙ୍କ ଘରେ ଦେଖିଥିଲି।

ଯଦୁବାବୁ କହିଲେ, କାଲି ସେଇ ବିବାହ ହୋଇଯାଇଛି।

ମାନେ ?

କାଲି ରାତିରେ ଏଇ ମିଡ୍ ନାଇଟ୍ ହୋଟେଲରେ ରେଜିଷ୍ଟ୍ରାରଙ୍କ ଉପସ୍ଥିତିରେ ଛନ୍ଦା ସହିତ ମୋହନର ବିବାହ ହୋଇଯାଇଛି। ଆଜି ମଧୁଶଯ୍ୟା।

ତତେ ଏ କଥା ସବୁ କିଏ କହିଲା ?

ଇନ୍‌ସପେକ୍ଟର ସତ୍ୟଜିତ୍ ବାବୁ।

ସେ କାହାଠାରୁ ଶୁଣିଲେ ?

ଟେଲିଫୋନ୍‌ରୁ। ପରେ ସେ ରେଜିଷ୍ଟ୍ରାରଙ୍କ ପାଖରୁ ବୁଝିଥିଲେ ଘଟଣାଟା ସତ୍ୟ। ଆଉ ଏହି ବିବାହରେ ମଧ୍ୟ ଡାକ୍ତର ତାଲୁକଦାର, ରାୟ ବାହାଦୂର ରାସବିହାରୀ ମଜୁମଦାର ଓ ଆହୁରି କେତେକ ବିଶିଷ୍ଟ ବ୍ୟକ୍ତି ଯୋଗ ଦେଇଥିଲେ।

ହୁଁ। ତା'ପରେ...

ତା'ପରେ ଆଜି ଛନ୍ଦାକୁ ମୃତ୍ୟୁ ଆଲିଙ୍ଗନ କରିବ।

ତା' ମାନେ ?

ସେଇଆ, ଯାହା ତୁ ମତେ କାଲି କହିଥିଲୁ। ମୋହନ ମୁଣ୍ଡରେ ଯିଏ ହତ୍ୟା ଅପରାଧ ନଦି ଆଜିଯାଏ ମୋହନ ଜରିଆରେ ବହୁ ଅପକର୍ମ କରିଆସୁଛି, ସେଇ ହେବ ଶ୍ରୀପତି ଛୋଟରାୟଙ୍କ ଅଗାଧ ସମ୍ପତ୍ତିର ମାଲିକ। ମାନେ ମୋହନ ତା' ହାତମୁଠାରେ। ଛନ୍ଦା ମୃତ୍ୟୁ ପରେ ଶ୍ରୀପତି ଛୋଟରାୟଙ୍କ ସମସ୍ତ ସମ୍ପତ୍ତି ମୋହନ ପାଇବା କଥା, କିନ୍ତୁ ମୋହନ ତ ଆଉ ଲୋକଲୋଚନ ଗୋଚରକୁ ଆସିପାରିବ ନାହିଁ, ତେଣୁ...

ବୁଝିଲି। ସବୁ ଡାକ୍ତର ତାଲୁକଦାରଙ୍କ...

ହଠାତ୍ ଧୀରେଧୀରେ ଘରର ବତିଗୁଡ଼ାକ ଲିଭି ଲିଭି ଆସୁଥିଲା। ଯେଉଁମାନେ ଜୁଆଖେଳ ଆଉ ମଦ୍ୟପାନରେ ମତ୍ତ ଥିଲେ, ସେମାନେ ଗୋଟି ଗୋଟି ହୋଇ ଚାଲିଯାଇଥିଲେ। ସେଇ ବିରାଟ ହଲ୍ ଘରଟ କିପରି ଭୟଙ୍କର ହୋଇ ଉଠିଥିଲା।

ଅଧା ଅନ୍ଧାର ଆଉ ଅଧା ଆଲୁଅ ଭିତରେ ଗୋଟିଏ କଳା କୋଟ୍ ପରିହିତ ବ୍ୟକ୍ତି ଆଗେଇ ଆସିଲା। ସେଇ ନିସ୍ତବ୍ଧତା ଭିତରେ ତା' ପାଦଶବ୍ଦ ଯେପରି ବିଭୀଷିକା ସୃଷ୍ଟି କରୁଥିଲା। ସେ ଆଗଉଥିଲା। ସାହାଣୀବାବୁଙ୍କ ହାତମୁଠାରେ ପିସ୍ତଲଟା କମ୍ପୁଥିଲା।

ସେଇ ଅସ୍ପଷ୍ଟ ଛାୟାମୂର୍ତ୍ତିଟା ଆହୁରି ଆଗେଇ ଯାଇ ଗୋଟାଏ ଘରର କବାଟ ଖୋଲିଲା। ଘର ଭିତରୁ କିପରି ଗୋଟାଏ ଆର୍ତ୍ତ ଚିତ୍କାର ଶୁଣାଗଲା। ସାହାଣୀବାବୁ, ଯଦୁବାବୁ ଓ ସତ୍ୟଜିତ୍ ବାବୁ ଯାଇ ସେଇ ଦରଜା ପାଖରେ ପହଞ୍ଚିଗଲେ। ଭିତରେ ମୋହନ ଓ ଛନ୍ଦା। ମୋହନ ଗୋଟିପଣେ ଥରୁଛି। ଛନ୍ଦା ଆଖିରେ ମଧ୍ୟ ବିସ୍ମୟ। ଛାୟାମୂର୍ତ୍ତିଟା ଆଙ୍ଗୁଳି

ଦେଖେଇ ମୋହନକୁ ବାହାରକୁ ଚାଲିଯିବା ପାଇଁ ନିର୍ଦ୍ଦେଶ ଦେଲା। ମୋହନ କିନ୍ତୁ ସେଇଠି ବସିଥିଲା। ଛାୟାମୂର୍ତ୍ତିଟା ଚିତ୍‌କାର କରିଉଠିଲା।

ମୋହନ ଥରି ଥରି ବାହାରକୁ ବାହାରି ଆସୁଥିଲା। ଛାୟାମୂର୍ତ୍ତିଟା ପକେଟରୁ ଗୋଟାଏ ଶିଶି ବାହାର କରି ଛନ୍ଦା ଆଡ଼କୁ ଆଗେଇ ଯାଉଥିଲା। ଛନ୍ଦା ଚିତ୍କାର କରିଉଠିଲା, କିଏ, କିଏ? ତୁମେ? କ'ଣ ଚାହଁ?

ମୁଁ, ମୁଁ ମୃତ୍ୟୁ। ମୋ ହାତରେ କ'ଣ ଅଛି ଚିହ୍ନିପାରୁଚୁ? ଏ ସେଇ କାଳକୁଟ ବିଷ, ଯାହା ମୋହନକୁ ତୁ ଦେଇଥିଲୁ। ଭାରି ଚମତ୍କାର। ଲୀଳା ଉପରେ ମୁଁ ଏହାକୁ ପରୀକ୍ଷା କରିଥିଲି, ଆଉ ଶ୍ରୀପତି ଛୋଟରାୟ! ତୁ ତ ତାଙ୍କ ମୃତ୍ୟୁ ବେଳେ ଉପସ୍ଥିତ ଥିଲୁ। ଭାରି ସୁନ୍ଦର। ମୃତ୍ୟୁଯନ୍ତ୍ରଣା ମୋଟେ ଅନୁଭବ କରି ହେବନାହିଁ। ଶୀତଳ ମୃତ୍ୟୁ ଜୀବନର ସମସ୍ତ ଦୁଃଖ ଯନ୍ତ୍ରଣା ଭୁଲେଇ ଦେବ।

ସେଇ ଛାୟାମୂର୍ତ୍ତିଟା ଆଗେଇ ଯାଉଥିଲା। ଛନ୍ଦା ଯେମିତି ତା ଜୀବନୀଶକ୍ତି ହରେଇ ବସୁଥିଲା। ଆଉ ଦି' ପାହୁଣ୍ଡ। ତା' ପରେ ହୁଏତ ଛାୟାମୂର୍ତ୍ତିର ହାତରୁ ତରଳ ପଦାର୍ଥତକ ନିଗିଡ଼ିପଡ଼ି ଛନ୍ଦାର ଜୀବନଦୀପ ଚିରଦିନ ପାଇଁ ନିର୍ବାପିତ କରିଦେବ।

ହ୍ୟାଣ୍ଡସ୍ ଅପ୍!

ଗୋଟାଏ ଭାରି କଣ୍ଠର ଗଳା ସେଇ ଘରର ଅନ୍ୟ କୋଣରୁ ଭାସିଆସିଲା ଏବଂ ଆଉ ଗୋଟାଏ ଛାୟାମୂର୍ତ୍ତିର ପିସ୍ତଲ ପ୍ରଥମ ଛାୟାମୂର୍ତ୍ତି ଆଡ଼କୁ ଆଗେଇ ଆସିଲା।

ପ୍ରଥମ ଛାୟାମୂର୍ତ୍ତିଟି ଦରଜା ଆଡ଼କୁ ଚାହିଁଲା। ଏଣୁ ତିନୋଟି ପିସ୍ତଲ ଆଗେଇ ଯାଉଥିଲା। ଯଦୁବାବୁ ଶକ୍ତ ଗଳାରେ କହିଲେ, ହାତର ସେଇ ଶିଶିଟା ପକେଟରେ ଭରିଦିଅ। ନତୁବା ମୋ ପିସ୍ତଲଟା କିଛି ମାନିବ ନାହିଁ।

ପ୍ରଥମ ଛାୟାମୂର୍ତ୍ତିଟା ହତଭମ୍ବ ହୋଇ ଠିଆ ହୋଇଥିଲା।

ଯଦୁବାବୁ ଆଉ ଥରେ ଗର୍ଜନ କରିଉଠିଲେ, ମୁଁ ତିନି ଗଣିବାଯାଏ ସମୟ ଦେଉଛି। ଏକ୍....ଦୁଇ....

ତିନି ଗଣା ହୋଇପାରିଲା ନାହିଁ। ପ୍ରଥମ ଛାୟାମୂର୍ତ୍ତିଟି ଗଛ କାଟିଲା ପରି ତଳେ ପଡ଼ିଗଲା। ସେ ହାତରେ ଧରିଥିବା ବିଷତକ ନିଜ ହାତରେ ଢାଳି ଦେଇଥିଲା।

ଦ୍ୱିତୀୟ ଛାୟାମୂର୍ତ୍ତିଟି ଯେପରି ବିଳାପ କରିଉଠିଲା, ଇଏ କ'ଣ ହେଲା ସତ୍ୟଜିତ୍ ବାବୁ? ମୋର ସମସ୍ତ ସାଧନା, ସମସ୍ତ ଚେଷ୍ଟା ବିଫଳ ହୋଇଗଲା ?

ଦ୍ୱିତୀୟ ଛାୟାମୂର୍ତ୍ତିଟି ଧାଇଁ ଯାଉଥିଲା ପ୍ରଥମ ଛାୟାମୂର୍ତ୍ତି ହାତରୁ ଶିଶିଟି ଛଡ଼େଇ ଆଣିବା ପାଇଁ, ମାତ୍ର ସାହାଣୀ ବାବୁ ଓ ଯଦୁବାବୁ ଦୁହେଁ ଜାବୁଡ଼ି ଧରିଲେ। କଳା ପୋଷାକ

ଖୋଲି ଫୋପାଡ଼ି ଦେଇ ଡାକ୍ତର ତାଲୁକଦାର କାନ୍ଦ କାନ୍ଦ ହୋଇ କହିଲେ- ମୋର ସମସ୍ତ ଚେଷ୍ଟା ବିଫଳ ହୋଇଗଲା ସାହାଣୀବାବୁ, ଯେଉଁ ବିଷ ଟିକକ ସଂଗ୍ରହ ପାଇଁ ମୁଁ ଏପରି ଗୋଟାଏ ବିରାଟ ଷଡ଼ଯନ୍ତ୍ର ପଛରେ ଜୀବନକୁ ତୁଚ୍ଛ କରି ଲାଗିପଡ଼ିଥିଲି, ସବୁ ବ୍ୟର୍ଥ ହୋଇଛି। ମୋର ସାଧନା, ମୋର ଅର୍ଥ, ସବୁ ନଷ୍ଟ ହୋଇଛି।

ସତ୍ୟଜିତ୍ ବାବୁ ଡାକ୍ତର ତାଲୁକଦାରଙ୍କୁ ସାନ୍ତ୍ୱନା ଦେଇପାରିଲେ ନାହିଁ।

ସାହାଣୀବାବୁ ସେହି ମୃତବ୍ୟକ୍ତିକୁ ଦେଖିବା ପାଇଁ ଉଦ୍‌ଗ୍ରୀବ ହୋଇଉଠିଥିଲେ। କାରଣ ତାଙ୍କ ଅନୁମାନ ମିଥ୍ୟା ହୋଇଛି। ଡାକ୍ତର ତାଲୁକଦାର ଏହି ବିରାଟ ଷଡ଼ଯନ୍ତ୍ରର ଅଧିନାୟକ ନୁହନ୍ତି। ସେ ତରତର ହୋଇ ସେଇ ମୃତବ୍ୟକ୍ତିର ଦେହ ଓ ମୁହଁରୁ କଳା ପୋଷାକଗୁଡ଼ାକ ଖୋଲି ପକେଇଲେ।

ଏଁ, ରାୟ ବାହାଦୂର ରାସବିହାରୀ ମଜୁମଦାର !!!

ଡାକ୍ତର ତାଲୁକଦାର କୌଣସି ପ୍ରକାର ନିଜକୁ ସମ୍ଭାଳି ନେଇ କହିଲେ-ମୋର ପରୀକ୍ଷାଗାର ଆପଣ ଦେଖିଛନ୍ତି ସାହାଣୀ ବାବୁ! ଆପଣ ଯେଉଁଦିନ ମୋ ପରୀକ୍ଷାଗାରର ସମସ୍ତ ଜିନିଷ ଉପରେ ଆଖି ବୁଲାଉଥିଲେ, ସେଦିନ ମୋ ଆଖି ମଧ୍ୟ ଆପଣଙ୍କ ଉପରେ ବୁଲୁଥିଲା। ମୁଁ ବିଷ ଉପରେ ଦୀର୍ଘ ୫ ବର୍ଷ ଧରି ଗବେଷଣା କରୁଥିଲି। ଯେଉଁଦିନ ସନ୍ଧାନ ପାଇଲି ଶ୍ରୀପତି ଛୋଟରାୟଙ୍କ ଘରେ ଏକ ଅଦ୍ଭୁତ ଧରଣର ବିଷ ଅଛି, ସେଦିନ ଖୋଜିଲା ବେଳକୁ ସେ ହସ୍ତାନ୍ତର ହୋଇସାରିଥିଲା। ସେଇଦିନଠାରୁ ମୁଁ ସେଇ ବିଷତକ ଉଦ୍ଧାର କରିବା ପାଇଁ ପ୍ରାଣ ଦେଇ ଲାଗିପଡ଼ିଥିଲି। ଧୀରେଧୀରେ ଏଇ ଅପରାଧୀ ଦଳଟିକୁ ମୁଁ ଆବିଷ୍କାର କଲି। କାର୍ଯ୍ୟ ଆହୁରି ସହଜ କରିବା ପାଇଁ ମୁଁ ଗୀତା ମହାପାତ୍ରକୁ ମଧ୍ୟ ନିଯୁକ୍ତ କରିଥିଲି। ଆଉ ତା'ରି ସହାୟତାରେ ଆଜି ଆପଣମାନେ ରାୟବାହାଦୂର ରାସବିହାରୀ ମଜୁମଦାରଙ୍କ ଶେଷ ଅଭିନୟ ଦେଖିଲେ।

ମୁଁ ଯେଉଁଦିନ ଜଣି ପାରିଲି ସାହାଣୀବାବୁ ମୋତେ ଭୁଲ୍ ବୁଝିଛନ୍ତି, ସେହିଦିନ ଠାରୁ ତାଙ୍କୁ ମଧ୍ୟ ମୁଁ ଭୁଲ୍ ବୁଝେଇବାକୁ ଚେଷ୍ଟା କଲି। କାରଣ ମୋ ବାଟ ପରିଷ୍କାର ହୋଇଯିବ। ମୁଁ ସ୍ୱଚ୍ଛନ୍ଦରେ ମୋ ବାଟରେ ଆଗେଇ ପାରିବି।

ସବୁକଥା ସତ୍ୟଜିତ୍ ବାବୁଙ୍କୁ ମୁଁ ଟେଲିଫୋନ୍‌ରେ କହିଥିଲି। ବମ୍ବେର ନିଉ ହୋଟେଲ ପରେ କଲିକତାରେ ମିଡ୍‌ନାଇଟ୍ ହୋଟେଲର ସ୍ରଷ୍ଟା ରାୟବାହାଦୂର ନିଜେ। ଆଉ ଲୀଳା ମଜୁମଦାର ଯିଏ ରାୟବାହାଦୂରଙ୍କ ଝିଅ ରୂପେ ଏ ଯାଏ ପରିଚିତା। ଛାଡ଼ନ୍ତୁ ତା' କଥା। ସେ ପ୍ରକୃତରେ ରାୟବାହାଦୂରଙ୍କ ଝିଅ ନୁହେଁ, ତାଙ୍କର ସେ ଜଣେ ଅପରାଧସଂଗିନୀ। ମାନେ ସହକର୍ମିଣୀ। ସବୁଠୁ ମଜାର କଥା ହେଉଛି, ତା' ହତ୍ୟା ନିଜେ ରାୟ ବାହାଦୂର

କରେଇଛନ୍ତି, କାରଣ ତାକୁ ରାୟବାହାଦୂରଙ୍କ ସମ୍ବନ୍ଧରେ ସବୁକଥା ଜଣା ଥିଲା। ଏବଂ ସର୍ତ୍ତ ଥିଲା, ଅୟ ଅଧା ଅଧା। ବେଶ୍ ଚାଲିଥିଲା। କିନ୍ତୁ ଯେତେବେଳେ ରାୟବାହାଦୂର ମୋହନ ଜରିଆରେ ଗୋଟାଏ ବିରାଟ ସଂପତ୍ତିର ଅଧିକାରୀ ହେବାକୁ ପ୍ଲାନ୍ କଲେ, ସେତେବେଳେ ଲୀଳାର ଇହଲୀଳା ସାଙ୍ଗ କରେଇବାର ସଂକଳ୍ପ ମଧ୍ୟ କଲେ।

ମୁଁ ତାର ଆଭାସ ପାଇବା ମାତ୍ରେ ସଙ୍ଗେସଙ୍ଗେ ଗୀତା ମହାପାତ୍ରକୁ ରାୟବାହାଦୂରଙ୍କ ପାଖରେ ନିଯୁକ୍ତ କଲି। ମୋର ଧାରଣା ଥିଲା, ହୁଏତ ଗୀତା ହାତକୁ ଲୀଳା ମଜୁମଦାରର ମୃତ୍ୟୁ ନିଦାନ ଆସିବ ଏବଂ ତା' ସଙ୍ଗେସଙ୍ଗେ ଆସିବ ମୋର ସେଇ ଈପ୍‌ସିତ ବିଷ କେଇବିନ୍ଦୁ।

କିନ୍ତୁ ଏତେ ସହସା ହୁଏତ ରାୟବାହାଦୂର ଗୀତାକୁ ବିଶ୍ୱାସ କରିପାରିଲେ ନାହିଁ। ତେଣୁ ବିଷ ତା' ହାତକୁ ଆସିଲା ନାହିଁ। ବିଚାରୀ ଲୀଳାକୁ ବଞ୍ଚାଇବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ। ତଥାପି ମୁଁ ଅପେକ୍ଷା କରିଥିଲି ସେଇ ବିଷ କେଇବିନ୍ଦୁ ପାଇଁ। ହଁ, ତା ପରେ ମୋହନ, ମୋହନକୁ ସେଠାକୁ ଯେପରି ଭାବରେ ଅଣ ଯାଇଥିଲା, ମୋହନ ଯେ ଅପରାଧୀ ନୁହେଁ- ସେକଥା ସେ ବୁଝିବାର ଅବକାଶ ପାଇନଥିଲା।

ଛନ୍ଦା କଥା ମଝିରେ ବାଧା ଦେଇ କହିଲା-ମୋହନ ତା ହେଲେ ନିର୍ଦ୍ଦୋଷ? ସେ କାହାରିକୁ ହତ୍ୟା କରିନାହିଁ? ସେ ତା ହେଲେ ହତ୍ୟା ଅପରାଧରେ ଅପରାଧୀ ନୁହେଁ?

ଯଦୁବାବୁ ହସି କହିଲେ, ନା, ମୋହନବାବୁ ନିର୍ଦ୍ଦୋଷ। ଆପଣ ଏବେ ସ୍ୱଚ୍ଛନ୍ଦରେ ଦାମ୍ପତ୍ୟ ଜୀବନଯାପନ କରିପାରନ୍ତି।



ସାଁ ସାଁ ଶବ୍ଦ ହଠାତ୍ ବନ୍ଦ ହୋଇଗଲା । ଦୁଆରଟା ଧୀରେ ଧୀରେ ଖୋଲିଲା । ଅଜୟ ଚାରିଆଡ଼କୁ ଅନେଇଲା । ଆତ୍ମଗୋପନ କରିବାକୁ ସେପରି ସୁବିଧା ସ୍ଥାନ ନାହିଁ । ତା' ହେଲେ ? ଅଜୟ ଗୋଟାଏ ଆଲମାରୀ କଡ଼କୁ ଘୁଞ୍ଚିଗଲା ।

ବାଥ୍‌ରୁମ୍‌ରୁ ଯିଏ ପଦାକୁ ଆସିଲା, ସିଏ ଗୁଣୁଗୁଣୁ ହୋଇ ଗୀତ ଗାଉଥିଲା । ଅଜୟ ସ୍ପଷ୍ଟ କିଛି ଦେଖିପାରିଲା ନାହିଁ । କେବଳ କଣ୍ଠସ୍ୱରଟା ଜଣେ ମହିଳାର ପରି ଜଣାପଡୁଥିଲା । ଧୀରେଧୀରେ କଣ୍ଠସ୍ୱର କମିଆସିଲା, ଅଜୟ ଆଲମିରା କଡ଼ରୁ ପଦାକୁ ବାହାରି ଚାହିଁଲା ବେଳକୁ ଘର ନିଶୂନ୍ । କେହି ନାହାନ୍ତି । ମହିଳା ଜଣକ ହୁଏତ ଚାଲି ଯାଇଛନ୍ତି । ଅଜୟ ଗୋଡ଼ ଚିପିଚିପି ପଦାକୁ ବାହାରିଲା । ବାଥରୁମ୍‌ର ଦୁଆରଟା ଦରଆଉଜା ହୋଇଥିଲା । ଅଜୟ ଖୋଲିଲା । ପଶିଗଲା ଭିତରକୁ । ଅନ୍ଧକାରର ରାଜତ୍ୱ । କିନ୍ତୁ କୁଆଡୁ ଯେପରି ଏକ କ୍ଷୁଦ୍ର ଆଲୋକଶିଖାଟିଏ ଦିଶୁଚି ।

ଗୋଟିଏ ଗୋରା ତକ୍‌ତକ୍ ହାତ । ସରୁ ସରୁ ଅଙ୍ଗୁଳି । ଅଜୟର ଆଖି ପହଁରିଗଲା । ତା'ପରେ ହସିଲା ମୁହଁ, ଥରିଲା ଆଖି । ଅଲରାବାଳ । ଅଜୟ ସ୍ଥିର ହୋଇ ଦଣ୍ଡେ ଚାହିଁଲା ।

କାଲିଜହ୍ନରୁ ଫାଳେ ପଡ଼ିଚି ତା ରୁମ୍‌ରେ । ଝରକା ପାଖରେ ଟେବୁଲଟି । ସେ ପାଖରୁ ରେଲିଂ ଭିତର ଦେଇ ଗଳି ଆସିଚି ହାତଟି । ରେଲିଂ ସେପାଖରେ ଆଲୁଲାୟିତକେଶା ନାରୀମୂର୍ତ୍ତିଟି ହସୁଚି । ଜହ୍ନ ଉପରୁ ମେଘ ଘୁଞ୍ଚିଗଲା । ଅଜୟ ଆଖି ଲାଖିଗଲା । ଆହୁରି ସଫା ଦିଶିଲା ମୁହଁଟି । ସେଇ ହସ ।

: ତମେ ? ଅଜୟ ପଚାରିଲା ।

ଉତ୍ତରରେ ସେଇ ହସ ।

: ଭିତରକୁ ଆସ । ଅଜୟ ଡାକିଲା ।

: ନା, ବାହାରକୁ ଆସ । ନାରୀମୂର୍ତ୍ତିଟି କହିଲା ।

: ଭାରି ଡେରି କରିଦେଲ ଅଜନ୍ତା ! ଏ ତମର ଅବିଚାର । ଅନ୍ତତଃ ଆଉଟିକେ ଆଗରୁ ଆସିବା ଉଚିତ ଥିଲା ।

: ହଉ ଆସ । ହେଳା କଲେ ଆହୁରି ଡେରି ହେଉଚି । ତମେ ଜାଣିନା ଅଜୁ । ମୁଁ କେମିତି ଲୁଚି ଲୁଚି ଚାଲିଆସିଚି । ଚାରିଆଡ଼େ ସତର୍କ ଦୃଷ୍ଟି । ଶେଷରେ ଏଡ଼େଇ ଆସିଲି । କେହି ଯଦି ପିଛା ଧରିଥାଏ, ଅଡୁଆ ହୋଇଯିବ । ଚାଲିଆସ ।

ଅଜୟ ଉଠିଗଲା । ସେଇ ଡୋରିଆ ପ୍ୟାଣ୍ଟ ଉପରେ ଚମ୍ପାରଙ୍ଗର ହାଓ୍ୟାଇନ୍‌ଟି ବଦଳା ହୋଇନି । ଆଗରେ ଅଜନ୍ତା, ପଛରେ ଅଜୟ । ଅଳ୍ପ ଛଡ଼ାରେ । ବେଳେବେଳେ ଅଜନ୍ତାର ପଣତଟା ପବନରେ ଉଡ଼ିଆସି ଅଜୟର ମୁହଁରେ ବାଜୁଥିଲା । କେତେବେଳେ ଅଜୟ ଅଜନ୍ତାକୁ ଝୁଣ୍ଟି ପଡୁଥିଲା । ସେ କିଛି ନୁହେଁ । ଦୁଇଜଣ ଚାଲୁଥିଲେ ନୀରବରେ । ପାଦର ଗତି ବଢୁଥିଲା । କେଉଁଠୁ ଗୋଟାଏ ଘଡ଼ିରେ ବାରଟା ବାଜିବାର ଶୁଣାଗଲା ।

ଅଜନ୍ତା ମଟର ବ୍ରେକ୍ କଲାପରି ଅଟକିଗଲା । ଅଜୟ ଧକ୍‌କା ଖାଇଲା ତା' ଉପରେ । କ'ଣ କହିବାକୁ ଯାଉଥିଲା । ଅଜନ୍ତା ହାତଚାପି କୁହାଇ ଦେଲାନି ।

ସେମାନେ ଯେଉଁଠି ଠିଆ ହୋଇଥିଲେ, ଆରପାଖ କୋଠାଟାର ଛାଇ ସେଠି ପଡ଼ିଥିଲା । ଏମାନେ ଦିଶୁନଥିଲେ । ଏମାନଙ୍କୁ ଅନ୍ୟ ସବୁ ଦିଶୁଥିଲା । ଅଜନ୍ତା ଯେଉଁ ଆଡ଼କୁ ଆଙ୍ଗୁଳି ଦେଖାଇଲା ସେଇ ଆଡୁ ଜଣେ ଲୋକ ଆସୁଥିଲା । ସୁଟ୍ ପିନ୍ଧିଚି । ମୁହଁରେ ଚୁରୁଟ । ପାଦଶବ୍ଦ ଭାରି ଭାରି । ଲୋକଟା ଗମ୍ଭୀର ଦିଶୁଥିଲା । ତାଙ୍କରି ପାଖ ଦେଇ ଆଗେଇଗଲା । ଗୋଟାଏ କଳା ଚଷମା ପିନ୍ଧିଥିଲା । ପାଦଶବ୍ଦ ପବନରେ ମିଳେଇଗଲା । ଅଜନ୍ତା ଆଉ ଅପେକ୍ଷା ନ କରି ଆଗେଇଗଲା । ଅଜୟ ଅନୁସରଣ କଲା ।

ଆଉ ବେଶୀ ନୁହେଁ । ପନ୍ଦର କି କୋଡ଼ିଏ ମିନିଟ୍ ପରେ ଅଜନ୍ତା ସେ ଦୁଆର ଚାବି ଖୋଲିଲା । ଭିତରଟା କିଟିକିଟିଆ ଅନ୍ଧାର । ଚେମଣିଆ ଗୁଡ଼ାକ ଫଡ୍ ଫଡ୍ ହୋଇ ଉଡ଼ିଆସିଲେ । ପେଚାଟା ରାବି ଉଠିଲା । ମୂଷା ଦି' ତିନିଟା ଅଜୟ ଗୋଡ଼ ଉପରେ ଦଉଡ଼ି ପଳେଇଲେ । ଅଜୟ ଠିଆ ହୋଇଥିଲା । ତାକୁ କିଛି ଦିଶୁ ନଥିଲା । ଅମାବାସ୍ୟାର ମେଘୁଆ ରାତିଠାରୁ ଆହୁରି ଅନ୍ଧାର ।

ଟର୍ଚ୍ଚ ଫୋକସ୍‌ଟି ଗୋଲେଇ ହୋଇ ତଳେ ପଡ଼ିଲା । ଅଜନ୍ତା ପାଦ ଯୋଡ଼ିକୁ ଅନେଇ ଅନେଇ ଅଜୟ ଆଗଉଥିଲା । କେଉଁ କାଳର ପରିତ୍ୟକ୍ତ ଘରଟା ବୋଲି ତଳର ଅଳିଆ ସୂଚେଇ ଦେଉଥିଲା । ହଠାତ୍ ଗୋଟାଏ ଜାଗାରେ ଅଜନ୍ତାର ପାଦ ଯୋଡ଼ିକ ନିଶ୍ଚଳ ହୋଇଗଲା । ଟର୍ଚ୍ଚ ଆଲୁଅ ବଙ୍କେଇ ଗଲା ଡାହାଣ ଆଡ଼କୁ । ସେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥିର ହୋଇଗଲା ।

କେଇ ବିନ୍ଦୁ ରକ୍ତ !

ଅଜୟ କ'ଣ କହିବାକୁ ଯାଉଥିଲା । ଅଜନ୍ତା ତା' ମୁହଁରେ ହାତ ଚାପି ଧରିଲା । ତେଣୁ ଟର୍ଚ୍ଚ ଫୋକସ ଫେରିଆସିଲା ବେଳକୁ ଅଜୟ ଦେଖିଲା ଗୋଟାଏ କଳା ବିରାଡ଼ି ତେଣିକି ପଳେଇ ଯାଉଚି । ଚେହେରାଟା ଅସ୍ୱାଭାବିକ । ଅଜନ୍ତା ଭଲକରି ଦେଖିପାରିଲା ନାହିଁ । କିନ୍ତୁ ଭଲ କରି ଦେଖିବା ପାଇଁ ମନ ହେଉଥିଲା । ପାଟି ନ ଫିଟେଇ ଅଜନ୍ତାର ଡାହାଣ ହାତରୁ ଟର୍ଚ୍ଚଟି ଆଣି ଆଉଥରେ ତେଣିକି ଫୋକସ୍ କଲା । ସେଇ କଳା ବିଲେଇଟା ଗୋଟାଏ ଅଧାକାନ୍ଥି ଉପରେ ବସି ଗୋଡ଼ଟାକୁ ଚାଟୁଛି । ଆଖି ଦି'ଟା ଜଳୁଛି । ଏପରି ଅସମ୍ଭବ ଆକୃତିର କଳା ବିରାଡ଼ି ଅଜୟ କେବେ ଦେଖିନଥିଲା । ବିରାଡ଼ିଟା ଗୋଡ଼ଟାକୁ ଚାଟିବାରେ ଲାଗିଥିଲା । ଯେମିତି ସେ କାହାରି ଉପସ୍ଥିତି ଅନୁଭବ କରିନାହିଁ । ଅଜୟ ଟର୍ଚ୍ଚ ଫୋକସ୍‌ଟା ଫେରାଇ ଆଣୁଥିଲା, ଆଉଥରେ ରକ୍ତ ବିନ୍ଦୁଗୁଡ଼ାକ ଉପରେ ଫୋକସ୍ କରିବାକୁ ଇଚ୍ଛା କଲା । ସେଠି କି ତା' ଆଖପାଖରେ ଦେଖିଲାନି । ଅଜନ୍ତା ମୁହଁକୁ ଅନେଇଲା ।

ଗମ୍ଭୀର । ଅଜୟ ହାତରୁ ଟର୍ଚ୍ଚଟା ନେଇ ପୁଣି ଆଗେଇଲା । ଚେମଣିଆ ଗୁଡ଼ାକ ବେଶି ବେଶି ଫଡ୍ ଫଡ୍ ହେଉଥିଲେ ।

ଏଥର ଟର୍ଚ୍ଚ ଫୋକସଟି ଯେଉଁଠି ସ୍ଥିର ହେଲା, ଅଜୟ ଶିହରି ଉଠିଲା । ଗୋଟାଏ ମୁର୍ଦ୍ଦାର । ବିକୃତ ମୁଖଭଙ୍ଗୀ । ଯୁବକ । ବୟସ ତିରିଶି ଭିତରେ । ପିନ୍ଧିଚି ସୁପର ଫାଇନ୍ ଧୋତି ଓ ଆଦି ପଞ୍ଜାବି । ସୁନା ବୋତାମ, ରୋଲ୍‌ଡଗୋଲ୍‌ଡ ଫ୍ରେମ୍‌ର ଚଷମା । ପଞ୍ଜାବିଟା ରକ୍ତରେ ବୁଡ଼ି ଯାଇଚି । ବେକ ନଳୀଟାରେ ଅସଂଖ୍ୟ ଆମ୍ପୁଡ଼ା ଦାଗ । ପିଠିଟା ଆମ୍ପୁଡ଼ା ହୋଇଚି । ଯେମିତି ଗୋଟିଏ ବ୍ଲେଡ୍ ଧରି କିଏ ଆଖିବୁଜି ଅସଂଖ୍ୟଥର ଚଳେଇ ଯାଇଚି । ଅଜୟ ମୁର୍ଦ୍ଦାରଟାକୁ ଲେଉଟଉଥିଲା, ଟର୍ଚ୍ଚ ଲିଭିଗଲା । ଅଜନ୍ତା ଅଜୟ ହାତ ଧରି ଟାଣି ନେଇଗଲା ।

ଦୂରରୁ କିଏ ଆସୁଚନ୍ତି । ଧୀର କଥା ଶୁଭୁଚି । ପାଦଶବ୍ଦ ଆଗେଇ ଆସିଲାଣି । ସବୁ ଛାଇ ଛାଇ ଦିଶୁଚି । ଚାରିଜଣ ଲୋକ । ସମସ୍ତଙ୍କ ପାଟିରେ ସିଗାରେଟ୍ ନିଆଁ ଜଳୁଚି । କାହାରିକି ଚିହ୍ନି ହେଉନି । କଥାବାର୍ତ୍ତା ଶୁଣି ହେଉନି । ଏମାନଙ୍କ ଦୂରତାକୁ ସେମାନଙ୍କ ଧୀରକଥା । ସେମାନେ ମୁର୍ଦ୍ଦାର ପାଖରେ ଠିଆହେଲେ । କ'ଣ ଆଲୋଚନା ହେଲା । ଦି'ଜଣ ଚାଲିଗଲେ । ଗୋଟାଏ ଷ୍ଟ୍ରେଚର ଆଣି ମୁର୍ଦ୍ଦାରଟାକୁ ତା' ଉପରେ ଶୁଆଇ ଦେଲେ । ଦି'ଜଣ ଧରିଲେ । ଦି'ଜଣ ପଛେପଛେ ଗଲେ । ଅଜନ୍ତା ଓ ଅଜୟ ସେମାନଙ୍କୁ ଅନୁସରଣ କଲେ । ମୁର୍ଦ୍ଦାର ଯେଉଁଠି ପଡ଼ିଥିଲା, ସେଇଠି ଅଜୟ ଗୋଡ଼ରେ କଣଟାଏ ବାଜିଲା । ଡାଏରିଟାଏ । ଅଜୟ ଉଠେଇ ଆଣିଲା । ଦେଖିବାକୁ ବା ପଢ଼ିବାକୁ ଅବସର ନଥିଲା । ଅଜନ୍ତା ଓ ଅଜୟ ସେମାନଙ୍କୁ ଅନୁସରଣ କରୁଥିଲେ ।

ସେମାନେ ସେ ଘରୁ ବାହାରି ପଦାକୁ ଗଲେ । ଗୋଟିଏ ସରୁଗଳି ଭିତରେ ପଶିଲେ । ଦୁଇଜଣ ମୁର୍ଦ୍ଦାରଟାକୁ ଧରିଥିଲେ । ନିର୍ଜନ ଆଉ ସଂକୀର୍ଣ୍ଣ ରାସ୍ତାଟାରେ ପାଦଶବ୍ଦ ଗୁଡ଼ାକ ଭୟଙ୍କର ଶୁଭୁଥିଲା । ରାସ୍ତାର ବତିଗୁଡ଼ାକ ଆଖି ମିଞ୍ଜିମିଞ୍ଜି କରୁଥିଲେ । ସେମାନେ ଯେଉଁଠି ଅଟକିଲେ, ସେ ଗୋଟାଏ ତିନିତାଲା କୋଠା । ଖୁବ୍ ମନ୍ଦ ନୁହେଁ ।

ଦରବାନ୍ ଆଖି ମଳି ମଳି ଉଠି ଫାଟକ ଖୋଲିଦେଲା । କ୍ୟା ହୈ ? ପଚାରିଲା । ଏମାନେ କିଛି ଉତ୍ତର ଦେଲେନି । ଜଣେ ଗୋଟେ ସିଗାରେଟ୍ ଦେଲା । ଦରବାନ କୃତଜ୍ଞତା ଜଣେଇ ସଲାମ ବଜେଇଲା । ସେମାନେ ଭିତରକୁ ଗଲେ । ଦରବାନ ଫାଟକ ବନ୍ଦ କଲା । ଏମାନେ ପଦାରେ ରହିଲେ ।

ଅଜୟ ଅଜନ୍ତା ମୁହଁକୁ ଚାହିଁଲା । ତା' ଆଖି ଯୋଡ଼ାକ ସେମାନଙ୍କୁ ଅନୁସରଣ କରୁଥିଲା । ଫାଟକ ବନ୍ଦ ହୋଇ ଯାଇଥିଲା । ସେମାନେ ଅଦୃଶ୍ୟ ହୋଇ ଯାଇଥିଲେ । କୋଠାଟି ଶୋଇପଡ଼ିଥିଲା । ଦରବାନ୍ ଦଉଡ଼ି ଖଟିଆ ଉପରେ ବସି ସିଗ୍ରେଟ୍ ଲଗାଉଥିଲା ।

ଦିନେ ରାତିରେ

ଖେଁ ଖେଁ କାଶୁଥିଲା। ଅଜନ୍ତା ଅଜୟକୁ ଦେଖି ଖଟିଆ ଉପରକୁ ଉଠିଆସିଲା। ନିଃଶବ୍ଦରେ ତାଲା ଖୋଲିଦେଲା। ଦୁହେଁ ଭିତରକୁ ପଶିଲେ। ପଛକୁ ଚାହିଁ ଦେଖିଲେ ଦରବାନ୍ ସିଗାରେଟ୍‌ରେ ଟାଣ ଦେଉଛି। ଭକ୍ ଭକ୍ ଧୂଆଁ ଛାଡୁଛି। ଖେଁ ଖେଁ କାଶୁଚି।

ଅଜୟ ଆଗକୁ ଅନେଇଲା। ଅଜନ୍ତା ଅନେକ ବାଟରେ। ଶିଡ଼ିର ପ୍ରଥମ ପାହାଚରେ ଗୋଡ଼ ରଖି ପଛକୁ ଚାହିଁଛି। ଅଜୟ ପାଦର ଗତି ଟିକେ ବଢ଼େଇଦେଲା।

ତିନିତାଲାର ଶେଷ ଘରଟା। ଡାହାଣ ପାଖରେ ବାଥରୁମ୍। ବାଁ ପାଖରେ ସରୁ ବାରଣ୍ଡା ଖଣ୍ଡେ। ସେଇଠି କାହାର ଥିରି ଥିରି କଥା ଶୁଭୁଚି। ଅଜୟ କାନେଇଲା। କିଛି ଶୁଣି ପାରିଲା ନାହିଁ। ହଠାତ୍ ସେଇ ବାରଣ୍ଡାଯୁକ୍ତ ରୁମ୍‌ଟାରେ ଗୋଟିଏ ନୀଳ ଆଲୋକ ଜଳି ଉଠିଲା। ଝରକାର କାଠ କବାଟ ଲାଗିଥିଲା। କିଛି ଦେଖି ହେଲାନାହିଁ। ଭିତରେ କିଏ କାନ୍ଦୁଥିଲା ପରି ମନେହେଲା। ଅଜୟ ଗୋଟାଏ ଝରକା କବାଟରେ କାନ ଯୋଖି ଶୁଣିଲା। ହଁ, କିଏ କାନ୍ଦୁଚି। ଅଜନ୍ତା ମୁହଁକୁ ଚାହିଁଲା, ସେ ସେମିତି ହସୁଚି। ଅଜୟ ଝରକା କବାଟ ଟିକିଏ ଫାଙ୍କ କରିବାକୁ ଚେଷ୍ଟା କରୁଥିଲା। ଅଜନ୍ତା ବାଧା ଦେଲା। ଟାଣି ଟାଣି ନେଇଗଲା ଆର ପାଖକୁ। ସେଠି ଗୋଟିଏ ଗୋଲେଇ ଲୁହାଶିଡ଼ି। ତଳକୁ ଓ ଉପରକୁ ଲମ୍ବିଯାଇଚି। ଅଜନ୍ତା ତଳକୁ ଓହ୍ଲେଇଲା। ଦି'ତାଲା। ଅନ୍ଧାର। କାହାରି ଘରେ ବତି ଜଳୁନାହିଁ। ଅଜୟ ଅନୁଭବ କଲା...ଏଇଟା ଗୋଟାଏ ଭଡ଼ା କୋଠି। ଅନେକ ଲୋକ ରୁହନ୍ତି ହୁଏତ।

ଅଜନ୍ତାର ଟର୍ଚ୍ଚ ଫୋକସ୍‌ଟା ଯେଉଁ ପିତଳ 'ନେମ୍ ପ୍ଲେଟ୍' ଉପରେ ଥମିଲା, ଅଜୟ ପଢ଼ିଲା–ଏସ୍.ଏସ୍. ରାୟ, ବାର–ଆଟ୍‌ଲ। ଅଜୟ ବିସ୍ମିତ ହେଲା। ଟିକିଏ ଆଗରୁ ଏ କୋଠା ଉପରେ ଯେଉଁ ଧାରଣା ବଦ୍ଧମୂଳ ହେଉଥିଲା କ୍ରମେ ଶିଥିଳ ହେଲା। ଏଠି ତେବେ ମାନ୍ୟଗଣ୍ୟ ବ୍ୟକ୍ତିମାନେ ବାସ କରନ୍ତି। ଦ୍ୱିତୀୟ 'ନେମ୍ ପ୍ଲେଟ୍'ଟି ଡାକ୍ତର ଆର୍.ଏସ୍. ସୁନ୍ଦରମ୍, ଏମ୍.ବି.ବିଏସ୍.। ତୃତୀୟଟି ଏସ୍.ଆର୍. ଶାସ୍ତ୍ରୀ, ଏମ୍.ଏ.। ଦୋତାଲାରେ ସେଇ ତିନୋଟି ଫ୍ଲାଟ୍। ଆଉ କେହି ନାହାନ୍ତି। ଅଜୟର ଶ୍ୱାସ ରୁଦ୍ଧ ହୋଇଆସିଲା। ଭଦ୍ରଲୋକମାନଙ୍କ ଦୁଆରେ ରାତିଅଧରେ ଏପରି ଚୋରଙ୍କ ପରି ଘୂରି ବୁଲିବା ଉଚିତ୍ ନୁହେଁ। ସେ ଅଜନ୍ତା ମୁହଁକୁ ଚାହିଁଲା। ସେଇ ହସ।

ଏଥର ତଳତାଲା। ସେପରି କେହି ବିଶିଷ୍ଟ ବ୍ୟକ୍ତି ଥିଲାପରି ମନେହେଲାନାହିଁ। ଦି'ଚାରିଟା କାଠ 'ନେମ୍ ପ୍ଲେଟ୍' ଉପରୁ ରଙ୍ଗ ଉଠିଗଲାଣି। ଅକ୍ଷର ଲିଭି ଆସିଲାଣି। ତା'ଛଡ଼ା ଛୋଟ ଛୋଟ ଘରଗୁଡ଼ାକ। ଆଠ ଦଶଟି ପରିବାର ରହିଲା ପରି ମନେ ହେଉଥିଲା।

କିନ୍ତୁ କେଉଁ ରୁମ୍‌ରେ କିଛି ଆବାଜ ସେମାନେ ପାଉନଥିଲେ। ଖାଲି ତିନିତାଲାର ସେଇ କାନ୍ଦଣା ସ୍ୱର ଭଳି କ'ଣ ଟିକିଏ ଶୁଭୁଥିଲା। ଭୁଲ୍ ବି ହୋଇପାରେ। ସେ ଯା'ହେଉ,

ମୁର୍ଦ୍ଦାର ଘେନି ଯେଉଁ ଚାରିଜଣ ଲୋକ ଏ କୋଠା ଭିତରକୁ ଆସିଲେ, ସେମାନଙ୍କୁ ଅଜୟ ଖୋଜୁଥିଲା । କାଳେ କେଉଁଠି ଅକସ୍ମାତ୍ ହାବୁଡ଼ି ପଡ଼ିଲେ ହୁଅନ୍ତାନି ? କିଏ ଜାଣେ ହୁଏତ ଯା ଭିତରକୁ ଆସି ଅନ୍ୟ କେଉଁ ବାଟେ ସେମାନେ ବାହାରି ଯାଇଛନ୍ତି ।

ଅଜୟ ଚମକି ପଡ଼ିଲା । ଠକ୍‌କିନା କ'ଣ ଗୋଟାଏ ଶବ୍ଦ ହେଲା । ବୁଲି ଅନେଇଲା ବେଳକୁ କୋଣ ଘରର କବାଟଟା ଧଡ୍ କିନା ବନ୍ଦ ହୋଇଗଲା । ଅଜନ୍ତା କୁଆଡ଼େ ଗଲା ? ଏପାଖ ସେପାଖ କୋଉ ପାଖରେ ଅଜନ୍ତା ଦିଶିଲାନି । ସେ କ'ଣ ତା' ସଙ୍ଗରେ ରସିକତା କରିବା ପାଇଁ ସେ ଘରେ ଲୁଚିଗଲା ? ଯେଉଁ ଘର କବାଟ ଧଡ୍‌କିନା ବନ୍ଦ ହୋଇଯାଇଥିଲା, ଅଜୟ ସେଇ କବାଟଟାକୁ ପେଲିଲା । ଭିତରୁ ବନ୍ଦ ହୋଇଚି । ଖଡ୍ ଖଡ୍ କରିବାକୁ ସାହସ କୁଳେଇଲା ନାହିଁ । କାହା ଘର ଭିତରେ କିଏ ଅଛି, କିଏ ଜାଣିଲା ?

ଅଜୟ ଏଣେ ତେଣେ ଚାହିଁଲା । ଏପାଖ ସେପାଖ ଖୋଜିଲା । ଅଜନ୍ତା ତେବେ ଗଲା କୁଆଡ଼େ ? ପୁଣି ଉପରକୁ ଉଠିଗଲା ନାହିଁ ତ ? ଗୋଲେଇ ଶିଡ଼ିଟାର ପ୍ରଥମ ପାହାଚରେ ଗୋଡ଼ ଦେଲାକ୍ଷଣି ଅଜୟର ଅନ୍ତରଟା ଥରି ଉଠିଲା । ଯଦି ଅଜନ୍ତାକୁ ନ ପାଏ ? କମ୍ପିଲା ପାଦ ଯୋଡ଼ି ନେଇ ଅଜୟ ଉପରକୁ ଉଠିଗଲା । ଏମ୍, ଏସ୍, ରାୟ, ବାର-ଆଟ ଲଙ୍କ ଦୁଆରେ କିଏ ଜଣେ ଠିଆ ହୋଇଚି । ନା, ନା, ନିଜେ ସେ ବୋଧହୁଏ ରାୟ ସାହେବ । ପକେଟରୁ ଚାବି ବାହାର କରି ଦୁଆର ଖୋଲି ଭିତରକୁ ପଶିଲେ । ଅଜୟ ଯେମିତି କେଉଁଠି ତାଙ୍କୁ ଦେଖିଥିଲା ପରି ମନେହେଲା । ହଁ, ହଁ, ଅଜନ୍ତା ଓ ସେ ଆସୁଥିଲା ବେଳେ ଯେଉଁ ଲୋକଟାକୁ ଦେଖି ଅଜନ୍ତା ଅଜୟକୁ ଟାଣି ନେଇ ଅନ୍ଧାରରେ ଲୁଚି ଯାଇଥିଲା, ଏ ସେଇ ହେବେ ପରା । ପ୍ୟାଣ୍ଟ୍ ସୁଟ୍, ମୁହଁରେ ଚୁରୁଟ, ଆଖିରେ କଳା ଚଷମା । ତା'ହେଲେ ସେ ବାରିଷ୍ଟର ରାୟ ସାହେବ । ଏଇଠି ରୁହନ୍ତି ? ଅଜନ୍ତା ତାଙ୍କୁ ଦେଖି ଲୁଚୁଥିଲା କାହିଁକି ?

ଅଜୟ ପକେଟରୁ ରୁମାଲ ବାହାର କରି କପାଳର ଝାଳବିନ୍ଦୁ ଗୁଡ଼ାକ ପୋଛୁ ପୋଛୁ କାହା ସହିତ ଧକ୍‌କା ଖାଇଲା । ଅଜନ୍ତା ହେବ ପରା ! ବୁଲି ଅନାଇଲା ବେଳକୁ ଦରବାନ । ତା' ଛାତିରୁ ଧଡ୍‌କିନା ଅତରାଟାଏ ଖସିପଡ଼ିଲା ।

ବାବୁଜୀ, ଅଭିତକ ଆପ ଶୋୟେନେହିଁ । ଯାଇଏ, ଶୋ ଯାଇଏ । ରାତ ବହୁତ ହୋଗୟା, ଦରବାନ ବୁଢ଼ା ଚାଲିଗଲା ।

ଅଜୟ ଗୋଟାଏ କାନ୍ଥକୁ ଆଉଜି ଝାଳରେ ଗାଧୋଇ ପଡ଼ିଥିଲା । ଏ ଯାତ୍ରାରୁ ବଞ୍ଚିଯାଇଚି ଯେ । ଦରବାନ୍ ହୁଏତ ତାକୁ ଚିହ୍ନିପାରିନାହିଁ । ନୋଇଲେ....

ଡାକ୍ତର ସୁନ୍ଦରମ୍‌ଙ୍କ ଘରେ ବତିଟା ହଠାତ୍ ଜଳି ଉଠିଲା । ଧୀରେ କବାଟଟା ଖୋଲିଗଲା । ଆଗେ ଗୋଟାଏ ପାଇପ୍ ଲମ୍ବି ଆସିଲା, ତା'ପରେ ମୁହଁଟା । ଅଜୟ ଆଉ କିଛି ବାଟ ନ ପାଇ ଯେଉଁଠି ଠିଆ ହୋଇଥିଲା, ସେଇ ବାଁ ପାଖକୁ ଗୋଟିଏ ଛୋଟ

ଦରଜା ମେଲା ଥିଲା, ତାରି ଭିତରେ ଗଳିଗଲା। ସେଇଟା ହୁଏତ ବାରିଷ୍ଟର ରାୟଙ୍କର ଗୋଟାଏ ଘର ହୋଇଥିବ। ଆଉ ଭାବିବାକୁ ବେଳ ନ ଥିଲା। ରକ୍ଷା ଯେ, ରୁମ୍‌ଟା ଅନ୍ଧାର। ଅଜୟ ଶୁଣିଲା ଡାକ୍ତର ସୁନ୍ଦରମ୍‌ଙ୍କ ଗଳା। ଦରବାନଙ୍କୁ ସେ ଡାକି ପଚାରୁଛନ୍ତି, କାହା ସହିତ କଥାବାର୍ତ୍ତା କରୁଥିଲୁ।

ଦରବାନ ସଫା ସଫା ମନା କରି ଦେଲା: ନା କାହାରି ସଙ୍ଗରେ ନୁହେଁ।

ଡାକ୍ତର ପୁଣି ପଚାରିଲେ: ଏତେ ରାତିରେ କାହିଁକି ଉପରକୁ ଆସିଥିଲୁ?

: ଆଜ୍ଞା, କ'ଣ ଗୋଟାଏ ଖଡ୍ ଖଡ୍ ଶବ୍ଦ ଶୁଣିଲି।

: ଆଗରୁ କ'ଣ ଶୁଣୁନଥିଲୁ? କାହିଁ କେବେ ତ ଆସୁନଥିଲୁ ? ଦେଖୁଚି ଏ ଦି' ଦିନ ହେବ ତୁ ରାତିରେ ଭାରି ଏପାଖ ସେପାଖ ହେଉଛୁ। ରାତିଅଧରେ ଭଦ୍ରଲୋକଙ୍କୁ ଆସି ଡିଷ୍ଟାର୍ବ କରିବାର କିଛି ମାନେ ହୁଏ ନାହିଁ। ଖବରଦାର୍, ରାତିରେ ତୁ ଆଉ ଉପରକୁ ଆସିବୁ ନାହିଁ।

ଡାକ୍ତର ସୁନ୍ଦରମ୍‌ଙ୍କ ଦୁଆର ବନ୍ଦ ହେଲା।

ଅଜୟ ସେଇ ଅନ୍ଧକାର ଘରର ଗୋଟିଏ କୋଣରେ ଠିଆ ହୋଇଥିଲା। ଅନ୍ଧାର ଧୀରେ ଆଖି ସହି ଯିବାରୁ ଦେଖିଲା ସେ ଗୋଟାଏ ଷ୍ଟୋରରୁମ୍ ଭିତରେ ପଶିଛି। ଏଣୁ ତେଣୁ ଜିନିଷପତ୍ର, ବସ୍ତା, ବାକ୍‌ସ ଆଲିମାଳିଆ ଘରଟାରେ ଭର୍ତ୍ତି ହୋଇଛି। ଅଜୟ ମୁଣ୍ଡରେ କିଛି ଫନ୍ଦି ପଶୁଟୁ ନ ଥିଲା। ଏଠୁ ବାହାରି ପଳେଇଲେ ବଞ୍ଚି ଯାଇ ହୁଅନ୍ତା। ଆଉ କିଛି ସମୟ ଯାଉ। ବାରିଷ୍ଟର ରାୟ ହୁଏତ ଶୋଇ ନାହାନ୍ତି, ଡାକ୍ତର ସୁନ୍ଦରମ୍ କ'ଣ କରୁଛନ୍ତି କିଏ ଜାଣେ? ଅଜୟ ସେଇଠି ବସିରହିଲା। ଆଉ କିଛି ସମୟ ଯାଉ। ଅଜୟ ଆଖି ବୁଜି ଭାବୁଥିଲା।

ପାଖ ଘରେ କଲିଂ ବେଲ୍ ବାଜି ଉଠିଲା। ଦୂରରୁ କାହାର ହାଓ୍ୱାଇ ପାଦଶବ୍ଦ ଶୁଣାଗଲା। ଧୀର ପାଦଶବ୍ଦ ପାଖେଇ ଆସିଲା। ଅଜୟ ଛାତିଟା ଯେମିତି ସେଇ ତାଳରେ ତାଳ ଦେଇ ନାଚୁଥିଲା। ପାଦଶବ୍ଦଟା ଆହୁରି ପାଖେଇ ଆସି ତେଣେ ବଙ୍କେଇଗଲା। ତା'ପରେ ନିଶ୍ଚଳ। ଫସ୍‌ଫାସ୍ କଥା କେଇପଦ। ହଠାତ୍ ସେ ଘରର ବତିଟା ଜଳି ଉଠିଲା। ଅଜୟକୁ ସେ ଘରେ ଆତ୍ମଗୋପନ କରିବା ପାଇଁ ଯଥେଷ୍ଟ ଜାଗା ଥିଲା। ସେ ଲୁଚି ଲୁଚି ଦେଖିଲା, ଦୁଇଜଣ ଲୋକ ସେ ଘର ଭିତରକୁ ଆସିଲେ। ଘରର ଗୋଟାଏ କୋଣରେ ଭୀଷଣକାୟ ଗୋଟାଏ କାଠ ବାକ୍‌ସ ରଖା ହୋଇଥିଲା। ଜଣେ ତାଲା ଖୋଲି ଢାଙ୍କଣାଟା ଉଠେଇଲା। ଆଗଜଣକ ନଇଁପଡ଼ି ଦେଖିଲା। ମୁହଁରେ ବିରକ୍ତିକର ଛାପ ସ୍ପଷ୍ଟ ଦେଖାଯାଉଥିଲା।

: ଯେତେ ସବୁ ଅପଦାର୍ଥ। ତମମାନଙ୍କ ଦ୍ୱାରା କିଛି ହେବନାହିଁ।

ଆରଜଣକ ଅପରାଧୀଙ୍କ ଭଳି ଠିଆ ହୋଇଥିଲା। ମୁହଁରେ ଭାଷା ନଥିଲା।

: ବର୍ତ୍ତମାନ ଉପାୟ କ'ଣ ?

ଆର ଲୋକଟା ନିର୍ବାକ୍ ହୋଇ ଠିଆ ହୋଇଥିଲା।

: ନେଇ ଯାଅ, ଯାକୁ ଶୀଘ୍ର ଖଲାସ କରିଦେଇ ଆସ। ଇଏ ଯେ ସେଇ, ତୁମକୁ କିଏ ଚିହ୍ନେଇ ଦେଲା ?

ଭାରି ଭ୍ରମ ହେଇଛି ଆଜ୍ଞା। ଆର ଲୋକଟି ବିନୀତ କଣ୍ଠରେ କହିଲା।

: କିନ୍ତୁ ତୋର ଏହି ଭ୍ରମ, ମୋ ପାଇଁ ହୁଏତ ମୃତ୍ୟୁ କବର ରଚନା କରିବ।

ଲୋକଟିର ଆଖିରେ ନିଆଁ ଜଳୁଥିଲା। ସେ ଦୁମ୍ ଦୁମ୍ ହୋଇ ଘରୁ ବାହାରିଗଲା। ଆଉ ଦି'ଟା ଜଳନ୍ତା ଆଖି ସେହି ବାକ୍ସ ଭିତରେ ବୁଲୁଥିଲା। ଅଜୟ ଦେଖିଲା, ସେଟା ସେଇ ଅଦ୍ଭୁତକାୟ କଳା ବିରାଡ଼ି। ଏ ଲୋକଟିର ଆଖି ତା'ଉପରେ ପଡ଼ିଲାକ୍ଷଣି ସେ ଚିତ୍କାର କରି ଉଠିଲା। ଯେଉଁ ଲୋକଟି ଆର ଘରକୁ ଚାଲି ଯାଇଥିଲା, ସେ ତେଣୁ ଧାଇଁଆସି ଦେଖିଲା ଏ ଲୋକଟି ଥରୁଛି। କଳା ବିରାଡ଼ିଟା ତାରି ଆଡ଼କୁ ଅନେଇ କାନ୍ଥ ଉପରେ ବସିଛି।

: ଟାଇଗର !

ବିରାଡ଼ିଟା ଆର ଲୋକଟିର ପାଟିଶୁଣି କାନ୍ଥରୁ ତଳକୁ ଡେଇଁ ପଡ଼ିଲା। ଲାଙ୍ଗୁଳ ହଲେଇ ହଲେଇ ତା' ଗୋଡ଼ରେ ଘଷି ହେଲା।

ଲୋକଟି କହିଲା: ଶୀଘ୍ର । ଆଉ ଡେରି କରନି।

ସେ ଚାଲିଗଲା। ତା' ପଛେ ପଛେ କଳା ବିରାଡ଼ିଟା ମଧ୍ୟ।

ଏ ଲୋକଟି ପକେଟରୁ ରୁମାଲ କାଢ଼ି ମୁହଁରୁ ଝାଳ ପୋଛିଲା। କିଛିକ୍ଷଣ ପରେ ଆଉ ଜଣେ ଆସି ତା ସହିତ ସାମିଲ୍ ହେଲା। ଦୁହେଁ ଧରାଧରି କରି ବାକ୍ସରୁ ଗୋଟାଏ ଭାରି ପଦାର୍ଥ ବାହାର କଲେ। ଅଜୟର ଆଖିବୁଜି ହୋଇଗଲା। ସେଇ ମୂର୍ଦ୍ଧାରଟା। ସେମାନେ ନେଇଗଲେ। ବତିଗୁଡ଼ାକ ଲିଭିଗଲା। ଅଜୟ ଉହାଡ଼ରୁ ବାହାରି ପଦାକୁ ଚାଲିଯିବାକୁ ବସିଚି, ଆଉଜଣେ କିଏ ତା ପାଖ ଦେଇ ଚାଲିଗଲା। ଯେଉଁ ଦୁଆରବାଟେ ଅଜୟ ଭିତରକୁ ପଶିଥିଲା ସେ ଦୁଆରଟା ବାହାରୁ ବନ୍ଦ ହୋଇଗଲା।

ଅଜୟର ମନେହେଲା, ସେ ଯେପରି ଏକ ମୃତ୍ୟୁଗହ୍ବର ଭିତରେ ପଶିଛି। ଅଜନ୍ତା ତାକୁ ମରଣ ମୁହଁକୁ ଠେଲିଦେଇ ଖସିଯାଇଛି। କିନ୍ତୁ ଅଜନ୍ତାର ସେ କି ଦୋଷ ଥିଲା ? ଅନେକ ଦିନର ସାଙ୍ଗ ଅଜନ୍ତା। ଅତୀତରେ ତା'ର ସହପାଠିନୀ ଥିଲା। ବର୍ତ୍ତମାନର କଥା ଛାଡ଼ିଦେଲେ ଅଜନ୍ତାର ତା'ର କୌଣସି ମନୋମାଳିନ୍ୟ ନ ଥିଲା ତ! କିଏ ଜାଣେ, ଅଜନ୍ତା କୌଣସି ବିପଦର ସମ୍ମୁଖୀନ ହୋଇନାହିଁ ତ ?

ଦିନେ ରାତିରେ

ଅଜୟ ମନଟା ବିଦ୍ରୋହ କରିଉଠିଲା। ମରଣ ଯନ୍ତାରେ ପଡ଼ିଛି ଯେତେବେଳେ ଥରେ ତା' ମନର ବାସନା ଚରିତାର୍ଥ କରିନେଲେ କ୍ଷତି କ'ଣ ?

ଉଠିଲା ଅଜୟ। ଯେଉଁଆଡ଼େ ସେଇ ଲୋକଦୁଇଟା ଶବଟାକୁ ନେଇ ଯାଉଥିଲେ, ଅଜୟ ତାଙ୍କରି ପଛେ ପଛେ ଚାଲିଲା। ଗୋଡ଼ ଦୁଇଟା ଥରୁଥିଲା, ଛାତିଟା ପଡୁଥିଲା ଉଠୁଥିଲା। ତଥାପି ଅଜୟ ମନର ସମସ୍ତ ସାହସ ସଞ୍ଚୟ କରି ଆଗେଇଲା। ଦେଖାଯାଉ। ଶେଷ ପରିଣତି ଯଦି ତା'ର ମୃତ୍ୟୁ ହୁଏ, ହେବ।

ସେମାନେ ଶବଟାକୁ ନେଇ ତଳ ମହଲାକୁ ଓହ୍ଲେଇ ଯାଇଥିଲେ। ଗୋଟାଏ ଲମ୍ବା ହଲ ଘର ଭିତରେ ଆଉ ଦି'ଜଣ ବିରାଟକାୟ ଲୋକ ଅପେକ୍ଷା କରିଥିଲେ। ଏମାନଙ୍କ ହାତରୁ ଷ୍ଟ୍ରେଚରଟା ଓହ୍ଲେଇ ଶବାଟକୁ ତଳେ ଥୋଇଲେ। ତା' ଭିତର ଜଣେ କହିଲା, ମୋର ସର୍ବନାଶ ସୁନିଶ୍ଚିତ।

: କାହିଁକି ? ଆର ଜଣକ ପଚାରିଲା।

: କାରଣ ଏ ସେ ନୁହେଁ। ଲୋକଟି ଶବ ଆଡ଼କୁ ଆଙ୍ଗୁଳି ଦେଖେଇ କହିଲା।

: ତା'ହେଲେ ? ଆଉ ଜଣେ ଆକାଶରୁ ପଡ଼ିଲା ପରି କହିଲା।

: ମାଷ୍ଟର ମୋ ଉପରେ ଭୀଷଣ ରାଗିଛନ୍ତି। ଜାଣେନି ଜୀବନଟା ଆଉ କେଇଘଣ୍ଟା ରହିବ।

ସମସ୍ତେ ଲୋକଟି କଥାରେ ସମବେଦନା ଜଣାଇଲେ। ଶବଟାକୁ ଗୋଟା ଖାତ ଭିତରେ ପକେଇଦେଲେ। ଜଣେ ଆସି ଗୋଟାଏ ଇଲେକ୍‌ଟ୍ରିକ୍ ସୁଇଚ୍ ଟିପିଦେଲା। ସେମାନେ ସେଇଠି ବସି ସିଗାରେଟ୍ ଟାଣୁଥିଲେ। କାହାରି ମନରେ ସୁଖ ନ ଥିଲା।

ସେଇ ଲୋକଟି ପୁଣି କହିଲା: ମୁଁ ଆଶ୍ଚର୍ଯ୍ୟ ହେଉଚି ଭାଇ, ଲୋକଟା ମୋ ଆଖିରେ ଧୂଳି ଫିଙ୍ଗି କୁଆଡ଼େ ଅଦୃଶ୍ୟ ହୋଇଗଲା।

ଆଉଜଣେ କହିଲା: ବେଳେ ବେଳେ ସେହିପରି ହୋଇଥାଏ। ମୁଁ ଥରେ ଗୋଟାଏ ଲୋକ ପଛେ ପଛେ ଗଲି। ଲୋକଟା ରିଜର୍ଭ ବ୍ୟାଙ୍କରୁ ଦଶ ହଜାର ଟଙ୍କା ଧରି ବାହାରିଲା। ସେ ଯେଉଁ କଳା ମଟର ଗାଡ଼ିଟାରେ ବସିଲା, ମୁଁ ସେଇଆକୁ ଲକ୍ଷ୍ୟ କରି ଜିପ୍ ଛୁଟେଇଦେଲି। କିନ୍ତୁ ସେ ବଡ଼ବଜାର ଛକରେ ଓହ୍ଲେଇ କୁଆଡ଼େ ଯେ ଲୁଚିଗଲା ମୁଁ ଆଉ ତା' ପତ୍ତା ପାଇଲିନି।

ଆଉଜଣେ ପ୍ରଥମ ଲୋକଟିକୁ ଲକ୍ଷ୍ୟ କରି କହିଲା: ତୁ ଯଦି ଅସଲ ଲୋକଟିକୁ ନ ପାଇଲୁ, ତେବେ ଏଇଟାକୁ କାମ ଫତେ କରି ସାରି ଆଣିତ ସିଧା ଏଇଠି ଚୁଲିରେ ପକେଇ ଦେଇଥାଆନ୍ତୁ। ତାକୁ ମାଷ୍ଟର ଦେଖିବା ଯାଏ ରଖିଲୁ କାହିଁକି ?

: ଆରେ କଥା ସେଇଆ ଥିଲା ପରା ! ମାଷ୍ଟର ଦେଖିବାକୁ କହିଥିଲା।

ପ୍ରଥମ ଲୋକଟି କହିଲା।

ଅଜୟ ନାକରେ ରୁମାଲ ଦେଲା। ଇସ୍ କି ଗନ୍ଧ ମୂର୍ଦ୍ଦାରଟା ବୋଧହୁଏ ପୋଡ଼ିଯାଉଛି। ଏଠାରେ ବି ମୁର୍ଦ୍ଦାର ପୋଡ଼ିବା ପାଇଁ ଇଲେକ୍‌ଟ୍ରିକ୍ ଚୁଲିର ବନ୍ଦୋବସ୍ତ ଅଛି। ଅଜୟ ଛାତିଟା ଆହୁରି ଜୋର୍‌ରେ କମ୍ପିବାକୁ ଲାଗିଲା। ତା' ଅନୁସନ୍ଧିତ୍ସୁ ମନରୁ ଅନୁସନ୍ଧିତ୍ସା କେତେବେଳୁ ଦୂରେଇ ଯାଇଥିଲା। ଧୀରେଧୀରେ ଆତଙ୍କ ପୂରି ଉଠୁଥିଲା।

ଲୋକ ଗୁଡ଼ାକ ସେଇଠି ବସି ସିଗାରେଟ ଟାଣୁଥିଲେ। ଯେମିତି ଏ ଦୁର୍ଗନ୍ଧ ସହିତ ସେମାନେ ଅତି ମାତ୍ରରେ ପରିଚିତ। ତାଙ୍କ ଦେହମୁହଁରେ କୌଣସି ଭାବାନ୍ତର ପରିଲକ୍ଷିତ ହେଉନଥିଲା।

କିଏ ?

ଗୋଟାଏ ଅସ୍ପଷ୍ଟ ଛାୟା ସେଇବାଟେ ଦୂରେଇଗଲା। ଅଜୟ ଚମକି ପଡ଼ି ପଛକୁ ଚାହିଁଲା। କେହି ନାହିଁ। ହୁଏତ କିଛି ନୁହେଁ। ଅଜୟର ଦୁର୍ବଳ ମନର ଛାୟା-ରୂପ ହୋଇପାରେ।

ଏପରି ଗୋଟାଏ ଜାଗାରେ ଏତେ ସମୟ ବସି ରହିବା ବୁଦ୍ଧିମାନର କାମ ନୁହେଁ। ଅଜୟ ଭାବିଲା, ସେ ଚାଲିଯିବ। ନ ହେଲେ ତାକୁ ହୁଏତ ଏହି ଶବ ପରି ଇଲେକ୍ଟ୍ରିକ୍ ନିଆଁ ଆରାମରେ ପାଉଁଶ କରି ଫୁଙ୍କି ଦେବ। କିନ୍ତୁ ଅଜନ୍ତା ?

ସେ ଏମାନଙ୍କ ହାତରେ ପଡ଼ିନାହିଁ ତ ! ଆଉ ଭାବିଚିନ୍ତି ସ୍ଥିର କରିବାକୁ ଅବସର ନ ଥିଲା। ଅଜୟ ଧୀରେଧୀରେ ପଦାକୁ ବାହାରିଆସିଲା। ଏହି କାଳକୋଠରିରୁ ଖସି ଯାଇପାରିଲେ ହୁଏତ ପୈତୃକ ପ୍ରାଣଟା ରହିଯିବ।

ପୁଣି କାହାର କଥାବାର୍ତ୍ତା ଶୁଭୁଛି ?

ଅଜୟ ତରତରକି ତା'ପାଦ ଯୋଡ଼ିକ ପଛକୁ ଘୁଞ୍ଚେଇ ଆଣି ଗୋଟାଏ ଟବ୍ ପାଖରେ ବସିପଡ଼ିଲା। ଦୁଇଜଣ ଠିକ୍ ତା'ରି ପାଖ ଦେଇ ଚାଲିଗଲେ। ସେମାନଙ୍କ ପାଦଶବ୍ଦ ଗୁଡ଼ାକ ପୁଣି ଫେରିଆସିଲା। ଠିକ୍ ଅଜୟ ପାଖରେ ପାଦ ଚାରିଟା ଅଟକିଗଲା। ଜଣେ ଭାରି ଗଳାରେ କହିଲା: ନା ନା ଡେରି କରିବା ମୋଟେ ଉଚିତ୍ ନୁହେଁ। ତୁମେ କାଲି ସକାଳୁ ଚାଲିଯାଅ। ଯାଡ଼କା ଅବସ୍ଥା ବଦଳି ଯାଇଛି। ହୁଏତ ପୁଣି ବିପଦ ଆସିପାରେ। ଦେଖାଯାଉ।

ଆର ଲୋକଟି ଟବ୍‌ଟାକୁ ଘୁଞ୍ଚେଇବାକୁ ଚେଷ୍ଟା କରୁ କରୁ କହିଲା: ବାପ୍‌ରେ ! ଏଇଟା ତ ଅସମ୍ଭବ ଭାରି। ସଙ୍ଗରେ ତେବେ ତିନି ଚାରିଜଣ ଲୋକ ନେବାକୁ ହେବ।

: ନେଇଯାଅ। କିନ୍ତୁ ଶୀଘ୍ର ସବୁ ଶେଷକରି ଫେରିଆସିବାକୁ ହେବ । ଖୁବ୍ ସାବଧାନ।

ଦିନେ ରାତିରେ

: ସେଠିକା କଷ୍ଟମ ଅଫିସରଟା ଭୀଷଣକଡ଼ା ଲୋକଟାଏ। ଆରଥର ଯାଇ ଯାହା ହଇରାଣ ହେଇଥିଲି, ଭାବିଲି ଏ ଯାତ୍ରାରୁ ଆଉ ଉଦ୍ଧାର ନାହିଁ।

: ତମେ ଏଥର ଚମେଲୀକୁ ସଙ୍ଗରେ ନେଇଯାଅ। ସେ ଥିଲେ ବିଶେଷ ଅସୁବିଧା ହେବ ନାହିଁ।

ସେମାନେ ପୁଣି ଆଗକୁ ପାଦ ବଢ଼େଇଲେ।

: ଚାମେଲୀର କାଲି ରନ୍‌ଜି ଷ୍ଟାଡିୟମରେ ଡାନ୍‌ସ ଅଛିନା ?

: ଥିଲା, ମୁଁ ପ୍ରୋଗ୍ରାମ କ୍ୟାନ୍‌ସଲ କରେଇ ଦେଇଛି।

: କିନ୍ତୁ ସେଠିକି କାଲି ବହୁ ବିଶିଷ୍ଟ ଲୋକ ଆସୁଥିଲେ।

: ଚାମେଲୀ କାଲି ପ୍ରୋଗ୍ରାମରେ ଜଏନ୍‌କ....

ଆଉ କିଛି ଶୁଭିଲା ନାହିଁ।

ଅଜୟ ଛାତିରେ ହାତ ଦେଇ ଦେଖିଲା, ଝଡ଼ ବହୁଚି। ଯଦି ଟବ୍‌ଟା ଓଜନ ନ ହୋଇ ହାଲୁକା ହେଇ ଥାଆନ୍ତା...ତେଣିକି ଆଉ ଭାବିପାରିଲା ନାହିଁ।

ଯେଉଁ ଘରେ ମୁର୍ଦ୍ଦାରଟା ପୋଡ଼ା ହେଉଥିଲା, ସେ ଘରୁ ଆଲୁଅ ଲିଭିଗଲା। କାମ ଶେଷ କରି ସେମାନେ ଚାଲି ଯାଇଥିଲେ। ବାକି ତଳ ତାଲାର ଘର ଗୁଡ଼ାକ ସବୁ ପ୍ରାୟ ଭିତରୁ ବନ୍ଦ ଥିଲା। ଅଜୟ ସବୁ ଘର ଗୁଡ଼ାକ ବାହାରୁ ଠେଲି ଦେଖିଲା। ବନ୍ଦ।

ଜହ୍ନଟା ଏ ପର୍ଯ୍ୟନ୍ତ ବୁଡ଼ି ନାହିଁ। ହାତଟା ସଫା ଦିଶୁଚି। ହତା ଭିତରେ ଫାଟକ ଯାଏ ଯିବା ନିରାପଦ ନୁହେଁ। ଯଦି କାହାରି ଆଖିପଡ଼େ, ଆଉ ରକ୍ଷା ନାହିଁ। ଅଜୟର କୋମଳ ମନଟା ବେଳେବେଳେ ଟାଣ ହେଉଥିଲା। ଶେଷଯାଏ ତା' ଅଭିଳାଷ ଚରିତାର୍ଥ କରିବାକୁ ସେ ଯତ୍ନ କରିବ। ଘଟଣାଟାକୁ ଫୁଟବଲ କରି ନିଜେ ସେ ସଟ୍ ମାରିବ। କ୍ଷତି କ'ଣ ? ଯଦିଓ ମୃତ୍ୟୁର କଳାଛାଇ ପଛେ ପଛେ ଘୂରୁଛି, ତଥାପି ଏପରି ଆଡ୍‌ଭେଞ୍ଚରରେ ଆନନ୍ଦ ଅଛି। ଦେଖାଯାଉ।

ଅଜୟ ସେଇ ଗୋଳେଇ ଶିଡ଼ିଟା ପାଖରେ ପହଞ୍ଚି ପୁଣି ପାହାଚେ ପାହାଚେ ଉପରକୁ ଉଠିଲା। ଏଥର ସିଧା ତିନିତାଲାକୁ ଉଠିଗଲା। ଯେଉଁ ଘରେ ସେ କାହାର ମୃଦୁ କ୍ରନ୍ଦନ ଧ୍ୱନି ଶୁଣିଥିଲା, ସେଇ ଘରେ ଗୋଟିଏ ଝିଡ଼ିକି ଖୋଲାଥିବାର ଦେଖିଲା। ତିନି ଚାରିଜଣ ଲୋକ ବସି କ'ଣ ଗମ୍ଭୀର ଆଲୋଚନା ଚଳେଇଛନ୍ତି। କିନ୍ତୁ ଆଶ୍ଚର୍ଯ୍ୟ, ବାରିଷ୍ଟର ରାୟ ସେମାନଙ୍କ ମେଳରେ। ସେ ଏକ ବିଶିଷ୍ଟ ଆସନରେ ବସିଥିଲା ପରି ଲାଗୁଛି। ସେଇ ଅଦ୍ଭୁତକାୟ କଳା ବିରାଡ଼ିଟା ଟେବୁଲ ମଝିରେ ବସିଛି। ବାରିଷ୍ଟର ରାୟ କହୁଛନ୍ତି: ନୋହିଲେ ଅନ୍ୟ ଉପାୟ ନାହିଁ।

: ବେଶ୍ ତ ! ଆପଣ ଯଦି ଜାଣୁଛନ୍ତି ଅନ୍ୟ ଉପାୟ ନାହିଁ, ଆମର ଆପତ୍ତି କରିବାର

କ'ଣ ଅଛି। ଖାଲି ଟାଇଗରକୁ ନେଇ ଛାଡ଼ି ଦେଇଆସିଲେ ହେଲା। ସେତକ କାମ ମୁଁ ଚଳେଇ ନେବି।

: ବେଶ୍। କିନ୍ତୁ ଖୁବ୍ ସାବଧାନ। ଆଚ୍ଛା, ଚାମେଲୀ କାହିଁ?

: ଶୋଇଛି।

: ଯେଉଁଠାକୁ ଯିବାର କଥା ଥିଲା, ଯାଇଥିଲା?

: ବୋଧହୁଏ, ଏଇ ଘଣ୍ଟାଏ ହେବ ତ ଫେରିଲା, ଆପଣଙ୍କ ଆଗେ ଆଗେ।

: ସଂବାଦ?

: ପଚାରିନାହିଁ।

: ଜାଣିବା ନିତାନ୍ତ ଦରକାର। ନୋଇଲେ ଆମେ କାର୍ଯ୍ୟପନ୍ଥା ସ୍ଥିର କରିବା କିପରି?

: ଡାକିବି?

: ତା'ଛଡ଼ା ଉପାୟ ନାହିଁ ଯେ!

ଜଣେ ଉଠିଗଲା। ବାରିଷ୍ଟର ରାୟ କଳା ବିରାଡ଼ିଟାକୁ ଆଉଁଶି ଦେଲେ। ହସି ଉଠିଲେ।

ଆରଜଣକ ପଚାରିଲା: ଟାଇଗର କଥା ତ ଆପଣ କିଛି କହିଲେ ନାହିଁ। କେତେଥର ପଚାରିଲିଣି, ଖାଲି ପରେ କହିବି, କହୁଚନ୍ତି।

ବାରିଷ୍ଟର ରାୟ ହସିଲେ: ଆମ ଦେଶରେ ଏପରି ବିରାଡ଼ି କେବେ ଦେଖିଚ? ସମ୍ଭବ ନୁହେଁ। ମୁଁ ଏହାକୁ ଆଫ୍ରିକା ଜଙ୍ଗଲରୁ ଧରିଥିଲି। ଏଇଟା ତ ବିରାଡ଼ି ନୁହେଁ, ଆଫ୍ରିକା ଜଙ୍ଗଲରେ ଏଇଭଳି ଗୋଟାଏ ଜାତିର ପଶୁ ଅଛନ୍ତି। ଏହାଠାରୁ ଆହୁରି ଭୀଷଣକାୟ ଦେଖିବାକୁ। ଟାଇଗଣ ତାଙ୍କରି ବଂଶଧର।

ଚାମେଲୀ ଆଖି ମଳି ମଳି ଆସି ପହଞ୍ଚିଲା। ପଛେ ପଛେ ଆର ଲୋକଟି। ଅଜୟ ଯେଉଁ ପାଖରେ ଠିଆ ହୋଇଥିଲା, ତାକୁ ପଛ କରି ଚାମେଲୀ ବସିଲା। ଅଜୟ ଦେହଟା କାହିଁକି କମ୍ପି ଉଠିଲା। ଯଦିଓ ଅଜୟ ମଝିରେ ଟିକିଏ ଅନ୍ୟମନସ୍କ ଥିଲା, ତଥାପି ଯେଉଁ ମୁହୂର୍ତ୍ତକ ଚାମେଲୀ ମୁହଁ ଉପରେ ତା' ଆଖି ପଡ଼ିଥିଲା, ଅଜୟ କମ୍ପି ଉଠିଥିଲା। ଚାମେଲୀ ଅଜୟ ଆଡ଼କୁ ପଛ କରି ବାରିଷ୍ଟରଙ୍କ ମୁହଁ ଆଡ଼େ ମୁହଁକରି ବସିଲା। ଯଦିଓ ଅଜୟ ଭଲ କରି ଦେଖି ପାରିଲାନାହିଁ ତଥାପି ତା'ର ମନେହେଲା, ସିଏ ଯେମିତି ଅଜନ୍ତା। ଏଠି ଚାମେଲୀ ହୋଇ ବସିଛି। ଅଜୟର ମନ ଗୋଳେଇ ଘାଣ୍ଟି ହେଲା।

ସେମାନେ କ'ଣ କଥାବାର୍ତ୍ତା ହେଲେ ଅଜୟ ଅନ୍ୟମନସ୍କ ଥାଇ ଶୁଣିପାରିଲା ନାହିଁ। ମାତ୍ର ଯେତେବେଳେ ପ୍ରକୃତିସ୍ଥ ହେଲା; ଚାମେଲୀ ସେତେବେଳକୁ କ'ଣ ଯେମିତି ତା ବ୍ୟାଗରେ ଖୋଜୁଥିଲା। ବାରିଷ୍ଟର ରାୟ କହିଲେ: ମୁଁ ଜାଣେ, ତମର ସବୁକାମ ସେହିପରି। ନିଶ୍ଚୟ କେଉଁଠି ହଜେଇଛ। ଦେଖା ହୋଇଥିଲା?

ଦିନେ ରାତ୍ରିରେ

: ବହୁତ କଷ୍ଟରେ ।

: କଥାବାର୍ତ୍ତା ?

: ନା ।

: କେମିତି ମନେ ହେଉଛି ?

: ସେମାନ ଖୁବ୍ ତତ୍ପର ।

: ପାଇଲା ଭଳି ମନେ ହେଉନି । ତେବେ ଭାରି ଲାଗିଛନ୍ତି । ଯେଉଁ ଡାଇରିଟାରେ ଆମ କଥା ଲେଖା ଥିଲା, ସେଇଟା ଘେନି ଆସିଥିଲି, ଦେଖୁଚି ଏଥିରେ ତ ନାହିଁ । ଛାଡ଼ି ଆସିଲି କି ଆଉ ?

: ଥାଉ ସେ ଡାଇରି । ପାଇଥିଲେ ବିଶେଷ କିଛି ଲାଭ ହୋଇ ନ ଥାନ୍ତା । ଆଉ ଦରକାରୀ ଖବର କିଛି ?

: କାଲି ରନ୍‌ଜି ଷ୍ଟାଡିୟମକୁ ସମସ୍ତେ ଆସୁଛନ୍ତି ।

: ତମେ କିନ୍ତୁ ଯାଉନା ।

ଚାମେଲୀ କେବଳ ଅନେଇଲା ବାରିଷ୍ଟରଙ୍କ ମୁହଁକୁ । ସେ ହସିଲେ ।

: ମୁଁ ପ୍ରୋଗ୍ରାମ କାନ୍‌ସଲ୍ କରେଇ ଦେଇଚି । ତମ ପାଇଁ ଅନ୍ୟ ପ୍ରୋଗ୍ରାମ । ତମେ ସୁଦର୍ଶନ ସଙ୍ଗରେ ଯିବ । ସେଠିକା କଷ୍ଟମ୍ ଅଫିସରଟା କୁଆଡ଼େ ଭାରି ହଇରାଣ କରୁଛି ।

: ଆଉ ?

: ନା ଆଉ କିଛି ନୁହେଁ । କାଲି ରାତି ସୁଦ୍ଧା ଏଠାରୁ ସବୁ ହଟେଇଦେବା ଦରକାର । ସେମାନେ ଲାଗିଲେଣି ଯେତେବେଳେ ମୁଁ ଆଶଙ୍କା କରୁଚି । ତମ ମତ କ'ଣ ?

ଚାମେଲୀ ଟେବୁଲ୍ ଉପରେ ବସିଥିବା କଳା ବିରାଡ଼ିଟାକୁ ଆଉଁଶୁଥିଲା ।

: ଆପଣ ଯାହା ଉଚିତ୍ ମଣୁଛନ୍ତି କରନ୍ତୁ । ମୋ ମତାମତ ଉପରେ ତ ନିର୍ଭର କରି ହେବନାହିଁ ।

ଚାମେଲୀ ଉଠିଲା । ଅଜୟର ଗୋଡ଼ ଦିଟା କମ୍ପୁଥିଲା । ଏଇକ୍ଷିଣା ହୁଏତ ଚାମେଲୀ ଏଣିକି ମୁହଁ ବୁଲେଇବ । ସେ ଖାଲି ଭଲ କରି ଥରେ ଚାମେଲୀ ମୁହଁଟାକୁ ଦେଖିବାକୁ ଚାହୁଁଥିଲା ।

ଚାମେଲୀ ଚାଲିଗଲା । ଅଜୟ ମୁହଁ ଦେଖିପାରିଲା ନାହିଁ । ଅନ୍ୟମାନେ ବସିଥିଲେ । ଅଜୟ ଚାମେଲୀ ପଛେ ପଛେ ଉଠିଗଲା । ଚାମେଲୀ ଚାଲି ଯାଉଥିଲା । ଛାଇଟା ପଛେ ପଛେ ଅଜୟ ଧାଉଁଥିଲା । ଗୋଟାଏ ଲମ୍ବା ହଲ୍ ଘର । ଅନ୍ଧାର । ଛାଇ ବି ଅନ୍ଧାରରେ ମିଶିଗଲା । ଦୁଆରଟା ଠକ୍‌କିନା ପଡ଼ିଗଲା । ଭିତରେ କବାଟଟା ବନ୍ଦ ।

ଅଜନ୍ତା କ'ଣ ଚାମେଲୀ ? ଅଜୟ ତାକୁ ଧରି ପାରିଥିଲେ ମନର ପ୍ରଶ୍ନ ସମାଧାନ ହୋଇପାରିଥାନ୍ତା ।

ହଲ ଘର ସେ ମୁଣ୍ଡରେ ଗୋଟାଏ ଶବ୍ଦ ହେଲା। ଅଜୟ ବୁଲିପଡ଼ି ଅନେଇଲା, ଗୋଟାଏ ଫେଲ୍‌ଟ ହ୍ୟାଟ୍। ମେଞ୍ଚାଏ ଧୂଆଁ, ଗୋଟାଏ ପାଇପରୁ ବାହାରୁଛି। କିଏ ଜଣେ ଡିଆସିଲି ଜାଳି ପାଇପ୍ ଧରଉଚି। ଯୋତା ମଚ୍ ମଚ୍ ଶବ୍ଦ ଆଗେଇ ଆସୁଥିଲା। ଅଜୟ ଗୋଟାଏ ଖମ୍ବ ପଛଆଡ଼େ ଲୁଚିଯାଇଥିଲା। ପାଦଶବ୍ଦ ହଠାତ୍ ସ୍ଥିର ହୋଇଗଲା। ପୁଣି ଲେଉଟିଲା। ଅଜୟ ଚାହିଁଲା। ଲୋକଟି ଶିଡ଼ି ପାଖଯାଏ ଯାଇ ଠିଆ ହେଲା। କିଛି ଦିଶୁ ନ ଥିଲା। ଖାଲି ଶୁଭିଲା, ''ସିରିଞ୍ଜି''। କିଛି ସମୟ ନୀରବ। ତା'ପରେ କିଏ ଜଣେ ଭିତରୁ ଦଉଡ଼ି ଦଉଡ଼ି ଆସିବାର ଶବ୍ଦ ହେଲା। ପାଇପ୍ ମୁହଁରେ ବେଳେ ବେଳେ ନିଆଁ ଦିଶୁଥିଲା। ଧୂଆଁ ବି। ପାଇପ୍ ଏଥର ପୁଣି ଏଣିକି ଆସିଲା। ଅଜୟ ଆଗେ ଖମ୍ବମୂଳେ ଆତ୍ମଗୋପନ କଲା। କାନ୍ଥରେ ହାତ ବୁଲଉ ବୁଲଉ ଆଉ ଗୋଟାଏ କାହା ହାତ ଧରିପକାଇଲା। ସେ ହାତଟା ବିଜୁଳିଠାରୁ ଆହୁରି ବେଗରେ ଘୁଞ୍ଚିଗଲା। କିଏ ଜଣେ ପଳେଇଲା। ଏଣେ ପାଇପ୍‌ଧାରୀ ଲୋକଟି ଅଜୟ ପାଖ ଦେଇ ଚାଲିଗଲା।

ମଚ୍ ମଚ୍..... ମଚ୍..ମ.ଅ...ଚ୍...

ଯୋତାଶବ୍ଦ ଅନ୍ଧାର ପରି ଅଦୃଶ୍ୟ ହୋଇଗଲା।

ଅଜୟ ଖମ୍ବ ମୂଳରୁ ବାହାରିଗଲା। ତା'ହେଲେ ଅଜନ୍ତା କ'ଣ ଚାମେଲୀ? ପୁଣି ସେଇ ପ୍ରଶ୍ନ। ଯେଉଁ ଦୁଆର ଠେଲି ଚାମେଲୀ ଅଦୃଶ୍ୟ ହୋଇଥିଲା, ଅଜୟ ସେଇ ଦୁଆରକୁ ଧୀରେ ଠେଲିଲା। ଖୋଲିଗଲା। ଗୋଡ଼ ଚିପି ଚିପି ଭିତରକୁ ପଶିଲା। ଭିତରେ ଗୋଟିଏ କ୍ଷୀଣ ନୀଳ ଆଲୋକ ଜଳୁଚି। ଯେମିତି ଘରଟା ନିଘୋଡ଼ ନିଦରେ ଶୋଇଯାଇଚି। ଚମତ୍କାର ସାଜସଜ୍ଜା।

ବଖରାଟି ବୃହତ୍ ନହେଲେହେଁ କ୍ଷୁଦ୍ର ନୁହେଁ। ଚାରୋଟି କାଚ ଆଲମାରୀ। ସବୁଗୁଡ଼ିକ ମୋଟାମୋଟା ବହିରେ ପୂର୍ଣ୍ଣ। ଛୋଟ ଛୋଟ ଟେବୁଲ୍ ଗୁଡ଼ିକ ଉପରେ ଦାମିକା କନା ବିଛାହୋଇ, ଦେଶବିଦେଶର ମୂର୍ତ୍ତି ରଖା ହୋଇଛି। କାନ୍ଥରେ ବିରାଟ ବିରାଟ ତୈଳଚିତ୍ର। ମୂଲ୍ୟବାନ ଆସବାବପତ୍ରରେ ଘରଟି ପରିପୂର୍ଣ୍ଣ।

ଅଜୟ ସବୁଆଡ଼େ ଥରେ ଆଖି ବୁଲେଇ ଆଣିଲା। ତା'ଜୀବନ ଭିତରେ ଏପରି ସୁଦୃଶ୍ୟ ଘର କେବେ ସେ ଦେଖିନଥିଲା। କିନ୍ତୁ କେହି ଲୋକ ଥିଲାପରି ତ ଦିଶୁନାହାନ୍ତି। ସେ ଧୀରେ ଧୀରେ ଘରର ଚାରିଆଡ଼େ ବୁଲି ଦେଖିଲା। ଗୋଟାଏ ଜାଗାରେ ଏକ ବିରାଟ ଟେବୁଲ୍ ପଡ଼ିଚି। ଟେବୁଲ୍ ଚାରିପାଖକୁ ଲାଗି ପାଞ୍ଚ ଛ'ଖଣ୍ଡ ଚେଆର। ଟେବୁଲରେ ଖାତା, କାଗଜ, ବହି ଇତ୍ୟାଦି ଇତ୍ୟାଦି। ପାଖ ଆଲମାରୀଟାରେ ମୋଟା ମୋଟା ଆଇନ ବହି। ସେଥିରୁ ଗୋଟାଏ ଟେବୁଲ୍ ଉପରେ ମୁକୁଳା ହୋଇ ପଡ଼ିଚି।

କେମିତିଆ ତୀବ୍ର ଧୂଆଁ ଗନ୍ଧ ଅଜୟ ନାକରେ ବାଜିଲା। ସେ ଚଞ୍ଚଳ ହୋଇ ଏଣିକି

ଡେଣିକି ଅନେଇଲା। ଟେବୁଲ ଉପରେ ଗୋଟାଏ ଆଷ୍ଟ୍ରେ ଭିତରୁ ଧାରେ ଧୂଆଁ ଲମ୍ୱି ଆସିଚି। ସିଗାରେଟ୍‌ଟା ଜଳି ଜଳି ଯାଉଛି। ଏଠି ହୁଏତ ଅଳ୍ପ ସମୟ ଆଗରୁ କେହି ବସିଥିଲା। କିମ୍ୱା ଅଳ୍ପ ସମୟ ପାଇଁ କୁଆଡ଼େ ଯାଇଛି। ଅଜୟ ମନଟା ଟିକେ ଚହଲି ଗଲା। ଯଦି ଏଇକ୍ଷଣି କେହି ବାଥ୍‌ରୁମ୍‌ରୁ କିମ୍ୱା ଅନ୍ୟ କେଉଁଠୁ ବାହାରି ଆସେ?

ଟେବୁଲ୍ ଉପରେ ଫର୍ଦ୍ଦେ କାଗଜରେ କ'ଣ ଗୋଟାଏ ଲେଖା ହୋଇଥିଲା। ବହୁ ନାଲିଗାର ପଡ଼ିଥିଲା କାଗଜଟାରେ। ଅଜୟ ଝୁଙ୍କିପଡ଼ି ଦେଖିଲା। କେତେ ଗୁଡ଼ାଏ ନାଁ ଲେଖା ହୋଇଛି। ଘରେ ଯେଉଁ ଧୀର ନୀଳ ଆଲୋକଟି ଜଳୁଥିଲା, ସେଥିରେ ଅକ୍ଷର ଗୁଡ଼ା ପଢ଼ି ହେଉଥିଲା। ଅଜୟ ପଢ଼ିଲା-

୧: ରବିନାରାୟଣ ଅଗରୱାଲା। ନାଁଟା ନାଲି ପେନ୍‌ସିଲ୍‌ରେ କଟା ହୋଇଥିଲା।

୨: ଶଙ୍କର ମଦନ ରାଓ। X , ନାଁ ପାଖରେ ଗୋଟିଏ କ୍ରସ ଚିହ୍ନ ଦିଆ ହୋଇଥିଲା।

୩: ଅମିତାଭ ମହାନ୍ତି। ?, ନାଁ ପାଖରେ ଗୋଟାଏ ପ୍ରଶ୍ନବାଚୀ ଦିଆ ହୋଇଥିଲା।

୪: ଶଶାଙ୍କ ମିତ୍ର। ନାଁଟା ନାଲି ପେନ୍‌ସିଲରେ କଟା ଯାଇଥିଲା।

୫: ଯଦୁନାଥ ଦାସ। ? ? ? ନାଁ ପାଖରେ ତିନୋଟି ପ୍ରଶ୍ନବାଚୀ ଥିଲା।

୬: ରତିକାନ୍ତ ସାହାଣୀ। ? ?, ନାଁ ପାଖରେ ଦୁଇଟା ପ୍ରଶ୍ନବାଚୀ ଥିଲା।

୭: ମ୍ୟାକ୍‌ଫିଲ୍‌ଡ। ନାଁଟା ଉପରେ କେବଳ କ୍ରସ କଟା ଯାଇଥିଲା।

୮: ଅରୁନ୍ଧତୀ ଦେବୀ। ନାଁଟା କଟା ହୋଇଥିଲା।

୯: ଅଜ। ନାଁଟି ବୋଧହୁଏ ପୂରା ଲେଖା ହୋଇନଥିଲା। କିମ୍ୱା କୌଣସି ନାଲି ପେନ୍‌ସିଲ୍ ଗାର ପଡ଼ିନଥିଲା। ଅଜ ଅଜନ୍ତା ନୁହେଁ ତ? ଅଜୟ ଛାତିଟା ଧଡ଼୍‌କିନା ପଡ଼ିଲା।

ତେବେ ସେ କିଏ!

ଯେଉଁ ଯୁବତୀଟି କ୍ଷଣକ ଆଗରୁ ଏଇ ଘରେ ପଡ଼ିଲା, ସେ କ'ଣ ଅଜନ୍ତା ନୁହେଁ? ସେ ବା ଗଲା କେଉଁଆଡ଼େ? ଅଜୟ ଟେବୁଲ ଉପରୁ ଆଖି ଘୁଞ୍ଚେଇଲା। ପାଦ ବି ଉଠାଇଲା। ହୁଏତ ଅନ୍ୟ ଘରକୁ ବାଟ ଅଛି। ନୋଇଲେ ସେ ଯୁବତୀଟି ଅଦୃଶ୍ୟ ନିଶ୍ଚୟ ହୋଇନି।

ସିଗ୍ରେଟ୍ ଧୂଆଁ ଅଜୟ ନାକରେ ବାଜୁଥିଲା। ସିଗ୍ରେଟ୍‌ର ମାଲିକ ଦିଶୁନଥିଲେ। ଅଜୟ ଆଶଙ୍କା କରୁଥିଲା। ବାଳେ ଯଦି....

କିଏ?

ଅଜୟ କାହାକୁ ଦେଖି ଶିହରି ଉଠିଲା। ଲୋକଟି ଠିଆ ହୋଇଚି ଗୋଟାଏ କାଚ ଆଲମିରା ପାଖରେ। ହଲ୍‌ଚଲ୍ ହେଉନି। ଏକ ଲୟରେ ଅନେଇଚି, ଅଜୟ ଅନେଇଲା। ଧରାପଡ଼ିଗଲାଣି ଯେତେବେଳେ, ଲୁଚିବାକୁ ଚେଷ୍ଟା କରିବା ବୃଥା। କିନ୍ତୁ ଲୋକଟି ଖାଲି

ଚାହିଁଥିଲା। ଅଜୟ ଭଲ କରି ଚାହିଁଲା। ଧେତ୍‌! ହସିବାକୁ ମନ ହେଉଥିଲା ଅଜୟର। ଦୁର୍ବଳ ମୁହୂର୍ତ୍ତ ଗୁଡ଼ାକ ଏତେ ମାରାତ୍ମକ! ସେ କିଛି ନୁହେଁ, ଆଲମାରୀ ପାଖରେ ଗୋଟାଏ ମର୍ମ୍ମର ମୂର୍ତ୍ତି।

ଅଜୟ ଆଗେଇଲା। ଚଟାଣ ଉପରର ଦାମି ଗାଲିଚାଟି ବେଶ୍‌ ମୁଲାଏମ୍‌ ଲାଗୁଥିଲା। ସେପାଖକୁ ଗୋଟିଏ ଦୁଆର। ଭିତରେ ଶବ୍ଦ ଶୁଭୁଥିଲା। ବାଥ୍‌ରୁମ୍‌ ହେବ ପରା। ହୁଏତ କେହି ପାଣିକଳ ଖୋଲି କ'ଣ କରୁଚି। ଅଜୟ କାନ ଡେରିଲା। ସଁ ସଁ ଶବ୍ଦ ଅବିରତ ହେଉଚି। ଅଜୟ ରକ୍ଷା ପାଇଯାଇଛି। ହୁଏତ ସେଇ ଦରପୋଡ଼ା ସିଗାରେଟ୍‌ର ମାଲିକ ବାଥରୁମ୍‌ ଭିତରେ ପଶିଚି। ନତୁବା....

ସଁ ସଁ ଶବ୍ଦ ହଠାତ୍‌ ବନ୍ଦ ହୋଇଗଲା। ଦୁଆରଟା ଧୀରେ ଧୀରେ ଖୋଲିଲା। ଅଜୟ ଚାରିଆଡ଼କୁ ଅନେଇଲା। ଆତ୍ମଗୋପନ କରିବାକୁ ସେପରି ସୁବିଧା ସ୍ଥାନ ନାହିଁ। ତା'ହେଲେ? ଅଜୟ ଗୋଟାଏ ଆଲମାରୀ କଡ଼କୁ ଘୁଞ୍ଚିଗଲା।

ବାଥ୍‌ରୁମ୍‌ରୁ ଯିଏ ପଦାକୁ ଆସିଲା, ସିଏ ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲା। ଅଜୟ ସ୍ପଷ୍ଟ କିଛି ଦେଖିପାରିଲା ନାହିଁ। କେବଳ କଣ୍ଠସ୍ୱରଟା ଜଣେ ମହିଳାର ପରି ଜଣାପଡୁଥିଲା। ଧୀରେଧୀରେ କଣ୍ଠସ୍ୱର କମିଆସିଲା, ଅଜୟ ଆଲମିରା କଡ଼ରୁ ପଦାକୁ ବାହାରି ଚାହିଁଲା ବେଳକୁ ଘର ନିଶୂନ୍‌। କେହି ନାହାନ୍ତି। ମହିଳା ଜଣକ ହୁଏତ ଚାଲି ଯାଇଛନ୍ତି। ଅଜୟ ଗୋଡ଼ ଚିପି ଚିପି ପଦାକୁ ବାହାରିଲା। ବାଥରୁମ୍‌ର ଦୁଆରଟା ଦରଆଉଜା ହୋଇଥିଲା। ଅଜୟ ଖୋଲିଲା। ପଶିଗଲା ଭିତରକୁ। ଅନ୍ଧକାରର ରାଜତ୍ୱ। କିନ୍ତୁ କୁଆଡୁ ଯେପରି ଏକ କ୍ଷୁଦ୍ର ଆଲୋକଶିଖାଟିଏ ଦିଶୁଚି।

ଅଜୟ ଦେଖିଲା ସେ ଘରୁ ବାହାରିଯିବାକୁ ଗୋଟାଏ ବାଟ ଅଛି ଏବଂ ସେଇ ବାଟଦେଇ ଆଲୋକଶିଖାଟିଏ ଅନ୍ୟ କେଉଁଆଡୁ ଏଯାଏ ଲମ୍ବିଆସିଛି। ଅଜୟ ଆଉ ଡେରି କଲାନି। ସଙ୍ଗେସଙ୍ଗେ ଆଗେଇଲା। ଖୁବ୍‌ ଗୋଟିଏ ସରୁପଥ। ଚାଲୁଚାଲୁ ନିଃଶ୍ୱାସ ଅଟକିଯାଉଚି। କିମିତିଆ ଗୋଟାଏ ଗନ୍ଧ ଉଠୁଚି। ଅଜୟ ସେଇବାଟେ ଆଗେଇଲା। ପଥଟିର ଶେଷ ଯେଉଁଠି ଠିକ୍‌ ସେଇଠି ଆଉ ଗୋଟିଏ ଦୁଆର।

ଦୁଆର ପାଖରେ ପହଞ୍ଚି ଅଜୟ ଅବାକ୍‌ ହୋଇ ଠିଆ ହୋଇଗଲା। ଭିତରେ କିଏ ଯେପରି କଥାବାର୍ତ୍ତା ହେଉଚନ୍ତି। ହଁ ତ !

: ତା'ହେଲେ?

: ଲୋକଟା ମିଳୁନାହିଁ। ସାରା ସହରଟାଯାକ ଖୋଜେଇ ସାରିଲାଣି। ତଥାପି ପତ୍ତାନାହିଁ।

: କ'ଣ ଯେ କର ତମେମାନେ, ମୁଁ କିଛି ବୁଝିପାରେ ନାହିଁ। ସେଦିନୁ ମୋର

ଦିନେ ରାତିରେ

ନିର୍ଦ୍ଦେଶ ଅଛି, ତା'ଉପରେ ସବୁବେଳେ ସତର୍କ ଦୃଷ୍ଟି ରଖିବ, ଆଜି କ'ଣ ନା, ଲୋକଟା ମିଳୁନାହିଁ। କହି ଦେବାଟା ଅତି ସହଜ ଓ ସରଳ। କିନ୍ତୁ ମୁଁ ସେ କଥା ମୋଟେ ଶୁଣିବି ନାହିଁ। ଆଜି ଆମର ଏଠାରେ ଶେଷରାତି। ଆଜି ରାତି ଭିତରେ ଏଠାକାର ସମସ୍ତ କାର୍ଯ୍ୟ ସମାଧାନ କରିବା କଥା। ତେଣୁ ମୋର ନିର୍ଦ୍ଦେଶ, ଆଜି ରାତି ଭିତରେ ମୁଁ ତାକୁ ଚାହେଁ ନିଶ୍ଚୟ, ମୋର ତା'ସହିତ ଦରକାର। ଜୀବନ୍ତ ବା ମୃତ ଯା' ହେଉ!!

ହଠାତ୍ କଲିଂବେଲ୍‌ଟା ବାଜି ଉଠିଲା। ଏକା ସାଙ୍ଗରେ କେତେଗୁଡ଼ାଏ ପାଦଶବ୍ଦ ଦ୍ରୁତ ଶୁଣାଗଲା। ଅଜୟର ଗୋଡ଼ ଧୀରେଧୀରେ ଦମ୍ଭ ହେଉଥିଲା। ସେ ଘର ଭିତରକୁ ଚାହିଁବାକୁ ଚେଷ୍ଟା କରୁଥିଲା,କିନ୍ତୁ ବୃଥା। ପାଦଶବ୍ଦ ଗୁଡ଼ାକ ଭିତରେ ଥମିଗଲା।

: ତମେ ଯାଇଥିଲ ?

: ଆଜ୍ଞା।

: ପରିସ୍ଥିତି କେମିତି ଦେଖିଲ ?

: ବିଶେଷ କିଛି ସେମାନେ ଜାଣି ନାହାନ୍ତି। ଖାଲି ଗୋଟାଏ ଅନ୍ଦାଜ କରୁଚନ୍ତି। କିନ୍ତୁ ସେମାନେ ମୋଟେ ପ୍ରସ୍ତୁତ ନୁହନ୍ତି।

: ହୁଁ -ବେଶ୍। ଆଉ ତମେ ?

: ମୁଁ ବଳରାମକୁ ସେଠାରେ କାମରେ ଲଗାଇ ଦେଇ ଆସିଚି। ମୋ କାମ ପ୍ରାୟ ସରି ଆସିଲାଣି। ରାତି ପାହିଲା ବେଳକୁ କୌଣସି ସତ୍ତା ନ ଥିବ। ମୋ ଉପରେ ଆପଣ ଭରସା କରି ନିଶ୍ଚିନ୍ତ ରହିପାରନ୍ତି।

: ମାଧବୀ।

: ଆଜ୍ଞା ।

: କ'ଣ କଲ ?

: ନାଇଁ ସେ ମୋଟେ ଖାପଚରେ ପଡୁନାହିଁ।

ଲୋକଟା ହସି ଉଠିଲା।

: ପଡୁନାହିଁ ? କିନ୍ତୁ ତୁମ ମୁହଁରେ ଏ କଥା ଶୋଭା ପାଏନି ମାଧବୀ। ତୁମେ ସୁନ୍ଦରୀ, ତମେ ଯୌବନୀ, ତମେ ଅଭିନେତ୍ରୀ। ମୋର ତମ ଉପରେ ଢେର ଭରସା ଥିଲା। ଭାବିଥିଲି ତମ କବଳରୁ କେହି ଖସିଯିବା ସହଜ ନୁହେଁ। କିନ୍ତୁ କ'ଣ ତମେ କହୁଚ ଆଜି।

: ମୁଁ କିନ୍ତୁ ଆପ୍ରାଣ ଉଦ୍ୟମ କରିଚି। କେତେ ନିରୋଳା ମୁହୂର୍ତ୍ତ, ହୋଟେଲରେ କେତେ ନିରୋଳା କୋଠରି, ସବୁଠି ଚେଷ୍ଟା କରିଚି । କିନ୍ତୁ ଲୋକଟା ପଥର।

: ପଥରଭୂତ ପାଣି ନିଗାଡ଼ିବା ପାଇଁ ତମକୁ ନିଯୁକ୍ତ କରାଯାଇଛି। କିନ୍ତୁ ହୁସିଆର।

ଆଜି ରାତି ଆମ ଜୀବନର ମଙ୍ଗଳରାତି ହୋଇପାରେ, କାଳ ରାତି ମଧ୍ୟ ହୋଇପାରେ। ସମସ୍ତଙ୍କୁ ପ୍ରସ୍ତୁତ ହେବାପାଇଁ କୁହ।

ପାଦଶବ୍ଦ ଗୁଡ଼ାକ ଧୀରେ ଧୀରେ ମିଳେଇ ଯିବାକୁ ଲାଗିଲା। ଅଜୟ ଖାଲି ଅନୁଭବ କଲା। କିଏ ଏମାନେ ! ବିଶେଷତଃ ମାଧବୀ କିଏ ? ସେ ଆଉ ଅଜନ୍ତା ନୁହେଁ ତ ?

ହଠାତ୍ ଘର ଭିତରଟା ଖିଲି ଖିଲି ହସରେ କମ୍ପିଉଠିଲା।

:ଛି ! ଦୁଷ୍ଟ ! ସବୁଦିନେ, ସବୁବେଳେ ତମର ଖାଲି ଦୁଷ୍ଟାମି।

: ମୋତେ ଯେ ବଞ୍ଚିବାକୁ ହେବ ଲତା ! ସବୁ ପରେ ମୁଁ ତମର ସାନ୍ନିଧ୍ୟ ଟିକିଏ ନ ପାଇଲେ ପାଗଳ ହୋଇଯାଏ। ତଥାପି ତମେ ମୋତେ ବୁଝିବାକୁ ଚେଷ୍ଟା କରନି।

: କିନ୍ତୁ ବର୍ତ୍ତମାନ ତ ସେ ସମୟ ନୁହେଁ। ବାରୁଦ ଭଣ୍ଡାର ଭିତରେ ଆମେ ବସିଚେ। ଯେକୌଣସି ମୁହୂର୍ତ୍ତରେ କିଏ ନିଆଁ ଲଗେଇ ଦେଇପାରେ, ତେଣୁ ସବୁବେଳେ ଆମକୁ ସତର୍କ ହୋଇ ରହିବାକୁ ପଡ଼ିବ। ଏପରି ପରିସ୍ଥିତିରେ...

: ହଁ ଲତା, ତଥାପି ତୁମର ସ୍ପର୍ଶ, ତୁମର ହସ, ମୋର ପ୍ରେରଣା। ଆମର ଦୀର୍ଘ ଦିନର ଏଇ ଯୋଜନା ଆଜି ଯଦି ସଫଳ ହୁଏ, କ'ଣ ହେବ ଜାଣ ଲତା। ତା'ହେଲେ ତୁମକୁ ମୁଁ ଏତେ ବିରକ୍ତ କରିବି, ଆଉ ଏତେ ବିରକ୍ତ କରିବି ଯେ, ତମେ ଖାଲି ମୋତେ ମାରି ଗୋଡ଼େଇବ, କିନ୍ତୁ ଯାହା କର, ତମେ ମୁଁ ଆଉ ସୁରା, ତା'ପରେ ଆଉ କିଛି ପ୍ରୟୋଜନ ନାହିଁ।

: ହେଉ ବର୍ତ୍ତମାନ ଏଇଟା ଦୁର୍ବଳତାର ସମୟ ନୁହେଁ। ମୁଁ ଏଠାକୁ ଆସି ଭୁଲ୍ କରିଚି, ତମେ କାର୍ଯ୍ୟର ପ୍ରସ୍ତୁତି କର। ସମୟ ଆଉ ଅଳ୍ପ। ନୋଇଲେ ମାଷ୍ଟର କାହାରି ଗତି ଗୋଚର ରଖିବେ ନାହିଁ। ମୁଁ ଯାଉଚି, ଏଁ...

: ଲତା !

: ଆରେ ଛାଡ଼।

: ନା, ଲତା, ତମେ ପାଖରେ ଥିଲେ ମୁଁ ସବୁ ଭୁଲିଯାଏ। ମୋତେ ଧନ, ମାନ, ପ୍ରତିପତ୍ତି ସବୁ ତୁଚ୍ଛ ଲାଗେ। ମନହୁଏ କ'ଣ ଜାଣ ?

: ନା, ଦରକାର ନାହିଁ। ଦେଖୁଚି ତମେ ସର୍ବନାଶ ଘଟେଇବ। ବର୍ତ୍ତମାନ ତମ ହାତରେ କେତେ କାମ ଅଛି ଜାଣିଚ ?

ଜାଣି ଲାଭ ନାହିଁ। କାମ ତ ସବୁଦିନ କରିବାକୁ ହେବ, ତେଣୁ ସେ ସବୁର ହିସାବ ସବୁବେଳେ ଚଳେନି।

: ବେଶ୍ ମୁଁ କିନ୍ତୁ ଆଉ ରହିପାରିବିନି। ମାଷ୍ଟର ତେଣେ ଅପେକ୍ଷା କରିଥିବେ। ଚାଲିଲି-ଏଁ ! ତମେ ପ୍ରସ୍ତୁତ ହୁଅ।

ଦିନେ ରାତିରେ

ତା'ପରେ ନୀରବତା। ଅଜୟ ଭିତରୁ ଆଉ କିଛି ଶୁଣିଲା ନାହିଁ। ଖାଲି ଆଉ କେଇଟା ପାଦଶବ୍ଦ ଧୀରେ ଧୀରେ ମିଳେଇଗଲା। ଅଜୟ ସେଇଠି କିଛିକ୍ଷଣ ଠିଆ ହୋଇରହିଲା। ତାକୁ କିଛି ଭଲ ଲାଗୁନଥିଲା। ଧୀରେଧୀରେ ମନର ଉତ୍ସାହ ମଉଳି ମଉଳି ଆସୁଥିଲା।

ଅଜୟ ଦୁଆର ମୁହଁକୁ ଯାଇ କାନ ପାରିଲା। ଭିତରେ ଛୁଞ୍ଚିଟିଏ ପଡ଼ିବାର ବି ଶବ୍ଦ ହେଉନି। ତା'ହେଲେ ? ସମସ୍ତେ କ'ଣ ଏ ଘରୁ ଚାଲିଗଲେଣି ? ଅଜୟ ଦୁଆର ଠେଲିଲା। ମୁକୁଳିଗଲା। ଫାଙ୍କରେ ଚାହିଁଲା ଭିତରକୁ। ଗୋଟାଏ ଲମ୍ବା ଘର। ବିଶେଷ କଛି ଜିନିଷପତ୍ର ନାହିଁ। ତେବେ ଗୋଟାଏ ଲମ୍ବା ଟେବୁଲ ପଡ଼ିଛି। ଟେବୁଲ ଦୁଇପାଖଯାକ ଚେଆର ଗୁଡ଼ାଏ ଖଞ୍ଜା ହୋଇଛି। ବୋଧହୁଏ ଏଇଠି ବସି ମିଟିଂ ହୁଏ ବା ଆଲୋଚନା ହୁଏ।

ହଠାତ୍ ସେ ଘରର ବତି ଗୁଡ଼ାକ ନିଭିଗଲା। ଅଜୟ ଶୁଣିଲା ସେଇ ଭାରି ଯୋତା ଶବ୍ଦ।

ମଚ୍....ମଚ୍....ମଚ୍.....ମ...ଅଚ୍।

ଆଉ କିଛି ଦିଶୁ ନାହିଁ। ଅଜୟର ଯେମିତି ମନେହେଲା, ଏ ସେଇ ଲୋକ, ଯାହାକୁ ସେ କିଛି ସମୟ ପୂର୍ବେ ହଲ ଘରେ ଭେଟିଥିଲା ଏବଂ ଯେ ସିରିଞ୍ଜ ମାଗି ନେଇଥିଲା। ଏ ତେବେ କିଏ ? ଡାକ୍ତର ଆର୍.ଏସ୍. ସୁନ୍ଦରମ୍ ନୁହନ୍ତି ତ ? ତା' ନ ହେଲେ ସିରିଞ୍ଜ କିଏ କାହିଁକି ବ୍ୟବହାର କରନ୍ତା।

ସେଇ ଅନ୍ଧାର ଘର ଭିତରେ ଡାକ୍ତର ସୁନ୍ଦରମ୍ କ'ଣ ଯେମିତି ଖୋଜୁଥିଲେ। ତାଙ୍କ ଯୋତାର ଶବ୍ଦ କେତେବେଳେ ଦ୍ରୁତ ହେଉଥିଲା ତ କେତେବେଳେ ଥମି ଯାଉଥିଲା। ଖାଲି ତାଙ୍କ ପାଟିର ପାଇପ୍‌ଟି ତାଙ୍କର ସଙ୍କେତ ଦେଉଥିଲା। ସେ କ'ଣ ଖୋଜୁଥିଲେ।

ତା'ପରେ ତାଙ୍କ ହାତର ଟର୍ଚ୍ଚଟି ଜଳି ଉଠିଲା। ସେ ଘର ଭିତରେ କେତେଗୁଡ଼ାଏ ପଦାର୍ଥ ଉପରେ ଫୋକସ୍ କଲେ। ଆହୁରି ଗାଁ ଆଡ଼କୁ ଆଗେଇ ଗଲେ। ଗୋଟିଏ ପଲଙ୍କ ଉପରେ ତାଙ୍କ ଟର୍ଚ୍ଚ ଫୋକସ୍‌ଟି ସ୍ଥିର ରହିଲା। କିଏ ଶୋଇଚି ସେ ପଲଙ୍କ ଉପରେ ?

ଅଜୟର ମନ ଚଞ୍ଚଳ ହୋଇଉଠିଲା। ଅଜନ୍ତା ନୁହେଁ ତ ? ସେ ତା'ର ପରିସ୍ଥିତି ଭୁଲି ଧୀରେଧୀରେ କବାଟ ମୁକୁଳେଇ ଭିତରକୁ ପଶିଲା। ଡାକ୍ତର ସୁନ୍ଦରମ୍ ପଲଙ୍କ ପାଖରେ ଠିଆ ହୋଇ ଟର୍ଚ୍ଚର ଫୋକସ୍ ପଲଙ୍କ ଉପରେ ପକାଇଥିଲେ। କିଛିସମୟ ଗଲା। ତା'ପରେ ନଇଁପଡ଼ି କ'ଣ ଦେଖିଲେ। ପୁଣି ହାତଟା ଉଠାଇ ନାଡ଼ି ପରୀକ୍ଷା କଲେ। ପୁଣି ଟର୍ଚ୍ଚ ଫୋକସ୍ କରି ଏକ ଲୟରେ ଅନେଇ ରହିଲେ। କପାଳରେ ହାତ ଦେଇ ଦେଖିଲେ। ଚାଦର ଘୋଡ଼େଇ ଦେଲେ। ଟର୍ଚ୍ଚ ନିଭେଇ ଦେଲେ। ପଛକୁ ଲେଉଟିଲେ।

ଅଜୟ ସେଇ ବଡ଼ ଟେବୁଲଟା ତଳେ ଗଳିଗଲା। ଡାକ୍ତର ସୁନ୍ଦରମ୍ ଘରଟାର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ଟହଲ ମାରିଲେ। କ'ଣ ଯେମିତି ଗଭୀର ଚିନ୍ତାରେ ଲିପ୍ତ ଥିଲେ।

ଅଜୟ ଟେବୁଲ ତଳୁ ନଇଁ ନଇଁ ଚାହୁଁଥିଲା। ଖାଲି ଡାକ୍ତର ସୁନ୍ଦରମ୍‌ଙ୍କ ପାଇପ୍‌ଟା ଜଳି ଉଠି ନିଭି ଯାଉଥିଲା। ସେତିକି। ଆଉ କିଛିର ଅସ୍ତିତ୍ୱ ସେ ଅନୁଭବ କରୁ ନଥିଲେ।

ଡାକ୍ତର ସୁନ୍ଦରମ୍‌ଙ୍କ ହାତର ଟର୍ଚ୍ଚଟା ଆଉ ଥରେ ଜଳି ଉଠିଲା। ସେ ପୁଣି ସେଇ ପଲଙ୍କ ପାଖକୁ ଆଗେଇଗଲେ। ଦଣ୍ଡେ ଠିଆ ହେଲେ। ନାଡ଼ି ପରୀକ୍ଷା କଲେ। ଘଡ଼ି ଦେଖିଲେ। ଟର୍ଚ୍ଚ ନିଭେଇଲେ। ପୁଣି ବିଚଳିତ ଭାବରେ ଲେଉଟି ଆସିଲେ।

ଏଥର ଆସି ସେ ଖଣ୍ଡେ ଚେୟାର ଉପରେ ବସିଲେ। ଅଜୟ ସେଇ ଟେବୁଲ ତଳେ ଲୁଚିଥିଲା। ଡାକ୍ତର ସୁନ୍ଦରମ୍‌ଙ୍କ ବୁଟ୍ ଯୋଡା ହଳକ ଆଉ ଟିକକରେ ଅଜୟର ଅଧର ସ୍ପର୍ଶ କରିଥାଆନ୍ତା। ଅଜୟ ଘୁଞ୍ଚିଗଲା। ଡାକ୍ତର ସୁନ୍ଦରମ୍ କଲିଂ ବେଲ୍ ବଜେଇଲେ। ଜଣେ ଭିତରକୁ ଆସିଲା। ଘରର ଲାଇଟ୍ ଜଳିଲା। ଲୋକଟି ଆସି ସୁନ୍ଦରମ୍‌ଙ୍କ ଆଗରେ ବସିଲା।

ସୁନ୍ଦରମ୍ କହିଲେ: ଏ ପର୍ଯ୍ୟନ୍ତ ହୋସ୍ ହେଲା ନାହିଁ। ଯଦି ରାତିଟାଯାକ ଏହିପରି ବେହୋସ ହୋଇ ପଡ଼ିରହେ, ତା'ହେଲେ ସବୁ ପ୍ଲାନ୍ ବିଗିଡ଼ି ଯିବ।

: ଆପଣ ତ ଇଞ୍ଜେକ୍ସନ ଦେଇଥିଲେ।

: ଦୁଇ ଚାରିଟା ଇଞ୍ଜେକ୍ସନ ଦିଆ ସରିଲାଣି। ଖାଲି ସେତିକି ନୁହେଁ, ବର୍ତ୍ତମାନ ଅନ୍ତତଃ ହୋସ୍ ଫେରିଆସିବାର କୌଣସି ଲକ୍ଷଣ ମୁଁ ଦେଖୁନାହିଁ।

: ହେଲେ ?

: ମୁଁ ତ ସେଇଆ ଭାବୁଚି।

ଆର ଲୋକଟି ଓ ସୁନ୍ଦରମ୍ ଦୁହେଁ ଆଉଥରେ ଉଠି ସେଇ ପଲଙ୍କ ଆଡ଼େ ଗଲେ। ଅଜୟ ଖାଲି ଦୁଇଯୋଡ଼ା କଳା ବୁଟ୍‌ର କ୍ଷିପ୍ରତା ଲକ୍ଷ୍ୟ କରୁଥିଲା। ଆଉ ତା' ସହିତ ଅନୁଭବ କରୁଥିଲା ତା' ଛାତିର ଦ୍ରୁତ କମ୍ପନ। ଯେପରି ଭାବରେ ଏଥର ସେ ରହିଚି, ଯେକୌଣସି ମୁହୂର୍ତ୍ତରେ ଧରାପଡ଼ିଯିବାର ଆଶଙ୍କା।

ଗୋରା ତକ୍‌ତକ୍ ସରୁହାତଟି ଲମ୍ବି ଆସିଲା।

ଡାକ୍ତର ସୁନ୍ଦରମ୍ ଆଉଥରେ ନାଡ଼ି ପରୀକ୍ଷା କଲେ। ଅଜୟ ଏକ ଲୟରେ ଅନେଇ ରହିଲା। ହଁ, ସେଇ ହାତ, ସେଇ ଆଙ୍ଗୁଳି, ଗୋରା ତକ୍ ତକ୍, ସରୁ। ତା'ହେଲେ ଅଜନ୍ତା–

ପୁଣି ସେମାନେ ପାଦ ଫେରାଇଲେ। ଅଜୟର ଭାବନା ସେଇଠି ଅଟକି ଗଲା।

: ନା ଲକ୍ଷଣ ଭଲ ନୁହେଁ। ଯା ପଛରେ ସମୟ ନଷ୍ଟ କରିବା, ମୋ ମତରେ ଶୁଭ ନୁହେଁ।

: ତା'ହେଲେ ଭିତର ଘଟଣା କିଛି ଜାଣି ହେବନାହିଁ ଯେ।

: ଯା ହେଉ। ଭିତର ଘଟଣା ଜାଣିବାକୁ ଅପେକ୍ଷା କଲେ, କିଏ ଜାଣେ ଆମର ସର୍ବନାଶ ନ ହେବି ?

: କ'ଣ କରିବା ?

: କିଛି ନୁହେଁ। ବିଚଳିତ ହେବାର କିଛିନାହିଁ। ପ୍ଲାନ୍ ଅନୁସାରେ କାମ ଆଗେଇ ନିଅ। ମୁଁ ଆଉ ୨୫ ମିନିଟ୍ ଅପେକ୍ଷା କରୁଚି। ଯଦି ବ୍ୟର୍ଥ ହୁଏ, ତେବେ ପ୍ଲାନ୍ ଅନୁସାରେ କାମ ଠିକ୍ ଚଳେଇ ନେବ, ଆଉ ଯଦି ସଫଳ ହୁଏ, ତେବେ ପ୍ଲାନକୁ ସାମାନ୍ୟ ଅଦଳବଦଳ କରଯାଇପାରେ। ଯାଅ।

ଲୋକଟି ଚାଲି ଯାଉଥିଲା। ଡାକ୍ତର ସୁନ୍ଦରମ୍ ପୁଣି ପଛରୁ ଡାକିଲେ: ଆଚ୍ଛା ! ଯାକୁ କେଉଁଠୁ ଉଦ୍ଧାର କରାହୋଇଥିଲା ?

: ରିପୋର୍ଟ ଅନୁସାରେ ଆଉଟ୍‌ରାମ ଘାଟର ଗୋଟାଏ ଗଛତଳୁ।

:ହୁଁ। ଠିକ୍ ଜାଣିଚ ତ ଏ ସେଇ ? ଯଦି ଅନ୍ୟ କେହି ହୋଇଥାଏ, ତା'ହେଲେ ସବୁ ବୃଥା ହୋଇଯିବ।

: ମୋର ମନେହୁଏ, ଭୁଲ୍ ହୋଇନି। ତା'ଛଡ଼ା ଆମ ଆଲବମ୍ ଫଟୋ ମିଳେଇଥିଲା।

: ହଉ ତମେ ଯାଅ। ଖୁବ୍ ତତ୍‌ପର ଆଉ ଦକ୍ଷତାର ସହିତ ଆଗେଇଚାଲ। ଆଶା କରୁଚି, ଆମର ଦୀର୍ଘଦିନର ପରିଶ୍ରମ ଆଜି ସାର୍ଥକ ହେବ।

ଲୋକଟି ଚାଲିଗଲା। ବତି ନିଭିଗଲା। ପୁଣି ସେଇ ଅନ୍ଧକାର ଓ ଡାକ୍ତର ସୁନ୍ଦରମ୍।

ଅଜୟ ଏଥର ଟିକେ ସଜାଡ଼ି ହୋଇ ବସିଲା। ସେ ସତେକି ଆଉଥରେ ଜୀବନ ଫେରିପାଇଚି। ସୁନ୍ଦରମ୍‌ର ବୁଟ୍ ଯୋଡ଼ାକ ଚିତ୍କାର କରି ଆଗଉଥିଲା।

ପୁଣି ଆସି ସେ ଚେଆର ଉପରେ ବସିଲେ। ସବୁ ନୀରବ। ଘରଟାରେ ଯେମିତି ନୀରବତାର ରାଜତ୍ୱ।

ପ୍ରାୟ ଅନେକ ସମୟ ବିତିଗଲା। ସୁନ୍ଦରମ୍ ସ୍ଥିର ହୋଇବସିଥିଲେ। ଅଜୟ ବି। ସମୟଗୁଡ଼ାକ ମୋଟେ କଟିବାକୁ ଚାହୁଁନଥିଲା। ଅଜୟର ବିବ୍ରତ ହୋଇପଡ଼ିଲା।

ପୁଣି ଡାକ୍ତର ସୁନ୍ଦରମ୍ ଉଠିଲେ। ପୁଣି ଆଗେଇଗଲେ ସେଇ ପଲଙ୍କ ପାଖକୁ। କିଛି ଦିଶୁନଥିଲା। ଟର୍ଚ୍ଚ ଫୋକସ୍ ବି ଆଉ ପଡୁନଥିଲା। ପୁଣି ଲେଉଟି ଆସିଲେ। ପାଦର କ୍ଷିପ୍ରତା ଖୁବ୍ ବଢ଼ିଯାଇଥିଲା। କଲିଂବେଲଟା ଗର୍ଜି ଉଠିଲା। ଜଣେ ଲୋକ ପ୍ରବେଶ କଲା। ଡାକ୍ତର ସୁନ୍ଦରମ୍‌ଙ୍କ କଣ୍ଠରେ ବିରକ୍ତି ଫୁଟି ଉଠିଥିଲା।

: ନା, ହେବନି। ଯା'ଠାରୁ ଖବର ସଂଗ୍ରହ କରିବାକୁ ଚାହିଁବସିଲେ ଆମର ସମସ୍ତ ପ୍ଲାନ ମାଟି ହେଇଯିବ।

: ତେବେ ?

: ଆଉ ଟିକେ ଅପେକ୍ଷା କଲେ ହୁଅନ୍ତାନି ?

: ନା, ଆଉ ଅପେକ୍ଷା କରି ହେବନି। ସମୟ ଗଡ଼ି ଯାଉଚି। ଯାଅ, ତୁମେ ଟାଇଗରକୁ ଘେନି ଆସ। ଏଠାକୁ ଯାକୁ ଏପରି ଅବସ୍ଥାରେ ଏକା ଛାଡ଼ିଯିବା ନିରାପଦ ନୁହେଁ।

ପଲଙ୍କ ଆଡ଼େ କ'ଣ ଗୋଟାଏ ଖଡ୍ କିନା ଶବ୍ଦ ହେଲା। ବୋଧହୁଏ ଦୁଇଜଣ ଯାକ ସେଇଆଡ଼େ ଅନେଇଲେ। କାହାର ଯେମିତି ପାଦଶବ୍ଦ ଶୁଭିଲା। ଡାକ୍ତର ସୁନ୍ଦରମ୍ ଠିଆ ହୋଇଗଲେ।

: କିଏ ?

କିଏ ଯେମିତି ଦ୍ରୁତ ଗତିରେ ଧାଇଁ ପଳଉଚି। ଆର ଜଣକ ଲାଇଟ୍ ଜଳେଇଦେଲା। ପଲଙ୍କ ଉପରକୁ ଗୋଟାଏ ଗୋରା ତକ୍ ତକ୍ ହାତ ଲେଉଟି ଆସୁଥିଲା। ଡାକ୍ତର ସୁନ୍ଦରମ୍ ଧାଇଁ ଯାଇ ଦେଖିଲେ, ତଥାପି ହୋସ୍ ଫେରିନି। କିନ୍ତୁ କିଏ ! କିଏ ଆସିଥିଲା !! ଯା ହାତ ବା ଲମ୍ବିଲା କିପରି ?

ଡାକ୍ତର ସୁନ୍ଦରମ୍ ଚାରିଆଡ଼େ ଚାହିଁଲେ। କିଛି ଜାଣି ହେଉନାହିଁ ଯେମିତି। ପୁଣି ଲେଉଟି ଗଲେ ପଲଙ୍କ ପାଖକୁ। ଏଥର ତାଙ୍କର କ'ଣ ମନେହେଲା କେଜାଣି ଯିଏ ପଲଙ୍କ ଉପରେ ଶୋଇଥିଲା, ତା'ର ହାତ ଦୁଇଟାକୁ ଧରି ଝିଙ୍କି ଉଠେଇଦେଲେ। ଗୋଟିଏ ନାରୀ। ଅଜୟ ଶିହରି ଉଠିଲା।

ଡାକ୍ତର ସୁନ୍ଦରମ୍ ତାକୁ ଦୁଇ ତିନିଥର ଟାଣି ଝିଙ୍କି ବସେଇଲେ। ନାରୀଟି ବସିଲା। ଡାକ୍ତର ସୁନ୍ଦରମ୍ ଆନନ୍ଦରେ ଅଧୀର ହୋଇପଡ଼ିଲେ।

: ରୀତା ! ସୁନ୍ଦରମ୍ ଡାକିଲେ। କିନ୍ତୁ କେହି ଶୁଣିଲେ ନାହିଁ। ନାରୀଟି ପଲଙ୍କ ଉପରୁ ଧୀରେଧୀରେ ଉଠିବାର ଚେଷ୍ଟା କରୁଥିଲା। ଡାକ୍ତର ତା' ବାହୁ ଯୋଡ଼ାକ ଧରି ତଳକୁ ଓହ୍ଲେଇ ଦେଲେ। ସେ ଚାଲିବାକୁ ଚେଷ୍ଟା କଲା। ମନେ ହେଉଥିଲା, ତା' ପାଦ ଯୋଡ଼ାକ ଉପରେ ଯେପରି ତା'ର ଆସ୍ଥା ନାହିଁ। ଡାକ୍ତର ସୁନ୍ଦରମ୍ ତାକୁ ଧରିଥିଲେ।

ବେଶ୍ ସୁନ୍ଦର ଚେହେରାଟି। ଅଜୟ ଲକ୍ଷ୍ୟ କଲା। ମୁହଁଟି ଝାଉଁଳି ପଡ଼ିଚି, ହେଲେ ସେ ଅଜନ୍ତା ନୁହେଁ। ତେବେ କିଏ ଏହି ହତଭାଗିନୀଟି ?

ଡାକ୍ତର ସୁନ୍ଦରମ୍ ଧରି ନେଇ ଚେଆର ଉପରେ ବସାଇଲେ। ନାରୀଟି ଖାଲି ବଲବଲ କରି ଏଣେତେଣେ ଚାହୁଁଥିଲା।

: ମୁଁ କେଉଁଠି ? ନାରୀଟି ପଚାରିଲା।

: ନିରାପଦରେ ଅଛ। ଡାକ୍ତର ସୁନ୍ଦରମ୍ ଉତ୍ତର ଦେଲେ।

: ମୁଁ ତ ଆପଣଙ୍କୁ ଚିହ୍ନିପାରୁନାହିଁ।

: ନା, ପାରିବ ନାହିଁ। କାରଣ ମୋତେ ପୂର୍ବରୁ କେବେ ଦେଖିନାହଁ। ତା'ଛଡ଼ା ମୁଁ ତୁମର ବନ୍ଧୁ, ହିତାକାଂକ୍ଷୀ। ତୁମ ଜୀବନ ବିପନ୍ନ ବେଳେ ମୋ ଲୋକେ ତୁମକୁ ରକ୍ଷା କରିଛନ୍ତି। ଆଶା କରୁଚି, ପୂର୍ବ ଘଟଣାଗୁଡ଼ାକ ମନେ ପକାଇଲେ ଧୀରେଧୀରେ ସବୁ କଥା ଜାଣିପାରିବ ।

: ମୋ ବିପନ୍ନ ଅବସ୍ଥାରେ ଆପଣଙ୍କ ଲୋକେ ମୋତେ ଉଦ୍ଧାର କରିଛନ୍ତି ? ମାତ୍ର ମୁଁ, ବିପନ୍ନ ହେଲି କିପରି ?

: ସେ କଥା ମୋତେ ଜଣାନାହିଁ। ଜାଣିବାର ମଧ୍ୟ କୌଣସି ଆବଶ୍ୟକ ନ ଥିଲା। ମୁଁ ଚାହେଁନା କଥା ବଢ଼େଇ ସମୟର ଅପବ୍ୟୟ କରିବାକୁ। ଗୋଟିଏ ମୁହୂର୍ତ୍ତର ମୂଲ୍ୟ ମୋ ପାଖରେ ଯଥେଷ୍ଟ। ତମେ କହିଲ, ମୁଁ ଯାହା ପଚାରୁଚି।

ମହିଳାଟି ମୁହଁରେ କି ଭାବ ଫୁଟିଥିଲା, ଅଜୟ ଦେଖିପାରୁନଥିଲା। ସେ କେବଳ ଶୁଣୁଥିଲା।

: ଆପଣ ପଚାରିବେ, କ'ଣ ପଚାରିବେ ?

: 'କଲ୍ଲୋଳିନୀ' କଥା।

: କଲ୍ଲୋଳିନୀ ? ସେ କିଏ ?

: ଦେଖ ରୀତା, ଛଳନା କରିବାର ବେଳ ଏ ନୁହେଁ। ତା'ଛଡ଼ା ତମେ ତ ସବୁ ଜାଣିଚ, ମୁଁ କିଏ ସେକଥା ମଧ୍ୟ ତୁମକୁ ଅଛପା ନାହିଁ। ମୁଁ ଜାଣିବାକୁ ଚାହେଁ, କଲ୍ଲୋଳିନୀ କେବେ ଛାଡୁଚି, ସେ ସିଧା ରେଙ୍ଗୁନ ଯିବ କି ନାହିଁ, ତହିଁରେ ଯାହା ସବୁ ଯିବାର ଥିଲା, ଯେଉଁମାନେ ଯାଇ ଥାଆନ୍ତେ, ସମସ୍ତେ ଯାଉଛନ୍ତି କି ନାହିଁ।

ଆଉ କିଛି ଶୁଭୁନଥିଲା। ରୀତା ବୋଧେ ନୀରବରେ ବସିଥିଲା। ଡାକ୍ତର ସୁନ୍ଦରମ୍‌ଙ୍କ ବୁଟ୍ ଯୋଡ଼ାକ ଅଜୟର ମୁହଁ ପାଖରେ ବିଷଧର ସର୍ପ ଭଳି ଜିଭ ଲହଲହ କଲା ପରି ହଲୁଥିଲା।

: ରୀତା, ସମୟ ଅଳ୍ପ। ମୁଁ ସମସ୍ତ ତଥ୍ୟ ଜାଣବାକୁ ଚାହେଁ। ଖୁବ୍ ପ୍ରୟୋଜନ। ବର୍ତ୍ତମାନ ତୋ ଆଗରେ ଦୁଇଟି ପଥ। ଯଦି ସବୁ କଥା ଖୋଲି ମୋ ଆଗରେ କହୁ ଏବଂ ମୋର ସେ ସବୁରେ ଆସ୍ଥା ଆସେ, ତେବେ ତୁ ଆରାମରେ ବଞ୍ଚିଯିବୁ, ଆଉ ଯଦି କିଛି ନ କହୁ ବା ମିଛ କହିବାକୁ ଚେଷ୍ଟା କରୁ, ତେବେ ଜୀବନ ନେଇ ଟଣା ଓଟରା ଲାଗିବ। କହ, ସମୟ ଖୁବ୍ ଅଳ୍ପ।

ତଥାପି ରୀତା ନୀରବ।

ଡାକ୍ତର ସୁନ୍ଦରମ୍ ଉଠି ଠିଆ ହୋଇପଡ଼ିଲେ। ତାଙ୍କ ଚାଲିଚଳନରେ ଉତ୍ତେଜନା ସ୍ପଷ୍ଟ ହୋଇଥିଲା। ସେ ତୀକ୍ଷ୍ଣ ସ୍ୱରରେ ପଚାରିଲେ: କ'ଣ, ତୁ କହିବୁନି ? ବୋଧହୁଏ

ତିନି ରାତିରେ

ଡାକ୍ତର ସୁନ୍ଦରମ୍ ରୀତାର ଦୁଇ ହାତ ଧରି ଆଉଥରେ ହଲେଇ ଦେଲେ। କିନ୍ତୁ ତଥାପି କୌଣସି ଉତ୍ତର ପାଇଲେନି। କଲିଂ ବେଲ୍‌ଟା ପୁଣି ଗର୍ଜି ଉଠେ। କିଏ ଜଣେ ଧାଇଁ ଧାଇଁ ଭିତରକୁ ପଶିଲା।

: ଆଜ୍ଞା !

ନା, ସେ ହେବନି। ପୁଣି ଅଚେତ ହୋଇପଡ଼ିଲାଣି। ଟାଇଗରକୁ ଆଣି ଛାଡ଼ିଦିଅ, ନଚେତ୍ ଇଲେକ୍‌ଟ୍ରିକ୍ ଚୁଲାରେ ପକାଇ ଦିଅ, ଯାହା ଗୋଟାଏ କରିଦିଅ। ଜୀବନ୍ତ ଛାଡ଼ିଦେବା ବିପଜ୍ଜନକ। ଆଉ ସେମାନଙ୍କୁ କୁହ ପ୍ଲାନ୍ ଅନୁସାରେ କାମ ଆଗେଇ ନିଅନ୍ତୁ। ମୁଁ ତା'ହେଲେ ଆସୁଚି। ଖୁବ୍ ସାବଧାନ। ରୀତା ଯେମିତି ଖସି ନଯାଏ।

ଡାକ୍ତର ସୁନ୍ଦରମ୍ ଘରୁ ବାହାରିଗଲେ। ଲୋକଟି ସେଇଠି ଠିଆ ହୋଇ ରହିଲା। ରୀତା ଚେଆର ଉପରେ ବସିଥିଲା। ଅଜଗ୍ର ଟେବୁଲ ତଳେ ଛଟପଟ ହେଉଥିଲା। ମୃତ୍ୟୁଗହ୍ୱରରୁ ଖସି ପଳେଇବାର କୌଣସି ବାଟ ତାକୁ ଦିଶୁନଥିଲା। ହଠାତ୍ ଶୁଣିଲା, ଆଉ ତା' ହେଲେ ବିନୋଦ, ଖବର କ'ଣ ? ନାରୀକଣ୍ଠର ସ୍ୱର।

ପୁରୁଷଟି ତା' ମୁହଁରେ ବୋଧେ ହାତ ଦେଇ ଥିରି ଥିରି କହିଲା, ଚୁପ୍, ପାଟିଗୋଳ କରନା। ମାଷ୍ଟର ହୁଏତ ଆସିଯାଇ ପାରନ୍ତି।

ରୀତା ଉଠି ଠିଆହେଲା। ବିନୋଦ ଘରର ବତିଗୁଡ଼ାକ ନିଭେଇଦେଲା। ଦିହେଁ ପୁଣି ପଲଙ୍କ ଆଡ଼କୁ ଗଲେ। ବିନୋଦ ପଚାରିଲା: ଆଉ ସବୁ ଖବର କ'ଣ ରୀତା ! ମୁଁ ବଡ଼ ଅଡୁଆରେ ପଡ଼ିଛି, ଶୁଣିଲୁ ତ ହୁକୁମ। ଯେମିତି ହେଲେ ଖତମ୍ କରିଦେବାକୁ ହେବ।

ରୀତା ଖିଲି ଖିଲି ହୋଇ ହସିଉଠିଲା: ସେଥିପାଇଁ ତ ମୋର ଏତେ ଦମ୍ଭ। କାରଣ ମୁଁ ଜାଣେ ବିନୋଦ ମୋ ଜୀବନ ନେଇପାରିବ ନାହିଁ। ଘଟଣା ସ୍ରୋତରେ କିଏ କେଉଁଆଡ଼େ ଭାସି ଯାଇଥିଲେ ବି କୈଶୋରର ଦିନଗୁଡ଼ାକ ଭୁଲି ହେବନି। ଯା ହେଉ, ତୁମେ ମାଷ୍ଟର ନିର୍ଦ୍ଦେଶ ପାଳନ କର।

: ଆଚ୍ଛା ରୀତା, ମୁଁ ଗୋଟାଏ କଥା କହିବି, ମାନିବୁ ?

: କଣ ?

: ତୁ ମାଷ୍ଟର ଆଗରେ ସବୁ କଥା କହିଦିଏ। ତା'ହେଲେ ଦୁହେଁ ଏକାଠି ରହି ପାରନ୍ତେ। ପୁଣି ଆମର କୈଶୋର ଫେରି ଆସନ୍ତା।

ରୀତା ହସିଲା: ଆଚ୍ଛା କହିଲ ବିନୋଦ୍, ତମେ କ'ଣ ତମ ମାଷ୍ଟରଙ୍କ ସହିତ ବିଶ୍ୱାସଘାତକତା କରିପାରିବ ?

ବିନୋଦ ନୀରବ ରହିଲା।

ଦିନେ ରାତିରେ

: ମୋତେ ଗୁପ୍ତପଥ ଦେଖାଇ ଦିଅ ବିନୋଦ, ମୁଁ ଚାଲିଯାଏଁ। କାରଣ ମୋର ତେଣେ ମଧ୍ୟ ଅନେକ କାମ ବାକି ପଡ଼ିଛି। ମୋର ତମ କଥା ମନେରହିବ। ଜୀବନର ଚଲାପଥରେ କେବେ ଯଦି ନିଶ୍ଚିନ୍ତ ମୁହୂର୍ତ୍ତରେ ଭେଟାଭେଟି ହୁଅନ୍ତି, ତେବେ ପୁଣି ଆମର କୈଶୋର ଫେରେଇ ଆଣିବା। ଆଜି ନୁହେଁ। ଆସ ବିନୋଦ।

ବିନୋଦ ଗୋଟାଏ ଜାଗାରେ ଠିଆ ହୋଇଥିଲା। ସତେକି ସେ ତା'ର କର୍ତ୍ତବ୍ୟଜ୍ଞାନ ସମ୍ବନ୍ଧରେ ସଚେତନ ହେବାକୁ ଚେଷ୍ଟା କରୁଥିଲା। ରୀତା ତା' ହାତ ଧରି ଟାଣିଲା।

: ବିନୋଦ !

: ଏଁ।

: କ'ଣ ଏତେ ଭାବୁଚ। ସମୟ ଗଡ଼ି ଯାଉଚି। ରାତି ପାହି ସକାଳ ହେବା ପୂର୍ବରୁ ମୋତେ ଫେରିଯିବାକୁ ହେବ। ମୁଁ ଗୋଟାଏ ବିରାଟ ଦାୟିତ୍ୱର ବୋଝ ମୁଣ୍ଡେଇ ବାହାରିଥିଲି। ମୋତେ ଫେରିଯାଇ ଜଣେଇବାକୁ ହେବ। ତମେ ମୋତେ ବାଟ ଦେଖାଇ ଦିଅ ବିନୋଦ, ମାଷ୍ଟରଙ୍କୁ କୁହ, ହଁ ମୁଁ ତାକୁ ଜାଳି ପୋଡ଼ି ପାଉଁଶ କରିଦେଇଛି।

ତଥାପି ବିନୋଦ ମଉନ।

: ବିନୋଦ !

: କିନ୍ତୁ ରୀତା, ଯା କିମିତି ସମ୍ଭବ ହେବ ? ମୋର ମଧ୍ୟ କର୍ତ୍ତବ୍ୟବୋଧ ଅଛି। ମୁଁ ବି ହୁକୁମର ଚାକର।

: ତେବେ ? ରୀତାର ଗଳା କମ୍ପି ଉଠିଲା

: କ'ଣ କରିବି କହ।

ରୀତା ବିନୋଦ ଉପରେ ଆଉଜି ପଡ଼ିଲା: ତମେ ଏତେ ଶୀଘ୍ର ସବୁ ଭୁଲିଗଲ ବିନୋଦ! ତମେ କ'ଣ ମୋତେ ହତ୍ୟା କରି ପାରିବ ? ମୋ ରକ୍ତରେ ଚିତା କାଟି ପାରିବ ?

: ତୁ ବଡ଼ ଅଡୁଆରେ ପକାଇଲୁ ରୀତା। କାହିଁକି ଯେ ଦେଖା ହେଲା ତୋ ସଙ୍ଗରେ, ମାଷ୍ଟର ଯେ କାହିଁକି ମୋରି ଉପରେ ତୋ ଦାୟିତ୍ୱ ଦେଲେ।

କିଛି ସମୟ ନୀରବରେ କଟିଗଲା: ଆଚ୍ଛା, ଆ ଚାଲିଆ ରୀତା, ମୋ ପଛେ ପଛେ ଚାଲିଆ। ମୁଁ ତତେ ଏଠାରୁ ପଦାରେ ଛାଡ଼ିଦେଇ ଆସିବି। ତା'ପରେ ତୁ ତୋ ଦାୟିତ୍ୱରେ ଚାଲିଯିବୁ। ଆ।

ବିନୋଦ ଓ ରୀତା ଦି' ଜଣ ଯାକ ଆଗେଇଗଲେ। ଠିକ୍ ଦୁଆର ଖୋଲିବେ, ଇମିତିକା ସମୟରେ ସେମାନେ ଚିତ୍କାର କରିଉଠିଲେ। ତାପରେ ଢୋ ଢୋ ହୋଇ ତଳେ ପଡ଼ିଲେ। କେଉଁ ଅଦୃଶ୍ୟ ଶକ୍ତିର ଗୁଳିରେ ଶିକାର ହୋଇଥିଲେ ସେମାନେ।

ଅଜର୍ଯ ଗୋଟିପଣ ଥରୁଥିଲା। ଅନ୍ଧକାରର ରାଜତ୍ୱ ଭିତରେ ସେ ଖାଲି ଶବ୍ଦ ଛଡ଼ା ଆଉ କିଛି ବାରିପାରୁନଥିଲା। ସବୁ ଚୁପ୍‌ଚାପ୍ ହୋଇଯାଇଥିଲା।

ଅଜୟ ଟେବୁଲ ତଳେ ବସିଥିଲା। ଆଖି ପିଞ୍ଝଡ଼ାକେ ଦୁଇଟି ଜୀବନ ପାଣିଫୋଟକା ପରି ମିଳେଇ ଯାଇଚି। କେଡ଼େ ଭୟଙ୍କର ଏ ସ୍ଥାନଟା। ଅଜନ୍ତା ସାଙ୍ଗରେ କାହିଁକି ଆସି ସେ କାଳକୋଠରିରେ ଗୋଡ଼ ଦେଲା ?

ପୁଣି ପାଦଶବ୍ଦ। ମୃତ୍ୟୁଠାରୁ ଆହୁରି ଭୟଙ୍କର କିଛି ଗୋଟାଏ ଦେଖିବା ପାଇଁ ଅଜୟ ପ୍ରସ୍ତୁତ ହେଉଥିଲା। ସେମିତି ଅନ୍ଧାର। ଛାଇପରି କେତେଜଣ ପଶିଲେ। ମୂର୍ଦ୍ଦାର ଦୁଇଟାଯାକ ଉଠାଇ ନେଇଗଲେ। ପାଟିତୁଣ୍ଡ କିଛି ଶୁଭୁନଥିଲା। ସବୁ ଯେମିତି କୌଣସି ମେସିନ୍ ଦ୍ୱାରା ପରିଚାଳିତ ହେଉଛି।

ସେମାନେ ଚାଲିଗଲେ। ଅଜୟ ଆଉ କାହାର ପ୍ରବେଶ ପାଇଁ ପ୍ରତୀକ୍ଷା କରିଥିଲା। କେହି କିନ୍ତୁ ଆସିଲେ ନାହିଁ। ଅଜୟ ଏବେ ଧୀରେଧୀରେ ଟେବୁଲ ତଳୁ ପଦାକୁ ବାହାରିଲା। ତା' ପିଣ୍ଡରେ ଆଉ ପ୍ରାଣ ନ ଥିଲା। ପାଦ ଯୋଡ଼ାକ ବୋଲ ମାନୁ ନ ଥିଲେ। ତଥାପି ଧୀରେ ଧୀରେ ଆଗେଇଲା। ପଲଙ୍କ ପାଖରେ ଯାଇ ଠିଆହେଲା। ବାଟ କେଉଁ ବାଟେ ?

କିଏ ?

ଅଜୟ ଚମକି ପଡ଼ିଲା। କିଏ ଯେମିତି ତାରି ପାଖଦେଇ ଚାଲିଗଲା। କାହାର ହାତ ଅଜୟ ହାତକୁ ଜାବୁଡ଼ି ଧରିଲା। ଆଉ ଗୋଟାଏ ହାତ ଅଜୟର ପାଟିକୁ ବନ୍ଦ କରିଦେଲା। ଧୀର କଥା ଶୁଭିଲା: ମୋଟେ ପାଟି ଫିଟାଅ ନାହିଁ। ଯେକୌଣସି ମୁହୂର୍ତ୍ତରେ ଜୀବନ ଉଡ଼ିଯାଇପାରେ।

: ଅଜନ୍ତା !

ଅଜୟ ପିଣ୍ଡରେ ପ୍ରାଣ ପଶିଲା। କିଛି ପଚାରିବା ଆଗରୁ ଅଜନ୍ତା ଅଜୟର ହାତଧରି ଟାଣି ଟାଣି ନେଇଗଲା। କେଉଁଠି ଠିଆ କରେଇଲା କେଜାଣି, ଅଜୟର ନିଃଶ୍ୱାସ ସେଠି ରୁଦ୍ଧ ହୋଇ ଆସୁଥିଲା। ଅଜନ୍ତା ହାତର ଛୋଟ ଟର୍ଚ୍ଚଟିରୁ ସରୁ ଫୋକସ୍‌ଟିଏ ଯାଇ ଯୋଉଠି ପଡ଼ିଲା, ଅଜୟର ଆଖି ବୁଜି ହୋଇପଡ଼ିଲା। ସ୍ୱୟଂ ବାରିଷ୍ଟର ରାୟ ସେଠି ଗୋଟିଏ ଇଜି ଚେଆର ଉପରେ ବସିଛନ୍ତି। ଅଜୟ ଆଖି ଖୋଲିବାକୁ ସାହସ କରି ପାରିଲା ନାହିଁ। ମାତ୍ର ଆଶ୍ଚର୍ଯ୍ୟର କଥା ଯେ ବାରିଷ୍ଟର ରାୟଙ୍କ ତରଫରୁ କୌଣସି ପ୍ରକାର ଆକ୍ରମଣର ଆଭାସ ମିଳିଲା ନାହିଁ।

ଅଜନ୍ତା ଅଜୟକୁ ଟାଣି ଟାଣି ସେଠାରୁ ନେଇଗଲା। ପୁଣି ଥରେ ଟର୍ଚ୍ଚ ଫୋକସ୍ କରି ଦେଖାଇଲା। ଅଜୟ ଦାରୁଭୂତ ମୁରାରୀ ପରି ଠିଆ ହୋଇରହିଲା। ଆଖି ପିଞ୍ଝଡ଼ା

ପଡ଼ିଲା ନାହିଁ। ଅଜନ୍ତା ମୁହଁକୁ ଅନେଇଲା, ସେ ହସୁଚି। ଇଜି ଚେଆରକୁ ଚାହିଁଲା, ଗୋଟାଏ ସେଲୁଲ୍‌ଏଡ଼ ମୂର୍ତ୍ତି। ଅଜନ୍ତା ନଇଁପଡ଼ି ମୂର୍ତ୍ତିଟା ମୁହଁରୁ କ'ଣଟାଏ କାଢ଼ି ଆଣିଲା, ଗୋଟାଏ ପ୍ଲାଷ୍ଟିକ୍ ମୁଖା। ଅବିକଳ ବାରିଷ୍ଟର ରାୟଙ୍କ ମୁହଁ। ଅଜନ୍ତା ଚଞ୍ଚଳ ପୁଣି ମୁଖାଟିକୁ ଯଥା ସ୍ଥାନରେ ପିନ୍ଧେଇ ଦେଲା। ଟର୍ଚ୍ଚ ନିଭେଇଦେଲା। ଅଜୟ ହାତ ଧରି ଗୋଟିଏ ସରୁ ଦୁଆର ବାଟେ କେଉଁଆଡ଼େ ଟାଣି ନେଇଗଲା। ଅଜୟ କ'ଣ କହିବାକୁ ଯାଇଥିଲା, ମାତ୍ର ଅଜନ୍ତା କୁହାଇ ଦେଲା ନାହିଁ।

ଅଜୟ ଅଜନ୍ତାର ପଛେପଛେ ଆଗଉଥିଲା। ହଠାତ୍ ଦିହେଁ ଅଟକିଗଲେ। ସାମନାରେ ଗୋଟିଏ ନିବୁଜ କୋଠରି। ବାହାରୁ ଝରକା ବାଟେ କେଇଧାର ଆଲୁଅ ଛିଟିକି ପଡ଼ିଥିଲା। ସେ କିଛି ନୁହେଁ। କିନ୍ତୁ ଭିତରୁ ପାଟି ଶୁଭୁଥିଲା। ଅଜନ୍ତା ଅଜୟକୁ ନେଇ ସେଇ ଘର ପାଖରେ ଠିଆହେଲା। ଦୁହେଁ କାନ ଡେରି କ'ଣ ଶୁଣିବାକୁ ଚେଷ୍ଟା କରୁଥିଲେ। କିଛି ଶୁଭୁନଥିଲା।

ଅଜନ୍ତା ଗୋଟିଏ ଛୋଟ ଦୁଆର ଖୋଲି ଅଜୟକୁ ଆଗରେ ଯିବାକୁ କହିଲା। ଅଜୟ ଆଗେଇଗଲା। ଦୁଆର ବନ୍ଦ ହୋଇଗଲା। ପଛକୁ ଚାହିଁଲା, ଅଜନ୍ତା ନାହିଁ। ପାଦ ଫେରାଇବାର ମଧ୍ୟ ଉପାୟ ନାହିଁ। ଦୁଆର ବନ୍ଦ।

ସେଇଘରେ କେଇଜଣ ଲୋକ ଗୋଟିଏ ମଳିନ ଆଲୋକକୁ ଘେରି ଠିଆ ହୋଇଥିଲେ। କ'ଣ ଯେପରି ଖୁବ୍ ଧ୍ୟାନ ସହକାରେ ସମସ୍ତେ ମିଶି ନିରୀକ୍ଷଣ କରୁଥିଲେ। ଅଜୟର ସ୍ମରଣଶକ୍ତି ଯେମିତି କମି କମି ଆସୁଥିଲା। ତା'ର କିଛି ମନେପଡୁନଥିଲା। ସେ ଯେଉଁଠି ଠିଆ ହୋଇଥିଲା, ସେଠୁ ଯେଉଁମାନେ ଦିଶୁଥିଲେ, ସେମାନେ ବୋଧେ ଅଜୟକୁ ଦେଖି ପାରୁନଥିଲେ। କାରଣ ସେ ଗୋଟାଏ ଉହାଡ଼ିଆ ଜାଗା। କିନ୍ତୁ ତା' ସାମନା ଟେବୁଲରେ ଯେଉଁ ଜଣକ ବିଶିଷ୍ଟ ଆସନରେ ବସିଥିଲେ, ସେ ଜଣକ କିଏ? ଅଜୟ ଖାଲି ଚାହୁଁଥିଲା। ଏ ତେବେ ଆଉ କିଏ? ବାରିଷ୍ଟର ରାୟଙ୍କୁ ତ ସେ ଦେଖିଚି, ଡାକ୍ତର ସୁନ୍ଦରମ୍‌ଙ୍କୁ ମଧ୍ୟ ଭେଟିଚି । ଏ ତେବେ, ଏ ତେବେ କ'ଣ ମିଃ ଏସ୍.ଆର୍. ଶାସ୍ତ୍ରୀ ଏମ୍.ଏ.? ସେଇଆ ଧରି ନିଆହେଉ।

ମିଃ ଶାସ୍ତ୍ରୀ ଟେବୁଲ୍ ଉପରେ ଆଙ୍ଗୁଳି ଚଳାଇ ଅନ୍ୟମାନଙ୍କୁ କ'ଣ ଦେଖାଉଥିଲେ। ମନେ ହେଉଥିଲା ଯେପରି କୌଣସି ନକ୍‌ସା ପକେଇ ସେମାନେ ଆଲୋଚନା କରୁଥିଲେ। ଅଜୟ ସେଇଠୁ ଥାଇ ଚାହିଁଥିଲା। ଆଉ ଲକ୍ଷ୍ୟ କରୁଥିଲା।

ମିଃ ଶାସ୍ତ୍ରୀ ଟେବୁଲ୍ ଉପରେ ଗୋଟିଏ ଜାଗାରେ ଆଙ୍ଗୁଳି ରଖି କହିଲେ: ଏଇଟା ଅସଲ ଜାଗା। କିନ୍ତୁ ଏଠାରେ ପହଞ୍ଚିବା ପାଇଁ ତୁମୁଳ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡ଼ିବ। ମୁଁ କିନ୍ତୁ ତା' ଚାହେଁନି। ମୋର ଇଚ୍ଛା ଅତି ସହଜରେ ଏଠାରେ ପହଞ୍ଚିବା। ହେଲେ ସେଥିପାଇଁ

ସୁଚିନ୍ତିତ ଯୋଜନା ପ୍ରୟୋଜନ। ଅବଶ୍ୟ ମୁଁ ସେ ସମ୍ବନ୍ଧରେ ଢେର ଭାବିଚି। ବର୍ତ୍ତମାନ ତମମାନଙ୍କ ଉପରେ ନିର୍ଭର କରିବା କଥା।

: ଆପଣ ଯୋଜନା କରି ସାରିଛନ୍ତି? ଜଣେ ପଚାରିଲା।

: ହଁ। ମିଃ ଶାସ୍ତ୍ରୀ ଉତ୍ତର ଦେଲେ।

: ତା' ହେଲେ କୁହନ୍ତୁ। ଆମକୁ କିପରି ଭାବରେ ଆଗେଇବାକୁ ହେବ।

: ହଁ, ବର୍ତ୍ତମାନ ସେଇକଥା କହିବି। ତେବେ ସମସ୍ତଙ୍କୁ ଡାକିଆଣ। ଏକାଥରେ କହିଦେବି। ଯେ ଯାହାର ନିର୍ଦ୍ଦିଷ୍ଟ ସ୍ଥାନ ଓ ନିର୍ଦ୍ଦିଷ୍ଟ ପନ୍ଥା ସ୍ଥିର କରିନେବାକୁ ସୁବିଧା ହେବ। କାରଣ ସମୟ ଆଉ ଅଳ୍ପ। ଆଜି ତ ସମସ୍ତଙ୍କୁ ବାହାରି ଯିବାକୁ ହେବ!!

ଜଣେ ଉଠିଯାଇ ଗୋଟାଏ ଘଣ୍ଟା ବଜାଇଲା। ଜଣକ ପରେ ଜଣେ ପ୍ରାୟ ଆଠଦଶଜଣ ସ୍ତ୍ରୀ ପୁରୁଷ ଆସି ଚେଆରରେ ବସିଲେ। ମିଃ ଶାସ୍ତ୍ରୀ ସମସ୍ତଙ୍କ ମୁହଁକୁ ଥରେ ଅନାଇ ସାରି କହିଲେ: ଆଜି ଆମର ପରୀକ୍ଷାର ଦିନ। ଅତୀତରେ ଆମେ ଯେତେ ପରୀକ୍ଷା ଦେଇଛେ, ସବୁଥିରେ ପାସ୍ କରିଛେ। ଆଜି ଯେ ପାସ୍ ନ କରିବା, ସେ କଥା ମୁଁ ମୋଟେ ଭାବୁନି। ତେବେ ଆଜିର ବିଷୟବସ୍ତୁ ସବୁଠାରୁ ସ୍ୱତନ୍ତ୍ର। ଏ ଖୁବ୍ ଦାୟିତ୍ୱପୂର୍ଣ୍ଣ। ଚତୁରତା ଉପରେ ନିର୍ଭର କରିବାକୁ ହେବ। କାହାରି ସାମାନ୍ୟ ଟିକିଏ ତ୍ରୁଟି ରହିଗଲେ ସମୂହ କ୍ଷତି ହେବ। ତେବେ ମୋର ବିଶ୍ୱାସ, ମୋ ବନ୍ଧୁ ଓ ବାନ୍ଧବୀମାନେ କାମଟିକୁ ଶୃଙ୍ଖଳିତ ଭାବରେ ନେଇ ଆଣି ଥୋଇପାରିବେ। କ'ଣ କହୁଚ?

ମିଃ ଶାସ୍ତ୍ରୀ ପୁଣି ଥରେ ସମସ୍ତଙ୍କ ଆଡ଼େ ଅନେଇଗଲେ। ସେମାନଙ୍କ ମୁହଁରୁ କ'ଣ ବାରିଲେ କେଜାଣି ତାଙ୍କ ମୁହଁରେ ପ୍ରସନ୍ନତା ଫୁଟି ଉଠିଲା।

ମିଃ ଶାସ୍ତ୍ରୀ କହିଲେ: ମୁଁ ଆଶା କରୁଚି ଯେଉଁମାନଙ୍କ ଉପରେ ଯାହା ଦାୟିତ୍ୱ ଥିଲା, ସେମାନେ ସମସ୍ତେ ସୁଚାରୁ ରୂପେ ତୁଲେଇଛନ୍ତି।

ଆଉ ଥରେ ମିଃ ଶାସ୍ତ୍ରୀ ସମସ୍ତଙ୍କ ମୁହଁ ଉପରେ ଆଖି ପହଁରେଇ ନେଲେ। ସବୁଠୁ ସେ ସମ୍ମତିସୂଚକ ଉତ୍ତର ପାଉଥିଲେ। ମଝିରେ ଜଣେ ମହିଳାଙ୍କ ଉପରେ ତାଙ୍କ ଆଖି ଅଟକିଗଲା। ମହିଳା ଜଣଙ୍କ ଉଠି କରୁଣ ଭାବରେ ଠିଆ ହେଲେ।

: କ'ଣ?

: ମହିଳାଟି ତଳକୁ ମୁହଁ ପୋତି ଠିଆ ହୋଇଥିଲେ।

: ତମେ କିଛି ସଂଗ୍ରହ କରି ପାରିନାହଁ ?

ତଥାପି ମହିଳାଟି ନୀରବ ହୋଇ ଠିଆ ହୋଇଥିଲେ।

: ଅଳକା! ମିଃ ଶାସ୍ତ୍ରୀଙ୍କ କଣ୍ଠସ୍ୱର ଟିକିଏ ଗମ୍ଭୀର ଶୁଣାଗଲା। ଅଳକା ଯେମିତି ଚମକି ପଡ଼ିଲା: ନା।

: କାହିଁକି ?

: ଅସୁବିଧା କ'ଣ ହେଲା ?

ଅଳକା ନୀରବ ରହିଲା ।

: ଓଃ । ଆଚ୍ଛା, ଉତ୍ତର ଦେବନି । ବେଶ୍ ।

ମିଃ ଶାସ୍ତ୍ରୀ ଦଣ୍ଡେ ନୀରବ ରହି ପୁଣି କହିଲେ: ତୁମେ ସେଠାକୁ ଯାଇଥିଲ ?

: ହଁ ।

: ତେବେ ଅସୁବିଧାଟା କ'ଣ ହେଲା ? ମୁଁ ଯେତେବେଳେ ତୁମକୁ ତା ପାଖକୁ ପଠାଇଥିଲି, ସେତେବେଳେ ତା'ପକେଟରେ ସେ କାଗଜ ଖଣ୍ଡିକ ଥିଲା । ସେ କଥା ମଧ୍ୟ ତୁମକୁ କହିଥିଲି, ଏତିକି ପାରିଲି ନାହିଁ ? ଆଉ କ'ଣ କରିବ ତମେ ?

: ମୁଁ ଆଣିଥିଲି ।

: ତା' ହେଲେ ? ମିଃ ଶାସ୍ତ୍ରୀଙ୍କ ସ୍ୱର ଚଞ୍ଚଳ ହୋଇଉଠିଲା ।

: ଏଇକ୍ଷିଣା ମିଳୁ ନାହିଁ ।

: କ'ଣ କହୁଚ ଅଳକା ?

: ହଁ ସାର୍, ଆଣି ମୋ ଘରର ଲୁହା ଆଲମାରୀରେ ବନ୍ଦ କରି ରଖିଥିଲି । ବର୍ତ୍ତମାନ ଦେଖୁଚି ନାହିଁ ।

: [illegible] ମୋଟେ ହେଇ ପାରେନା । ଆମ ଏଠାରୁ ପୁଣି ଆଲମାରୀ ଭାଙ୍ଗି ଜିନିଷ ଚୋରି, ମୁଁ ମୋଟେ ବିଶ୍ୱାସ କରିବି ନାହିଁ ।

: ନାଇଁ ସାର୍ ! ଆଲମାରୀ ଭଙ୍ଗା ହୋଇନି । ଚାବି ଖୋଲା ହେଇନି, ଅଥଚ ଜିନିଷ ମୁଁ ଖୋଜି ପାଉନି । କ'ଣ ଯେ ହେଲା ମୁଁ କିଛି ଭାବି ପାରୁନି ।

: ହୁଁ । ତମେ ମିଛ କହୁନା ତ ? ମୁଁ ଯଦି କୁହେ ତୁମେ ନିରାଶ ହୋଇ ସେଠାରୁ ଫେରି, ଜୀବନ ବଞ୍ଚେଇବା ପାଇଁ ମୋ ପାଖରେ ମିଥ୍ୟା ଛଳନା କରୁଚ, ତା'ହେଲେ ?

ଅଳକା ନୀରବ ହୋଇ ଠିଆ ହୋଇଥିଲା । ମିଃ ଶାସ୍ତ୍ରୀ ତା' ଉପରୁ ଆଖି ଉଠେଇ ଆଉ ଜଣକ ଉପରେ ପକାଇଲେ । ଲୋକଟି ଉଠି ଠିଆ ହେଲା । ଟିକିଏ ଆଗେଇଯାଇ ଟେବୁଲ୍ ଉପରେ ଗୋଟାଏ ଛୋଟ ପ୍ୟାକେଟ ରଖିଲା ।

ମିଃ ଶାସ୍ତ୍ରୀ ସେଇଟିକୁ ବୁଲେଇ ଚଲେଇ ଦେଖିଲେ, ଲୋକଟି ଆଡ଼େ ଚାହିଁ କହିଲେ: ସାବାସ୍ !

ଲୋକଟି ଯାଇ ନିଜ ଜାଗାରେ ବସିଲା । ମିଃ ଶାସ୍ତ୍ରୀଙ୍କ ନଜର ଆଉ ଜଣକ ଉପରେ ଅଟକିଲା । ଲୋକଟି ଉଠି ଠିଆହେଲା ଏବଂ ସଙ୍ଗେ ସଙ୍ଗେ ଆରମ୍ଭ କଲା: ଲକ୍ଷଣ କିଛି

ଭଲ ଦିଶୁନାହିଁ। ସେ ପ୍ରାୟ ତିନି ଚାରିଦିନ ହେବ ଅଦୃଶ୍ୟ ହୋଇଚି। ଆମ ଲୋକ ନାନାଆଡ଼େ ଖୋଜି ମଧ୍ୟ ତାକୁ ଆବିଷ୍କାର କରିପାରିଲେ ନାହିଁ। ମନେ ହେଉଚି, ସେ ଏ ସହର ଛାଡ଼ି ଅନ୍ୟ କେଉଁଠାକୁ ଚାଲି ଯାଇଚି।

: ହୁଁ।

ମିଃ ଶାସ୍ତ୍ରୀଙ୍କ ଆଖି ଆଉଜଣଙ୍କ ଆଡ଼େ ପହଁରିଗଲା। ସେ ଲୋକଟି ଉଠିଯାଇ କ'ଣ ଖଣ୍ଡିଏ କାଗଜ ଟେବୁଲ ଉପରେ ରଖି ଆସିଲା। ମିଃ ଶାସ୍ତ୍ରୀ କାଗଜଟିକୁ ଖୋଲି ଭଲ ଭାବରେ ଦେଖିଲେ। ମନେ ହେଉଥିଲା, ସେ ଖଣ୍ଡେ ଚିଠି। ପଢ଼ିସାରି ମିଃ ଶାସ୍ତ୍ରୀ ସେ ଖଣ୍ଡକ ପୁଣି ଟେବୁଲ ଉପରେ ରଖିଲେ। କହିଲେ: ତେଣେ ସବୁ ଠିକ୍ ଠାକ୍ ହୋଇଯାଇଛି। ଖାଲିଯାଇ ପହଞ୍ଚି କାର୍ଯ୍ୟ ଉଦ୍ଧାର କରିବା କଥା। ଦୟା, ମାୟା, ମୋହ ସମସ୍ତଙ୍କୁ ସବୁ ଭୁଲିଯିବାକୁ ହେବ। ଦରକାର ହେଲେ ଆଖି ବୁଜି ରକ୍ତ ଗଙ୍ଗା ବୁହାଇ ଦେବାକୁ ହେବ। କାରଣ ଏ ସୁଯୋଗ ଆଉ ଦ୍ୱିତୀୟଥର ଆସିବନାହିଁ। ଯାଅ, ଏବେ ସମସ୍ତେ ପ୍ରସ୍ତୁତ ହୁଅ। ସମୟ ପାଖେଇ ଆସୁଚି।

ଗୋଟିଏ ଗୋଟିଏ ହୋଇ ସମସ୍ତେ ଉଠିଲେ। ମିଃ ଶାସ୍ତ୍ରୀ ଖାଲି ଅଳକାକୁ ଅଟକାଇଲେ। ପଚାରିଲେ: ସତ କୁହ ଅଳକା, ତମେ ସେ ଖଣ୍ଡିକ ତା' ପାଖରୁ ଉଦ୍ଧାର କରିଥିଲ ?

: ହଁ!

: ତେବେ ହଜିବା ସମ୍ବନ୍ଧରେ ତମର ଧାରଣା କ'ଣ ?

: ଚୋରି ହୋଇଚି।

: କିନ୍ତୁ ମୁଁ କିପରି ବିଶ୍ୱାସ କରିବି ? ଯେଉଁଠି ଛୁଞ୍ଚି ମାଛିର ପରୀକ୍ଷା ଚାଲିଛି, ସେଠାରୁ ଚୋରି ! !

: ମୋତେ ବିଶ୍ୱାସ କରନ୍ତୁ।

: ତା' ହେଲେ ହୁଏତ ଆମରି ଭିତରୁ କେହି ଏହା କରିଚି। ମୋର କାହିଁକି ଆଶଙ୍କା ହେଉଚି, ଆମର ପ୍ଲାନ....

ଅଜୟ ଚମକି ପଡ଼ିଲା। ପାଖ ଆଲମାରୀ ପାଖରୁ କିଏ ଯେମିତି ବାହାରିଗଲା ପରି ତାକୁ ଲାଗିଲା। ଖାଲି ଛାଇଟାଏ ଘୁଞ୍ଚିଗଲା ପରି ସେ ଅନୁଭବ କଲା। ସେଇ ଆଡ଼େ ଆଗେଇ ଯାଇ ଦେଖିଲା, ଯେଉଁ କବାଟ ଖୋଲି ଅଜନ୍ତା ତାକୁ ଏ ଘରେ ପୂରେଇ ଦେଇ ଯାଇଥିଲା, ସେ କବାଟଟି ମୁକୁଳା ହେଇଚି। ଅଜୟ ପଦାକୁ ବାହାରିପଡ଼ି ଦେଖିଲା- ଦରବାନଟା ତେଣିକି ଚାଲିଯାଉଚି। ଅଜୟ ଧରାପଡ଼ି ଯାଉ ଯାଉ ବଞ୍ଚିଗଲା। ଏଠାକାର ବୀଭତ୍ସତା ତା' ମନ ଉପରେ କିପରି କୁତ୍ସିତ ପ୍ରଭାବ ପକାଇଥିଲା। ସେ ଅଣନିଃଶ୍ୱାସୀ

ହୋଇଯାଇଥିଲା। କିଛି ତା'ର ମନେ ରହୁନଥିଲା। କିନ୍ତୁ ପୁଣି ଅଜନ୍ତା ଗଲା କୁଆଡ଼େ? ଏଠାରୁ ସେ ଚାଲି ଯିବାକୁ ଚାହେଁ। ତା' ନହେଲେ ତା'ର ଶ୍ୱାସରୁଦ୍ଧ ହୋଇଯିବ। ତା'ର ମୃତ୍ୟୁ ହେବ।

ଅଜୟ ଚାରିଆଡ଼କୁ ଚାହିଁ ପାଦେପାଦେ ଆଗେଇଲା। ସେ ଆସି ସେଇ ଗୋଲେଇ ଶିଡ଼ିଟା ମୁଣ୍ଡରେ ପହଞ୍ଚିଯାଇଥିଲା। ପାହାଚ ପାହାଚ କରି ତଳକୁ ଓହ୍ଲେଇ ଆସୁଥିଲା। ଅଧ ଶିଡ଼ିରେ ଗୋଟାଏ ମଟର ଷ୍ଟାର୍ଟ ହେବାର ଶବ୍ଦ ଶୁଣିଲା। ତଳକୁ ଓହ୍ଲେଇ ଆସି ଦେଖିଲା, ହତା ଭିତରୁ ଗୋଟାଏ ଗାଡ଼ି ପଦାକୁ ବାହାରି ଯାଉଚି। ଅଜୟର ମନ ହେଉଥିଲା, ସେ ସେଇ ଗାଡ଼ିରେ ବାହାରକୁ ବାହାରି ଯାଇପାରନ୍ତା କି!!

କେଜାଣି କେଉଁଠୁ ଏକା ଥରକେ କେତେଗୁଡ଼ାଏ ଘଣ୍ଟି ବାଜି ଉଠିଲା। ପରେ ଖାଲି ଦ୍ରୁତ ପାଦ ଶବ୍ଦ ଶୁଣାଗଲା। କିଏ ବା କେଉଁମାନେ ଖାଲି ଧାଁ ଦଉଡ଼ କରୁଛନ୍ତି। ପାଦଶବ୍ଦ ଗୁଡ଼ାକ ଆସ୍ତେ ପାଖେଇ ଆସୁଥିଲା। ଘଣ୍ଟି ବାଜିବା ବନ୍ଦ ହୋଇଗଲା, କିନ୍ତୁ ପାଦଶବ୍ଦ ଗୁଡ଼ାକ ଦ୍ରୁତ ହୋଇ ଉଠିଲା। ଅଜୟ ଏଥର ମଧ୍ୟ ଗୋଟାଏ ଟବ୍ ପାଖରେ ନିଜକୁ ଲୁଚେଇ ଦେଲା। ତା'ର ପାଖ ଦେଇ କେତେ ଲୋକ ଧାଇଁ ଦଉଡ଼ି ପଳେଇଲେ। ସେ କାହାରିକୁ ଦେଖିବାର ବା ଚିହ୍ନିବାର ସୁଯୋଗ ପାଇଲା ନାହିଁ। ତଳକୁ ମୁହଁ ମାଡ଼ି ବସିଥିଲା ଏବଂ ବିଚଳିତ ହେଉଥିଲା। କିଛି ଭାବନା ତା' ମୁଣ୍ଡରେ ପଶୁନଥିଲା।

ପ୍ରାୟ ଅଧଘଣ୍ଟା ପରେ ପୁଣି ସବୁ ନିଶ୍ଚଳ ହୋଇଗଲା। କାହାରି ବା କୌଣସି ଶବ୍ଦ ତା' କାନରେ ବାଜିଲା ନାହିଁ। ଅଜୟ ଧୀରେଧୀରେ ମୁଣ୍ଡ ଉଠେଇଲା। ପଦାକୁ ଚାହିଁଲା। କେହି ନାହାନ୍ତି।

ଉଠି ଠିଆ ହେଲା। ନିଶୂନ ଲାଗୁଚି। ପାଦେପାଦେ ଆଗେଇଲା। ଆଗରେ ସେଇ ଗୋଲେଇ ଶିଡ଼ିଟା। ଶିଡ଼ି ମୁଣ୍ଡରେ ପହଞ୍ଚି ସେ ଯେମିତି କେଉଁଠୁ କ'ଣ ଅଦ୍ଭୁତ ଧ୍ୱନି ଶୁଣିବାକୁ ପାଇଲା। ମାଟି ତଳୁ କେଉଁମାନେ ଯେପରି କଥାବାର୍ତ୍ତା କରୁଛନ୍ତି।

ଅଜୟ ଯାଇ ଶିଡ଼ି ମୁଣ୍ଡରେ ତଳକୁ ଅନାଇଲା। ତଳକୁ ତଳକୁ ପାହାଚ ଲମ୍ବି ଯାଇଚି। ସେ ହତଭମ୍ବ ହୋଇ ଦଣ୍ଡେ ଠିଆ ହୋଇଗଲା। ତା'ପାଦ ଯୋଡ଼ାକ ଆପେଆପେ ତଳକୁ ଖସିବାକୁ ଲାଗିଲା।

ଅଜୟ ଯାଇ ଶିଡ଼ିର ଶେଷପାହାଚରେ ଠିଆହେଲା।

ବିରାଟ ଘର। ଖୁବ୍ ଝାପ୍‌ସା ଦିଶୁଚି। ନୀଳ ଆଲୋକ କେଇଟା ଜଳୁଛି ମାତ୍ର। ବହୁତ ଲୋକ। ସମସ୍ତେ ଯେପରି ଭୀଷଣ ଭାବରେ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି। ଅଜୟ ଆଗକୁ ଯିବାକୁ ଭରସା କରିପାରିଲା ନାହିଁ। ସେଠି ଠିଆ ହେବାର ମଧ୍ୟ ଉପାୟ ନାହିଁ। ଆଉ କେହି ଯଦି ଶିଡ଼ିବାଟେ ତଳକୁ ଓହ୍ଲାଏ?

ଅଜୟ କିଛି ଗୋଟାଏ ସ୍ଥିର କରିବା ଆଗରୁ ଶିଡ଼ିରେ କାହାର ପାଦଶବ୍ଦ ଶୁଣିଲା। ସଙ୍ଗେସଙ୍ଗେ ଅଜୟ ଓହ୍ଲେଇ ପଡ଼ିଲା ତଳକୁ। କିଏ ଜଣେ ଭାରି ପାଦ ପକେଇ ଉପରୁ ତଳକୁ ଓହ୍ଲଉଚି। ଅଜୟ ଗୋଟାଏ ପାଖରେ ଘସି ହୋଇ ଠିଆ ହେଲା। ଯେଉଁ ଲୋକଟି ଉପରକୁ ତଳକୁ ଓହ୍ଲାଉଥିଲା, ଅଜୟ ତାକୁ ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଦେଖି ଶିହରି ଉଠିଲା। ଇସ୍। ଅଜୟ ଗୋଟିପଣ କମ୍ପିବାକୁ ଲାଗିଲା। ତା' ଜୀବନରେ ଏପରି ଭୟଙ୍କର ଲୋକ କେବେ ସେ ଦେଖିନଥିଲା। ବିରାଟ ବିରାଟ ଆଖି, କଦର୍ଯ୍ୟ ଅଥଚ ବିକୃତ ମୁହଁ। ଆଖି ଭିତରେ ଯେପରି ବିଷଧର ସର୍ପ ଜିଭ ଲହଲହ କରୁଚି। ଅଜୟ ଦୁଇ ହାତରେ ନିଜର ଆଖି ଦୁଇଟା ବନ୍ଦ କଲା। ଲୋକଟା ଶିଡ଼ିରୁ ତଳକୁ ଓହ୍ଲେଇ ସିଧା ଆଗେଇଲା। ସମସ୍ତେ ଯେ ଯାହାର କାର୍ଯ୍ୟରେ ବ୍ୟସ୍ତ ଥିଲେ। ଲୋକଟିକୁ ଦେଖି ବ୍ୟସ୍ତତା ଆହୁରି ଯେପରି ବଢ଼ିଗଲା।

ଲୋକଟା ଆଗଉଥିଲା। ତା' ଚାଲିର ଢଙ୍ଗରେ ଯେପରି କୁଟିଳତା ଫୁଟି ଉଠୁଥିଲା। ଅଜୟ ଖାଲି ଆଁ କରି ଅନେଇ ଥିଲା। ଜଗତରେ ପୁଣି ଏପରି କଦର୍ଯ୍ୟ ଆଉ ଏପରି ଭୀଷଣକାୟ ଲୋକ ଅଛନ୍ତି !!

ଲୋକଟା ଅଦୃଶ୍ୟ ହୋଇଯାଇଥିଲା।

ଅଜୟର ଆଉ ବିଚାର ବୁଦ୍ଧି କିଛି ଖଟିଲା ନାହିଁ। ସେ କୁଆଡ଼େ ଯିବ, କ'ଣ କରିବ, କିଛି ଠିକ୍ କରିବା ଆଗରୁ ଯେଉଁ କାନ୍ଥରେ ଭରା ଦେଇ ଠିଆ ହୋଇଥିଲା, ସେଇ କାନ୍ଥର ଟିକେ ଆଗକୁ ଗୋଟାଏ ଦୁଆର ଥିଲା ପରି ଲାଗିଲା। ଅଜୟ ପରୀକ୍ଷା କଲା, ଖୋଲା ଅଛି। ଧୀରେ ଠେଲି ଭିତରକୁ ପଶିଲା। ସେଇ ନୀଳ ଆଲୋକ ଜଳୁଛି। ବିଶେଷ କେହି ଦିଶୁନାହାନ୍ତି। ଗୋଟାଏ ପ୍ରଶସ୍ତ ଘର। ଚାରିଆଡ଼େ ସତର୍କ ଦୃଷ୍ଟି ବୁଲାଇ ଆଣି ପାଦେପାଦେ ଆଗକୁ ବଢ଼ିଲା।

ଇସ୍ ! ସେଇ ବିଭତ୍ସ ମଣିଷଟା। କ'ଣଟାଏ ପରୀକ୍ଷା କରି ଦେଖୁଚି। ପାଖରେ ଜଣେ ନାରୀ। ଯଦିଓ ଲୋକଟାର ମୁହଁ ଅଜୟ ଆଡ଼େ ଥିଲା, କିନ୍ତୁ ନାରୀଟି ଅନ୍ୟଆଡ଼େ ମୁହଁ କରି ଛିଡ଼ା ହୋଇଥିଲା। ଲୋକଟା ନାରୀଟିକୁ କ'ଣ ବୁଝାଉଥିଲା। ତା' ହାତରେ ଯେଉଁ ପଦାର୍ଥଟି ଥିଲା, ତାହା ଗୋଲାକୃତି-ଫେଣ୍ଟୁଟିଏ ଭଳି।

ତା'ପରେ ସେଇଟିକୁ ଯଥା ସ୍ଥାନରେ ରଖି ଅଳ୍ପ ଟିକିଏ ଆଗକୁ ବଢ଼ିଲା। ନାରୀଟି ତା' ପଛେପଛେ ଆଗଉଥିଲା। ନାରୀଟିର ମୁହଁକୁ ଏଥର ଅଜୟ ଦେଖିପାରିଲା।

ଛାତିଟା ଧଡ଼କିନା ପଡ଼ିଲା। ଅଜନ୍ତା ? ଭଲକରି ଚିହ୍ନିବା ଆଗରୁ ସେଇ ବୀଭତ୍ସ ଲୋକଟା ସାଙ୍ଗରେ ସେ ଆହୁରି ଦୂରକୁ ଚାଲିଯାଇଥିଲା। ଅଜୟ ଅପଲକ ନୟନରେ ସେଇଆଡ଼େ ଅନାଇଥିଲା। ସବୁ ଯେମିତି ଗୋଳମାଳ ହୋଇଯାଉଚି। କିଛି ମନେ ରହୁନି।

ଦିନେ ରାତିରେ

ଅଜୟ ଆଗେଇଲା। ବିଶେଷ କିଛି ଆଖିରେ ପଡ଼ିଲାନି। ସରୁ ସରୁ ଆଲୁଅ ଜଳୁଚି। ଅଧା ଅନ୍ଧାର ଅଧା ଆଲୁଅ। ଧୂଆଁଳିଆ ମନେ ହେଉଚି ଚାରିଆଡ଼େ। ବିଶେଷ ଲୋକବାକ କେହି ଦିଶୁନାହାନ୍ତି। ଅଜୟ ଡରି ଚାରିଆଡ଼େ ଆଖି ପହଁରେଇ ଚାଲିଚି। କୋଉଠୁ କ'ଣ ଶବ୍ଦ ଶୁଣି ଅଜୟ ଅଟକି ଗଲା। ଖୁବ୍ ଦୂରରେ ନ ହେଲେ ବି ଅଜୟ ପୁଣି ଦେଖିଲା ସେଇ ବୀଭତ୍ସ ଲୋକଟାକୁ। ପାଖରେ ମହିଳା ଜଣକ ଏବଂ ମଝିରେ ଯେମିତି ଆଉଜଣେ। ଅଜୟ ଆହୁରି ଟିକିଏ ଆଗେଇଗଲା। ସ୍ପଷ୍ଟ ନ ହେଲେ ବି ଦୃଶ୍ୟଟି ଦେଖିପାରିଲା ପୂରା ଭାବରେ। କିନ୍ତୁ ଏଥର ମଧ୍ୟ ମହିଳାଟି ତେଣିକି ମୁହଁ କରି ଠିଆ ହୋଇଥିଲା। ସେହି ବୀଭତ୍ସ ଲୋକଟା କାହାକୁ ଗମ୍ଭୀର ସ୍ୱରରେ କ'ଣ ପଚାରୁଥିଲା।

ଅଜୟ ଦେଖିଲା ଗୋଟିଏ ଲୋକର ହାତଗୋଡ଼ସବୁ ବନ୍ଧା ହୋଇଛି। ଉପରେ ମୁଣ୍ଡାଏ ବରଫ ଝୁଲୁଛି। ବରଫରୁ ପାଣି ନିଗିଡ଼ି ଠିକ୍ ମଣିଷଟିର ପାଟିରେ ପଡୁଚି। ସେଇ ବୀଭତ୍ସ ଲୋକଟା ତା ସାମନାରେ ଠିଆ ହୋଇ ତାକୁ ପଚାରୁଚି; କହ, ନୋହିଲେ ରକ୍ଷା ନାହିଁ।

ବରଫ ତରଳି ଧାର ଧାର ପାଣି ମୁହଁରେ ପଡୁଚି। ହୁଏତ ଲୋକଟିର ସମସ୍ତ ଦେହ ଧୀରେଧୀରେ ଶୀତଳ ହୋଇ ଆସିଲାଣି, ହୁଏତ ତା'ର କଥା କହିବାର ସମସ୍ତ ଶକ୍ତି ସେ ହରେଇ ବସିଲାଣି।

ବୀଭତ୍ସ ଲୋକଟା ଚିତ୍କାର କରି ଉଠିଲା: ଟାଇଗର! ଟାଇଗର!

ସେଇ କଳାବିରାଡ଼ିଟା ଦଉଡ଼ିଦଉଡ଼ି ଆସି ଠିଆ ହୋଇଗଲା। ଯେମିତି ଭୀଷଣ ଭାବରେ ଘୁମେଇ ପଡ଼ିଥିଲା ସେ। ଭିଡ଼ିମୋଡ଼ି ହୋଇ ବୀଭତ୍ସ ଲୋକଟାର ଦେହରେ ଘଷି ହେଲା। ଲୋକଟି ମହଳାଟିକୁ କ'ଣ କହିବାରୁ, ମହିଳାଟି ନଇଁ ପଡ଼ିଲା। ହୁଏତ ବନ୍ଧା ହୋଇଥିବା ଲୋକଟି ଗୋଡ଼ରେ କ'ଣ ଲଗାଇଦେଲା। ସେଇ କଳା ବିରାଡ଼ିଟା ଗାଉଁକିନା ମାଡ଼ି ବସିଲା ବନ୍ଧା ହୋଇଥିବା ଲୋକଟାର ପାଦଟାକୁ। ସେ ଆର୍ତ୍ତ ଚିତ୍କାର କରି ଉଠିଲା।

ବୀଭତ୍ସ ଲୋକଟା ହସି ଉଠିଲା: କହ, ନ କହିବା ଯାଏ ତ୍ରାହି ନାହିଁ। ଏହାଠାରୁ ଆହୁରି ବିକଳ ଭାବରେ ତୋତେ ଶାସ୍ତି ଦେବି। ନା, ଏଇଭଳି ମାସ ମାସ ଧରି ତିଳ ତିଳ କରି ତୋତେ ହତ୍ୟା କରିବି।

ଲୋକଟି ରହିରହି ଚିତ୍କାର କରି ଉଠୁଥିଲା। କଳା ବିରାଡ଼ିଟା ଲୋକଟାର ପାଦଟାକୁ ରହିରହି ହୁଏତ କାମୁଡୁଥିଲା। ମହିଳା ଜଣକ ସେଇ ବୀଭତ୍ସ ଲୋକଟାକୁ ଧୀରେ କ'ଣ କହୁଥିଲା। ବରଫରୁ ପାଣି ଝରୁଥିଲା। ଲୋକଟି ରହିରହି କରୁଣ ଭାବରେ ଚିତ୍କାର କରୁଥିଲା।

ଅଜୟ ଦେହର ଲୋମ ଗୁଡ଼ାକ ଠିଆ ହୋଇଯାଇଥିଲା। ମୁଣ୍ଡଟା ଧୀରେଧୀରେ ଘୂରୁଥିଲା। ସେ ପଡ଼ିଯିବ। ଜ୍ଞାନଶୂନ୍ୟ ହୋଇପଡ଼ିବ। ତା'ର ମନ ହେଉଥିଲା, ଏଇ ମୁହୂର୍ତ୍ତରେ ସେ ଯାଇ ସେଇ ବୀଭତ୍ସ ଲୋକଟାକୁ ଆକ୍ରମଣ କରନ୍ତା-ଆଉ ନିରୀହ ଲୋକଟିକୁ ମୁକ୍ତ କରନ୍ତା। କିନ୍ତୁ...

ସେଇ ବୀଭତ୍ସ ଲୋକଟି ଏଣିକି ମୁହାଁଇଲା। ତା' ପଛେ ପଛେ ମହିଳାଟି ମଧ୍ୟ।

ଅଜନ୍ତା ?

ଅଜୟ ଏଥର ସ୍ପଷ୍ଟ ଦେଖିପାରିଲା। ହଁ, ହଁ ଅଜନ୍ତା।

ଅଜୟ ଗୋଟାଏ ଉହାଡ଼ିଆ ଜାଗାରେ ଆତ୍ମଗୋପନ କଲା। ସେମାନେ ତା'ରି ବାଟ ଦେଇ ଚାଲିଗଲେ। ଲୋକଟାର ପଦକ୍ଷେପ ମଧ୍ୟ କିପରି ଭୟଙ୍କର ମନେ ହେଉଥିଲା। ସେମାନେ ଚାଲିଗଲେ। ଅଜନ୍ତା ସେ। ଅଜୟ ଭଲ ଭାବରେ ଚିହ୍ନିପାରିଲା।

ସେମାନେ ଦୂରେଇ ଯାଇଥିଲେ। ଅଜୟ ଠିଆ ହୋଇଥିଲା। ତେଣେ ଲୋକଟା ଚିତ୍କାର କରୁଥିଲା। କଳା ବିରାଡ଼ିଟା ରହିରହି ଲୋକଟା ପାଦକୁ କାମୁଡୁଥିଲା। ବରଫ ତରଳୁ ଥିଲା। ଅଜୟର ମୁଣ୍ଡ ଘୂରୁଥିଲା। କିଛି ମନେ ରହୁନଥିଲା। ସେ ହୁଏତ ପଡ଼ିଯିବ, କିମ୍ବା....

ହଠାତ୍ କିଏ ଜଣେ ତା' ପାଖ ଦେଇ ଚାଲିଗଲା। ଯାଉ ଯାଉ କହିଦେଲା, ପାଖ ଘର ବାକ୍ସରେ ନକ୍ସା ଅଛି। ଶୀଘ୍ର....।

ଅଜୟ ଭଲ କରି ଚିହ୍ନିବା ଆଗରୁ ସେ ଦୂରକୁ ଚାଲି ଯାଇଥିଲା। କେବଳ କଣ୍ଠସ୍ୱରଟା ଅଜନ୍ତାର ବୋଲି ମନେହେଲା। କିନ୍ତୁ ଅଜୟ କିଛି ବୁଝିପାରିଲା ନାହିଁ।

ନକ୍ସା, କି ନକ୍ସା ? କାହାର ନକ୍ସା ? ସେ କଥା ଅଜନ୍ତା ବା ତାକୁ କାହିଁକି କହିଲା ?

ପୁଣି ଭାରି ପାଦଶବ୍ଦ ଶୁଭିଲା। ଅଜୟ ଚଞ୍ଚଳ ହୋଇ ଚାହିଁଲା ବେଳକୁ ସେଇ ବୀଭତ୍ସ-ଲୋକଟା ତେଣୁ ମାଡ଼ି ଆସୁଥିଲା। ଅଜୟ ଲୁଚି ପଡ଼ିଲା। ସେ ଲୋକଟା ଆଗେଇ ଯାଉଥିଲା। ଯେଉଁ ଲୋକଟାକର ହାତପାଦ ବନ୍ଧା ହୋଇଥିଲା, ପୁଣି ତା'ରି ପାଖରେ ଯାଇ ପହଞ୍ଚିଲା। ସେ ଲୋକଟା ହୁଏତ ସେତେବେଳକୁ ଚେତନା ହରେଇ ସାରିଥିଲା। କାରଣ ତା' ଆର୍ତ୍ତ ଚିତ୍କାର ଧୀରେଧୀରେ ବନ୍ଦ ହୋଇ ଯାଉଥିଲା।

ଅଜୟର ମନେ ପଡ଼ିଲା, ପାଖ ଘରେ ନକ୍ସା ଅଛି। ଅଜନ୍ତା କହିଯାଇଚି। କି ନକ୍ସା ? ସେ ବା ଅଜୟର ହେବ କ'ଣ ! ତଥାପି ଅଜୟ ମନରେ ଚାଞ୍ଚଲ୍ୟ ଦେଖାଗଲା। ତା'ପାଦ ଯୋଡ଼ାକ ଛାଏଁ ଛାଏଁ ଆଗକୁ ବଢ଼ିଲେ। ପାଖ ଘର ? ତା' ପାଖରେ'ଟ ଆଉରି ଗୋଟାଏ ଘର। କେଉଁ ଘରକୁ ସେ ଯିବ ?

ପ୍ରଥମ ଘରର କବାଟଟା ଠେଲିଦେବାରୁ ଖୋଲିଗଲା। ଅଜୟ ଭିତରକୁ ପଶି କବାଟ ଆଉଜେଇ ଦେଲା। ଖୁବ୍ ଧୀର ଆଲୋକଟିଏ ଜଳୁଚି। ଅନେକ ଜିନିଷପତ୍ର ରହିଚି ଘରଟିରେ। କେଉଁଠୁ ସେ ବାକ୍ସ ଖୋଜିବ ?

ଯେଉଁ ବାକ୍ସଟି ପାଖରେ ଅଜୟ ପ୍ରଥମେ ପହଞ୍ଚିଲା, ସେ ଏକ ବିରାଟ କଳା ବାକ୍ସ। ଡାଙ୍କୁଣିଟି ଖୋଲିଲା। ପ୍ୟାଣ୍ଟ, ସାର୍ଟ, ହାଓ୍ୱାଇନ୍...ଆହୁରି...

ଅଜୟ ଶେଷ ଜାମା ଖଣ୍ଡିକ କାମି ଦୁଇପାଦ ପଛକୁ ଘୁଞ୍ଚି ଆସିଲା। କିଏ ତା' ଭିତରେ କହୁଛି: ଆହୁରି...

ଅଜୟ ପୁଣି ବାକ୍ସଟି ପାଖକୁ ଯାଇ ଦେଖିଲା, ବାକ୍ସ ଭିତରେ କେତେଗୁଡ଼ାଏ ଯନ୍ତ୍ରପାତି, କଳକବ୍‌ଜା। ଗୋଟାଏ କଡ଼କୁ ଛୋଟ ମାଇକ୍‌ଟିଏ ରଖା ହୋଇଛି। ସବୁ ନିଶ୍ଚଳ। ଆଉ ବାହାରି ପାଟିତୁଣ୍ଡ ତା' ଭିତରକୁ ଶୁଭୁନାହିଁ।

ଅଜୟ ମାଇକ୍‌ଟି ବାକ୍ସ ଭିତରୁ ବାହାର କରିବାକୁ ହାତ ବଢ଼ାଉଥିଲା। ପୁଣି ସମ୍ଭାଳି ନେଲା। ମନେ ପଡ଼ିଲା ଅଜନ୍ତା କଥା। କ'ଣ ନକ୍ସା କଥା ସେ କହି ଯାଇଚି। ପାଖ ଘର ବାକ୍ସରେ ନକ୍‌ସା ଅଛି। କିନ୍ତୁ କୋଉ ଘର, କୋଉ ବାକ୍ସ ?

ସେ ଧୀରେଧୀରେ ପ୍ୟାଣ୍ଟ ସାର୍ଟ ଗୁଡ଼ାକ ବାକ୍ସରେ ଭରିଲା। ଯେମିତି ଥିଲା ସେମିତି ରଖିଲା। ସେ ଘରେ ଆଉ ବାକ୍ସ ନାହିଁ। କେବଳ କେଇଟା ଲୁହା ଆଲମାରୀ। ଅନ୍ୟାନ୍ୟ ବହୁ ଜିନିଷପତ୍ର। ତା'ହେଲେ ? ହୁଏତ ଆଉ କେଉଁ ଘରେ ନକ୍ସା ଅଛି। ଅଜୟ ସେ ଘରୁ ବାହାରି ଯିବା ପାଇଁ ତିଆରି ହେଲା। ଦୁଆର ପାଖରେ ପହଞ୍ଚିଚି, ପଦାରୁ କିଏ ଦୁଆର ଠେଲିଲା। ଅଜୟ ସେଇ ଦୁଆର ପଛପଟରେ ଠିଆ ହୋଇଗଲା। ଭିତରକୁ ଯେଉଁ ଲୋକଟି ପଶିଲା, ସେ ଅନ୍ୟ କେହି ନୁହେଁ, ସେଇ ଭୀଷଣକାୟ ଲୋକଟି। ଅଜୟ ସେଇ ଫାଙ୍କରେ ପଦାକୁ ବାହାରି ଆସିଲା।

କେଉଁଠି ଅଳ୍ପ ଦୂରରେ ଅନେକ ଲୋକଙ୍କର ପାଦଶବ୍ଦ ଶୁଭୁଥିଲା। ଅଜୟ କିନ୍ତୁ ଆଉ ପ୍ରତୀକ୍ଷା କଲାନାହିଁ। ସିଧା ସେ ଆର ଘର କବାଟ ଖୋଲି ଭିତରକୁ ପଶିଗଲା। କିନ୍ତୁ ଘରଟା କିଟିକିଟିଆ ଅନ୍ଧାର। ଆଖି ଦେଖିଲା ନାହିଁ। ତେଣିକି ଆଉ ଆଗେଇବାକୁ ସାହସ ହେଲାନି। ସେ ଫେରିଆସିଲା। କବାଟ ଖୋଲି ବାହାରକୁ ଯିବ, କିଏ ଜଣେ ତା' ଆଗରେ ଝଡ଼ ପରି ଚାଲିଗଲା, ହାତରେ ଗୁଞ୍ଜି ଦେଇଗଲା ଗୋଟାଏ ଟର୍ଚ୍ଚ।

ଅଜୟ କିଛି ବୁଝିପାରିବା ଆଗରୁ ସେ ପାଖରୁ ସେଇ ଭାରି ପାଦ ଶବ୍ଦଶୁଣି ଭିତରକୁ ପଶିଗଲା। କବାଟ ଆପଣାଛାଏଁ ବନ୍ଦ ହୋଇଗଲା। ଅଜୟ ଚୁପ୍‌କରି ଦଣ୍ଡେ ଛିଡ଼ା ହୋଇଗଲା। ପରକ୍ଷଣେ ଝାଳ ବୋହିଗଲା ମୁହଁରୁ। ବାପ୍‌ରେ! କି ଭୌତିକ ରଙ୍ଗମଞ୍ଚ ଭିତରେ ସେ ପାଦଦେଲା। ଯେକୌଣସି ମୁହୂର୍ତ୍ତରେ ମୃତ୍ୟୁର କାଳଦାଣ୍ଡ ତାକୁ ଆଲିଙ୍ଗନ କରି ବସିବ।

ତଥାପି ମନକୁ ଦମ୍ଭ କରି ହାତର ଟର୍ଚ୍ଚଟା ଜଳେଇଲା। ଛୋଟ ଆଲୋକଶିଖାଟି ଯେଉଁଠି ଅଟକିଗଲା, ଅଜୟ ଦେହସାରା ଭୂମିକମ୍ପର ବେଗ ଖେଳିଗଲା। ଟର୍ଚ୍ଚଟା ହାତରୁ ଖସି ପଡୁ ପଡୁ ଅଟକିଗଲା। ଡାକ୍ତର ଆର୍.ଏ.ସ୍ ସୁନ୍ଦରମ୍ ଗୋଟାଏ ଇଜି ଚେଆରରେ ବସିଛନ୍ତି, ଠିକ୍ ତା'ରି ଆଡ଼େ ମୁହଁକରି। ପାଟିରେ ପାଇପ୍‌ଟା ବି ରହିଛି। ଅଜୟର ଆଗକୁ କି ପଛକୁ ଘୁଞ୍ଚିବାକୁ ଶକ୍ତି ନ ଥିଲା। ଏପରିକି ହାତରେ ଟର୍ଚ୍ଚ ବୋତାମଟାକୁ ଟିପିବା ପାଇଁ ସେ ଅକ୍ଷମ ହୋଇପଡ଼ିଲା।

କିନ୍ତୁ ଆଶ୍ଚର୍ଯ୍ୟର କଥା, ଡାକ୍ତର ସୁନ୍ଦରମ୍ ନିଶ୍ଚଳ ହୋଇ ବସିଥିଲେ। କୌଣସି ପ୍ରତିକ୍ରିୟା ଅଜୟ ଲକ୍ଷ୍ୟ କଲା ନାହିଁ। ତା'ହେଲେ? ଡାକ୍ତର ସୁନ୍ଦରମ୍ କ'ଣ ମୃତ? ଅଥବା...

କିଏ କବାଟ ଖୋଲିବାର ଶବ୍ଦ ପାଇ ହଠାତ୍ ଟର୍ଚ୍ଚଟା ନିଭେଇଦେଲା। ଗୋଟାଏ ପାଖକୁ ଘୁଞ୍ଚିଗଲା। ପୁଣି ସେଇ ଭାରି ପାଦଶବ୍ଦ। ସେଇ ଭୀଷଣକାୟ ଲୋକଟା ହେବ ପରା! ଲୋକଟା ଭିତରକୁ ପଶିଲା। ଅଜୟର ଲହୁ ସତେକି ପାଣି ପାଟିଗଲା। ହୁଏତ ଲୋକଟା ଏଇକ୍ଷିଣା ଲାଇଟ୍ ଜାଳିବ। ତା'ପରେ ସେ ହଠାତ୍ ଆବିଷ୍କାର କରିବ ଅଜୟକୁ। ସେଉଠୁ...

ଅଜୟର ଦୁର୍ଭାବନା ଆଗେଇବା ଆଗରୁ ପୁଣି କବାଟ ଖୋଲିବାର ଶବ୍ଦ ହେଲା। ସେଇ ଭାରି ପାଦଶବ୍ଦ ଧୀରେଧୀରେ ଦୂରେଇଗଲା। ଅଜୟ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ଥକ୍କାମାରି ଦିଆଲକୁ ଆଉଜି ଠିଆ ହୋଇଗଲା। ଖୁବ୍ ସେ ବଞ୍ଚି ଯାଇଚି। ଭାବିଥିଲା, ଏ ଯାତ୍ରାରୁ ହୁଏତ ଆଉ ସେ ବାହୁଡ଼ିବ ନାହିଁ।

ଦେହ ଓ ମନରେ ବଳ ସଞ୍ଚୟ କରି ଅଜୟ ଆଉ ଥରେ ଟର୍ଚ୍ଚ ଜଳେଇଲା। କିନ୍ତୁ ଏ କ'ଣ? ଇଜି ଚେଆରଟା ଖାଲି ଯେ! ଡାକ୍ତର ସୁନ୍ଦରମ୍ ଗଲେ କୁଆଡ଼େ? ତା'ହେଲେ ସେଇ ଭୀଷଣକାୟ ଲୋକଟା କ'ଣ...

ପୁଣି ଅଜୟର ପ୍ରାଣଟା କମ୍ପି ଉଠିଲା। ଏଥର ଯେଉଁଠି ଟର୍ଚ୍ଚ ଫୋକ୍‌ସଟା ସ୍ଥିର ହେଲା, ସେ ମଧ୍ୟ ଗୋଟିଏ କଳା ବାକ୍‌ସ। ଅଜୟ କିଛି ଠିକ୍ କରି ପାରିଲା ନାହିଁ। ଖୋଲିବ ନା ନାହିଁ। ପାଦେପାଦେ ଆଗେଇଲା! ଶେଷକୁ ଦେହ ଓ ମନର ସବୁ ଶକ୍ତି ଠୁଳ କରି ଟେକି ଦେଲା ଢାଙ୍କୁଣୀଟା। କିଛିନାହିଁ। ସୂତା ଖିଏ ମଧ୍ୟ ନୁହେଁ। ଅଜୟ ଛାତିର କମ୍ପନ କମି ଆସିଲା। ସେ ଏହା ଆଶା କରି ପାରିନଥିଲା। ଭାବିଥିଲା, ଗୋଟାଏ କିଛି ଅଦ୍ଭୁତପୂର୍ବ ପଦାର୍ଥ ଦେଖିବ ବାକ୍‌ସ ଭିତରୁ। ଢାଙ୍କୁଣୀଟାଏ ପୁଣି ପକେଇ ଦେଲା। ତା'ହେଲେ? ଅଜନ୍ତା ତାକୁ କହିଗଲା କ'ଣ। କୋଉ ବାକ୍‌ସରେ ନକ୍‌ସା ଅଛି? ଆଉ, ସେ ସବୁ ଘାଣ୍ଟି ଲାଭ ନାହିଁ। ବରଂ ଏ

ମୃତ୍ୟୁକୋଠରିରୁ କୌଣସିମତେ ବାହାରି ଯାଇପାରିଲେ ଜୀବନଟା ବଞ୍ଚେଇ ହେବ। ସେଇଆ ଭଲ।

ଅଜୟ ଟର୍ଚ୍ଚଟା ନିଭେଇଦେଇ ପଦାକୁ ବାହାରି ପଡ଼ିବାର ସିଦ୍ଧାନ୍ତ ଗ୍ରହଣ କଲା। ଆଗେଇଲା ମଧ୍ୟ। କିନ୍ତୁ ହଠାତ୍ ସେ କ'ଣ ଗୋଟାଏ ଝୁଣ୍ଟିପଡ଼ି ପଡ଼ିଯାଉ ଯାଉ କୌଣସି ପ୍ରକାର ନିଜକୁ ସମ୍ଭାଳି ନେଇ ଟର୍ଚ୍ଚ ଜଳେଇଲା। ସେ ବି ଗୋଟାଏ କଳା ବାକ୍ସ। ତରତର କରି ସେଇଟା ଖୋଲି ପକେଇଲା। ତା ଭିତରେ ଗୋଟିଏ ଛୋଟିଆ କାଠ ବାକ୍ସ। କାଠ ବାକ୍ସ ଭିତରେ ମୋଡ଼ାମୋଡ଼ି ହୋଇରହିଛି ଖଣ୍ଡିଏ କାଗଜ। ଅଜୟ ଆଗ ପଛ ନ ବିଚାରି ଖୋଲି ପକେଇଲା। ଗୋଟାଏ ନକ୍ସା। ଖୁବ୍ ଚଞ୍ଚଳ ସେଇଟିକୁ ମୋଡ଼ିମୋଡ଼ି ପ୍ୟାଣ୍ଟ ପକେଟରେ ଭରିଦେଲା। ଏଥର ଛାତିଟା ସବୁଠାରୁ ବେଶୀ ଜୋର୍‌ରେ କମ୍ପିବାକୁ ଲାଗିଲା। ଯଦି ସେଇ ଭୀଷଣକାୟ ଲୋକଟା ହାବୁଡ଼ିରେ ପଡ଼େ?

ନା, ଆଉ ମୁହୂର୍ତ୍ତେ ନୁହେଁ। ଏଠାରୁ ନିଶ୍ଚୟ ଖସି ଚାଲି ଯିବାକୁ ହେବ। ଅଜୟ ଖୁବ୍ ସନ୍ତର୍ପଣରେ ପାଦେ ପାଦେ ଆଗେଇଲା। ବିଶେଷ କେହି କୁଆଡ଼େ ଦିଶୁନାହାନ୍ତି। ଅପୂର୍ବ ସୁଯୋଗ। ଅଜୟ ସେଇ ଗୋଲେଇ ଶିଡ଼ିଟା ଉପରେ ଚଢ଼ି ପଦାକୁ ବାହାରି ଆସିଲା। ବାହାରଟା ନିଶ୍ଚଳ। ସବୁଆଡ଼େ ଅନ୍ଧାର। ଆକାଶରୁ ଜହ୍ନ ଲୁଚିଗଲାଣି। କାହାରି କୋଉଠି ସୋର୍‌ଶବ୍ଦ ନାହିଁ। ପାଦ ଚିପି ଚିପି ଅଜୟ ଗୋଟାଏ ପରେ ଗୋଟାଏ ଘର ପାରି ହୋଇ ଆଗେଇଗଲା। ଏଥର ସେ ନିଶ୍ଚିନ୍ତରେ ପଦାକୁ ବାହାରି ଯାଇପାରିବ।

କିନ୍ତୁ ଅଜନ୍ତା?

ଥାଉ ସେ। ନିଜକୁ ସେ ବଞ୍ଚେଇ ପାରିବ। ତା'ଛଡ଼ା ଅଜନ୍ତା ସହିତ ତା'ର ଆଉ ସମ୍ପର୍କ କ'ଣ ? ଅଜନ୍ତା ଯେ ଏତେ ଭୀଷଣ ହୋଇପାରେ, ଅଜୟ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା। ଡାହାଣ ହାତରେ ଟର୍ଚ୍ଚଟି। ବାଁ ହାତରେ ଡାଇରିଟି, ଯାହାକୁ ସେ ପ୍ରଥମେ ପାଇଥିଲା ସେଇ ମୃତଦେହଟା ପାଖରୁ। ସେ ଖଣ୍ଡିକ ଏ ଯାଏ ଅଜୟ ହରେଇ ନ ଥିଲା। ଆଉ ପକେଟରେ ନକ୍ସାଟି। ଏଇ କାଳ କୋଠରିରୁ ଯାହା ସେ ସନ୍ଦେହ କରିଛି, ସେତିକି ସହ ଜୀବନଟା ନେଇ ବାହାରି ଯାଇପାରିଲେ ତା' ଜୀବନରେ ଗୋଟାଏ ବିରାଟ ସଫଳତା ବୋଲି ଧରିନେବ।

ଧୀରେଧୀରେ ସେ ଯାଇ ବଗିଚାରେ ପହଞ୍ଚି ଯାଇଥିଲା। ଆଉ କେଇ ପାହୁଣ୍ଡ ପରେ ଫାଟକ। ତା'ପରେ ସେ ନିଶ୍ଚିନ୍ତ। ହୁଏତ ରାତି ପାହିଲେ ଏବକ ସେ ପୋଲିସ ଷ୍ଟେସନରେ ଜିମା ଦେଇ ଦେଶସାରା ଗୋଟିଏ ଆଲୋଚନାରେ ପାତ୍ର ହୋଇପାରିବ। ଅଜୟ ମନ ଭିତରଟା ଭୟ ଆଉ ଆନନ୍ଦରେ କିପରି ଗୋଟାଏ ଶିହରଣ ଖେଳିଯାଉଥିଲା। କିନ୍ତୁ ଫାଟକଟା ଯେ ବନ୍ଦ। ତାଲା ପଡ଼ିଛି।

ଅଜୟ ଗୁମ୍ମାରି ଠିଆ ହୋଇଗଲା। ବାଁ ପାଖକୁ ଦରବାନରେ ଛୋଟ ଘରଟିଏ। ଭିତରେ ମିଞ୍ଜିମିଞ୍ଜିଆ ଆଲୁଅଟିଏ ଜଳୁଚି। ହୁଏତ ସେ ଘୁମେଇ ପଡ଼ିଚି ଆରାମରେ। ତାକୁ ଡାକିବ? ଡାକିଲେ ଯଦି ସେ ଅଜୟକୁ ଧରେଇ ଦିଏ!!

ନା, ଦରବାନକୁ ଡାକିବା ଦରକାର ନାହିଁ। ଧୀରେ ଧୀରେ ତା' ମୁଣ୍ଡ ତଳୁ ଫାଟକ ଚାବିଟା ଘେନିଆସି ବାହାରକୁ ଯାଇପାରିଲେ ବଞ୍ଚିବ। ସାତ ପାଞ୍ଚ ଭାବି ଅଜୟ ପାଦେପାଦେ ଆଗେଇଲା। ଦରବାନଟିର ଛୋଟିଆ ଘରଟି ଭିତରେ ଲଣ୍ଠନଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଚି। ସେ ପାଖକୁ ଗୋଟିଏ ଖଟିଆ ପଡ଼ିଛି। ଖଟିଆ ଉପରେ କିଏ ଜଣେ ଚଦର ଘୋଡ଼େଇ ହୋଇ ଶୋଇଚି। ସେଇ ଦରବାନ ହେବ ପରା!!

ଅଜୟ କିଛି ସମୟ ନୀରବରେ ଠିଆ ହେଲା। ତା'ପରେ ଧୀରେଧୀରେ ନଇଁ ମୁଣ୍ଡତଳୁ ଚାବି ବାହାର କରିବାକୁ ହାତ ଭରିଲା। ହେଲେ ଦରବାନ କାହିଁ? ଗୋଟିଏ ତକିଆ ଉପରେ ଚାଦରଟା ଘୋଡ଼ା ହୋଇଚି। ଅଜୟ ଅବାକ୍ ହୋଇ ଚାହିଁରହିଲା। ତା'ହେଲେ? ବର୍ତ୍ତମାନ ଉପାୟ ?

ଅଜୟ କିଛି ସ୍ଥିର କରିବା ଆଗରୁ ତା ଅବଶ ଦେହଟା ଆହୁରି ଅବଶ ହୋଇପଡ଼ିଲା। ଆଗରେ ଶେଯ। ଦେହଟାକୁ ଲୋଟେଇ ଦେଇପାରିଲେ କ୍ଳାନ୍ତି ଘୁଞ୍ଚି ଯାଆନ୍ତା। ବାହାରକୁ ଯିବାର ଅନ୍ୟ ଉପାୟ ନାହିଁ ଯେତେବେଳେ ମନ୍ଦ କ'ଣ! କିନ୍ତୁ ହଠାତ୍ ଯଦି ଆସି ଦରବାନ ପହଞ୍ଚିଯାଏ ?

ଯାହାହେଉ ପଛେ ଅଜୟ ସ୍ଥିର କଲା ଏଠୁ ସେ ଆଉ ପାଦେ ଘୁଞ୍ଚିବ ନାହିଁ। ଯଦି ଦରବାନ ଆସିଯାଏ, ତା'ହେଲେ କାକୁତି ମିନତି ଜଣେଇ ତା'ଠାରୁ ପ୍ରାଣ ଭିକ୍ଷାଟା ଆଦାୟ କରି ପାରିବ, ଆଉ ସେ ଯେଉଁ ଭୀଷଣକାୟ ଲୋକଟା। ସେ ଆଖି ବୁଜି ଅଜୟକୁ ନିଆଁକୁ ଫିଙ୍ଗି ଦେବାକୁ ବି ପଛେଇବ ନାହିଁ।

ଅଜୟ ହାତରେ ଡାଇରିଟା ଖଟିଆ ଉପରେ ଥୋଇଲା। ଟର୍ଚ୍ଚଟା ମଧ୍ୟ। ପକେଟରୁ ନକ୍ସାଟା ବାହାର କରି କରି ସେଇ ମିଞ୍ଜିମିଞ୍ଜିଆ ଆଲୁଅରେ ଦେଖିଲା: କେବଳ ବିଭିନ୍ନ ରଙ୍ଗର କେତେଗୁଡ଼ାଏ ଗାର କଟା ହୋଇଛି। ଥରେ ଖାଲି ଏ ମୁଣ୍ଡ ସେ ମୁଣ୍ଡ ଅନେଇ ଯାଇ ସେ ଖଣ୍ଡିକ ପୁଣି ଭାଙ୍ଗି ଭାଙ୍ଗି ଡାଇରି ଭିତରେ ରଖି ଦେବାକୁ ଡାଇରିଟା ମେଲା କରିଦେଲା। କିନ୍ତୁ...

ଡାଇରି ମାଲିକର ନାଁ ପଢ଼ି ଅଜୟର ଆଖି ବୁଜି ହୋଇପଡ଼ିଲା।

ସତ୍ୟଶେଖର ରାୟ ଚଉଧୁରୀ

ପ୍ରାଇଭେଟ୍ ଡିଟେକ୍ଟିଭ୍।

ଅଜୟ ଆଗ୍ରହାତିଶଯ୍ୟରେ ପୃଷ୍ଠା ପରେ ପୃଷ୍ଠା ଖେଳେଇ ଗଲା। ଡାଇରିଟିର ପ୍ରାୟ

ଅଧିକରୁ ବେଶୀ ଲେଖା ସରିଛି। ସତ୍ୟଶେଖର ରାୟ ଚୌଧୁରୀ ! ନାଁଟା ଯେମିତି ଅଜୟ ଶୁଣିଚି କେଉଁଠୁ। ତା' ହେଲେ ପ୍ରଥମେ ଅଜନ୍ତା ଓ ସେ ଆସି ଯେଉଁ ମୃତଦେହଟିକୁ ଭେଟିଲେ, ଯା ପଛେ ପଛେ ଆସି ଅଜୟ ଏଇ ମୃତ୍ୟୁଗହ୍ୱରରେ ପଶିଛି, ସେଇ ମୃତଦେହଟା କ'ଣ ସତ୍ୟନାରାୟଣ ରାୟ ଚଉଧୁରୀଙ୍କର ? ଅଜୟ ଡାଇରିର ପୃଷ୍ଠା ପରେ ପୃଷ୍ଠା ଖେଲୁଥିଲା ଆଉ ଚିନ୍ତା କରୁଥିଲା। ତାହେଲେ..... ?

ପ୍ରାତଃକାଳୀନ ସମ୍ବାଦପତ୍ର ଉପରେ ଯେତେବେଳେ ପ୍ରଥମେ ଆଖି ବୁଲେଇ ଆଣିଲି, ଆଖି ଯୋଡ଼ାକ କପାଳକୁ ଉଠିଗଲା। କି ଆଶ୍ଚର୍ଯ୍ୟ। ଦୁଇଦିନ ତଳେ ଆମ୍ବାସାଡାର ହୋଟେଲରେ ବମ୍ବେରେ ରବିନାରାୟଣ ଅଗ୍ରବାଲାଙ୍କୁ ଭେଟିଥିଲି, ଗୋଟିଏ ସନ୍ଧ୍ୟା ବୈଠକରେ; ଅଥଚ ଗତ ରାତିରେ ସେ ତାଙ୍କର କଲିକତାସ୍ଥ ବାସଭବନରେ ମୃତ୍ୟୁବରଣ କରିଛନ୍ତି। କେଜାଣି କାହିଁକି ଖବରକାଗଜ ସମ୍ବାଦଟାକୁ ମୋଟେ ବିଶ୍ୱାସ ହେଲାନାହିଁ। ସେମିତି ମୁହଁହାତ ନ ଧୋଇ ସିଧା ଉଠିଗଲି ଅଗ୍ରବାଲାଙ୍କ ଘରକୁ। ଦୁଆରେ ପୋଲିସ୍ ଗାର୍ଡ଼। କୋଠାଟା ଖାଁ ଖାଁ ଗୋଡ଼ଉଚି। ଭିତରେ କାହାରି ପାଟି ତୁଣ୍ଡ ଶୁଭୁନି।

ଦୁଆର ମୁହଁ ପାଖରେ ପୋଲିସ ଏସ୍.ଆଇ. ମି: ଚକ୍ରବର୍ତ୍ତୀଙ୍କ ସଙ୍ଗରେ ଦେଖାହେଲା। ସେ ଯେପରି ଭୀଷଣ କ୍ଲାନ୍ତ ହୋଇପଡ଼ିଛନ୍ତି। ମୋତେ ପ୍ରତିନମସ୍କାର ଜଣାଇ ଭିତରକୁ ପଶିଗଲେ। ମୁଁ ପ୍ରହରାରତ ସିପାହୀକୁ ପଚାରିଲି: ଲାସ୍ ?

: ଚାଲାନ ହୋଗୟା।

ଧୀରେଧୀରେ ଭିତରକୁ ପଶିଲି। ଅଗ୍ରବାଲାଙ୍କ ଡ୍ରଇଂରୁମ୍‌ରେ ବଡ଼ବଡ଼ ପୋଲିସ୍ ଅଫିସର କେତେଜଣ ମନ୍ତ୍ରୀଙ୍କ ସହିତ ବସି ପରାମର୍ଶ କରୁଛନ୍ତି। ଅପ୍ରତ୍ୟାଶିତ ଭାବରେ ମୋର ପ୍ରବେଶ ଦେଖି ଯଦିଓ ଅଚିହ୍ନା ଲୋକ କେତେଜଣ କଟୁ ଚାହାଣିରେ ଅନାଇଲେ, କିନ୍ତୁ ଘରୋଇ ମନ୍ତ୍ରୀ- ରଜନୀ ବାବୁ ଆନନ୍ଦ ପ୍ରକାଶ କରି କହିଲେ; ଆସନ୍ତୁ ଆସନ୍ତୁ। ଆପଣଙ୍କ କଥା ମୁଁ ପୂରାପୂରି ଭୁଲି ଯାଇଥିଲି।

ସେ ମୋତେ ସମସ୍ତଙ୍କ ସହିତ ପରିଚୟ କରେଇଦେଲେ। ଏ ହେଉଛନ୍ତି ସତ୍ୟଶେଖର ରାୟ ଚଉଧୁରୀ ପ୍ରାଇଭେଟ୍ ଡିଟେକ୍‌ଟିଭ୍।

ତା'ପରେ ରବିନାରାୟଣ ଅଗ୍ରବାଲାଙ୍କ ମୃତ ଅବସ୍ଥାରେ ଉଠା ଯାଇଥିବା ବିଭିନ୍ନ ଅବସ୍ଥାର ଫଟୋଗ୍ରାଫ୍ ଗୁଡ଼ିକ ମୋ ଆଡ଼କୁ ବଢ଼େଇ ଦେଇ କହିଲେ: ଆପଣ ଯଦି ଏ କ୍ଷେତ୍ରରେ ଆମକୁ ସାହାଯ୍ୟ କରି ପାରନ୍ତି, ଆମେ ବିଶେଷ ଉପକୃତ ହେବୁ।

ଫଟୋଗ୍ରାଫ୍ ଗୁଡ଼ିକ ଦେଖି ମୋ ମନରେ ଭୀଷଣ ସନ୍ଦେହ ଜନ୍ମିଥିଲା। ଅଗ୍ରବାଲାଙ୍କ ବେକ ଚାରିପାଖ କିଏ ଯେପରି ବ୍ଲେଡ଼ରେ ଗାର ଗାର କରି କାଟିଛି। ମୁହଁର ଭାବ

ଅସ୍ୱାଭାବିକ। ଫଟୋରୁ ଯାହା ଜଣା ଯାଉଥିଲା, ମୃତ୍ୟୁ ପୂର୍ବରୁ ସେ ଭୀଷଣ କଷ୍ଟ ଅନୁଭବ କରିଛନ୍ତି।

ପୋଲିସ୍ ବିଭାଗ ଓ ଗୋଇନ୍ଦା ବିଭାଗ ସେମାନଙ୍କର ତଦନ୍ତ କାର୍ଯ୍ୟ ଶେଷ କରିଥିଲେ। କିନ୍ତୁ କେହି ହତ୍ୟାକାରୀ ସମ୍ବନ୍ଧରେ କୌଣସି ସୂତ୍ର ପାଇନଥିଲେ। ପୋଲିସ୍ ରିପୋର୍ଟରୁ ଯାହା ଜଣା ପଡ଼ିଲା, ମିଃ ଅଗରବାଲା ସେଦିନ ସବୁ ଦିନ ପରି ନିଜର ସମସ୍ତ କାର୍ଯ୍ୟ ଶେଷ କରି ଠିକ୍ ସମୟରେ ନିଦ୍ରା ଯାଇଥିଲେ। କିନ୍ତୁ ସକାଳେ ଉଠିବାର ଠିକ୍ ସମୟ ପରେ ମଧ୍ୟ ଯେତେବେଳେ ଦୁଇଘଣ୍ଟା ଅତିବାହିତ ହୋଇଗଲା, ସେତେବେଳେ ଚାକର ଯାଇଁ କବାଟ ଖୋଲିଲା। ସେ ଯାହା ଦେଖିଲା: ପୋଲିସ ବିଭାଗ ମଧ୍ୟ ସେଇଆ ଦେଖିଲେ। ଗୁଇନ୍ଦା ବିଭାଗ କ'ଣ ଦେଖିଲେ କେଜାଣି, ମୁଁ କିନ୍ତୁ ଦିନକ ପରେ ଯାଇ ମଧ୍ୟ ଗୋଟିଏ ନୂତନ ସୂତ୍ରର ସନ୍ଧାନ ପାଇଲି।

ମିଃ ଅଗରବାଲା ଯେ କାହାରି ଦ୍ୱାରା ନିହତ ହୋଇଛନ୍ତି, ଏଇଟା ସମସ୍ତେ ବିଶ୍ୱାସ କରୁଥିଲେ ଏବଂ ମୁଁ ମଧ୍ୟ କଲି। କାରଣ ମିଷ୍ଟର ଅଗରବାଲା ଜଣେ ଉଚ୍ଚପାହିଆ ସରକାରୀ କର୍ମଚାରୀ। ଯୁବକ। ଉତ୍ସାହୀ। କର୍ମପ୍ରେରଣା ତାଙ୍କ ଶିରା ଉପଶିରାରେ ଖେଳି ବୁଲୁଥାଏ। ସେ ଯେଉଁ ବିଭାଗର ଦାୟିତ୍ୱ ବହନ କରିଥିଲେ, ମାତ୍ର ଦୁଇବର୍ଷ ଭିତରେ ସେ ବିଭାଗର କଳ୍ପନାତୀତ ଉନ୍ନତି କରି ପାରିଥିଲେ। ଯେଉଁଦିନ ବମ୍ବେର ଆମ୍ବାସାଡାର ହୋଟେଲରେ ତାଙ୍କ ସହିତ ଭେଟ ହୋଇଥିଲା, ସେଦିନ ସେ ଜର୍ମାନୀର ଖଣି ବିଶେଷଜ୍ଞମାନଙ୍କ ସହିତ ଭାରତବର୍ଷର ଖଣି ସମ୍ବନ୍ଧରେ ଆଲୋଚନା କରୁଥିଲେ। ସେଦିନ କି ଉତ୍ସାହ ତାଙ୍କ ମନରେ ! ତାଙ୍କର ଧାରଣା ଥିଲା ଭାରତରେ ବିଶେଷତଃ ଓଡ଼ିଶାର ଖଣି ଗର୍ଭରେ ଅକଳନ୍ତି ସମ୍ପଦ ଲୁଚି ରହିଚି। ସେଗୁଡ଼ିକ ଉଦ୍ଧାର କରିପାରିଲେ ଭାରତ 'ସୁନାର ଭାରତ' ନାମ ସାର୍ଥକ୍ କରିବ।

ତେଣୁ ଆତ୍ମହତ୍ୟା ସେ କରି ନ ପାରନ୍ତି। କିନ୍ତୁ ହତ୍ୟା ? କିଏ କାହିଁକି ତାଙ୍କୁ ହତ୍ୟା କଲା ? ପୁଣି ତାଙ୍କ ବାସଭବନରେ ? ସେ ହୁଏତ ଆସିଥିଲେ ଦିନ କେଇଟା ବିଶ୍ରାମ କରିବା ପାଇଁ ଅଥବା କୌଣସି ନୂତନ ଯୋଜନାର କାର୍ଯ୍ୟକାରିତା ସମ୍ବନ୍ଧରେ ଧୀରମନ ସ୍ଥିରଚିତ୍ତରେ ଚିନ୍ତା କରିବା ପାଇଁ।

ଯାହା ହେଉ, ଏ ହତ୍ୟା ଯିଏ କରୁ ପଛେ, କୌଣସି ମନୁଷ୍ୟ ଦ୍ୱାରା ଏହା ସମ୍ଭବ ବୋଲି ମୁଁ ବିଶ୍ୱାସ କରିପାରୁନାହିଁ। ଯେତେହେଲେ ବି ମଣିଷ ଏତେ ଭୀଷଣ ନୃଶଂସ ହୋଇପାରିବ ନାହିଁ। ତା'ହେଲେ ? ହୁଏତ ଦିନକ ଆଗରୁ ଘଟଣାସ୍ଥଳୀରେ ପହଞ୍ଚି ପାରିଥିଲେ କିଛି ଗୋଟାଏ ସୂତ୍ର ଆବିଷ୍କାର କରିପାରିଥାଆନ୍ତି। ତଥାପି...

ଯେଉଁ ଶେଯ ଉପରୁ ମିଃ ଅଗରବାଲାଙ୍କ ମୃତଦେହଟି ତଳକୁ ଗଡ଼ି ପଡ଼ିଥିଲା, ସେଇ

ପଲଙ୍କ ତଳେ-ଖୁବ୍ ଅନ୍ଧାରୁଆ ଭିତରକୁ ଟର୍ଚ୍ଚ ଜଳେଇ ଗୋଟାଏ ମଣିଷ ପାଦଚିହ୍ନ ନୁହେଁ, ଗୋଟାଏ କୌଣସି ଜନ୍ତୁର ପାଦଚିହ୍ନ ପରି ମନେହେଲା। ମିଃ ଅଗରବାଲାଙ୍କ ଘରେ କିନ୍ତୁ କୁକୁର କି ବିରାଡ଼ି କିଛି ନ ଥିଲେ।

ରାଜନୀବାବୁଙ୍କଠାରୁ ବିଦାୟ ନେଇ ଆସିଲି। ପ୍ରତିଶ୍ରୁତି ଦେଇଆସିଲି, ଏଥିରେ ତାଙ୍କୁ ଯଥାସମ୍ଭବ ସାହାଯ୍ୟ କରିବି।

ମୃତ୍ୟୁ ମୁଁ ଜୀବନରେ ଅନେକପ୍ରକାର ଦେଖିଥିଲି; କିନ୍ତୁ ଏ ମୃତ୍ୟୁ ଯେପରି ସବୁଠାରୁ ପୃଥକ୍। ତା'ଛଡ଼ା ଏ ହତ୍ୟା, କାହିଁକି ଏ ହତ୍ୟା? ମୂଳରେ କୌଣସି ରାଜନୈତିକ ଦୁରଭିସନ୍ଧି ଯେ ନଥାଇ ପାରେ, କିଏ କହିବ? କିନ୍ତୁ ରାଜନୈତିକ ଦୁରଭିସନ୍ଧି ରହିବାର ମଧ୍ୟ କାରଣ ତ କିଛି ନାହିଁ। ରବିନାରାୟଣ ଅଗରବାଲ କୌଣସି ମନ୍ତ୍ରୀ ନୁହନ୍ତି। ସେ ଜଣେ ଆଇଏଏସ୍। ଖଣି ବିଭାଗର ସେକ୍ରେଟାରୀ। କିଏ ଜାଣେ କୌଣସି ବ୍ୟବସାୟୀ ହୁଏତ ଖଣିପଟା ନପାଇ, ଅଗରବାଲାଙ୍କ ଉପରେ ଯଦି ପ୍ରତିଶୋଧ ନେଇଥାଏ। ଏସବୁର ସଠିକ୍ ସମ୍ବାଦ ନିଶ୍ଚୟ ପ୍ରୟୋଜନ। କେଉଁଠୁ ସମସ୍ତ ତଥ୍ୟ ସଂଗ୍ରହ କରାଯାଇପାରିବ? ଅଗରବାଲାଙ୍କ ପି.ଏ. ହୁଏତ ମୋତେ ଯଥେଷ୍ଟ ସାହାଯ୍ୟ କରିପାରନ୍ତି।

ପି.ଏ. କହିଲେ: ଯେଉଁଦିନ ମିଃ ଅଗରବାଲା ଦିଲ୍ଲୀ ଛାଡ଼ିଲେ, ସେଇଦିନ ମାଇନିଂ ବୋର୍ଡ଼ ମିଟିଂ ବସିଥିଲା। ବୋର୍ଡ଼ ମେମ୍ବର ମିଃ ରଘୁନନ୍ଦନ ପଞ୍ଚବାଗୀଶମଙ୍କ ସହିତ ତାଙ୍କର ଭୀଷଣ ଯୁକ୍ତିତର୍କ ହୋଇଥିଲା। ତର୍କଟା ଓଡ଼ିଶାର କୋରାପୁଟ ଜିଲ୍ଲାରେ ଅବସ୍ଥିତ 'ମାଲକାନ ଗିରି' ପାଇଁ ବଢ଼ି ଉଠିଥିଲା। କେତେକ ବିଶେଷଜ୍ଞଙ୍କ ମତ ଯେ ମଲକାନଗିରି ଗର୍ଭରେ ସୁନା ଲୁଚି ରହିଛି। ମାଲକାନ ଗିରି ଖନନପାଇଁ ଓଡ଼ିଶା ସରକାର ମାଇନିଂ ବୋର୍ଡ଼କୁ ଜଣାଇଥିଲେ। ମିଃ ଅଗରବାଲା କେତେଜଣ ବିଶେଷଜ୍ଞଙ୍କୁ ସଙ୍ଗରେ ନେଇ ମାଲକାନଗିରି ପରିଦର୍ଶନ କରି ଆସିଥିଲେ। ଆଗାମୀ ବର୍ଷ ଭିତରେ ମାଲକାନ ଗିରି ଖନନ ହେବାର ପ୍ରସ୍ତାବ ଗ୍ରହଣ କରାଯାଇଥିଲା। ସେଇଦିନ ମିଟିଂରେ ସିଦ୍ଧାନ୍ତ ଗ୍ରହଣ କରିବାର କଥା। ମାତ୍ର ମିଃ ରଘୁନନ୍ଦନ ପଞ୍ଚବାଗୀଶମ୍ କହିଲେ-ବର୍ତ୍ତମାନ ଆମ ସରକାରର ଯାହା ଅବସ୍ଥା, ସେଥିରେ ଆମେ ଗୋଟାଏ ଖଣି ଖନନ ପାଇଁ ଅଯଥାଗୁଡ଼ାଏ ଟଙ୍କା ଖର୍ଚ୍ଚ କରିବା ଯୁକ୍ତିସଙ୍ଗତ ହେବ ନାହିଁ। ତେବେ ଖଣି ଖନନର ପ୍ରୟୋଜନ ମଧ୍ୟ ଅଛି। କିନ୍ତୁ ସେଇ ସବୁ କାମ ବିଦେଶୀ ସରକାରମାନଙ୍କ ଦ୍ୱାରା ତୁଲେଇ ନେଇ ହେବ। ମିଃ ଅଗରବାଲା ସେଥିରେ ଏକମତ ହେଲେ ନାହିଁ। ତାଙ୍କର ମତ ଅନ୍ତତଃ ମାଲକାନ ଗିରି ଖନନ କାର୍ଯ୍ୟ ଭାରତ ସରକାର ନିଜେ ବହନ କରନ୍ତୁ। ସେଦିନ ମିଟିଂରେ କୌଣସି ଶେଷ ନିଷ୍ପତ୍ତି କରି ହେଲାନାହିଁ। କଥା ଥିଲା ପନ୍ଦର ଦିନ ପରେ ଆଉ ଥରେ ମିଟିଂ ବସି ଏହାର ଶେଷ ସିଦ୍ଧାନ୍ତ କରାଯିବ।

ତା'ପରେ ମିଃ ଅଗ୍ରବାଲା ବମ୍ବେରେ କେତେ ଜର୍ମାନ ଖଣି ବିଶେଷଜ୍ଞମାନଙ୍କୁ ଗୋଟିଏ ଭୋଜିସଭାରେ ଭେଟିଥିଲେ ଏବଂ ମାଲକାନ ଗିରିରୁ ଆଣିଥିବା କେତେଖଣ୍ଡ ପଥର ଦେଇ ସେମାନଙ୍କୁ ଗବେଷଣା କରିବାକୁ କହିଥିଲେ। ତା' ଦିନ୍ ପରେ ମିଃ ଅଗରବାଲା ନିଜ ଘରକୁ ଚାଲି ଯାଇଥିଲେ। ଘରୁ ଓଡ଼ିଶା ଯାଇଥାନ୍ତେ। ସେଠାରୁ ଖଣି ବିଭାଗର ମନ୍ତ୍ରୀ ଅମିତାଭ ମହାନ୍ତିଙ୍କ ସହିତ ବିଶେଷ ଭାବରେ ଆଲୋଚନା କରି- ମାଲକାନ ଗିରି ସମ୍ବନ୍ଧରେ ସଂପୂର୍ଣ୍ଣ ତଥ୍ୟ ସଂଗ୍ରହ କରି ମାଇନିଂ ବୋର୍ଡ଼ ମିଟିଂରେ ଯୋଗ ଦେଇଥାନ୍ତେ। ମୋର ମଧ୍ୟ ଅଗରବାଲାଙ୍କ ଓଡ଼ିଶା ଗସ୍ତ ବେଳେ ତାଙ୍କ ସହିତ ସାମିଲ୍ ହେବାର ଥିଲା। କିନ୍ତୁ ଦୁର୍ଭାଗ୍ୟ, ତା'ପୂର୍ବରୁ ମିଃ ଅଗରବାଲା ନିହତ ହେଲେ। ଏତିକି ଛଡ଼ା ଆଉ କୌଣସି ଉଲ୍ଲେଖଯୋଗ୍ୟ ଘଟଣା ମିଃ ଅଗରବାଲାଙ୍କ ପି.ଏ. କହିପାରିଲେ ନାହିଁ।

ମିଃ ରଘୁନନ୍ଦନ ପଞ୍ଚବାଗୀଶମ୍ ଅଗରବାଲାଙ୍କ ଅକାଳ ବିୟୋଗରେ ଖୁବ୍ ଦୁଃଖ ପ୍ରକାଶ କଲେ। ଅଗରବାଲାଙ୍କ ଭଳି ଜଣେ କର୍ମନିଷ୍ଠ ବ୍ୟକ୍ତିଙ୍କୁ ହରେଇ ସରକାରଙ୍କର ଯେ ବହୁ କ୍ଷତି ହେଲା, ଏ କଥା ସେ ମୁକ୍ତ କଣ୍ଠରେସ୍ୱୀକାର କଲେ। ମାଲକାନ ଗିରି ଖନନର ଦାୟିତ୍ୱ ଯେଉଁ ବିଦେଶୀ ସରକାର ହାତରେ ଦେବାକୁ ସେ ପ୍ରସ୍ତାବ କରିଥିଲେ, ତା' ସମ୍ବନ୍ଧରେ ଯେଉଁ ଯୋଜନା ସେ ପ୍ରସ୍ତୁତ କରିଥିଲେ ତାହା ମଧ୍ୟ କହିଲେ। ତାଙ୍କୁ ଏହି କାର୍ଯ୍ୟରେ ବାରିଷ୍ଟର ଏସ୍.ଏସ୍. ରାୟ ଯଥେଷ୍ଟ ସାହାଯ୍ୟ କରିଥିଲେ। ସୌଭାଗ୍ୟ କ୍ରମେ ସେଦିନ ବାରିଷ୍ଟର ରାୟଙ୍କ ସହିତ ମୋର ପରିଚୟ ହେଲା। ସେ ପଞ୍ଚବାଗୀଶମଙ୍କ ରୁମ୍‌ରେ ଉପସ୍ଥିତ ଥିଲେ। ଦେଶର ବର୍ତ୍ତମାନ ପରିସ୍ଥିତି ଓ ଆୟ ସରକାରଙ୍କର ବିଦେଶୀ ସରକାରଙ୍କଠାରୁ ସାହାଯ୍ୟ ଗ୍ରହଣରେ ପ୍ରୟୋଜନୀୟତା ସମ୍ବନ୍ଧରେ ଗୋଟିଏ ସାରଗର୍ଭକ କ୍ଷୁଦ୍ର ଭାଷଣ ମଧ୍ୟ ଦେଲେ। ଖାଲି ସେତିକି ନୁହେଁ, ମୋର ପରିଚୟ ପାଇ ସେ ବିଶେଷ ଆନନ୍ଦ ପ୍ରକାଶ କରିଥିଲେ ଏବଂ ମୋତେ ନୈଶଭୋଜନରେ ଅଂଶ ଗ୍ରହଣ କରିବା ପାଇଁ ନିମନ୍ତ୍ରଣ କରିଥିଲେ।

ମୁଁ ନିମନ୍ତ୍ରଣ ରକ୍ଷା କରିବାକୁ ଯାଇ ତାଙ୍କ ବାସଭବନରେ ଗୋଟାଏ ଅଦ୍ଭୁତକାୟ ଜନ୍ତୁର ସନ୍ଧାନ ପାଇଥିଲି। ଜନ୍ତୁଟା ଗୋଟାଏ ଭୀଷଣକାୟ ବିରାଡ଼ି ଆକୃତିର। କିନ୍ତୁ ସେ ଯେ ଠିକ୍ ବିରାଡ଼ି ନୁହେଁ, ମୁଁ ଅନୁମାନ କଲି। ବାରିଷ୍ଟର ରାୟଙ୍କୁ ପଚାରିଲି। ସେ କହିଲେ: ସେଇଟାକୁ ସେ ବର୍ମାରୁ କିଣିଥିଲେ। ସେଇଦିନୁ ସେ ତାଙ୍କ ପାଖେପାଖେ ଥାଏ। ଯୁଆଡ଼େ ଯାଆନ୍ତି ସଙ୍ଗରେ ନେଇଯାଆନ୍ତି।

ନୈଶଭୋଜନ ଶେଷ କରି ଫେରିଆସିଥିଲି। କିନ୍ତୁ ରାତି ଭରି ଶୋଇ ପାରିଲି ନାହିଁ। ବାରିଷ୍ଟର ରାୟଙ୍କ ସମ୍ବନ୍ଧରେ ଯଦିଓ ବିଶେଷ କିଛି ଜାଣିନଥିଲି, ତଥାପି ତାଙ୍କର କାର୍ଯ୍ୟକଳାପ ସମ୍ବନ୍ଧରେ ମିଃ ପଞ୍ଚବାଗୀଶମ ମୋତେ ବହୁତ କଥା କହିଥିଲେ। ଭାରତବର୍ଷ

ମଧ୍ୟରେ ଯେ ବାରିଷ୍ଟର ରାୟଙ୍କର ସୁଖ୍ୟାତି ଅଛି ସେ କଥା ଆଉ କେତେଜଣ ଆଇନଜ୍ଞ ବନ୍ଧୁଙ୍କୁ ପଚାର କୌଣସି ପ୍ରମାଣ ସଂଗ୍ରହ କରିପାରିଲି ନାହିଁ। ସେ କିଛି ନୁହେଁ। କେଉଁ ପ୍ରଦେଶରେ କାହାର କିପରି ସୁନାମ ଅଛି, ପ୍ରଦେଶ ବାହାର ଲୋକେ ତା'ର ବିଶେଷ ଖବର ରଖନ୍ତି ନାହିଁ। ଯାହାହେଉ ବାରିଷ୍ଟର ରାୟଙ୍କର ସେଇ ଭୀଷଣାକୃତି ବିରାଡ଼ିଟା କଥା ମୁଁ ଭୁଲି ପାରିଲି ନାହିଁ।

ମିଃ ଅଗରବାଲାଙ୍କ ଚାକର କହିଲା: ମୃତ୍ୟୁ ଦିନ ସେ କୌଣସି ଜନ୍ତୁ ତାଙ୍କ ବାସଭବନରେ ଦେଖିନଥିଲା। କିନ୍ତୁ ଅଗରବାଲାଙ୍କ ବଗିଚାର ମାଳି କହିଲା, ରାତି ପ୍ରାୟ ଦଶଟା ଏଗାରଟା ବେଳେ ସେ ବଗିଚାରେ କ'ଣ ଗୋଟାଏ ଦେଖିଥିଲା। ପ୍ରଥମେ ମାଳି ଭୟରେ ଥରି ଉଠିଥିଲା। ସେ ଗୋଟାଏ ଫୁଲଗଛ ମୂଳେ ଦି'ଟା ଜଳନ୍ତା ଆଖି ଦେଖିଥିଲା। ପରେ ପାଟି କଲାରୁ କ'ଣଟାଏ ଗଛଗୁଡ଼ାକ ଖସ୍ ଖସ୍ କରି ପଳେଇ ଯାଇଥିଲା। ବିରାଡ଼ିଟାଏ କି କୁକୁରଟାଏ ହେବ ଭାବି ମାଳି ପୁଣି ଯାଇ ତା' ଘରେ ଶୋଇଥିଲା।

ପୁଣି ବାରିଷ୍ଟର ରାୟଙ୍କ ପାଖକୁ ଯାଇଥିଲି। ବାରିଷ୍ଟର ରାୟଙ୍କ ବଦଳରେ ଜଣେ ମହିଳାଙ୍କ ସଙ୍ଗରେ ଭେଟ ହେଲା। ବାରିଷ୍ଟର ରାୟ ଅଳ୍ପଦିନ ପାଇଁ ବାହାରକୁ ଯାଇଛନ୍ତି ବୋଲି କହିଲା। ମହିଳାଙ୍କ ପରିଚୟରୁ ଜାଣିଲି, ସେ ବାରିଷ୍ଟରଙ୍କ ପି.ଏ.। କୌଣସି ପ୍ରୟୋଜନ ଥିଲେ, ନିଃସନ୍ଦେହରେ ତାଙ୍କ ଆଗରେ କହିଯାଇପାରେ ବୋଲି କହିଲା।

ମୁଁ ସେହି ଭୀଷଣକାୟ ବିରାଡ଼ିଟିକୁ ଦେଖିବାକୁ ପାଇଲି ନାହିଁ। ମହିଳା ଜଣକ ମୋତେ ଚା' ଖୁଆଇଲେ, ସିଗାରେଟ୍ ମଧ୍ୟ। ଯେଉଁ ସନ୍ଦେହ ମନରେ ନେଇ ଯାଇଥିଲି, ସବୁ ମିଳେଇ ଗଲା। ବହୁତ ସମୟ ବସି ମହିଳାଙ୍କ ସଙ୍ଗରେ କଥାବାର୍ତ୍ତା ହେଲି। ଏଣୁ ତେଣୁ ଅନେକ। ଫେରିଆସିଲା ବେଳେ ମିଃ ରଘୁନନ୍ଦନଙ୍କ ସହିତ ଶିଡ଼ିରେ ଭେଟ ହେଲା। ମୋତେ ପୁଣି ଲେଉଟିବାକୁ କହୁଥିଲେ- ମୋର କାମ ଅଛି କହି ଚାଲି ଆସିଲି।

ପ୍ରାୟ ପନ୍ଦର ମିନିଟ୍ ଛାଡ଼ି ପୁଣି ସେଠାକୁ ଗଲି। ବାରିଷ୍ଟର ରାୟଙ୍କ ଦୁଆର ବନ୍ଦ ଥିଲା। ଭିତରେ ଧୀର କଥାବାର୍ତ୍ତା ଶୁଭୁଥିଲା, କିଛି ବୁଝି ହେଉନଥିଲା। ମୁଁ ବାହାରେ କିଛିକ୍ଷଣ ଠିଆ ହୋଇ ଶୁଣିବାକୁ ଚେଷ୍ଟା କରୁଥିଲି। କିଛି ଶୁଣି ହେଲାନାହିଁ। କବାଟ ଫାଙ୍କରେ ଅନେଇଲି। ଭିତରଟା ଝାପ୍ସା ହୋଇ ଦିଶିଲା। ସାମନାରେ ମହିଳା ଜଣକ ଅସଂଯତ ଭାବରେ ବସିଥିଲା ପରି ମନେହେଲା। ନା ଫେରିଆସିଲି। ବିଶେଷ କିଛି ବୁଝି ହେଲାନାହିଁ। ମନର ସନ୍ଦେହ ଆଗେଇ ପାରିଲା ନାହିଁ। ଯେଉଁଠି ଥିଲି ସେଇଠି ପଡ଼ିରହିଲି। ବାରିଷ୍ଟର ରାୟ ଓ ମିଃ ରଘୁନନ୍ଦନଙ୍କୁ ହୁଏତ ଅଗରବାଲାଙ୍କ ହତ୍ୟାରହସ୍ୟଟା ଆଡ଼କୁ ଟାଣି ଆଣି କିଛି ଲାଭ ହେବ ନାହିଁ। କିନ୍ତୁ ସେଇ ଯେଉଁ ଭୀଷଣକାୟ ବିରାଡ଼ିଟା ? ଅଗରବାଲାଙ୍କ ବଗିଚା ମାଳୀ ସେହିଭଳି କ'ଣ ଗୋଟାଏ ଜନ୍ତୁ ସେଦିନ ଦେଖିଲାଭଳି ସନ୍ଦେହ କରୁଥିଲା।

ତା'ଛଡ଼ା ମୁଁ ଯେ ଅଗରବାଲାଙ୍କ ପଲଙ୍କ ତଳୁ ସେଇଭଳି ଗୋଟାଏ ପାଦଚିହ୍ନ ଦେଖିଥିଲି। ହେଲେ ବି ଏହା କଣ ସମ୍ଭବ!! ଗୋଟାଏ ବିରାଡ଼ି ଜଣେ ମଣିଷକୁ ହତ୍ୟା କରିଛି ! ଯାହାକୁ କହିଲେ ମଧ୍ୟ ସେ ହସି ଉଡ଼େଇଦେବ।

ବସାରେ ଚାକର କହିଲା: କିଏ ଜଣେ ଭଦ୍ରଲୋକ ମୋତେ ଖୋଜିବାକୁ ଆସିଥିଲେ। କର୍ଡ଼ ଖଣ୍ଡିକ ଚାକର ଠାରୁ ଆଣି ଦେଖିଲି ଡାକ୍ତର ଆର୍.ଏସ୍. ସୁନ୍ଦରମ୍। ଏ ଭଦ୍ରଲୋକ ପୁଣି କିଏ!!

ଚାକର କହିଲା: ଆଜି ରାତି ଦଶଟାରେ ପୁଣି ସେ ଆସିବାକୁ କହିଛନ୍ତି।

କିଛି ଚିନ୍ତା କରି ପାରିଲି ନାହିଁ।

ଠିକ୍ ରାତି ଦଶଟାରେ ମୋ ଟେଲିଫୋନ୍‌ଟା ବାଜି ଉଠିଲା। ଡାକ୍ତର ସୁନ୍ଦରମ୍ କଥା କହୁଥିଲେ। ତାଙ୍କର କ'ଣ ଗୋଟାଏ ମୂଲ୍ୟବାନ ପଦାର୍ଥ ଚୋରି ଯାଇଛି। କାଳେ ମୁଁ ତାଙ୍କୁ କିଛି ସାହାଯ୍ୟ କରିପାରିବି। ସେ କୁଆଡ଼େ କେଉଁଠୁ ମୋର ଢେର ସୁଖ୍ୟାତି ଶୁଣି ମୋତେ ସାହାଯ୍ୟ ମାଗୁଥିଲେ। ଡାକ୍ତର ସୁନ୍ଦରମ୍‌ଙ୍କୁ ପଚାରି ଜାଣିଲି ଯେ ଦାର୍ଜିଲିଂରେ ତାଙ୍କ ବାସଭବନରେ ଏହା ଘଟିଛି। ମୋତେ ଦାର୍ଜିଲିଂରେ କିଛିଦିନ ରହି ତଦନ୍ତ ଚଳେଇବାକୁ ହେବ। ମୋର ଯାତାୟାତ ଓ ସେଠାରେ ଅବସ୍ଥାନକାଳୀନ ସମସ୍ତ ଖର୍ଚ୍ଚ ସେ ବହନ କରିବେ ବୋଲି ମଧ୍ୟ କହିଲେ। ମୁଁ କୌଣସି ସ୍ପଷ୍ଟ ଉତ୍ତର ଦେଇପାରିଲି ନାହିଁ।

ପୁଣି ଶଶାଙ୍କ ମିତ୍ର ଖୁନ୍ ହୋଇଛନ୍ତି। ଠିକ୍ ଅଗରବାଲାଙ୍କ ପରି ତାଙ୍କୁ ହତ୍ୟା କରା ହୋଇଥିଲା। ଏଥର ଶଶାଙ୍କ ମିତ୍ରଙ୍କ ମୃତଦେହଟା ମୁଁ ନିଜ ଆଖିରେ ଦେଖିଥିଲି। ସେଇପରି ବେକଯାକ ଚିରା ଚିରା ଦାଗ। କିନ୍ତୁ କଣ୍ଠନଳୀଟାକୁ ଫୁଟାଇ କିଏ ଯେମିତି ତାଙ୍କ ଦେହର ସମସ୍ତ ରକ୍ତ ଶୋଷି ତାଙ୍କୁ ହତ୍ୟା କରିଛି। ଶଶାଙ୍କ ମିତ୍ରଙ୍କ ମୁହଁଟି ମଧ୍ୟ ଭୟଙ୍କର ଆକୃତି ଧାରଣ କରିଥିଲା।

ଅଗରବାଲଙ୍କ ହତ୍ୟା ସହିତ ଶଶାଙ୍କ ମିତ୍ରଙ୍କ ହତ୍ୟାର ସମ୍ପର୍କ ଅଛି କି ? ନଥିଲେ ବି ହତ୍ୟାର ପ୍ରଣାଳୀ ଯାହା, ଯେ କେହି କହିଦେବ ଏ ଦୁଇଟି ଯାକ ହତ୍ୟା ଜଣକ ଦ୍ୱାରା ସଂଘଟିତ ହୋଇଛି। ଶଶାଙ୍କ ମିତ୍ର ଶିଳ୍ପ ବିଭାଗର ଡେପୁଟି ସେକ୍ରେଟାରୀ। ଆଉ ଅଗରବାଲା ଖଣି ବିଭାଗର ସେକ୍ରେଟାରୀ। ତା'ହେଲେ! ଏ ହତ୍ୟା ଭିତରେ ନିଶ୍ଚୟ କୌଣସି ରାଜନୈତିକ ଦୁରଭିସନ୍ଧି ରହିଛି। ହୁଏତ କେହି ଜଣେ, ବା କୌଣସି ଦଳ ଖଣି ଓ ଶିଳ୍ପ ବିଭାଗରେ ଆଧିପତ୍ୟ ବିସ୍ତାର କରିବାକୁ ଚାହାଁନ୍ତି, ଅଥବା ଫାଇଦା ଉଠାଇବାକୁ ଚାହାନ୍ତି ଯେଉଁଥିରେ ମିଃ ଅଗରବାଲା ଓ ମିଃ ମିତ୍ର ପ୍ରତିବନ୍ଧକ ହୋଇ ଠିଆ ହୋଇଥିଲେ। ସେ

ଦିନେ ରାତିରେ

ଦୁହିଁଙ୍କୁ ରାସ୍ତାରୁ ଘୁଞ୍ଚେଇଦେଇ ପାରିଲେ, ବିପକ୍ଷ ଦଳ ହୁଏତ ଅତି ସହଜରେ ଫାଇଦା ଉଠେଇ ପାରିବେ। କିନ୍ତୁ କିଏ ସେହି ବ୍ୟକ୍ତି ବା ଦଳ? ଭୀଷଣ ସମସ୍ୟା। ଆଗେଇବାର ସୂତ୍ର କାହିଁ?

ସେହି ମହିଳା ଜଣକ ବାରିଷ୍ଟର ରାୟଙ୍କ ଆଗରେ ବସି କ'ଣ ଖଣ୍ଡେ କାଗଜ ଧ୍ୟାନ ସହକାରେ ଦେଖୁଥିଲେ। ବାରିଷ୍ଟର ରାୟ ଗୋଟାଏ ପେନ୍‌ସିଲ୍ ଧରି ବୁଝାଉଥିଲେ। ମୁଁ ଏପରି ଅତର୍କିତ ଭାବରେ ପହଞ୍ଚିଯିବି, ବୋଧହୁଏ ଧାରଣା କରି ପାରିନଥିଲେ। ସେ ଭୀଷଣକାୟ କଳା ବିରାଡ଼ିଟା ଟେବୁଲ ଉପରେ ଗୋଟାଏ ପାଖକୁ ବସି ଦେହ ଚାଟୁଥିଲା। ବାରିଷ୍ଟର ରାୟ ମୋତେ ହଠାତ୍ ଦେଖି ଟିକିଏ କେମିତି ଚଞ୍ଚଳ ହୋଇପଡ଼ିଥିଲେ। କାଗଜ ଖଣ୍ଡିକ ଉପରେ ବହି ଖଣ୍ଡେ ଚାପି ଦେଇ, ମୋତେ କିପରି ଅସ୍ୱାଭାବିକ ଭାବରେ ଅନେଇ ପଚାରିଲେ, : ହଠାତ୍ ଯେ ?

ମୁଁ ଟିକେ ହସିଲି ଏବଂ ଖାଲି ଚେୟାରଟି ଦଖଲ କଲି।

ମହିଳା ଜଣକ ସେଠାରୁ ଉଠିଗଲେ। ବିରାଡ଼ିଟା ମଧ୍ୟ ଟେବୁଲରୁ ତଳକୁ ଡେଇଁପଡ଼ି ପଳେଇଲା।

ବାରିଷ୍ଟର ରାୟ ଶଶାଙ୍କ ମିତ୍ରଙ୍କ ହଠାତ୍ ମୃତ୍ୟୁରେ ଦୁଃଖ ପ୍ରକାଶ କଲେ ଏବଂ ପର ପର ଦୁଇଟିଯାକ ସରକାରୀ ହତ୍ୟାରହସ୍ୟ ମୂଳରେ ନିଶ୍ଚୟ କୌଣସି ରାଜନୈତିକ ଅଭିସନ୍ଧି ଅଛି ବୋଲି ମତ ପ୍ରକାଶ କଲେ। ଭିତରୁ ମହିଳା ଜଣକ ଡାକିଲେ, କେଉଁଠୁ ଟେଲିଫୋନ୍ ଆସିଥିଲା। ବାରିଷ୍ଟର ରାୟ ଟେବୁଲ ଉପରୁ କାଗଜ ଖଣ୍ଡିକ ଉଠାଇ ନେଇ ଭିତରକୁ ପଶିଗଲେ। ମୁଁ କାଳ ବିଳମ୍ବ ନକରି ପକେଟରୁ ମାଗ୍ନିଫାଇଂ ଗ୍ଲାସ୍‌ଟା ବାହାର କରି ଟେବୁଲ୍ ଉପରଟା ପରୀକ୍ଷା କଲି। ବିରାଡ଼ିଟାର ପାଦଚିହ୍ନ ଅବଶ୍ୟ ଦିଶିଲା, କିନ୍ତୁ ଏତେ ଅସ୍ପଷ୍ଟ ଯେ, ଅଗରବାଲାଙ୍କ ଘରୁ ପାଇଥିବା ପାଦଚିହ୍ନ ସହିତ ମିଶେଇବା ସମ୍ଭବ ହେଲାନାହିଁ। ତା'ଛଡ଼ା ବାରିଷ୍ଟର ରାୟଙ୍କ ପାଦଶବ୍ଦ ଶୁଣି ମୁଁ ପୁଣି ସାଧାରଣ ଅବସ୍ଥାକୁ ଫେରି ଆସିବାକୁ ବାଧ୍ୟ ହେଲି।

ବାରିଷ୍ଟର ରାୟ ଆସିଲେ। ପଛେ ପଛେ ଚା' ଆସିଲା। ମହିଳା ଜଣକ ମଧ୍ୟ ଆସି ପୂର୍ବ ସ୍ଥାନ ଦଖଲ କଲେ।

ମୋ ଆସିବା ଉଦ୍ଦେଶ୍ୟ ଜାଣିବା ପାଇଁ ବାରିଷ୍ଟର ରାୟ ଉଦ୍‌ବିଗ୍ନ ହୋଇଉଠିଲେ। ମୁଁ କେବଳ ତାଙ୍କ ଉଦ୍‌ବିଗ୍ନତା ଲକ୍ଷ୍ୟ କରିବା ପାଇଁ ନୀରବ ରହିଗଲି। ଶେଷରେ ଲକ୍ଷ୍ୟ କଲି, ମୋର ଉଦ୍ଦେଶ୍ୟ ସଫଳ ହୋଇଛି।

କିନ୍ତୁ ଏହା କ'ଣ ସମ୍ଭବ? ବାରିଷ୍ଟର ରାୟ ଯାହା ହେଉନ୍ତୁ ନା କାହିଁକି ସେ ଜଣେ ଆଇନଜୀବୀ। ସନ୍ଦେହ ତ ମନରେ ବସା ବାନ୍ଧି ରହିଛି। ଆଉ ସେଇ ସନ୍ଦେହ ସ୍ପଷ୍ଟ ହେଲେ

ଦିନେ ରାତିରେ

ସହଜ ବାଟରେ ମାଡ଼ି ଯିବାକୁ ଚାହେଁ। ବାରିଷ୍ଟର ରାୟଙ୍କ ଗୋଟାଏ ଭୀଷଣାକୃତି ବିରାଡ଼ି ପୋଷିବା ମୋଟେ ଅପରାଧ ହୋଇନପାରେ। ହୁଏତ ମୋ ମନର ସନ୍ଦେହ ଗୋଟାଏ ସହଜ ଆଶ୍ରୟ ପାଇ ଲଟେଇ ଯାଇଛି। ତା'ଛଡ଼ା ପଥ କାହିଁ?

ମି: ରଘୁନନ୍ଦନ ତାଙ୍କ ବୈଠକଖାନାରେ ଥିଲେ। ଅଧା ଅନ୍ଧାର ଅଧା ଆଲୁଅରେ ଦେଖିଲି, ସେ ମୁଣ୍ଡରେ ହାତଦେଇ ଗଭୀର ଚିନ୍ତାମଗ୍ନ। ଦୂରରୁ ମନେ ହେଲା, ମୁହଁଟା କିପରି ଅସ୍ୱାଭାବିକ ଦିଶୁଚି। ସେ କିନ୍ତୁ ମୋର ଅପ୍ରତ୍ୟାଶିତ ପ୍ରବେଶ ବୋଧହୁଏ ମୋଟେ ଆଶା କରିନଥିଲେ। ଖୁବ୍ ଚଞ୍ଚଳ ହୋଇ ଉଠିପଡ଼ି ମୋତେ ବସିବାକୁ କହିଲେ। ସଙ୍ଗେସଙ୍ଗେ ଭିତରକୁ ଚାଲିଗଲେ। ତାଙ୍କ ବୈଠକଖାନାରେ ଅନ୍ୟ କେହି ନଥିଲେ। କେବଳ କେତେଖଣ୍ଡି ତୈଳଚିତ୍ର, ତିନି ଚାରୋଟି ପୁସ୍ତକପୂର୍ଣ୍ଣ ଆଲମାରୀ ଏବଂ ଚାରିପାଞ୍ଚଟି ସୋଫା ଓ କେତେଖଣ୍ଡ ଚେଆର ପଡ଼ିଥିଲା। ମିଃ ରଘୁନନ୍ଦନ ଯେଉଁ ଟେବୁଲ୍ ଉପରେ ବସିଥିଲେ, ସେଇ ଟେବୁଲ୍ ଉପରେ ଗୋଟାଏ ଆଲବମ୍ ପଡ଼ିଥିଲା। ଖେଳେଇ ଦେଖିଲି; ଫଟୋ ନୁହେଁ, ଚିତ୍ର। ଏକରଙ୍ଗି, ଦି' ରଙ୍ଗି ଓ ବହୁରଙ୍ଗି ଚିତ୍ରରୁ କେତେଖଣ୍ଡି ଆଲବମ୍ ଭିତରେ ଯତ୍ନ ସହକାରେ ରଖା ହୋଇଛି। ଚିତ୍ରଗୁଡ଼ିକ ଖୁବ୍ ଶୀଘ୍ର ଖେଳେଇ ଗଲି। ତେଣୁ ମିଃ ରଘୁନନ୍ଦନ ଆସୁଥିବାର ଶବ୍ଦ ଶୁଣି ଆଲବମ୍‌ଟି ଯଥା ସ୍ଥାନରେ ରଖିଦେଲି। ଜଣାଯାଉଥିଲା, ସେ ଯେପରି ମୁହଁ ହାତ ଧୋଇ ବାଥ୍‌ରୁମ୍‌ରୁ ଫେରୁଛନ୍ତି। ଏଣୁତେଣୁ କେତେ କଥା ପଚାରିଲେ। ଶଶାଙ୍କ ମିତ୍ରଙ୍କ ଅକାଳ ମୃତ୍ୟୁ ତାଙ୍କ ପ୍ରାଣରେ ଖୁବ୍ ରେଖାପାତ କରିଛି। ପରେ ପରେ ଦୁଇଜଣ ସରକାରୀ କର୍ମଚାରୀଙ୍କ ହତ୍ୟା ନିଶ୍ଚୟ କୌଣସି ରାଜନୈତିକ କାରଣରୁ ଘଟିଛି ବୋଲି କହିଲେ। ତା'ପରେ ମୁଁ ଚାଲିଆସିଲି।

ମିଃ ରଘୁନନ୍ଦନ ପଞ୍ଚବାଗୀଶମ୍। ସେ ଜଣେ ଜ୍ଞାନୀ ଓ ଗୁଣୀ ଲୋକ। ମାଇନିଂ ବୋର୍ଡ଼ର ସଭ୍ୟ। ଅଥଚ ତାଙ୍କ ଟେବୁଲ୍ ଉପରେ ରଖା ହୋଇଛି କେତେଗୁଡ଼ିଏ ଅପରାଧମୂଳକ ଚିତ୍ରର ଆଲବମ୍! କାହିଁକି? କେହି କ'ଣ ତାଙ୍କୁ ଉପହାର ଦେଇଛି? କୌଣସି ଶିଳ୍ପୀ କ'ଣ ତାଙ୍କୁ ଛବିଗୁଡ଼ାକ ବିକ୍ରୟ କରିଛି? ଯଦି ତାହାହିଁ ହୁଏ, ତେବେ ସେ ବା କାହିଁକି ସେ ଗୁଡ଼ିକ କିଣିଲେ? ଯଦିବା କେହି ଉପହାର ଦେଇଥାଏ, ତା'ହେଲେ କି ଉଦ୍ଦେଶ୍ୟରେ ତା' ଦେଇଛି? ଅଳ୍ପ ସମୟ ଭିତରେ ଯେତିକି ଦେଖି ହେଲା, ସବୁ ଚିତ୍ରଗୁଡ଼ିକ ଅପରାଧମୂଳକ। କାହିଁକି, କାହିଁକି ସେ ଗୁଡ଼ାକ ମିଃ ରଘୁନନ୍ଦନଙ୍କ ଟେବୁଲ୍ ଉପରେ ପଡ଼ିଥିଲା? ହୁଏତ ମୋ ଯିବା ପୂର୍ବ ମୁହୂର୍ତ୍ତରୁ ସେ ସେଇ ଗୁଡ଼ିକ ଦେଖି ବିପନ୍ନ ହୋଇ ବସିଥିଲେ। ଅଥବା.....

ଯେଉଁ ପଣ୍ଡିତମାନେ ଅପରାଧ ତତ୍ତ୍ୱ ସମ୍ବନ୍ଧରେ ଗବେଷଣା କରିଛନ୍ତି- ସେମାନଙ୍କ ମତରେ ପ୍ରତ୍ୟେକ ମନୁଷ୍ୟ ପ୍ରାଣରେ ଅପରାଧ ସ୍ପୃହା ଅଳ୍ପ ବିସ୍ତର ବିଦ୍ୟମାନ। ଏଇ ପ୍ରବୃତ୍ତି

କିନ୍ତୁ ଆଜିର ନୁହେଁ, ଏହା ଆଦିମ କାଳରୁ ମଣିଷ ରକ୍ତରେ ମିଶି ଯାଇଛି। ସେ ଅପରାଧ ସ୍ପୃହା ସୁଯୋଗ ଓ ସୁବିଧା ପାଇଲେ ଜାଗ୍ରତ ହୁଏ। ସ୍ଥଳବିଶେଷରେ ତାହା ବେଶୀ କମ୍ ହୋଇ ଦେଖା ଦେଇଥାଏ। ବିଶେଷତଃ ମଣିଷର ପାରିପାର୍ଶ୍ୱିକ ଅବସ୍ଥା ମଣିଷର ପ୍ରବୃତ୍ତି ଉପରେ ପ୍ରଭାବ ପକାଇଥାଏ। ଏଇ ଅପରାଧ ପ୍ରବୃତ୍ତିର ଦମନ ପାଇଁ ଆମର ସମାଜ ଗଠନ, ଆଇନ ପ୍ରବର୍ତ୍ତନ-ଧର୍ମ ସଂସ୍ଥାପନ ମନୀଷୀମାନେ କରିଯାଇଛନ୍ତି। ତଥାପି ସୁବିଧା ସୁଯୋଗ ପାଇଲେ ମଣିଷ ମନରେ ଅପରାଧ ସ୍ପୃହା ଜାଗେ। ସମୟେ ସମୟେ ତାହା ଭୀଷଣ ଆକାର ମଧ୍ୟ ଧାରଣ କରିଥାଏ।

ଯେଉଁମାନେ ଜ୍ଞାନୀ ଓ ଗୁଣୀ ସେମାନେ ସବୁବେଳେ ମଙ୍ଗଳକର କାର୍ଯ୍ୟରେ ଏତେ ବ୍ୟସ୍ତ ଥାଆନ୍ତି ଯେ, ଅପରାଧ ପ୍ରବୃତ୍ତି ତାଙ୍କ ମନରେ ଜାଗିବାକୁ ଅବସର ମିଳେ ନାହିଁ। ସେହିମାନଙ୍କ ଭିତରୁ କେହି କେହି ପରିସ୍ଥିତି ଚାପରେ ପଡ଼ି ଏତେ ତଳକୁ ଖସିପଡ଼ନ୍ତି ଯେ କେତେବର୍ଷ ପରେ ଭୀଷଣ ଅପରାଧୀ ହୋଇ ଦେଖାଦିଅନ୍ତି। ତେବେ ପ୍ରତି ମଣିଷ ରକ୍ତରେ ଅପରାଧ ବୀଜାଣୁ ମିଶି ରହିଛନ୍ତି। ଯେଉଁଠି ସେମାନେ ମୃତ ପ୍ରାୟ ହୋଇ ପଡ଼ିଥାଆନ୍ତି, ସେଠି ସେମାନଙ୍କୁ ଜାଗ୍ରତ କରିବାକୁ ହୋଇଥାଏ।

ଏପରି ଦେଖାଯାଇଛି, କୌଣସି କୌଣସି ସ୍ଥଳରେ ମଣିଷ ନିଜର ସନ୍ତାନଙ୍କୁ ମଧ୍ୟ ହତ୍ୟା କରିଛି। କେବଳ ପ୍ରବୃତ୍ତିର ଦାସ ହୋଇ ସେ ଏହା କରିଛି। କେହି କେହି ଅପରାଧୀ ତାଙ୍କ ଦଳ ବୃଦ୍ଧି ପାଇଁ ସମାଜରେ ଶ୍ରେଷ୍ଠ ସମ୍ମାନ ପାଉଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଧୀରେ ଧୀରେ ଅପରାଧ ସ୍ପୃହା ଜଗେଇ ସେମାନଙ୍କୁ ଅଭ୍ୟାସଗତ ଅପରାଧୀରେ ପରିଣତ କରିପାରିଛନ୍ତି। ଆହୁରି ମଧ୍ୟ ଅନେକ କ୍ଷେତ୍ରରେ ଦେଖାଯାଇଛି, ମଣିଷ ନିଜର ନାମ, ଯଶ ଓ ପ୍ରତିଷ୍ଠା ଅର୍ଜନ କରିବାକୁ ଯାଇ ଅପରାଧପ୍ରବଣ ହୋଇଉଠିଚି। କାରଣ ସେ ସତ୍ ଉପାୟରେ ନିଜର ପ୍ରତିଷ୍ଠା ଅର୍ଜନର ସୁଯୋଗ ପାଇନାହିଁ। ସେ ଶେଷରେ ଅନନ୍ୟୋପାୟ ହୋଇ ଅପରାଧୀ ହୋଇଚି । ତା' ପ୍ରାଣରେ ଅପରାଧ ସ୍ପୃହା ଜାଗିଚି, ଅଥବା କେହି ଜଗେଇଚି।

କେବଳ ପାରିପାର୍ଶ୍ୱିକ ଅବସ୍ଥା ଓ ସଙ୍ଗଦୋଷ ନୁହେଁ, ମଣିଷର ଅନ୍ତର୍ନିହିତ ଅପରାଧ ସ୍ପୃହା ଔଷଧପତ୍ର ସାହାଯ୍ୟରେ ମଧ୍ୟ ଜାଗ୍ରତ୍ କରାଯାଇପାରେ। ଏପରି କେତେକ ମାଦକ ଦ୍ରବ୍ୟ ଅଛି, ଯେଉଁଗୁଡ଼ିକ ମଣିଷ ନିୟମିତ ସେବନ କଲେ ଦେହାଭ୍ୟନ୍ତରସ୍ଥ ଗ୍ରନ୍ଥିପିଣ୍ଡଗୁଡ଼ିକୁ ଉତ୍ତେଜିତ କରେ। ଫଳରେ ସ୍ନାୟୁ ଉପରେ ତା'ର ପ୍ରଭାବ ପଡ଼େ। ମଣିଷର ଅପରାଧ ସ୍ପୃହା ସ୍ନାୟୁ ଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ମଣିଷ ଅପରାଧପ୍ରବଣ ହୋଇଉଠେ।

ଏହାଛଡ଼ା ମଧ୍ୟ ସାଧାରଣ ମଣିଷ ମନରେ ଅପରାଧ ସ୍ପୃହା ଜଗେଇବା ପାଇଁ ଆହୁରି ଗୋଟିଏ ପଥ ଅଛି। ଯେପରି ତା' ଆଗରେ ବାରମ୍ବାର ଅପରାଧମୂଳକ ଘଟଣା

ବର୍ଣ୍ଣନା କରିବା। ଧରାଯାଉ ଜଣକର ସମାଜରେ ପ୍ରତିଷ୍ଠା ଅଛି, ସେ ଚାହେଁ ଆହୁରି ପ୍ରତିଷ୍ଠା, ଆହୁରି ଯଶ। କିନ୍ତୁ ଆଗେଇବାର କୌଣସି ପଥ ନାହିଁ। ଠିକ୍ ଏତିକିବେଳେ ତା'ର ଏପରି ଜଣକ ସଙ୍ଗରେ ଭେଟ ହେଲା- ଯିଏ କି ଏଇଭଳି ଜଣେ ଲୋକର ସନ୍ଧାନରେ ଥିଲା। ଧରାଯାଉ ଦ୍ୱିତୀୟ ଜଣକ ଗୋଟିଏ ଅଭ୍ୟାସଗତ ଅପରାଧୀ। ତା'ର କୌଣସି ଗୋଟିଏ କାର୍ଯ୍ୟ ହାସଲ ପାଇଁ ଏହିପରି ଜଣେ ଲୋକର ପ୍ରୟୋଜନ ଥିଲା। ପ୍ରଥମ ଜଣକ ମନରେ କିନ୍ତୁ ପ୍ରତିଷ୍ଠା ଅର୍ଜନର ଆକାଂକ୍ଷା ଅସୀମ। ଅପୂର୍ବ ସୁଯୋଗ। ଅଭ୍ୟାସଗତ ଅପରାଧୀ ଜଣକ କାନେକାନେ ଶିଖେଇଲା। ଆଜିକାଲି ସମାଜରେ ପ୍ରତିଷ୍ଠା ଅର୍ଜନ କରିବାକୁ ହେଲେ, ଅସତ୍ ଉପାୟ ଅବଲମ୍ବନ କରିବାକୁ ହେବ। ଯଥା-ଅମୁକ ବଡ଼ ହେବା ପାଇଁ ଅମୁକ ବେକରେ ଛୁରୀ ବସେଇବାକୁ ପଛେଇନଥିଲେ। ଅମୁକ ରାଜ୍ୟ ସିଂହାସନ ପାଇଁ ଅମୁକ ରାଜାଙ୍କୁ ବିଷ ଖୁଆଇ ଦେଇଥିଲେ। ତେଣୁ ତୁମେ ଯେଉଁ ପଥରେ ଯିବାକୁ ଚାହୁଁଛ, ସେ ପଥ ପ୍ରତିଷ୍ଠା ଅର୍ଜନ ପାଇଁ ମୋଟେ ସୁଗମ ନୁହେଁ। ମୁଁ ଯାହା କହୁଛି ସେଇଆ କର। ତା'ହେଲେ ପ୍ରତିଷ୍ଠା ପାଇବ, ଯଶ ଅର୍ଜନ କରିବ, ବଡ଼ ହେବ।

ତା'ହେଲେ ?

ମିଃ ରଘୁନନ୍ଦନଙ୍କ ଆଲବମ୍‌ରେ ଥିବା ଅପରାଧମୂଳକ ଚିତ୍ରଗୁଡ଼ିକ ଏହି ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ନୁହେଁ ତ ? କିଏ ଜାଣେ ମଣିଷ ମନରେ ଧୀରେ ଧୀରେ ଅପରାଧ ସ୍ପୃହା ଜାଗ୍ରତ କରିବା ପାଇଁ ଏବି ଗୋଟାଏ ଉପାୟ। ଯଦି ହୋଇଥାଏ ! !

ନା ନା, ପ୍ରଥମେ ମିଃ ରଘୁନନ୍ଦନଙ୍କ ମନସ୍ତତ୍ତ୍ୱ ବିଶ୍ଳେଷଣ କରିବାକୁ ହେବ। ବିଶେଷ କରି ତାଙ୍କ କାର୍ଯ୍ୟକଳାପ ଉପରେ ନଜର ଦେବାକୁ ହେବ। ମିଃ ରଘୁନନ୍ଦନଙ୍କୁ ଏ ହତ୍ୟା ରହସ୍ୟ ଭିତରକୁ ଝିଙ୍କି ଆଣିବା ମୂଳରେ କି ଯୁକ୍ତି ଅଛି ? ସେଦିନ ଖାଲି ମାଇନିଂବୋର୍ଡ଼ର ଆଲୋଚନା ସଭାରେ ମିଃ ଅଗରବାଲା ଓ ତାଙ୍କର ମତଦ୍ୱୈଧ ଘଟିଥିଲା। ଏହା ତ ରାଜନୈତିକ କ୍ଷେତ୍ରରେ ଅତି ସ୍ୱାଭାବିକ। ତଥାପି...

ଶଶାଙ୍କ ମିତ୍ରଙ୍କ ଘରେ ପ୍ରାୟ ସମସ୍ତଙ୍କୁ ମୁଁ ବିରକ୍ତ ହୋଇଥିଲି। ତାଙ୍କ ମୃତ୍ୟୁ ପୂର୍ବରୁ କିଏ କିଏ ତାଙ୍କ ଘରକୁ ଆସିଥିଲେ, କ'ଣ କ'ଣ ଆଲୋଚନା ହୋଇଥିଲା, ସବୁ ଜାଣିବା ପାଇଁ ମୁଁ ଖୁବ୍ ଚେଷ୍ଟା କରିଥିଲି । କିନ୍ତୁ ବିଶେଷକିଛି ଜାଣିହେଲା ନାହିଁ। କାରଣ ସେଦିନ ତାଙ୍କ ପାଖକୁ ପ୍ରାୟ ଆଠଜଣରୁ ଅଧିକ ଲୋକ ଆସିଥିଲେ। ଜଣେ ଦି'ଜଣଙ୍କୁ ତାଙ୍କ ଘରେ ଚିହ୍ନନ୍ତି। ଅନ୍ୟମାନେ ଅପରିଚିତ। କିନ୍ତୁ ଯେତେଟା ସମ୍ଭବ ସମସ୍ତଙ୍କ ଆକୃତି ପ୍ରକୃତି ସମ୍ବନ୍ଧରେ ଶଶାଙ୍କ ମିତ୍ରଙ୍କ ଚାକରଟି ବର୍ଣ୍ଣନା କଲା। କାରଣ ସେ ସମସ୍ତଙ୍କୁ ଦେଖିଥିଲା ଏବଂ ଚା' ଖୁଆଇ ଥିଲା।

ଶଶାଙ୍କ ମିତ୍ରଙ୍କ ଚାକରଠାରୁ ମୁଁ ଯେଉଁ ଚେହେରାରର ବର୍ଣ୍ଣନା ଆଶା କରୁଥିଲି, ଯଦିଓ ପାଇଲି; ମାତ୍ର ତାହା ଏତେ ଅସ୍ପଷ୍ଟ ଯେ, ସେ ବାଟରେ ସେଇଆକୁ ସୂତ୍ରକରି ଆଗେଇବା ସମ୍ଭବ ନୁହେଁ। ତଥାପି ମୋର ଯେମିତି ମନେ ହେଉଚି, ମିଃ ରଘୁନନ୍ଦନ ଶଶାଙ୍କ ମିତ୍ରଙ୍କ ପାଖକୁ ଆସିଥିଲେ। ଶଶାଙ୍କବାବୁଙ୍କ ଚାକର କହିବା ଅନୁସାରେ ସେଦିନ ସେ ଥିଲେ ଶେଷବ୍ୟକ୍ତି। ତାଙ୍କ ପରେ ଆଉ କେହି ବାହାର ଲୋକ ଶଶାଙ୍କ ମିତ୍ରଙ୍କ ପାଖକୁ ଆସି ନାହାନ୍ତି।

କ'ଣ ଆଲୋଚନା ହେଲା, ଚାକରଟା କିଛି କହିପାରିଲା ନାହିଁ। କିନ୍ତୁ ଦୁହେଁ ଖୁବ୍ ହସି ହସି କଥାବାର୍ତ୍ତା ହେଉଥିଲେ। ଚାକର କହିଲା, ସେ ବାବୁ କିନ୍ତୁ ଆଗରୁ କେବେ ତାଙ୍କ ଘରକୁ ଆସି ନଥିଲେ। ସେ ପ୍ରାୟ ଶଶାଙ୍କ ମିତ୍ରଙ୍କ ଶୋଇବାର ଘଣ୍ଟାଏ ଦେଢ଼ଘଣ୍ଟା ପୂର୍ବରୁ ଚାଲିଯାଇଥିଲେ। ତା'ପରେ ଶଶାଙ୍କ ମିତ୍ର ଖାଇସାରି ନିଜ ଶୋଇଲା ଘରେ ବତି ଜଳେଇ କ'ଣ କାମଦାମ କରି କେତେବେଳେ ଶୋଇଲେ, କେତେବେଳେବା କିଏ ତାଙ୍କୁ ହତ୍ୟା କଲା, ସେ କଥା ଚାକର କିଛି ଜାଣିନାହିଁ। ତେବେ ଶେଷରେ ଯେଉଁ ଲୋକଟି ଶଶାଙ୍କ ମିତ୍ରଙ୍କ ପାଖରୁ ବିଦାୟ ନେଲା, ତାଙ୍କୁ ଦେଖିଲେ ସେ ଚିହ୍ନିପାରିବ ବୋଲି କହିଲା।

ମିଃ ରଘୁନନ୍ଦନ ସଫା ମନା କରିଦେଲେ ଯେ, ସେ ଶଶାଙ୍କ ମିତ୍ରଙ୍କ ଘରକୁ ଯାଇନାହାନ୍ତି। ଯିବାର ମଧ୍ୟ କୌଣସି ପ୍ରୟୋଜନ ନ ଥିଲା। ଅବଶ୍ୟ ଚିହ୍ନା ପରିଚୟ ଥିଲା। ତା'ବୋଲି ସେ କାହିଁକି ତାଙ୍କ ଘରକୁ ଯାଆନ୍ତି ?

ଶଶାଙ୍କ ମିତ୍ରଙ୍କ ଚାକରଟା ମିଃ ରଘୁନନ୍ଦନଙ୍କୁ ଦେଖି ମଧ୍ୟ ଠିକ୍ ଚିହ୍ନିପାରିଲା ନାହିଁ। କେତେବେଳେ ହଁ, କେତେବେଳେ ନା, ଇମିତି କହିଲା। ସବୁଠାରୁ ତାକୁ ବେଶି ଅସୁବିଧା ହେଲା, ରାତିରେ ସେ ଭଲ ଦେଖିପାରେନି। ତେଣୁ ସେ ଯେଉଁମାନଙ୍କୁ ଦେଖିଥିଲା, ସେମାନଙ୍କ ଭିତରୁ ଏଇ ମିଃ ରଘୁନନ୍ଦନ ଜଣେ କି ନା ସ୍ପଷ୍ଟ କହିପାରିଲା ନାହିଁ। ତେଣୁ ମୁଁ ଧରିନେଲି, ମିଃ ରଘୁନନ୍ଦନ ଶଶାଙ୍କ ମିତ୍ରଙ୍କ ଘରକୁ ଯାଇଥିଲେ ଏବଂ ମୃତ୍ୟୁଦିନ ରାତିରେ। ତା' ବୋଲି ହେଲା କ'ଣ ? ସେଇ କ'ଣ ଶଶାଙ୍କ ମିତ୍ରଙ୍କୁ ହତ୍ୟା କଲେ ? ତା'ଅବଶ୍ୟ ନୁହେଁ। କିନ୍ତୁ ସେ ସେଠାକୁ ଯିବାକଥା ଅସ୍ୱୀକାର କରୁଛନ୍ତି କାହିଁକି ?

ମିଃ ଅଗରବାଲାଙ୍କ ମୃତ୍ୟୁ ଦିନ ଚାରି ପାଞ୍ଚଜଣ ଲୋକ ତାଙ୍କ ସହିତ ଦେଖା କରିଥିଲେ। ତାଙ୍କ ଚାକରକୁ ପଚାରିବାରୁ କହିଲା: ଆମର ସେଥିରୁ କ'ଣ ମିଳିବ ଆଜ୍ଞା, କିଏ ଗଲା, କିଏ ଆସିଲା, ସେ ସବୁ ବଡ଼ବଡ଼ିଆଙ୍କ କାରବାର। କାହାକୁ ଚିହ୍ନିବା ଆମର ଦରକାର କ'ଣ। କପେ ଚା', ଗିଲାସେ ପାଣି ଯାହା ହୁକୁମ ହୁଏ ସେଇଆ କରିବା କଥା। ବାବୁ ଭାଇଆଙ୍କୁ ଚିହ୍ନିବା ଦରକାର ପଡ଼େନାହିଁ।

କିନ୍ତୁ ମୋର କାହିଁକି ମନେ ହେଉଚି ଅଗରବାଲାଙ୍କ ଚାକର ମଦନା ଟିକିଏ କିମିତି ସୀମା ଲଂଘି ଯାଉଛି। ଯାହା ପଚାରିଲେ ସେ କିଛି ଜାଣେନି, ଏଇଆ ଜଣେଇବାକୁ ଚାହୁଁଚି। ଏତେ ଦିନ ସେ ଅଗରବାଲାଙ୍କ ଘରେ ଚାକିରି କରି ପ୍ରକୃତରେ କ'ଣ କାହାରିକୁ ଚିହ୍ନିନାହିଁ, କିଛି ଜାଣିନାହିଁ? ମୋର କାହିଁକି ମନେ ହେଉଛି, ସେ ଇଚ୍ଛା କରି ଏ ସବୁଥିରୁ ଦୂରେଇ ରହିବାକୁ ଚାହୁଁଚି, ଅଥବା ଅନେକ କଥା ଜାଣି ମଧ୍ୟ କେଉଁଟାକୁ ଜଣେଇବାକୁ ଚାହୁଁ ନାହିଁ। କାରଣ?

ବାରିଷ୍ଟର ରାୟଙ୍କ ପାଖରେ ଥିବା ମହିଳା ଜଣଙ୍କୁ ମୁଁ ମୋତେ ମୋ ବସାରେ ଆଶା କରିନଥିଲି। ହଠାତ୍ ଆସି ପହଞ୍ଚିଲେ। ବୈଠକଖାନାରେ ମୋତେ ଭେଟି ହସି ପକେଇଲେ। ବସିଲେ। ଚା' ଖାଇଲେ। ମୁଁ ତାଙ୍କ ଆସିବା ଉଦ୍ଦେଶ୍ୟ ସମ୍ବନ୍ଧରେ କିଛି ପଚାରି ପାରିଲି ନାହିଁ। ପଚାରିବା ଭିତରେ ଖାଲି ନାଁଟି ପଚାରିଲି।

ଚାମେଲୀ। ସେ ନିଜେ କହିଲେ, ଏଇଆଡ଼େ ଗୋଟାଏ କାମରେ ଆସିଥିଲି। ଦୁଆରେ ଆପଣଙ୍କ ନାଁର ବୋର୍ଡ଼ଟା ଦେଖି ପଶିଆସିଲି। କିଛି ନ ହେଲେ ତ ଚା' କପେ ମିଳିବ। ଚାମେଲୀ ପୁଣି ହସିଲା। ମୁଁ ନୀରବରେ ବସିଥିଲି। ବେଳେବେଳେ ଚାମେଲୀର ହସ ସହିତ ହସ ବାଧ୍ୟ ହେଇ ମିଳଉଥିଲି। ବେଶ୍ ଲାଗିଲା ଚାମେଲୀକୁ। ଖୁବ୍ ଫୂର୍ତ୍ତି, ଖୁବ୍ ଚାଲାକ୍। ତା'ଛଡ଼ା ରୂପ ତ ଅକଳନ।

ମୋତେ ବସିବା ପାଇଁ କହିଲା। କାରଣ ବାରିଷ୍ଟର ରାୟ ବର୍ତ୍ତମାନ ନାହାନ୍ତି। ତା'ର ସମୟ ଢେର ଅଛି। ବସି ବସି ଗପ କରିବାକୁ କେହି ଲୋକ ନାହାନ୍ତି। ମୁଁ ଗଲେ ଚାମେଲୀ ଖୁବ୍ ଖୁସି ହୁଅନ୍ତା। ସିନେମା କି ଥିଏଟର ଗୋଟାଏ ସାଙ୍ଗ ହୋଇ ଦେଖନ୍ତେ।

କଥା ମଝିରେ ହଠାତ୍ ସେ ପଚାରିଲା, ଏ ଯେଉଁ ଦୁଇ ଦୁଇଟା ହତ୍ୟାକାଣ୍ଡ ଘଟିଗଲା, ଏ ସମ୍ବନ୍ଧରେ ଆପଣଙ୍କ ଧାରଣା କ'ଣ?

ମୁଁ ଏଭଳି ପ୍ରଶ୍ନ ଚାମେଲୀଠାରୁ ମୋତେ ଆଶା କରୁନଥିଲି। ଯା'ହେଉ ତା' ମୁହଁରେ ଦେଖିଲି ଆଗ୍ରହର ଅସଂଖ୍ୟ ରୂପ।

ମୁଁ ହସିଦେଲି। ଏମିତି ଭାବ ପ୍ରକାଶ କଲି, ଯେମିତି ସେସବୁ ହତ୍ୟା ସମ୍ବନ୍ଧରେ ମୋତେ କିଛି ଜଣାନାହିଁ। ସେଇଆ ମଧ୍ୟ କହିଲି। ଚାମେଲୀ ମୁହଁରେ କିନ୍ତୁ ଅବିଶ୍ୱାସର ଛାଇ ଦେଖିଲି।

ଚାମେଲୀ ଗୋଟାଏ ଅଳସ ହାଇ ପକେଇ ଉଠିଲା। ବାରମ୍ବାର କହିଗଲା ପାଞ୍ଚଟା ବେଳକୁ 'ସେଣ୍ଟ୍ରାଲ କାଫେ'ରେ ଦେଖା କରିବା ପାଇଁ। ମୋତେ କୁଆଡ଼େ ତାଙ୍କୁ ଖୁବ୍

ଭଲ ଲାଗେ। ଦେଖିବା ଦିନଠାରୁ ମୋତେ ସେ ଜାଣିଚି, ମୁଁ କୁଆଡ଼େ ଭାରି ମେଳାପୀ ଲୋକ। କିନ୍ତୁ 'ସେଣ୍ଟ୍ରାଲ କାଫେ' କଥା ସେ ପ୍ରାୟ ପନ୍ଦରଥର କହିଥିଲା।

କିନ୍ତୁ 'ସେଣ୍ଟ୍ରାଲ କାଫେ'ରେ ଚାମେଲୀକୁ ମୁଁ ପାଇ ନଥିଲି।

ପ୍ରାୟ ଅଧଘଣ୍ଟା ଅପେକ୍ଷା କଲା ପରେ, ବାହାରି ଆସିଲା ବେଳକୁ ଦେଖିଲି, ଚାମେଲୀ ମିଃ ରଘୁନନ୍ଦନଙ୍କଠାରୁ ବିଦାୟ ନେଇ 'କାଫେ' ଭିତରକୁ ପଶୁଚି। ଲୋକ ଗହଳି ଭିତରେ ମୁଁ ଟିକେ ନିଜକୁ ଲୁଚେଇ ଦେଲି। ଲକ୍ଷ୍ୟ କଲି, ଚାମେଲୀ ମୋତେ ବଡ଼ ବ୍ୟସ୍ତ ହୋଇ ଖୋଜୁଚି।

ଦେଖାହେଲା ମାତ୍ରେ ଦୁଃଖରେ ଭାଙ୍ଗିପଡ଼ି କ୍ଷମା ମାଗି କହିଲା, ଚାକିରି ଜୀବନ, ବଡ଼ ବିକଳ ଜୀବନ। ମୁଁ ଆସିବାକୁ ବାହାରିଛି ମିଃ ରଘୁନନ୍ଦନ ଆସି ହାଜର। ତାଙ୍କର ଗୋଟାଏ ଜରୁରୀ କଥା ବାରିଷ୍ଟର ରାୟଙ୍କୁ ଜଣେଇବାର ଥିଲା। ସେଥିରେ ଅଧଘଣ୍ଟା ଲାଗିଲା। ନିଜେ ସେ ଆସି ମୋତେ ଏଇଠି ଛାଡ଼ି ଦେଇଗଲେ। ମୋତେ କ୍ଷମା କରିବେ। ଇତ୍ୟାଦି ଇତ୍ୟାଦି।

ଚାମେଲୀଠାରୁ ମୁଁ ଯାହା ଆଶା କାରୁଥିଲି ପାଇଲି ନାହିଁ। ସେଇଟା ଗୋଟାଏ ଚପଳମତି। ସେପରି ଦାୟିତ୍ୱ ଥିଲାପରି ମନେ ହେଲାନାହିଁ। 'ସେଣ୍ଟ୍ରାଲ କାଫେ'ରେ ବସି ବସି ଏତେ ଗପିଲା ଯେ, ମୁଁ ଖାଲି ଚାହିଁଥିଲି। ତା' କଥାବାର୍ତ୍ତା, ଚାଲିଚଳନ ସବୁ ଭିତରେ ମୋ ପ୍ରତି ତା'ର କିପରି ଗୋଟାଏ ଆସକ୍ତି ଆସି ଯାଇଥିବାର ଲକ୍ଷ୍ୟ କଲି। ଏପରିକି କଥା ଛଳରେ ସେ ହାତଟାକୁ ଥରେ ଚାପି ଧରିଥିଲା ଏବଂ ବିକଳ ଆଖିରେ ମୋ ଆଡ଼େ ଅନେଇଥିଲା। ମୁଁ ଖାଲି ଟିକିଏ ହସି ଦେଇଥିଲି।

ବାରିଷ୍ଟର ରାୟ ଓ ମିଃ ରଘୁନନ୍ଦନଙ୍କ ସମ୍ବନ୍ଧରେ ସେ କୌଣସି କଥା ମୁହଁରେ ଧରିବାକୁ ରାଜି ହେଲାନାହିଁ। ସେଠି ସେ ଚାକିରି କରିଚି, ସେତିକି। ଚାକିରି ପରେ ବି ଚାମେଲୀର ଜୀବନ ଅଛି, ମନ ଅଛି। ସେଇଆ କହିଲା। ମୁଁ ଖାଲି ମଉନରେ ଶୁଣିଲି। ସେ ମୋ ନୀରବତା ଦେଖି ଉଚ୍ଛନ୍ନ ହୋଇଉଠୁଥିଲା।

ମିଃ ଅଟରବାଲାଙ୍କ ମୃତ୍ୟୁ ପୂର୍ବରୁ କିଏ କିଏ ତାଙ୍କ ଘରକୁ ଆସିଥିଲେ ଜାଣିବାକୁ ଚେଷ୍ଟା କରିଥିଲି। ଆଶାନୁରୂପ ଫଳ କିଛି ପାଇଲି ନାହିଁ। କିନ୍ତୁ ତାଙ୍କ ଚାକରଟା ଯେମିତି ସତକଥା କହୁନାହିଁ। ମନେହେଉଛି, ସେ ଯେମିତି ଅନେକ କିଛି ଜାଣିଛି, ଅଥଚ ସବୁ କଥା ଖୋଲି କହିବାକୁ ରାଜି ହେଉନାହିଁ।

ଆଜିର ଖବରକାଗଜଟା ମୋ ମନରେ ଭୀଷଣ ପ୍ରଭାବ ପକାଇଲା। ଓଡ଼ିଶା ଖଣି ବିଭାଗର ମନ୍ତ୍ରୀ ଅମିତାଭ ମହାନ୍ତିଙ୍କୁ ହତ୍ୟା କରାହୋଇଛି। ଖବରକାଗଜରେ ମୃତ୍ୟୁ ବିବରଣୀ

ଯେପରି ଭାବରେ ପ୍ରକାଶ ପାଇଛି, ସେଥିରୁ ମନେହେଉଛି, ପୂର୍ବୋକ୍ତ ଦୁଇଟିଯାକ ହତ୍ୟା ପ୍ରଣାଳୀ ସହିତ ଅମିତାଭ ମହାନ୍ତିଙ୍କ ହତ୍ୟା ପ୍ରଣାଳୀ ପ୍ରାୟ ସମାନ। ଖୁବ୍ ଭାବନାର କଥା। ଏହା କିପରି ସମ୍ଭବ? ହୁଏତ ଅନୁମାନ ସତ୍ୟ। କୌଣସି ରାଜନୈତିକ ଦୁରଭିସନ୍ଧି ଏ ସବୁର ପଛରେ କାମ କରୁଛି।

ପୋଲିସ ବିଭାଗ ଏହି ହତ୍ୟାରହସ୍ୟ ଉଦ୍‌ଘାଟନ ପାଇଁ ଖୁବ୍ ତତ୍ପର। କିନ୍ତୁ ଏତେବେଳେ ଯାଏ ପାଦେ ବି ଆଗେଇ ପାରିନାହାନ୍ତି। ଗୁଇନ୍ଦା ବିଭାଗର ଇନ୍ସପେକ୍ଟରଙ୍କ ସହିତ ଦେଖାହେଲାନାହିଁ। ଦୁଇ ତିନି ଦିନ ହେବ ସେ ଅଫିସ୍ ଆସିନାହାନ୍ତି। ଘରକୁ ମଧ୍ୟ ଫେରିନାହାନ୍ତି। ଆଶ୍ଚର୍ଯ୍ୟର କଥା। ସବୁ ଯେମିତି ଧୂଆଁଳିଆ ମନେ ହେଉଛି।

ବାରିଷ୍ଟର ରାୟ ଆଜି ମଧ୍ୟ ଫେରିନାହାନ୍ତି। ଚାମେଲୀ ଏକା ଏକା ବସି ଆନମନା ହୋଇ କ'ଣ ଭାବୁଥିଲା। ମୋତେ ଦେଖି ଆନନ୍ଦରେ ନାଚି ଉଠିଲା। ସେ କୁଆଡ଼େ ମୋରି ପ୍ରତୀକ୍ଷାରେ ବସିଥିଲା। ତା' ମନ ଉପରେ ତା'ର ଅଗାଧ ବିଶ୍ୱାସ ଥିଲା। ତେଣୁ ମିଃ ରଘୁନନ୍ଦନଙ୍କ ଫୋନ୍ ପାଇ ମଧ୍ୟ ସେ ଯାଇନଥିଲା। ମୋ ସଙ୍ଗରେ କୁଆଡ଼େ ବୁଲିଯିବାକୁ ତା'ର ଭୀଷଣ ଆଗ୍ରହ। ପ୍ରସ୍ତାବ କଲା, ସେ କିଛି ଦିନ ପାଇଁ ଛୁଟି ନେଉଛି। ମୁଁ ଯଦି ରାଜି ହୁଅନ୍ତି, ତେବେ ସେ ଦାର୍ଜିଲିଂ ଆଡ଼େ ମୋ ସାଙ୍ଗରେ ବୁଲି ଯାଆନ୍ତା।

ମୁଁ ତା' ପ୍ରସ୍ତାବକୁ ବିବେଚନା କରିବାକୁ କହିଲି। ଆହୁରି ମଧ୍ୟ କହିଲି, ମୋର ଦାର୍ଜିଲିଂରେ ଗୋଟାଏ କେସ୍ ତଦନ୍ତରେ ଯିବାର ଅଛି। ଏଆଡ଼ର କେତେକ ଦାୟିତ୍ୱପୂର୍ଣ୍ଣ କାମ ତୁଟେଇ ପାରିଲେ ଦାର୍ଜିଲିଂ ଯିବି। ସେତିକିବେଳେ ମୁଁ ତାକୁ ସଙ୍ଗରେ ନେଇପାରେ।

ଚାମେଲୀ ସହିତ କଥାବାର୍ତ୍ତା କରୁଥିବା ବେଳେ, ମୁଁ ବାରିଷ୍ଟର ରାୟଙ୍କ ପୁସ୍ତକପୂର୍ଣ୍ଣ ଆଲମାରୀ ଆଡ଼େ ଘନଘନ ଚାହୁଁଥିଲି। ଉଦ୍ଦେଶ୍ୟ, ସେଠାରେ ଆଇନ୍ ବହି ଛଡ଼ା ଅନ୍ୟ କିଛି ବହି ଅଛି କି ନାହିଁ। କିନ୍ତୁ ଅନ୍ୟ କୌଣସି ବହି ଆଖିରେ ପଡ଼ିଲାନାହିଁ। ମୁଁ ଚାଲିଆସିଲି।

ରାସ୍ତାରେ ଦେଖିଲି, ଗୋଟାଏ କଳା ରଙ୍ଗର ମଟରରେ ବସିଛନ୍ତି ବାରିଷ୍ଟର ରାୟ, ମିଃ ରଘୁନନ୍ଦନ ଓ ସେହି ଭୀଷଣକାୟ କଳା ବିରାଡ଼ିଟା। ସେମାନେ ବୋଧହୁଏ ବାରିଷ୍ଟର ରାୟଙ୍କ ଘରକୁ ଫେରୁଥିଲେ। ତା'ହେଲେ? ଚାମେଲୀ କହିଲା, ବାରିଷ୍ଟର ରାୟ ବାହାରକୁ ଯାଇଛନ୍ତି? କିଏ ଜାଣେ ହୁଏତ ସେ ଏଇକ୍ଷିଣା ଫେରୁଛନ୍ତି। କିନ୍ତୁ ମିଃ ରଘୁନନ୍ଦନ? ଆଉ ବାରିଷ୍ଟର ରାୟଙ୍କ ଘରକୁ ଫେରିବା ଉଚିତ ମନେକଲି ନାହିଁ।

ମିଃ ରଘୁନନ୍ଦନଙ୍କ ଟେଲିଫୋନ୍ ପାଇ ତାଙ୍କ ଘରକୁ ଚାଲିଗଲି। ସେ ଗୋଟିଏ ସାନ୍ଧ୍ୟ ମିଳନୀର ଆୟୋଜନ କରିଥିଲେ। ସହରର କେତେ ବିଶିଷ୍ଟ ଭଦ୍ରବ୍ୟକ୍ତି ଏବଂ କେତେଜଣ ବିଶିଷ୍ଟ ସରକାରୀ କର୍ମଚାରୀ ସେଠାକୁ ଆସିଥିଲେ। ମିଳନୀର ଉଦ୍ଦେଶ୍ୟ- ମିଃ ରଘୁନନ୍ଦନ ଗୋଟିଏ ନୂଆ ଆମ୍ବାସାଡ଼ାର କାର୍ କିଣିଛନ୍ତି, ସେଇ ଉଦ୍ଦେଶ୍ୟରେ ଏ ମିଳନୀ।

ଭୋଜନର ଆୟୋଜନ ମଧ୍ୟ ମନ୍ଦ ହୋଇନଥିଲା। ସେଠି ଚାମେଲୀ ସଙ୍ଗରେ ଦେଖା ହେଲା, କିନ୍ତୁ ବାରିଷ୍ଟର ରାୟ କାହାନ୍ତି? ମନେମନେ ଖୋଜିଲି। ସେ କିନ୍ତୁ ନ ଥିଲେ। ଚାମେଲୀ ମୋତେ ଆଉ ଜଣକ ସହିତ ପରିଚୟ କରାଇଦେଲା। ତାଙ୍କ ନା ଏମ୍.ଆର୍.ଶାସ୍ତ୍ରୀ। କେଉଁ ଏକ କଲେଜରେ ଅଧ୍ୟାପକ। ସେଇ ମହାଶୟ ସେଦିନ ମିଳନୀରେ ପ୍ରଧାନ ଅତିଥି ଥିଲେ। ସେ ଯେଉଁଠି ବସିଥିଲେ, ଟିକିଏ ଅନ୍ଧାରୁଆ ହୋଇଥିଲା, ତେଣୁ ତାଙ୍କ ମୁହଁଟା ଭଲଭାବରେ ଦେଖିପାରିଲି ନାହିଁ। ଚିହ୍ନିବା ପାଇଁ ବାରମ୍ୱାର ଚାହୁଁଥିଲି; ଦେଖିଲି, ଚାମେଲି ମଧ୍ୟ ମୋତେ ବାରମ୍ୱାର ଚାହୁଁଚି।

ମିଃ ରଘୁନନ୍ଦନ ସାନ୍ଧ୍ୟ ମିଳନୀଟିକୁ ରସାଳ କରିବା ପାଇଁ ନୃତ୍ୟଗୀତର ମଧ୍ୟ ଆୟୋଜନ କରିଥିଲେ। ଉତ୍ସବଟି ବେଶ୍ ଉପଭୋଗ୍ୟ ହୋଇଥିଲା।

ଚାମେଲୀ କିନ୍ତୁ ମୋ ପାଖ ଛାଡ଼ିନଥିଲା। ଲକ୍ଷ୍ୟ କଲି, ଆଜି ସେ ଯେମିତି ଆହୁରି ପାହାଚେ ଉପରକୁ ଉଠିବି। ମୁଁ ସିଗାରେଟ୍ ବାହାର କଲେ, ସେ ଡିଆସିଲି ଜଳେଇ ଦେଉଚି। ମୋତେ ଖାଲି ହସ ମାଡୁଥାଏ। ତା' ଆଗ୍ରହକୁ ବଢ଼େଇବା ପାଇଁ ମୁଁ କିନ୍ତୁ ପ୍ରଶ୍ରୟ ଦେଉଥିଲି।

ମୋତେ ଛାଇନିଦ ଲାଗି ଆସିଥାଏ। ହଠାତ୍ ଖଡ଼କିନା କ'ଣ ଗୋଟାଏ ଶବ୍ଦ ହେଲା। ନିଦଟା ଭାଙ୍ଗିଗଲା। କାନ ଠିଆ କରି ରହିଲି। ଆଉ କିଛି ନାହିଁ। ତା'ପରେ ଧୀରେ ଆଖି ବୁଜି ହୋଇଆସିଲା। ମୁଁ ଅନୁଭବ କଲି, କିଏ ସିମିତି ମୋ ଘରଟାରେ କ'ଣ ଖୋଜୁଚି। ବହୁ କଷ୍ଟରେ ଆଖି ଖୋଲିଲି। ଦିଶିଲା ଗୋଟାଏ କଳା ଛାଇ। ସେ ଏପାଖ ସେପାଖ ହେଉଛି। ଶୋଇଲା ପରି ପଡ଼ି ରହିଲି। ସତରେ ଛାଇଟା କ'ଣ ଯେମିତି ଖୋଜୁଥିଲା। ମୋ ହାତ ପାଖରେ ବତୀ ସୁଇଚ୍ ନଥିଲା। ତଥାପି ଧୀରେଧୀରେ ଉଠି ଲାଇଟ୍ ଜଳେଇ ଦେଲାକ୍ଷଣି ଦେଖିଲି ସମସ୍ତ ଦେହଟାରେ କଳାପୋଷାକ ଆବୃତ କରା ଗୋଟାଏ ଲୋକ କିଏ ପବନ ବେଗରେ ମୋ ଘରୁ ଛୁଟି ପଳେଇଲା। ମୁଁ ପଛେପଛେ ଦୌଡ଼ି ଯାଇ ରାସ୍ତାରେ ଦେଖିଲି ଗୋଟାଏ କଳାରଙ୍ଗର ମଟରଗାଡ଼ି ଯାଉଚି।

କିଛି ବୁଝି ପାରିଲି ନାହିଁ।

ମୋ ଘରକୁ କିଏ ବା କାହିଁକି ଏଇ ଗଭୀର ରାତିରେ ଆସିଥିଲା ? କ'ଣ ବା ତା'ର ପ୍ରୟୋଜନ ଥିଲା ମୋ ପାଖରେ କି ଗୁପ୍ତଧନ ବା ସାଇତା ହେଇଚି ମୋ ଘରେ ?

କିନ୍ତୁ ସେଇ କଳାରଙ୍ଗର ମଟରଟା ବାରିଷ୍ଟର ରାୟଙ୍କର ନୁହେଁ ତ ? ସେଇଭଳି ଗୋଟାଏ ମଟରରେ ଦିନେ ବାରିଷ୍ଟର ରାୟ, ମିଃ ରଘୁନନ୍ଦନ ଫେରୁଥିବାର ମୁଁ ଦେଖିଥିଲି। ଏଇକ୍ଷିଣୀ ବାରିଷ୍ଟର ରାୟଙ୍କ ଘରକୁ ଲୁଚି ଲୁଚି ପଶିଲେ, ହୁଏତ ଜଣାପଡ଼ନ୍ତା। ଯିବା ମଧ୍ୟ ଉଚିତ।

ବାରିଷ୍ଟର ରାୟ ଯେଉଁ କୋଠାରେ ଥିଲେ, ସେଇଟାରେ କୋଉଠି ଆଲୋକ ଦିଶୁ ନ ଥିଲା। ମୁଁ ଧୀରେଧୀରେ ଭିତରକୁ ପଶିଲି। କିନ୍ତୁ କେହି ଚେଇଁଥିଲା ପରି ମନେହେଲା ନାହିଁ। ଅନେକ ସମୟ ଯାଏ ଗୋଟାଏ ଜାଗାରେ ଠିଆ ହେଇ ଅପେକ୍ଷା କଲି। କିନ୍ତୁ ବୃଥା। କେଉଁଠୁ ହେଲେ ଛୁଞ୍ଚିଟିଏ ପଡ଼ିବାର ଶବ୍ଦ ବି ପାଇଲି ନାହିଁ। ଫେରିଆସିଲି। ଆସିବା ବାଟରେ କାହିଁକି ମନେହେଲା, ମିଃ ରଘୁନନ୍ଦନଙ୍କ ଘରବାଟ ଦେଇ ଟିକିଏ ଦେଖିଯିବା ପାଇଁ।

ଦିନେ ରାତିରେ

ଆଶ୍ଚର୍ଯ୍ୟ! ତାଙ୍କ ବୈଠକଖାନା ଭିତରେ ଆଲୋକ ଜଳୁଚି। ଅବଶ୍ୟ ଏପଟରେ କବାଟ ସବୁ ଭିତରୁ ବନ୍ଦ। ଗୋଟାଏ କବାଟ ଫାଙ୍କ ବାଟେ ଅନେଇଲି, ଠିକ୍ ମୋରି ଆଖି ସାମନାରେ ଚାମେଲୀ ଗୋଟାଏ ସୋଫା ଉପରେ ଶୋଇଚି। ଆଉ ଦି'ଜଣ କିଏ ଦୁଇଟା ସୋଫା ଉପରେ ବସିଛନ୍ତି। ଧୀରେ ଧୀରେ କ'ଣ କଥାବାର୍ତ୍ତା ଚାଲିଛି। ସେ ଦି'ଜଣଙ୍କ ଭିତରୁ ଜଣେ ଟିକେ ଟିକେ ଦିଶୁଥିଲେ। ମୋର ମନେହେଲା, ସେ ଜଣକ ପ୍ରଫେସର ଶାସ୍ତ୍ରୀ। ଆଉ ଜଣକ ମୋଟେ ଦିଶୁନଥିଲେ। ସେ ହୁଏତ ମିଃ ରଘୁନନ୍ଦନ ହୋଇପାରନ୍ତି।

ହଠାତ୍ ଚାମେଲୀ କଥାଟା ମୋ କାନରେ ବାଜିଲା।

ସେ ଟିକିଏ ଜୋର୍ ଗଳାରେ କହୁଥିଲା: ମୁଁ କ'ଣ କରିବି। ଲୋକଟା ଉଠି ପଡ଼ିଲା।

ଆଉ କିଛି ଶୁଣି ପାରିଲି ନାହିଁ। ଲୋକଟା ଉଠି ପଡ଼ିଲା। ମାନେ? ତେବେ କ'ଣ ଚାମେଲୀ ମୋରି ଘରକୁ ଆସିଥିଲା? କିନ୍ତୁ କାହିଁକି? ମୋତେ ହତ୍ୟା କରିବାକୁ? ଯଦି ତାହାହିଁ ହୁଏ, ସେଥିରେ ଚାମେଲୀର ଲାଭ?

ଘରୋଇ ବିଭାଗ ମନ୍ତ୍ରୀ- ରଜନୀ ବାବୁ ମୋତେ ଡାକି ଆଉଥରେ ପଚାରିଥିଲେ: ସରକାରଙ୍କ ପୋଲିସ ବିଭାଗ, ଡିଟେକ୍‌ଟିଭ୍ ବିଭାଗ ଏ ପର୍ଯ୍ୟନ୍ତ କିଛି ଗୋଟାଏ ସୂତ୍ର ଆବିଷ୍କାର କରିନାହାନ୍ତି। ଘଟଣାଗୁଡ଼ିକ ଏତେ ଗମ୍ଭୀର ଭାବରେ ଘଟୁଛି ଯେ, ଅନୁମାନ ଉପରେ ନିର୍ଭର କରାଯାଉନାହିଁ।

ମୁଁ ତାଙ୍କୁ କୌଣସି ଆଶାଜନକ ଆଶ୍ୱାସନା ଦେଇପାରିଲି ନାହିଁ। କେବଳ ପଚାରିଲି, ମାଇନିଂ ବୋର୍ଡ଼ର ଯେଉଁ ମିଟିଂ ଆଉଥରେ ବସିବାର ଥିଲା, ତାହା ଠିକ୍ ସମୟରେ ବସୁଛି କି ନାହିଁ।

ସେ କହିଲେ, ତାହା ଠିକ୍ ସମୟରେ ବସିବ।

ମୁଁ ତାଙ୍କୁ କହିଲି, ମାଇନିଂ ବୋର୍ଡ଼ର ମିଟିଂ ଶେଷ ହେଲେ ତାଙ୍କୁ ଗୋଟାଏ ଆଶାନୁରୂପ ଖବର ହୁଏତ ଦେଇପାରିବି।

ରଜନୀ ବାବୁ ମୋ ଆଡ଼େ କିପରି ସନ୍ଦେହୀ ଦୃଷ୍ଟିରେ ଚାହିଁଲେ। ମୋର ଖାଲି ହସିବା ଛଡ଼ା ଅନ୍ୟ ବାଟ ନ ଥିଲା। ମୁଁ ଯେ କାହିଁକି ହସିଲି, ତା ବି ବୁଝିପାରୁନାହିଁ। କାରଣ ମୁଁ ଏପରି କୌଣସି ପ୍ରମାଣ ପାଇନାହିଁ, ଯାହା ମୋ ଭାବନା ସପକ୍ଷରେ ଯିବ। ମାଇନିଂ ବୋର୍ଡ଼ର ମିଟିଂ ପରେ ମୁଁ ରଜନୀ ବାବୁଙ୍କୁ ନିରାଶ ନ କରିବି, ସେକଥା କିଏ କହିବ।

ପ୍ରଫେସର ଶାସ୍ତ୍ରୀଙ୍କ ଘରକୁ ଯାଇଥିଲି। ଅବଶ୍ୟ ଚାମେଲୀ ସଙ୍ଗରେ। ପ୍ରଫେସର ଶାସ୍ତ୍ରୀ ଘରେ ନଥିଲେ। ତାଙ୍କ ଟେବୁଲ୍ ଉପରେ ଗୋଟିଏ ମୋଟା ଇଂରାଜୀ ବହି ପଡ଼ିଥିଲା।

ଓଲଟେଇ ଦେଖିଲି, ସେଇଟି ଖଣ୍ଡେ 'ଅପରାଧ ବିଜ୍ଞାନ'। ଖୋଲେଇ ଗଲି। ଅନେକ ଜାଗାରେ ବହି ଭିତରେ ପେନ୍‌ସିଲ ଗାର କଟା ହୋଇଛି।

ଚାମେଲୀ ହସି ହସି ସେ ଖଣ୍ଡିକ ମୋ ହାତରୁ ଟାଣି ନେଲା। କହିଲା: ପ୍ରଫେସର ଶାସ୍ତ୍ରୀ ଏଇସବୁ ବହି ଖୁବ୍ ଭଲପାଆନ୍ତି। ତା' ଛଡ଼ା ଶାସ୍ତ୍ରୀଙ୍କର ଗୋଟାଏ ଖିଆଲ, ସେ ଯେ କୌଣସି ବିଷୟରେ ଆଲୋଚନା କରନ୍ତି, ପ୍ରଥମେ ତା'ର ମୂଳତତ୍ତ୍ୱ ସେ ଖୋଜି ବାହାର କରନ୍ତି।

ତା'ହେଲେ ପ୍ରଫେସର ଶାସ୍ତ୍ରୀ ଅପରାଧ ତତ୍ତ୍ୱ ଖୋଜୁଛନ୍ତି ? ଏଇଆ କ'ଣ ତାଙ୍କର ପ୍ରଫେସନ ? ଯଦି ହୋଇଥାଏ, ଅନ୍ତତଃ ମୋ ପାଇଁ ଖୁବ୍ ଆଶାର କଥା। ସବୁଠୁ ଆଶାର କଥା ହେଉଛି, ଅଧ୍ୟାପକ ଶାସ୍ତ୍ରୀଙ୍କ ସହିତ ବାରିଷ୍ଟର ରାୟଙ୍କ ସମ୍ପର୍କ ଏବଂ ମିଃ ରଘୁନନ୍ଦନଙ୍କ ସହିତ ଏ ଦୁଇଜଣଙ୍କ ସମ୍ପର୍କ। ମୋର ଯେମିତି ମନେହେଉଛି, ଏହି ସମ୍ମିଳିତ ଉଦ୍ୟମ କୌଣସି ଅପରାଧମୂଳକ କାର୍ଯ୍ୟ ପଛ ପଟରେ ନିୟୋଜିତ ହେଉଛି। କିନ୍ତୁ ଏହାର ସତ୍ୟତା ସମ୍ବନ୍ଧରେ କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ସଂଗ୍ରହ କରାଯାଇପାରିନାହିଁ। ତେବେ ? ପୁଙ୍ଖାନୁପୁଙ୍ଖ ରୂପେ ଏସବୁର ଅନୁସନ୍ଧାନ ପ୍ରୟୋଜନ। ଚାମେଲୀ ଏ କ୍ଷେତ୍ରରେ ମୋତେ କେତେଦୂର ସାହାଯ୍ୟ କରିପାରିବ ? ତା' ଉପରେ କାହିଁକି ଆସ୍ଥା ଜନ୍ମୁ ନାହିଁ। ତା' କାର୍ଯ୍ୟକଳାପ ମନରେ ବିଶ୍ୱାସ ଜନ୍ମେଇଲେ ମଧ୍ୟ-ଚାଲିଚଳନ ଓ ଭାବଭଙ୍ଗୀ କିପରି ଖାପଛଡ଼ା ଜଣାଯାଉଛି। ତଥାପି ଥରେ ଚେଷ୍ଟା କରି ଦେଖିଲେ ମନ୍ଦ ହେବନାହିଁ।

ଯଥା ସମୟରେ ମାଇନିଂ ବୋର୍ଡ଼ର ମିଟିଂ ବସିଥିଲା। କିନ୍ତୁ ମିଃ ରଘୁନନ୍ଦନଙ୍କ ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିଲା ନାହିଁ। ବୋର୍ଡ଼ର ଅନ୍ୟାନ୍ୟ ମେମ୍ବରମାନେ ମିଃ ରଘୁନନ୍ଦନଙ୍କୁ ସମର୍ଥନ କଲେ ନାହିଁ। ସେ ଯେଉଁ ବିଦେଶୀ ସରକାରଙ୍କ ଉପରେ ଖଣି ଖନନର ଦାୟିତ୍ୱ ଦେବାକୁ ଚାହୁଁଥିଲେ. ସେ ସରକାର କେତେ ଅଳ୍ପ ଖର୍ଚ୍ଚରେ ଓ କିପରି ଲାଭଜନକ ସର୍ତ୍ତରେ ଭାରତ ସହିତ ସହଯୋଗ କରିବେ, ସେ କଥା ମିଃ ରଘୁନନ୍ଦନ ପୁଙ୍ଖାନୁପୁଙ୍ଖ ରୂପେ ବିଶ୍ଳେଷଣ କରିଥିଲେ। ତଦ୍ୱାରା ଭାରତର କିପରି ସ୍ୱାର୍ଥ ନିହିତ ରହୁଛି, ତାହାର ମଧ୍ୟ ଗୋଟିଏ ହିସାବ ସେ ଦେଖାଇଥିଲେ। କିନ୍ତୁ ତଥାପି ତାଙ୍କୁ କେହି ସମର୍ଥନ କଲେ ନାହିଁ। ଅବଶ୍ୟ ମିଃ ଅଗରବାଲାଙ୍କ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ। ଖଣି ଖନନର ଦାୟିତ୍ୱ ବେଶୀ ସରକାରଙ୍କୁ ଦିଆ ନହୋଇ ଗୋଟିଏ ବିଦେଶୀ କମ୍ପାନୀକୁ ଦିଆ ହେବାର ସ୍ଥିର କରାଗଲା।

ମାଇନିଂ ବୋର୍ଡ଼ର ମିଟିଂ ଶେଷ ହେବାର ଦୁଇଦିନ ଅତିବାହିତ ହୋଇଥିଲେ ମଧ୍ୟ ମିଃ ରଘୁନନ୍ଦନ ଦିଲ୍ଲୀରୁ ଫେରିନଥିଲେ। ବାରିଷ୍ଟର ରାୟଙ୍କ ଘରେ ଚାମେଲୀକୁ ପାଇଲି

ଦିନେ ରାତିରେ

ନାହିଁ। ଗୋଟାଏ ଜରୁରୀ କାମରେ ତାକୁ ପ୍ରଦେଶ ବାହାରକୁ ପଠାଇଥିବା କଥା ବାରିଷ୍ଟର ରାୟ କହିଲେ।

ପ୍ରଫେସର ଶାସ୍ତ୍ରୀଙ୍କ ଦେଖା ପାଇଲି ନାହିଁ। ସେ ମଧ୍ୟ କୁଆଡ଼େ ପ୍ରଦେଶ ବାହାରକୁ ଯାଇଥିଲେ।

ଘରୋଇ ବିଭାଗ ମନ୍ତ୍ରୀ ରଜନୀବାବୁଙ୍କୁ କୌଣସି ଆଶାଜନକ ଉତ୍ତର ଦେଇପାରିଲି ନାହିଁ। ଭାବିଥିଲି, ମାଇନିଂ ବୋର୍ଡ଼ର ମିଟିଂ ପରେ ବିଶେଷ ଗୋଟାଏ କିଛି ବଡ଼ ଘଟଣା ଘଟିବ, ଯାହାକୁ କେନ୍ଦ୍ର କରି ମୁଁ ଅଳ୍ପ ସମୟ ଭିତରେ ଖୁବ୍ ଆଗେଇ ଯାଇପାରିବି। କିନ୍ତୁ ଦେଖୁଛି...

ପୁଣି ଆଜିର ସମ୍ବାଦପତ୍ରଟା ମୋ ପ୍ରାଣରେ ଆଶାର ସଞ୍ଚାର କରେଇଲା। ଦିଲ୍ଲୀରୁ ମାଲକାନ ଗିରିର ଖନନ ଯୋଜନା ଫାଇଲ୍‌ଟି ଚୋରି ଯାଇଛି। ସେଥିରେ ଜର୍ମାନୀର ଖଣି ବିଶେଷଜ୍ଞଙ୍କ ରିପୋର୍ଟ ଥିଲା। ତା'ଛଡ଼ା ଯେଉଁ କମ୍ପାନୀକୁ ଖଣି ଖନନର ଦାୟିତ୍ୱ ଦିଆହେଲା, ସେ କମ୍ପାନୀର ବିଶେଷଜ୍ଞମାନେ ଆଗରୁ ଆସି ଖଣି ପରିଦର୍ଶନ କରି ଯୋଉ ନକ୍ସା ପଠାଇଥିଲେ ଓ ଯେଉଁ ରିପୋର୍ଟ ଦେଇଥିଲେ, ସବୁଯାକ ଗୋଟାଏ ଫାଇଲ୍‌ରେ ଥିଲା। ସବୁଯାକ ଚୋରି ହୋଇଯାଇଛି।

ତା'ହେଲେ ଏ ଚୋରି ମୂଳରେ ନିଶ୍ଚୟ ପୂର୍ବୋକ୍ତ ହତ୍ୟା ଘଟଣାଗୁଡ଼ିକ ଜଡ଼ିତ। ତେବେ କ'ଣ ମୋ ଅନୁମାନର ସତ୍ୟତା ମୁଁ ପ୍ରମାଣିତ କରିପାରିବି ?

ଗଭୀର ରାତିରେ ମୁଁ ଯେତେବେଳେ ଯାଇ ବାରିଷ୍ଟର ରାୟଙ୍କ ଘରେ ପହଞ୍ଚିଲି, ଘରଟା ମୋ ମନଠାରୁ ଆହୁରି ଅନ୍ଧକାର ଜଣା ପଡୁଥିଲା। ଆଶ୍ଚର୍ଯ୍ୟ! କେହି କ'ଣ ରାତିରେ ଏଠାରେ ରୁହନ୍ତି ନାହିଁ? ବହୁତ ବେଳଯାଏ ଗୋଟାଏ ଉହାଡ଼ିଆ ଜାଗାରେ ଠିଆ ହୋଇ ରହିଲି। ନିସ୍ତବ୍ଧ। ତଥାପି ଆଶା ଥିଲା। ଆଉ ଏକ ପ୍ରତୀକ୍ଷାରେ ସାର୍ଥକତା ମୁଁ ଉପଲବ୍ଧି କରୁଥିଲି।

ହଠାତ୍ ଦେଖିଲି, ବାରିଷ୍ଟର ରାୟଙ୍କ ବୈଠକଖାନାରେ ଗୋଟିଏ ନୀଳ ଆଲୋକ ଜଳି ଉଠିଲା। ଖୁବ୍ ଅସ୍ପଷ୍ଟ। କବାଟ ଫାଙ୍କ ବାଟେ ଅନେଇ ଦେଖିଲି, କିଏ ଜଣେ କ'ଣ ଖୋଜୁଚି। ଦେହସାରା କଳା ପୋଷାକରେ ଆବୃତ। ପୁଣି ଆଲୋକଟା ଦପ୍‌କିନା ଲିଭିଗଲା। ଆଉ ମୁଁ କିଛି ଦେଖିପାରିଲି ନାହିଁ। ଭାବିଥିଲି ସେଇ କଳା ପୋଷାକ ପରିହିତ ଲୋକଟି ହୁଏତ ଏଇବାଟେ ବାହାରିବ, ତା'ପରେ ମୁଁ ତାକୁ ଅନୁସରଣ କରିବି। ସବୁ ପ୍ରତୀକ୍ଷା ବୃଥା ହେଲା। ସେ ଆଉ ସେ ଘରୁ ବାହାରିଲା ନାହିଁ। ଅନେଇ ଅନେଇ ପ୍ରାୟ ଘଣ୍ଟାଏ ପରେ ମୁଁ ନିରାଶ ହୋଇ ଫେରିଲି।

ତା'ହେଲେ ମୋ ଅନୁମାନ କ'ଣ ସତ୍ୟ? ମୋ ଘରକୁ ଏଇଭଳି ଜଣେ କଳା ପୋଷାକ ପରିହିତ ଲୋକ ଯାଇଥିଲା। ମୁଁ ଅନୁମାନ କରିଥିଲି ତାହା ବାରିଷ୍ଟର ରାୟଙ୍କ କର୍ମ। କିନ୍ତୁ ବର୍ତ୍ତମାନ ଯେ ସବୁ ଓଲଟପାଲଟ ମନେ ହେଉଚି। ତାଙ୍କ ଘରେ ସେ ନିଜେ କ'ଣ ଖୋଜୁଛନ୍ତି ନା ଖୋଜାଉଛନ୍ତି? ପୁଣି ଛଦ୍ମବେଶରେ !! ତା' ହେଲେ ବୁଝିବାକୁ ହେବ ବାରିଷ୍ଟର ରାୟ ଏ ସବୁ ଘଟଣା ସହିତ ମୋଟେ ସଂପୃକ୍ତ ନୁହନ୍ତି।

ଚାମେଲୀ ସଙ୍ଗେ ଆଉ ଦେଖା ହୋଇନାହିଁ। ବାରିଷ୍ଟର ରାୟଙ୍କ ବଦଳରେ ତାଙ୍କ ଘରେ ପ୍ରଫେସର ଶାସ୍ତ୍ରୀ ଦେଖାହେଲେ। ବାରିଷ୍ଟର ରାୟ ଦୁଇଦିନ ପରେ ଆସିବେ ବୋଲି ପ୍ରଫେସର ଶାସ୍ତ୍ରୀ କହିଲେ। ଆଶ୍ଚର୍ଯ୍ୟର କଥା, ସେଇ କଳା ବିରାଡ଼ିଟା ସେ ଘରେ ବୁଲୁଥିଲା। ଏଥର କିପରି ବାରିଷ୍ଟର ରାୟ ତାକୁ ସଙ୍ଗରେ ନ ନେଇ ଛାଡ଼ିଗଲେ?

ଦିନେ ରାତିରେ

ପ୍ରଫେସର ଶାସ୍ତ୍ରୀ କ'ଣ ଗୋଟାଏ ଧ୍ୟାନ ସହକାରେ ପଢୁଥିଲେ। କହିଲେ: କାଲି କ୍ଲାସରେ ଲେକଚର ପାଇଁ ପ୍ରସ୍ତୁତ ହେଉଛି।

ମୁଁ ତାଙ୍କ ମନର ଭାବ ବୁଝିପାରି ଫେରିଆସିଲି। ବିରାଡ଼ିଟା ମୋ ପଛେପଛେ ଶିଡ଼ିଯାଏ ଚାଲିଆସିଥିଲା। ମୁଁ ତାକୁ ଆସିବା ପାଇଁ ଈଶାରା ଦେଇଥିଲି ମଧ୍ୟ। କିନ୍ତୁ ହଠାତ୍ କି ଜାତୀୟ ଶବ୍ଦ ମୋ କାନରେ୨ ବାଜିଲା। ବୁଲି ଅନେଇଲା ବେଳକୁ ବିରାଡ଼ିଟା ଲେଉଟି ଧାଇଁ ପଳାଉଛି।

ପୁଣି ରଜନୀ ବାବୁ ଫୋନ୍ କରିଥିଲେ। ଆଜି ମଧ୍ୟ କୌଣସି ଆଶାଜନକ ଉତ୍ତର ଦେଇପାରିଲି ନାହିଁ।

ସବୁଠୁ ଆଶ୍ଚର୍ଯ୍ୟର କଥା, ମାଇନିଂ ବୋର୍ଡ଼ର ମିଟିଂ ଆଜକୁ ଅଠଦିନ ହେବ ଶେଷ ହୋଇଥିଲେ ସୁଦ୍ଧା ମିଃ ରଘୁନନ୍ଦନ ଏ ଯାଏ ଫେରି ନାହାନ୍ତି। ସରକାରୀ ମହଲରୁ ବି ତାଙ୍କର କୌଣସି ଖବର ମିଳୁନାହିଁ। କେହି ତାଙ୍କ ସମ୍ବନ୍ଧରେ କୌଣସି ଖବର ଦେଇପାରୁନାହାନ୍ତି।

ରାତିଅଧରେ ମୋ କବାଟଟା ଧଡ଼ଧାଡ଼ ହୋଇ କମ୍ପି ଉଠିଲା। ମୁଁ ଅସ୍ତବ୍ୟସ୍ତ ହୋଇ କବାଟ ଫିଟେଇ ଦେଇ ଦେଖିଲି, ମିଷ୍ଟର ଅଗରବାଲାଙ୍କ ଚାକରଟା ଗୋଟିପଣ ଥରୁଛି। ମୋତେ ଦେଖିଲାକ୍ଷଣି ସେ ଜାବୁଡ଼ି ଧରି କହିଲା: ବଞ୍ଚାଅ ବାବୁ, ବଞ୍ଚାଅ। ଭୂତ, ଗୋଟାଏ କଳାଭୂତ !

ମୁଁ ପ୍ରଥମେ କିଛି ବୁଝିପାରିଲିନାହିଁ। ତା'ପରେ ତାକୁ ନେଇ କବାଟ କିଳି ସୁସ୍ଥ କରାଇଲି। ପଚାରିଲି।

ସେ କହିଲା: ପ୍ରାୟ ତିନି ଚାରିଦିନ ହେବ ବାବୁ ଭୂତ ରୂପରେ ଆସୁଛନ୍ତି। ଘରଯାକ ବୁଲି କ'ଣ ଖୋଜୁଛନ୍ତି। ଫେରେ ରାତି ପାହିବା ଆଗରୁ ପଳାଉଛନ୍ତି।

ମୁଁ ତାକୁ ପଚାରିଲି, ତୁ ତୋ ବାବୁଙ୍କୁ ଚିହ୍ନିପାରିଚୁ ?

ସେ ଆଖି ତରାଟି କହିଲା, ଆଜ୍ଞା ତାଙ୍କର କ'ଣ ଆଉ ଦେହ ଅଛି ଯେ, ମୁଁ ଚିହ୍ନିବି ! ଖାଲି ଗୋଟାଏ କାଳିଆ କାଳିଆ ଛାଇ ମୁଁ ଦେଖୁଛି। ସକାଳୁ ବିଛଣା ପତ୍ର, କାଗଜପତ୍ର ଝେଳେଇ ହୋଇ ପଡ଼ିଥିବାର ମୁଁ ଦେଖୁଛି। କାଲି ମୋ ଘର ଭିତରକୁ ପଶିଥିଲେ। ମୋ ତଣ୍ଟି ଚିପିଦେଇ ଥାଆନ୍ତେ ବାବୁ, ମୁଁ ଖାଲି ଗୋଟାଏ ଖଟତଳକୁ ଗଳି ଯାଇ ବଞ୍ଚିଗଲି। ସେ ମୋ ଜୀବନ ରଖିବେ ନାହିଁ ବାବୁ, ମୁଁ ଜାଣି ଜାଣି ତାଙ୍କୁ....

ସେ ଯେମିତି ପୁଣି ଗୋଟାଏ ଭୂତ ଦେଖିଲା ପରି ଅଟକି ଗଲା। ମୁଁ ତାକୁ ଆଶ୍ୱାସନା ଦେଲି। କହିଲି, ମୁଁ ଜାଣେ, ତୁ ମିଃ ଅଗରବାଲାଙ୍କ ହତ୍ୟା ସମ୍ବନ୍ଧରେ ସବୁ କଥା ଜାଣିଛୁ।

ଅଥଚ ଲୁଚାଉଚୁ। ତୁ ଯେତେଦିନ ଯାଏ ନ କହିବୁ, ମିଃ ଅଗରବାଲା ତୋତେ ଛାଡ଼ିବେ ନାହିଁ।

ଲୋକଟା ଆହୁରି ଜୋରରେ କମ୍ପିବାକୁ ଲାଗିଲା। କହିଲା: ମୁଁ ନିୟମ କରି କହୁଛି ମୁଁ କିଛି ଜାଣିନାହିଁ। ଖାଲି ଏତିକି ଅପରାଧ କରିଛି, ରଘୁନନ୍ଦନ ବାବୁ ସେଦିନ ମୋ ପାଖକୁ ଆସିଥିଲେ। ଅନେକବେଳଯାଏ କ'ଣ କଥାବାର୍ତ୍ତା ହେଲା। ଗଲାବେଳେ ମତେ ପଦାକୁ ଡାକି ଆଣି ମୋ ହାତରେ ସାତଆଠଟା ଦଶଟଙ୍କିଆ ନୋଟ୍ ଦେଇ କହିଲେ: ମୁଁ ଆଜି ଏଠାକୁ ଆସିଥିଲି ବୋଲି ମୋଟେ କାହାରି ଆଗରେ କହିବୁ ନାହିଁ। ମୋ ଆସିବା କଥା ତୋ'ଛଡ଼ା କେହି ଆଉ ଜାଣନ୍ତି ନାହିଁ। ତୋତେ ଆହୁରି ଟଙ୍କା ଦେବି। ଗଲାବେଳକୁ ମୋ ହାତରେ ଗୋଟିଏ ଛୋଟ ଶିଶି ଦେଇଗଲେ; କହିଗଲେ, ତୋ ବାବୁ ଶୋଇଗଲେ ଏଇ ଶିଶିରୁ ଦି'ଚାରି ବୁନ୍ଦା ଓଷଦ ତାଙ୍କ ବେକ ପାଖରେ ଛିଞ୍ଚିଦେବୁ। ମୁଁ କ'ଣ ଏତେ କଥା ଜାଣିଥିଲି ଆଜ୍ଞା। ସେ ମୋତେ ଏଇଠି ଦାନା ଜୁଟେଇ ଦେଇଥିଲେ। ତାଙ୍କରି କୃପାରୁ ମୁଁ ଏଠି ଚାକିରି ପାଇଥିଲି। ତାଙ୍କ କଥା ନ ରଖନ୍ତି କେମିତି।

ସେ ଏତିକି କହି ରହିଗଲା। ତା'ପରେ ମୁଁ ପଚାରିଲି: ସେଉଠୁ କ'ଣ ହେଲା।

ତା' ଆଖି ଛଳଛଳ ହେଇ ଆସିଲା, ସେ କହିଲା: ବାବୁ ଶୋଇ ପଡ଼ିଲେ। ରାତି ସେତେବେଳକୁ ଦି'ଟା ହେବ। ମୋର ଔଷଧ କଥା ମନେପଡ଼ିଲା, ମୁଁ ଠିପି ଖୋଲି ଯିମିତି ଦି'ଚାରି ବୁନ୍ଦା ତାଙ୍କ ଉପରେ ଛିଞ୍ଚି ଦେଇଚି, ଆଉ କ'ଣ କହିବି ଆଜ୍ଞା! ଗୋଟାଏ କଳା ବାଘ ଅନ୍ଧାର ରାତିରେ ତା ଆଖି ଖାଲି ଜଳୁଥାଏ। କୋଉଠି ଥିଲା ଆସି ବାବୁଙ୍କୁ ଘାଏଁ କିନା ମାଡ଼ି ବସିଲା। ଡରରେ ମୁଁ ଯାଇ ମୋ ଘରେ କବାଟ କିଳି ପଶିଲି। ଖାଲି ମୋ ଦେହ ଗୋଟିପଣେ କମ୍ପୁଥାଏ।

ତା' ତଣ୍ଟି ଶୁଖି ଯାଇଥିଲା। ମୁଁ ଗିଲାସେ ପାଣି ଆଣି ଦେଲି। ପିଇସାରି ଖାଲି ଘନଘନ ନିଃଶ୍ୱାସ ପକେଇଲା।

କଳାଭୂତ! କିଏ ସେ ସେ? ମୋ ଘରେ ମୁଁ ତାକୁ ଭେଟିଥିଲି, ପୁଣି ଭେଟିଲି ବାରିଷ୍ଟର ରାୟଙ୍କ ଘରେ, ପୁଣି ସେ ପହଞ୍ଚିଲାକ୍ଷଣି ଅଗରବାଲାଙ୍କ ଘରେ। ଯା'ହେଉ, ସେ ଅପକାର ଯାହା କରୁ ପଛେ, ଗୋଟାଏ ବିଶେଷ ଉପକାର କରିଛି। ଏଇସବୁ ହତ୍ୟା ମୂଳରେ ଯେ ମି: ରଘୁନନ୍ଦନ ପଞ୍ଚବାଗୀଶମ୍ ଅଛନ୍ତି, ଆଉ ବାରିଷ୍ଟର ରାୟଙ୍କ କନ୍ୟା ବିରାଡ଼ି ଯେ ନିଜେ ହତ୍ୟାକାରୀ, ତା'ର ପ୍ରମାଣ କରେଇ ଦେଇଛି। କିନ୍ତୁ ବାରିଷ୍ଟର ରାୟଙ୍କ ଘରେ ମୁଁ କାହିଁକି କଳାଭୂତ ଦେଖିଲି? ବାରିଷ୍ଟର ରାୟ ବା ଗଲେ କୁଆଡ଼େ? ଆଉ ଏ ଘଟଣାର ନାୟକ ପଞ୍ଚବାଗୀଶମ୍ ବା କାହାନ୍ତି? ତା'ହେଲେ ସେ କ'ଣ ନିରୁଦ୍ଦିଷ୍ଟ?

ଦିନେ ରାତିରେ

ରାତିରେ ମୁଁ ଅଗରବାଲାଙ୍କ ଘରକୁ ଯାଇ ତାଙ୍କ ଚାକର ସହିତ ଗୋଟାଏ ଖଟତଳେ ଶୋଇ ରହିଲି। ବହୁତ ରାତିଯାଏ ଛାରପୋକ ଆଉ ମଶାଙ୍କ ଉପଦ୍ରବ ସହ୍ୟ କରିବାକୁ ହେଲା। ତା'ପରେ କଳାଭୂତ ଆସିଲା। ମୁଁ ଦେଖିଲି। ସେ ଯେମିତି ଏ ଘର ସହିତ ବିଶେଷ ଭାବରେ ପରିଚିତ। ଅଗରବାଲାଙ୍କ ପଲଙ୍କ ଉପରକୁ ଚଢ଼ିଯାଇ; ଗୋଟାଏ ତୈଳଚିତ୍ର ପଛ ପଟରେ ହାତ ଭରିଦେଲା। କଣଟାଏ ଟାଣିନେଇ ସିଧା ବାହାରିଗଲା ଘରୁ। ମୁଁ ତା'ପଛେପଛେ ଚାଲିଲି। ସେ ଚାଲୁଥିଲା, ମୁଁ ସାମାନ୍ୟ ଦୂରତା ରକ୍ଷା କରି ଚାଲୁଥିଲି।

ସେ ଯାଇ ପ୍ରଥମେ ଗୋଟାଏ ପୁରୁଣା ଭଙ୍ଗାକୋଠା ଭିତରେ ପଶିଲା। କେତେ କାଳର ପରିତ୍ୟକ୍ତ କୋଠାଟା। କାନ୍ଥର ଇଟା ଖସିପଡ଼ିଲାଣି। କୋଉଠି କୋଉଠି କାନ୍ଥ ଭୁଶୁଡ଼ି ପଡ଼ିଛି। ସେଇ କୋଠା ପାରିହୋଇ ଆଉ ଗୋଟାଏ କୋଠା ଦୁଆରେ ଯାଇ ପହଞ୍ଚିଲା। ସେଇଟା କିନ୍ତୁ କୌଣସି ଏକ ସମ୍ଭ୍ରାନ୍ତ ଲୋକର କୋଠାପରି ମନେହେଉଥିଲା। କଳାଭୂତଟା ସେଇ କୋଠା ଦୁଆରେ ଠିଆ ହୋଇ ଖଡ୍ ଖଡ୍ କଲା, ଦରବାନ ଆସି ଖୋଲିଦେଲା।

କଳାଭୂତଟା ତା'ରି ଭିତରେ ପଶିଗଲା।

କଳାଭୂତ !

ଅଜୟ ଚିତ୍କାର କରି ଉଠିଲା। ଡାଇରିଟା ତା' ହାତରୁ ଖସି ପଡ଼ିଲା। ସେ ସେତେବେଳଯାଏ ଡାଇରିଟା ପଢୁଥିଲା। କିନ୍ତୁ ଡାଇରିର କଳାଭୂତଟା ଯେ ହଠାତ୍ ଆସି ତା' ଆଗରେ ଠିଆହୋଇପଡ଼ିବ, ଅଜୟ ସେ କଥା ସ୍ୱପ୍ନରେ ସୁଦ୍ଧା ଭାବିନଥିଲା।

କଳାଭୂତଟା ଯଥା ସମ୍ଭବ ଶୀଘ୍ର ଡାଇରିଟା ତଳୁ ଗୋଟେଇ ଉଠେଇ ଆଣିଲା। ତା' ଭିତରର ନକ୍ସାଟା ତେଳ ଗଳି ପଡ଼ିଲା। ସେ ସେଇଟିକୁ ଗୋଟେଇ ନେଇ ମୁହଁରୁ କଳା କନା ଖଣ୍ଡିକ ଖୋଲି ପକେଇଲା। ଅଜୟ ସ୍ତବ୍ଧ ହୋଇ ଦେଖିଲା, ତା' ଆଗରେ ଦରବାନ୍ ଠିଆ ହୋଇଛି। ଅଜୟ ଗୋଟିପଣ ଥରୁଥିଲା।

ଦରବାନ ପୁଣି ମୁହଁରେ କଳା କନାଟା ବାନ୍ଧି ଦେଇ ଅଜୟ ହାତକୁ ଗୋଟାଏ ଚାବି ବଢ଼େଇ ଦେଇ ଆଖି ପିଛୁଡ଼ାକେ ସେଠାରୁ ଅଦୃଶ୍ୟ ହୋଇଗଲା। ଅଜୟ ଥରୁଥିଲା। ଚାବିଟା ତା' ହାତରୁ ଗଳିପଡ଼ିଲା। ଯେତେବେଳେ ସେ ନିଜକୁ ପ୍ରକୃତିସ୍ଥ କରି ଚାବିଟି ତଳୁ ଉଠାଇଲା, ଫାଟକ ପାଖରେ ଗୋଟାଏ ମଟରଗାଡ଼ି ଅଟକିବାର ଶବ୍ଦ ପାଇଲା। ସେ ଆଗପଛ କିଛି ଭାବି ନ ପାରି ଧାଇଁଗଲା ଫାଟକ ପାଖକୁ।

ପଛକୁ ପଛ କେତେଖଣ୍ଡ ପୋଲିସ ଭ୍ୟାନ ଆସି ଜମା ହୋଇଗଲା। ଅଜୟ ଫାଟକ ଚାବି ଫିଟେଇ ଦେଲା। ପୋଲିସ ଫୋର୍ସ ଧଡ୍‌ଧାଡ୍ ଡେଇଁପଡ଼ି ଭିତରକୁ ପଶିଲେ। ପୋଲିସ ଅଫିସରଙ୍କୁ ଅଜୟ ହାତ ଠାରି ଡାକି ଆଗେ ଆଗେ ଦଉଡୁଥିଲା। ପୋଲିସ ଫୋର୍ସ କୋଠାଟାକୁ ଘେରାଉ କରିନେଲେ। ଅଜୟ ପଛେ ପଛେ ପୋଲିସ୍ ଅଫିସର ଧାଇଁଲେ।

ଅଜୟ ପ୍ରଥମେ ସେମାନଙ୍କୁ ଅଣ୍ଡରଗ୍ରାଉଣ୍ଡକୁ ଘେନିଗଲା। କିଟିକିଟିଆ ଅନ୍ଧାର। ପୋଲିସ୍ ଅଫିସରଙ୍କ ହାତର ଟର୍ଚ୍ଚଟା ଜଳି ଉଠିଲା। ଏ ଘର, ସେ ଘର, ଚାରିଆଡ଼େ ପୋଲିସ ଫୋର୍ସ ଖେଦିଗଲେ। କିନ୍ତୁ କିଏ କାହିଁ? ସବୁ ନିସ୍ତବ୍ଧ। ଯେମିତି ମୃତ୍ୟୁର କଳାଛାଇ ଘରଯାକ ଘୂରି ବୁଲୁଛି।

ଅଜୟ ଖାଲି କଟମଟ କରି ପୋଲିସ ଅଫିସରଙ୍କ ମୁହଁ ଚାହିଁଥିଲା। ଯେଉଁମାନେ ଉପର ମହଲାକୁ ଯାଇଥିଲେ, ସେମାନେ ଫେରିଆସି ଜଣେଇଲେ ଗୋଟିଏ ହେଲେ ଲୋକ ନାହାନ୍ତି। ଅଜୟ କିଛି ବୁଝିପାରୁନଥିଲା। କିଛି ସମୟ ପୂର୍ବରୁ ଯେଉଁଠି ବହୁତ ଲୋକଙ୍କର ସମାଗମ ସେ ଦେଖିଥିଲା, ବର୍ତ୍ତମାନ ସବୁ ଶୂନ୍‌ଶାନ୍। ଏହା କିପରି ସମ୍ଭବ! ଏଣେ ପୁଣି ଫାଟକ ବନ୍ଦ।

ଅଜୟ ଆଉ ଟିକେ ଆଗକୁ ଯାଇ ଦେଖିଲା, ଯେଉଁ ଲୋକଟିର ହାତ ପାଦ ବନ୍ଧା ହୋଇ ତାକୁ ଶାସ୍ତି ଦିଆ ହେଉଥିଲା, ସେ ଲୋକଟି ସେମିତି ବନ୍ଧା ହୋଇପଡ଼ିଛି। ସେ ପୋଲିସ୍ ଅଫିସରଙ୍କ ଦୃଷ୍ଟି ଆକର୍ଷଣ କରେଇଲା। ସେ ଚିତ୍କାର କରି ଉଠିଲେ! କିଏ, ମିଃ ରଘୁନନ୍ଦନ ପଞ୍ଚବାଗୀଶମ୍ ? ହାତମାରି ଦେଖିଲେ ସମସ୍ତ ଶରୀର ଶୀତଳ ହୋଇଯାଇଛି। ଉପରୁ ଥଣ୍ଡାପାଣି ନିଗୁଡୁଚି। ଚାହିଁ ଦେଖିଲେ ମୁଣ୍ଡାଏ ବରଫ ତରଳୁଚି।

ହଠାତ୍ ଅଜୟ ଚିତ୍କାର କରି ଉଠିଲା।

ପୋଲିସ ଅଫିସର ଜଣକ ସେଇଆଡ଼େ ଦଉଡ଼ିଲେ। ତାଙ୍କ ହାତର ଟର୍ଚ୍ଚଟା ଯେଉଁଠି ଅଟକିଗଲା, ସେ ଦେଖିଲେ ଗୋଟାଏ ଭୀଷଣାକୃତି ବିରାଡ଼ି। ଠିକ୍ ତା' ସାମନାରେ ଜଣେ କିଏ ହାତ ଗୋଡ଼ ଓ ମୁଖ ଗୋଟାଏ ଖୁଣ୍ଟରେ ବନ୍ଧା ହୋଇ ଠିଆ ହୋଇଛି। ସେ ଭୀଷଣକାୟ ବିରାଡ଼ିଟା ତା' ଆଡ଼େ କଟମଟ କରି ଚାହିଁଚି। ଏତେ ଲୋକଙ୍କର ଆଗମନରେ ସେ ଟିକିଏ ହେଲେ ବିଚଳିତ ହେଉନାହିଁ।

ଅଜୟ ଚିତ୍କାର କରି ଉଠିଲା: ଗୁଳି ଚଳାନ୍ତୁ, ଗୁଳି ଚଳାନ୍ତୁ।

ପୋଲିସ ଅଫିସର କାହାକୁ ଗୁଳି କରିବେ କିଛି ବୁଝି ପାରିଲେ ନାହିଁ। ସେ ନିର୍ଦ୍ଦେଶ ଦେଲେ ବନ୍ଧନ ଅବସ୍ଥାରେ ଥିବା ମହିଳାଟିକୁ ବନ୍ଧନମୁକ୍ତ କରିଦେବା ପାଇଁ।

ଅଜୟ ଅସ୍ପଷ୍ଟ ସ୍ୱରରେ କହି ଉଠିଲା: କିଏ ଅଜନ୍ତା।

ସେତେବେଳକୁ ଅଜନ୍ତା ବନ୍ଧନମୁକ୍ତ ହୋଇ ସାରିଥିଲା। ସମଗ୍ର କୋଠାଟାରେ ଆଲୋକ ଜଳିଥିଲା। ଘରୋଇ ବିଭାଗ ମନ୍ତ୍ରୀ ରଜନୀବାବୁ ଓ ଏସ୍.ପି ଆସି ପହଞ୍ଚି ଯାଇଥିଲେ। ଅଜନ୍ତା ଅଚେତ ଅବସ୍ଥାରେ ତଳେ ଶୋଇଥିଲା। ପୋଲିସ୍ କର୍ମଚାରୀମାନେ ଆଉ କେତୋଟି ମୃତଦେହ ଆଣି ତଳେ ଏକାଠି ଥୋଇଥିଲେ। ତିନୋଟି ପ୍ଲାଷ୍ଟିକ୍ ମୁଖା ଆଣି ପୋଲିସ୍ ଏସ୍.ପି.ଙ୍କ ସାମ୍ନାରେ ରଖାହେଲା।

ଅଜୟ ପୁଣି ଥରେ ଚିତ୍କାର କରି ଉଠିଲା। ଏସ୍.ପି. ଅଜୟ ଆଡ଼େ ଚାହିଁ ପଚାରିଲେ: ବ୍ୟାପାର କ'ଣ ?

ଅଜୟ ମୁଖା ଗୁଡ଼ିକ ଆଡ଼କୁ ଆଙ୍ଗୁଳି ଦେଖାଇ ଚିହ୍ନେଇ ଦେଲା, ପ୍ରଥମଟା ଡାକ୍ତର ସୁନ୍ଦରମ୍‌ଙ୍କର, ଦ୍ୱିତୀୟଟା ପ୍ରଫେସର ଶାସ୍ତ୍ରୀଙ୍କର ଆଉ ତୃତୀୟଟା ଇସ୍ ସେଇ ବୀଭତ୍ସ ମୁହଁଟା... ସେଇଟା ବୋଧହୁଏ ଏମାନଙ୍କ ମାଷ୍ଟରଙ୍କର।

ରଜନୀ ବାବୁ ଏସ୍.ପିଙ୍କୁ ପଚାରିଲେ: ଯଦୁବାବୁ କାହାନ୍ତି ?

ଅଜୟ ହଠାତ୍ କହି ଉଠିଲା: ଯଦୁବାବୁ ? ଯଦୁବାବୁ କିଏ ? ସେଇ ବୁଢ଼ା ଦରବାନ ?

ଏସ୍.ପି. କହିଲେ: ହଁ, ହଁ, ଆପଣ ତାଙ୍କୁ ଦେଖିଛନ୍ତି ?

ଅଜୟ ଟିକିଏ ଗମ୍ଭୀର ହୋଇ କ'ଣ ଚିନ୍ତା କରି କହିଲା: ମୁଁ କ'ଣ ଭାବୁଛି ଜାଣନ୍ତି ? ସେଇ ବୁଢ଼ା ଦରବାନଟାହିଁ ନାଟର ଗୋବର୍ଦ୍ଧନ। ମୁଁ ଏ କୋଠା ଭିତରେ ତାକୁ ସବୁଠି ଦେଖିଛି। ଶେଷରେ ସେଇ ମୋତେ ଏ ଫାଟକ ଚାବି ଦେଇ କୁଆଡ଼େ ଅଦୃଶ୍ୟ ହୋଇଗଲା।

ରଜନୀବାବୁ ଅଜୟ ଆଡ଼େ ଚାହିଁ ପଚାରିଲେ: ଆପଣ ?

ଅଜୟ କଣ କହି ଆସୁଥିଲା, ତେଣେ ଅଜନ୍ତା କର ଲେଉଟାଇ ଉଠି ବସିଲା। ଆଖି ଆଗରେ ଏତେ ପୋଲିସ ଲୋକ ଦେଖି ସେ ବୋଧହୁଏ ଆଖିକୁ ବିଶ୍ୱାସ କରି ପାରୁନଥିଲା। କିଛି ସମୟ ସମସ୍ତଙ୍କ ଆଡ଼େ ନଜର ବୁଲେଇ ଆଣି କହିଲା: ଆପଣମାନେ ବହୁତ ଡେରି କରିଦେଲେ। ଆସନ୍ତୁ ବର୍ତ୍ତମାନ ମଧ୍ୟ ହୁଏତ ସମୟ ଅଛି।

ଅଜନ୍ତା ଉଠିଲା। ଟଳି ଟଳି ସେ ଯାଇ ଗୋଟାଏ ଦୁଆର ଖୋଲିଲା। ଯେଉଁ ଦୁଆରଟାକୁ ସମସ୍ତେ ଦେଖିଥିଲେ ମଧ୍ୟ, ଜାଣିପାରି ନଥିଲେ, ସେଠାରେ ଗୋଟାଏ ଦୁଆର ଅଛି। ସେଇବାଟେ ସମସ୍ତେ ପଦାକୁ ବାହାରିଲେ।

ଅଜନ୍ତା କହିଲା: ଏଇବାଟେ ସେମାନେ ଚାଲିଯାଇଛନ୍ତି। ଆପଣମାନେ ଶୀଘ୍ର ଚାଲନ୍ତୁ। କୁଆଡ଼େ ଗଲେ ମୁଁ ଜାଣିନାହିଁ।

ପୋଲିସ୍ ଭ୍ୟାନ୍ ଗୋଟାଏ ପରେ ଗୋଟାଏ ଛୁଟିବାକୁ ଲାଗିଲା। ଯେଉଁ ଭ୍ୟାନରେ ରଜନୀବାବୁ, ପୋଲିସ୍ ଏସ୍.ପି. ଥିଲେ ଗୋଟାଏ ମଟରସାଇକଲ ଆରୋହୀ ସେଇ

ଦିନେ ରାତିରେ

ଭ୍ୟାନଟାକୁ ହାତ ଦେଖେଇ ଅଟକେଇଲା। ଭ୍ୟାନ୍ ଅଟକିଲା। ଏସ୍.ପି. ପ୍ରଥମେ ମଟର ସାଇକେଲ ଆରୋହୀକୁ ଚିହ୍ନି ପାରିଲେ ନାହିଁ।

ମଟର ସାଇକେଲ ଆରୋହୀ କହିଲା: ଆପଣ ଯେଉଁଠୁ ଫେରୁଛନ୍ତି, ମୁଁ ସେଇ ଭୂତକୋଠିର ବୁଢ଼ା ଦରବାନ।

ରଜନୀବାବୁ ତଳକୁ ଓହ୍ଲେଇ ପଡ଼ି କହିଲେ: ଆରେ ଯଦୁବାବୁ। ମେକ୍‌ଅପ୍‌ଟା ଏଡ଼େ ନିଖୁଣ ହୋଇଛି ଯେ କାହାର ଅବିଶ୍ୱାସ କରିବାର କ୍ଷମତା ନାହିଁ।

ଯଦୁବାବୁ କହିଲେ: ସେ ସବୁ ପରେ। ଅନ୍ତତଃ ଏଇ ମୁହୂର୍ତ୍ତରେ ଆମକୁ ସଦଳବଳେ କୋରାପୁଟ ଯିବାକୁ ହେବ।

: ମାନେ ?

: ହଁ ସେଇଆ। ଆପଣମାନେ ଘଟଣାସ୍ଥଳରେ ଖୁବ୍ ଡେରିରେ ପହଞ୍ଚିଲେ। ମୁଁ ସେମାନଙ୍କ ପଛରେ ଧାଇଁ ଧାଇଁ ମଧ୍ୟ ମୋ ପହଞ୍ଚିବା ଆଗରୁ ଏରୋଡ୍ରମରୁ ପ୍ଲେନ୍ ଛାଡ଼ିଦେଲା।

: ହଁ, ସେମାନଙ୍କର ଚାର୍ଟେଡ୍ ପ୍ଲେନ ରଖା ହୋଇଥିଲା। ସେତକ ମୁଁ ବୁଝିପାରିନଥିଲି।

: କିନ୍ତୁ କୋରାପୁଟରେ ଏରୋଡ୍ରମ୍ ନାହିଁ ?

: ନ ଥିଲେ ବି ସେମାନେ ଲ୍ୟାଣ୍ଡ୍ କରିବେ। ମାତ୍ର ଭାଇଜାଗ ଯିବା ପାଇଁ ପ୍ଲେନ୍ ନେଇଛନ୍ତି। ଶୀଘ୍ର ଆସନ୍ତୁ। ତେଣେ ସବୁ ପ୍ରସ୍ତୁତ ହୋଇରହିଛି। ଏମାନେ ପହଞ୍ଚିଲା ମାତ୍ରେ ସଂଗୃହୀତ ସମସ୍ତ ଇଉରାନିଅମ୍ ବିଦେଶକୁ ପଠେଇବ।

ଇଉରାନିଅମ୍ ?

ଚାଲନ୍ତୁ ବାଟରେ ସବୁ କହୁଛି।

ଏରୋଡ୍ରମ୍‌ରୁ ଦୁଇଖଣ୍ଡ ପ୍ଲେନ୍ ଛାଡ଼ିଲା।

ଯଦୁବାବୁ ଆରମ୍ଭ କଲେ: ମିଃ ଅଗରବାଲା ପ୍ରଭୃତିଙ୍କ ହତ୍ୟାରହସ୍ୟ ଯେପରି ଦିନକୁ ଦିନ ଜଟିଳ ହୋଇଉଠୁଥିଲା, ଆମେ ତ ସମସ୍ତେ ବିବ୍ରତ ହୋଇ ପଡ଼ିଥିଲେ। ସେଇ ତଦନ୍ତରୁ ଦିନେ ଫେରିଆସି ବସାରେ ପହଞ୍ଚିଛି, ମୋ ଚାକର ଗୋଟିଏ କାଗଜ ପ୍ୟାକେଟ୍ ମୋ ହାତକୁ ବଢ଼େଇ ଦେଇ କହିଲା: ସତ୍ୟଶେଖର ବାବୁ ଦେଇଛନ୍ତି। ଖୁବ୍ ଜରୁରୀ।

ମୁଁ ତରତର କରି ଖୋଲି ପକେଇ ଦେଖିଲି, ଖଣ୍ଡିଏ ଚିଠି ଏବଂ ଗୋଟିଏ ଡାଏରି। ଚିଠିରେ ସତ୍ୟଶେଖର ବାବୁ ଲେଖିଥିଲେ, ମିଃ ଅଗରବାଲା ପ୍ରଭୃତିଙ୍କ ହତ୍ୟାରହସ୍ୟ ସମ୍ବନ୍ଧରେ ମୁଁ ଯେତିକି ବାଟ ଆଗେଇଛି, ସବୁ ପୁଙ୍ଖାନୁପୁଙ୍ଖ ଭାବେ ଲିପିବଦ୍ଧ କରୁଛି,

ଦିନେ ରାତିରେ

ଆଉ ମୋର ଧାରଣା ମୋ ଅନୁମାନ ସତ୍ୟ। ମୁଁ ଯେଉଁଠୁ ଛାଡ଼ିଛି, ଆପଣ ସେଇଠୁ କାର୍ଯ୍ୟ ଆରମ୍ଭ କରିବେ। ମୁଁ ଏଇ କେସ୍ ସମ୍ବନ୍ଧରେ ଗୋଟାଏ ମୂଲ୍ୟବାନ ତଥ୍ୟ ସଂଗ୍ରହ କରିବା ପାଇଁ ପ୍ରଦେଶ ବାହାରକୁ ଚାଲିଯାଉଛି। ଆପଣଙ୍କ ସଙ୍ଗରେ ଦେଖାହୋଇପାରୁନାହିଁ। ଆଉ ମଧ୍ୟ ଅପେକ୍ଷା କରିବାକୁ ସମୟ ନାହିଁ।

ସତ୍ୟଶେଖର ବାବୁଙ୍କ ଡାଇରି ପଢ଼ି ଅନୁସନ୍ଧାନ କରି ଜାଣିଲି, ସେ ଠିକ୍ ବାଟରେ ଆଗେଇଛନ୍ତି। ଶେଷରେ ଦେଖିଲି ସେଇ ଭୂତକୋଠିଟାରେ କିଛିଦିନ ରହି ସେମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ଦୃଷ୍ଟିଦେବା ଏକାନ୍ତ ପ୍ରୟୋଜନ। ଶେଷରେ ସେଇ କୋଠାର ବୁଢ଼ା ଦରବାନକୁ ଶିଖେଇ ରାତିରେ ତାକୁ ଅନ୍ୟତ୍ର ପଠେଇ, ମୁଁ ତାରି ମେକଅପ୍ ନେଇ ରହିଥିଲି।

ଆପଣ ବୋଧହୁଏ ସେ କୋଠା ତଦନ୍ତ କଲାବେଳେ ତିନିଚାରିଟା ପ୍ଲାଷ୍ଟିକ୍ ମୁଖା ମଧ୍ୟ ପାଇଥିବେ। ସେଗୁଡ଼ିକ ଏପରି ନିଖୁଣ ଭାବରେ ତିଆରି ହୋଇଛି ଯେ, କେହି ଜଣେ ମୁହଁରେ ଲଗେଇ ପଦାକୁ ବାହାରିଲେ ସହଜରେ ତାକୁ ଧରି ହେବନାହିଁ। ଗୋଟିଏ ଲୋକ ସେଠି ଚାରୋଟି ଭୂମିକାରେ ଅଭିନୟ କରୁଥିଲା। ଆଉ ଆଶ୍ଚର୍ଯ୍ୟ ସେଇ ଲୋକଟା। ଯେତେବେଳେ ଯେଉଁ ମୁଖାଟି ପିନ୍ଧେ, ସେତେବେଳେ ତା' ଚାଲି ଚଳନ, କଥା କହିବାର ଢଙ୍ଗ, କଣ୍ଠସ୍ୱର ସବୁ ବଦଳିଯାଏ। ମୁଁ ଜୀବନରେ ଏତେ ଲୋକ ଦେଖିଛି, ସେପରି ଅଦ୍ଭୁତ ଲୋକ କେବେ ଦେଖି ନ ଥିଲି।

ହଠାତ୍ ଦିନେ ସତ୍ୟଶେଖର ବାବୁଙ୍କଠାରୁ ଚିଠି ପାଇଲି, ମାଲକାନାଗିରିରୁ ସୁନା ତ ନୁହେଁ, ଇଉରାନିଅମର ସନ୍ଧାନ ମିଳିଛି ଏବଂ ବାରିଷ୍ଟର ରାୟ ସେ ସମସ୍ତ ତଥ୍ୟ ସରକାରଙ୍କ ଚୋରି ଯାଇଥିବା ଫାଇଲରୁ ପାଇଛନ୍ତି। ଖୁବ୍ ଶୀଘ୍ର ସେମାନେ ସେଠାରେ ଗୋପନରେ ଇଉରାନିୟମ ଖୋଳିନେବା ପାଇଁ କାର୍ଯ୍ୟ ଆରମ୍ଭ କରିଦେବେ। କୌଣସି ଏକ ବିଦେଶୀ ସରକାରଙ୍କର ସମସ୍ତ ଶକ୍ତି ବାରିଷ୍ଟର ରାୟଙ୍କୁ ସାହାଯ୍ୟ କରୁଛି। ଖୁବ୍ ସାବଧାନ।

ତା'ପରେ ସେହି ଭୂତକୋଠିଟା ଉପରେ ମୁଁ କେବଳ ନଜର ରଖିଥାଏ। ତା' ଭିତରେ କେତେ ଯେ ହତ୍ୟାକାଣ୍ଡ ଘଟିଛି, କାହାରି ଜୀବନ ବଞ୍ଚେଇପାରିନାହିଁ। ମୋର ଉଦ୍ଦେଶ୍ୟ ଥିଲା, ସମସ୍ତଙ୍କୁ ଉପଯୁକ୍ତ ସମୟରେ ଗିରଫ କରିବା।

ଆଜି ହଠାତ୍ ଜାଣିଲି, ସେମାନେ ଆଜି ରାତିରେ ଏଠାରୁ ସଦଳବଳେ ଅନ୍ୟତ୍ର ଚାଲିଯିବାକୁ ପ୍ଲାନ କରୁଛନ୍ତି। ଶେଷରେ ସେମାନେ ଚାଲିଯିବା ପରେ ଏଇ ନକ୍ସା ଖଣ୍ଡକରୁ ଜାଣିଲି, ଯା ଭିତରେ ସେମାନେ ମାଲକାନଗିରିରୁ ଯଥେଷ୍ଟ ପରିମାଣରେ ଇଉରାନିଅମ ସଂଗ୍ରହ କରିସାରିଲେଣି ଏବଂ ଆଜି ରାତିରେ ସମସ୍ତ ବିଦେଶକୁ ପଠାଇ ଦିଆହେବ।

X X X X

ପ୍ଲେନ ଧୀରେଧୀରେ ତଳକୁ ଆସିଲା।

ପାଇଲଟ୍ ଜଣାଇଲେ, ଏଇଠି ଓହ୍ଲାଇବାକୁ ହେବ।

ଯେତେବେଳେ ସେମାନେ ତଳକୁ ଓହ୍ଲାଇଲେ, ଠିକ୍ ସେତିକିବେଳେ ଉ଼ଲେ ଦେଖାଗଲା ଗୋଟାଏ ଜାଗାରେ ନିଆଁ ଜଳୁଚି। ଏମାନେ ଦେଖିଲେ ଖଣ୍ଡିଏ ପ୍ଲେନ୍ ନିଆଁ ଲାଗି ପ୍ରାୟ ଧ୍ୱଂସସ୍ତୂପରେ ପରିଣତ ହେବାକୁ ବସିଲାଣି। କେବଳ ଦୁଇଜଣ ଲୋକଙ୍କର ସାମାନ୍ୟ ସୂଚନା ମିଳିଲା। ଅନ୍ୟ କାହାରି କୌଣସି ଚିହ୍ନବର୍ଣ୍ଣ ଦିଶିଲା ନାହିଁ।

ତେବେ କ'ଣ ସମସ୍ତେ ଜଳି ଭସ୍ମ ହୋଇ ଯାଇଛନ୍ତି ?

ଯଦୁବାବୁ ଗୋଟିଏ ଦୀର୍ଘଶ୍ୱାସ ପକାଇ କହିଲେ: ଆମ ଅଭିଯାନ ଏପରି ବୃଥା ହେବ ବୋଲି ମୋର ଧାରଣା ନ ଥିଲା। ସେମାନେ ଆଖପାଖରେ ଟର୍ଚ୍ଚ ଜଳେଇ ଖୋଜାଖୋଜି କଲେ। କାହାରି କୌଣସି ସନ୍ଧାନ ମିଳିଲା ନାହିଁ।

ତା'ହେଲେ କ'ଣ ଯଦୁବାବୁଙ୍କର ସବୁ ଶ୍ରମ ପଣ୍ଡ ହେଲା ? ପୋଲିସ୍ ଫୋର୍ସ ବଣ ଜଙ୍ଗଲ ଆଡ଼େଇ ଚାରିଆଡ଼େ ଟର୍ଚ୍ଚ ଫୋକ୍ସ ବୁଲାଉଥିଲେ। ଏସ୍.ପି. ନିଜେ ମଧ୍ୟ ଅନୁସନ୍ଧାନ କରୁଥିଲେ। କିନ୍ତୁ କିଏ କାହିଁ ?

ଗୋଟିଏ ଉହାଡ଼ିଆ ଜାଗାରୁ ଧୀରେଧୀରେ ଛାୟା ମୂର୍ତ୍ତିଟିଏ ଆଗେଇ ଆସୁଥିଲା, ଯଦୁବାବୁ ଦେଖିଲେ। କାହାରିକୁ କିଛି ନ କହି ସେ ଧୀରେଧୀରେ ତା'ରି ପଛରେ ଆଗେଇ ଗଲେ। ଛାୟାମୂର୍ତ୍ତିଟି ହଠାତ୍ ଗୋଟାଏ ଜାଗାରେ ଠିଆ ହୋଇଗଲା। ଇଶାରାରେ ଯଦୁବାବୁଙ୍କୁ ପାଖକୁ ଯିବାକୁ ଜଣେଇଲା।

ଛାୟାମୂର୍ତ୍ତିଟି ସତ୍ୟଶେଖର ରାୟ ଚଉଧୁରୀ। ଯଦୁବାବୁଙ୍କ କାନ ପାଖରେ ଧୀରେ ଧୀରେ କ'ଣ କହି ଅଦୃଶ୍ୟ ହୋଇଗଲା। ଯଦୁବାବୁ ଆଗେଇ ଯାଇ ରଜନୀବାବୁଙ୍କ କାନରେ କ'ଣ କହିଲେ। ସେ ଧୀରେ ଧୀରେ ତଳକୁ ଓହ୍ଲେଇ ଗୋଟିଏ ଉହାଡ଼ିଆ ଜାଗାକୁ ଚାଲିଗଲେ। ଯଦୁବାବୁ ଯାଇ ଏସ୍.ପିଙ୍କ କାନରେ କ'ଣ କହିଲେ।

ଏସ୍.ପି. ଦେଖିଲେ ପୂର୍ବ ଆକାଶରେ କେତେଗୁଡ଼ିଏ ମିଞ୍ଜିମିଞ୍ଜିଆ ବତିଦିଶୁଚି ଏବଂ ଧୀରେ ଧୀରେ ଘୁଁ...ଘୁଁ...ଶବ୍ଦ ଶୁଭୁଛି। ବତିଗୁଡ଼ାକ ଆସ୍ତେଆସ୍ତେ ପାଖେଇ ଆସୁଥିଲା। ଶବ୍ଦଟା ଧୀରେ ଗମ୍ଭୀର ହୋଇଆସୁଥିଲା। ଏମାନେ ଏକ ଲୟରେ ସେଇଆଡ଼େ ଚାହିଁଥିଲେ।

ମାଲକାନଗିରିର କୌଣସି ଏକ ସ୍ଥାନରୁ ଗୋଟାଏ ପ୍ରବଳ ଜ୍ୟୋତି ଝଲସି ଉଠି ପୁଣି ବନ୍ଦ ହୋଇଗଲା, ପୁଣି ଝଲସିଲା, ପୁଣି ବନ୍ଦ ହେଲା, ପୁଣି ଝଲସି ପୁଣି ବନ୍ଦ ହେଲା।

ଦିନେ ରାତିରେ

ଆକାଶମାର୍ଗରେ ଚାରିପାଞ୍ଚଖଣ୍ଡ ପ୍ଲେନ୍ ଚକ୍‌କର କାଟୁଥିଲେ। ଧୀରେଧୀରେ ତଳକୁ ଆସିଲେ। ମାଲକାନଗିରି ଉପରୁ କେତେଗୁଡ଼ିଏ ପାଦଶବ୍ଦ ଧୀରେଧୀରେ ଓହ୍ଲେଇ ଆସିଲା। ତିନିଖଣ୍ଡି ପ୍ଲେନ ତଳକୁ ଖସିଲେ। ଆଉ ଦୁଇଖଣ୍ଡି ପ୍ଲେନ୍ ଆକାଶରେ ଚକ୍‌କର କାଟୁଥିଲେ।

ଏଣିକି ଭାରି ଭାରି ପାଦଶବ୍ଦ ଶୁଭୁଥିଲା। ଚାରିଜଣ କରି ଲୋକ କ'ଣ ଗୋଟାଏ ଗୋଟାଏ ଭାରି ଭାରି ଜିନିଷ ଧରି ମାଲକାନଗିରି ଓପରୁ ଓହ୍ଲେଇ ପ୍ଲେନ୍ ଆଡ଼େ ଆଗଉଥିଲେ।

ହଠାତ୍ ଗୁଡୁମ୍ ଗୁଡୁମ୍ ଶବ୍ଦରେ ବନଭୂଇଁ କମ୍ପି ଉଠିଲା।

ଯଦୁବାବୁ, ରଜନୀବାବୁ ଓ ଏସ୍.ପି. ସେଇଠି ନିର୍ବାକ ହୋଇ ଠିଆ ହୋଇଥିଲେ।

ଆକାଶରେ ଚକ୍‌କର କାଟୁଥିବା ପ୍ଲେନ୍ ଦୁଇଖଣ୍ଡରେ ନିଆଁ ଜଳି ଉଠିଲା। ତଳକୁ ଓହ୍ଲେଇଥିବା ପ୍ଲେନ୍ ତିନିଖଣ୍ଡି ମଧ୍ୟ ଜଳି ଉଠିଲା। ଗୁଡ଼ାଏ ଆର୍ତ୍ତ ଚିତ୍କାରରେ ବନଭୂଇଁ କମ୍ପି ଉଠିଲା। ଏହା ପରି ପ୍ରାୟ ଅଧଘଣ୍ଟା ଅତିବାହିତ ହୋଇଗଲା। ଗୁଳା ବାରୁଦର ଶବ୍ଦ ଆସ୍ତେ ଆସ୍ତେ କମି କମି ଆସିଲା।

ସତ୍ୟଶେଖର ବାବୁ କହିଥିଲେ, ନ ଡାକିଲା ପର୍ଯ୍ୟନ୍ତ ସେମାନେ ସେହି ଗୁମ୍ଫାରୁ କେହି ପଦାକୁ ବାହାରିବେ ନାହିଁ। ତେଣୁ ତିନିଜଣଯାକ କେବଳ ନୀରବ ଦର୍ଶକ ପରି ସବୁ ଦେଖି ଯାଉଥିଲେ।

ପ୍ରାୟ ଅଧଘଣ୍ଟାର ଖଣ୍ଡଯୁଦ୍ଧ ପରେ ସତ୍ୟଶେଖର ବାବୁ ଏମାନଙ୍କୁ ପଦାକୁ ଡାକି ଗୋଟିଏ ଜାଗାରେ ବସାଇଲେ। ରଜନୀ ବାବୁ ସତ୍ୟଶେଖର ବାବୁଙ୍କୁ ଆଲିଙ୍ଗନ କଲେ।

ସତ୍ୟଶେଖର ବାବୁ କହିଲେ: ଏ ପ୍ରଶଂସା ମୋର ନୁହେଁ, ଓଡ଼ିଶାର ଘରୋଇ ବିଭାଗ ମନ୍ତ୍ରୀଙ୍କର। ସେ ଯେପରି ନିର୍ଭୀକ ଭାବରେ ମୋତେ ସାହାଯ୍ୟ କରିଛନ୍ତି, ସେପରି ନ କରିଥିଲେ, ଆମେ ଆଜି ଏହି ଅମୂଲ୍ୟ ସମ୍ପଦ ବଞ୍ଚେଇ ପାରିନଥାନ୍ତେ। ଆମ ଦେଶରୁ ପ୍ରଚୁର ପରିମାଣରେ ଇଉରାନିୟମ ବିଦେଶକୁ ଚାଲିଯାଇ ପୁଣି ଆମର ଧ୍ୱଂସ ପାଇଁ ବ୍ୟବହାର ହୋଇଥାଆନ୍ତା।

ଓଡ଼ିଶାର ଘରୋଇ ବିଭାଗ ମନ୍ତ୍ରୀ ମହାପାତ୍ର ବାବୁ ମଧ୍ୟ ସେଠାରେ ଉପସ୍ଥିତ ଥିଲେ।

ସତ୍ୟ ଶେଖର ବାବୁ କହିଲେ; ଆପଣମାନେ ତ ସମସ୍ତେ ପ୍ରାୟ ସବୁ ଘଟଣା ଜାଣିଛନ୍ତି। ଯେଉଁ ବିଦେଶୀ ସରକାର ଆମର ଅମୂଲ୍ୟ ସମ୍ପଦ ଲୁଟି ନେବା ପାଇଁ ଚକ୍ରାନ୍ତ କରିଥିଲେ, ତାଙ୍କର ସମସ୍ତ ଚକ୍ରାନ୍ତ ଧରା ପଡ଼ିଯାଇଛି। କିନ୍ତୁ ଆମର ଛୁରୀ ଯିଏ ଆମରି ଗଳାରେ ବସାଇବାକୁ ଯାଉଥିଲେ, ସେ ଜଣେ ଆମରି ଭାଇ, ତାଙ୍କୁ ଆପଣମାନେ ଦେଖିଲେ ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ। ମୁଁ ତାଙ୍କୁ ନିରାପଦରେ ଘଣ୍ଟ ଘୋଡ଼ାଇ ରଖିଛି। ଖାଲି ଟିକିଏ ସକାଳ ହୋଇଯାଉ।

ଅଳ୍ପ କେତେଜଣଙ୍କୁ ରହିବା ପାଇଁ କହି ଏସ୍.ପି. ଆଉସମସ୍ତ ଫୋର୍ସଙ୍କୁ ଫେରିଯିବାକୁ ନିର୍ଦ୍ଦେଶ ଦେଲେ।

ଧୀରେଧୀରେ ସକାଳ ହୋଇ ଆସୁଥିଲା। ଧୂଆଁଗୁଡ଼ାକ ଆକାଶରେ ଛାଇଯାଇଥିଲା। ନିଆଁ ଧୂ ଧୂ ହୋଇ ଜଳୁଥିଲା।

ଦିନର ଆଲୋକରେ ରଜନୀ ବାବୁ ଦେଖିଲେ, ବାରିଷ୍ଟର ରାୟଙ୍କ ଗଳା ଗୋଟିଏ ଗଛରେ ମୋଟାଦଉଡ଼ିରେ ବନ୍ଧା ହୋଇଛି ଓ ସେ ଆଖି ବୁଜି ନିରୀହ ଶିଶୁଟି ଭଳି ଛିଡ଼ା ହୋଇଛନ୍ତି।

ସତ୍ୟଶେଖର ବାବୁ ଧୀରେ ଧୀରେ ଆଗେଇ ଯାଇ ବାରିଷ୍ଟର ରାୟଙ୍କ ମୁହଁରୁ ଗୋଟିଏ ପ୍ଲାଷ୍ଟିକ୍ ମୁଖା ଟାଣି ବାହାର କରି ତଳକୁ ଫିଙ୍ଗିଦେଲେ।

ସମସ୍ତଙ୍କ ଆଖି କପାଳରୁ ଉଠିଗଲା।

: କିଏ, ମିଃ ଅଗରବାଲା ?

ସତ୍ୟଶେଖର ବାବୁ ମୃଦୁ ହସି କହିଲେ: ଯା ପଛରେ ଆଉ ଟିକିଏ କାହାଣୀ ଅଛି, ଯେଉଁଟା ଆପଣମାନେ କେହି ଜାଣି ନାହାନ୍ତି। ମିଃ ଅଗରବାଲା ଥିଲେ ମାଇନିଂ ସେକ୍ରେଟାରୀ। ଖଣି ବିଶେଷଜ୍ଞମାନଙ୍କ ସାହାଯ୍ୟରେ ଯେତେବେଳେ ଜାଣିପାରିଲେ ମାଲକାନଗିରି ଗର୍ଭରେ ସୁନା ନୁହେଁ, ଇଉରାନିୟମ ଅଛି, ସେତେବେଳେ ସେ ବ୍ୟାକୁଳ ହୋଇଉଠିଲେ। ସେତିକିବେଳେ କୌଣସି ବିଦେଶୀ ସରକାରର ଚକ୍ରାନ୍ତରେ ପଡ଼ି ମୋଟା ଅଙ୍କର ଅର୍ଥ ବିନିମୟରେ ଇଉରାନିୟମ୍ ବିକ୍ରି କରିବାକୁ ସିଦ୍ଧାନ୍ତ କଲେ। ସେଉଠୁ ତାଙ୍କ ମୁଣ୍ଡରେ ନାନା ପ୍ରକାର ଅପରାଧ ଚିନ୍ତା ଖେଳିଲା।

ସବୁଠୁ ମଜାର କଥା ହେଉଛି, ତାଙ୍କ ମୃତ୍ୟୁରହସ୍ୟ। ଆପଣମାନେ କେହି ହୁଏତ ଜାଣିନାହାନ୍ତି, ଯେଉଁ ମୃତଦେହ ଅଗରବାଲାଙ୍କର ମିଳିଥିଲା, ସେ ହେଉଛନ୍ତି ଅଗରବାଲାଙ୍କର ଯମଜ ଭାଇ। ଗାଁରେ ଥିଲେ। ବିଚରା ଚିରରୋଗୀ। କିନ୍ତୁ ଅଗରବାଲାଙ୍କ ଚେହେରା ସହିତ ତାଙ୍କର ଅପୂର୍ବ ସାମଞ୍ଜସ୍ୟ ଥିଲା। ଶେଷରେ ସେଇଆଙ୍କୁ ଆଣି ମିଃ ଅଗରବାଲା ସଜେଇ ହତ୍ୟା କରିଥିଲେ।

ଦଳ ତ ଆଗରୁ ଗଠନ ହୋଇଥିଲା। ତା'ପରେ ବିଚରା ନିରୀହ ମିଃ ରଘୁନନ୍ଦନଙ୍କ ମନରେ ଅପରାଧ କାମନା ଧୀରେଧୀରେ ଜାଗ୍ରତ କରି ତାଙ୍କୁ ଏହା ଭିତରକୁ ଟାଣି ଆଣିଲେ। ଯାହା ଘଟିଗଲା, ସବୁ ମିଃ ଅଗରବାଲାଙ୍କ ଚକ୍ରାନ୍ତ। ସବୁ ହତ୍ୟାଗୁଡ଼ିକ ସେହି ଭୀଷଣକାୟ କଳା ଚିରାଡ଼ି ସାହାଯ୍ୟରେ ଘଟାଇଥିଲେ।

ସବୁଠୁ ବାହାଦୁରୀ ଅଗରବାଲାଙ୍କ ଅଭିନୟ ଚାତୁରୀ ଭିତରେ ଲୁଚି ରହିଥିଲା। ଆଉ ସେଇ ପ୍ଲାଷ୍ଟିକ୍ ମୁଖା ତିନୋଟିରେ ମଧ୍ୟ ଅପୂର୍ବ ନିର୍ମାଣ କୌଶଳ ଲୁଚିରହିଥିଲା।

ଦିନେ ରାତିରେ

ଯାହାଫଳରେ ସେ ସମସ୍ତଙ୍କ ଆଖିରେ ଧୂଳିଦେଇ ତିନି ଚାରୋଟି ଭୂମିକାରେ ନିଖୁଣ ଅଭିନୟ କରିପାରିଥିଲେ।

କିନ୍ତୁ ଏସବୁ କ୍ଷେତ୍ରରେ ମୋତେ ସବୁଠାରୁ ବେଶୀ ସାହାଯ୍ୟ କରିଛି ଚାମେଲୀ। ସେ ଝିଅଟା ପାଇଁ ମୁଁ ଏସବୁ ରହସ୍ୟ ଉଦ୍‌ଘାଟନ କରିବାକୁ ସମର୍ଥ ହୋଇପାରିଲି। ତା'ର ଅସଲ ନାମ ଅଜନ୍ତା। ଆଉ କେତୋଟି ଉପନାମ ମଧ୍ୟ ତା'ର ଥିଲା। କିନ୍ତୁ ଝିଅଟିର ଟିକିଏ ମୁଣ୍ଡ ଦୋଷ ରହି ଯାଇଥିଲା। ବେଳେବେଳେ ସେ ଖୁବ୍ ଅପରାଧପ୍ରବଣ ହୋଇଉଠେ। କୌଣସି ଅପରାଧମୂଳକ କଥା ଆରମ୍ଭ ହେଲେ, ସେ ଅପରାଧର ଚରମକୁ ଉଠିଯାଏ, ଆଉ ବେଳେ ବେଳେ ଅନୁତାପ କରେ। ତା'ର କେତୋଟି ଦୁର୍ବଳ ମୁହୂର୍ତ୍ତର ସୁଯୋଗ ମୁଁ ଗ୍ରହଣ କରି ଆଜି ସଫଳତା ଅର୍ଜନ କରିଛି।

ସବୁଠାରୁ ମୁଁ ଆଜି ବେଶୀ ଆନନ୍ଦିତ ଯେ, ଆମ ଦେଶର ଅମୂଲ୍ୟ ସମ୍ପଦ ମୁଁ ରକ୍ଷା କରିପାରିଛି।

ରଚନା କାଳ: ୧୯୫୮



অনুরাধা গীত গাএ ।

মধুছন্দা নাচে ।

বনজ্যোৎস্নার হসরু গোলাপ ঝরে ।

---

ସିଦ୍ଧାର୍ଥ ଶଙ୍କର ରାୟ ଆରାମ ଚେୟାର ଉପରେ ଶୋଇଥିଲେ। ଶେଷ ସୂର୍ଯ୍ୟର କିରଣ ପଶ୍ଚିମ ଆକାଶରେ ମଳିନ ହୋଇଆସୁଥିଲା। ରଙ୍ଗବେରଙ୍ଗର ଚିତ୍ରପଟ ଫୁଟିଉଠି ମିଳେଇ ଯାଉଥିଲା। କେଉଁ ଅଜ୍ଞାତ ଶିଳ୍ପୀ ଯେପରି ପ୍ରତି ମୁହୂର୍ତ୍ତରେ ଆକାଶପଟରେ ନୂଆ ନୂଆ ଚିତ୍ର ଆଙ୍କି ଚାଲିଥିଲା। ସିଦ୍ଧାର୍ଥ ଶଙ୍କର ରାୟ ତାଙ୍କ ପ୍ରାସାଦର ତ୍ରିତଳ ବାରଣ୍ଡା ଉପରେ ଶୋଇରହି ଆନମନା ଭାବରେ ପଶ୍ଚିମ ଆକାଶକୁ ଚାହିଁଥିଲେ।

ଶେଷସୂର୍ଯ୍ୟର କିରଣ ଶିଖା ପରି ସେ ବି ଆସି ଜୀବନର ଶେଷଭାଗରେ ପହଞ୍ଚିଛନ୍ତି। ଜୀବନଭରି ସଂଗ୍ରାମ କରି ଧନ, ମାନ, ପ୍ରତିଷ୍ଠା ସବୁ ସେ ଅର୍ଜନ କରିଛନ୍ତି। କିନ୍ତୁ ହଠାତ୍ କାହିଁକି ତାଙ୍କର ସଂଗ୍ରାମୀ ମନ ଉପରେ କିପରି ଏକ କ୍ଲାନ୍ତିର ପରଦା ମାଡ଼ିଆସୁଛି। ସେ ଏତେଦିନ ହେବ ବହୁ ଚେଷ୍ଟା କରୁଛନ୍ତି ସେହି କାରଣର ମୂଳ ଖୋଜିବା ପାଇଁ, କିନ୍ତୁ ପାରୁନାହାନ୍ତି। ବରଂ ଦିନକୁଦିନ ତାଙ୍କର ସଂଗ୍ରାମୀ ମନର କର୍ମକ୍ଷମତା କମି କମି ଆସୁଛି।

ତେବେ ଏହାର କାରଣ କ'ଣ ମନୋହର ?

ମନୋହର ତାଙ୍କର ଏକମାତ୍ର ସନ୍ତାନ। ଜନ ଦିଗରୁ ଯଦି ଦେଖାଯାଏ, ତେବେ ମନୋହରକୁ ଛାଡ଼ିଦେଲେ ଆଉ ଆପଣା ଜନ ତାଙ୍କର କେହି ନାହାନ୍ତି। ମନୋହରକୁ ମଣିଷ କରି ଗଢ଼ିବା ପାଇଁ ସେ ସବୁ ପ୍ରକାର ଶିକ୍ଷା ଦେଇଛନ୍ତି। ଏକମାସ ପୂର୍ବ ପର୍ଯ୍ୟନ୍ତ ମନୋହର ସମ୍ବନ୍ଧରେ ତାଙ୍କ ମନରେ କୌଣସି ପ୍ରକାର ସନ୍ଦେହ ଜାତ ହୋଇନାହିଁ। କିନ୍ତୁ ମନୋହର ଦିଲ୍ଲୀରୁ ଫେରିବା ପରଠାରୁ...

ସାଆନ୍ତେ...

ମାଧବର ଡାକରେ ସିଦ୍ଧାର୍ଥ ରାୟଙ୍କର ସ୍ୱପ୍ନଭଙ୍ଗ ହେଲା।

କ'ଣ ମାଧ ! ତୋ ମନୁବାବୁ ଫେରିଲେଣି ?

ନା, ଆଉଜଣେ ବାବୁ କିଏ କଟକରୁ ଆସିଛନ୍ତି। ଆପଣଙ୍କ ସଙ୍ଗରେ...

ଓଃ ! ସିଦ୍ଧାର୍ଥ ରାୟ ଚଞ୍ଚଳ ହୋଇଉଠିଲେ। ମାଧବ ହାତରୁ କାର୍ଡ଼ଟି ଦେଖି କହିଲେ, ବାବୁଙ୍କୁ ଡ୍ରଇଂରୁମ୍‌କୁ ଘେନିଆ ମାଧ। ମୁଁ ସଙ୍ଗେ ସଙ୍ଗେଯାଉଛି।

ମାଧବ ଚାଲିଗଲା। ସିଦ୍ଧାର୍ଥ ରାୟ ମଧ୍ୟ ଉଠି ଠିଆହେଲେ। ତଳକୁ ଓହ୍ଲେଇ ଯାଉଯାଉ ଅଧବାଟରୁ ପୁଣି ଲେଉଟି ଆସିଲେ। ଆରାମ ଚେୟାର ସାମନା ଟିପୟ ଉପରୁ ବହି ଖଣ୍ଡିଏ ଉଠେଇ ନେଇ ଏଥର ଦ୍ରୁତ ବେଗରେ ତଳକୁ ଓହ୍ଲାଇ ଗଲେ।

ଡ୍ରଇଂରୁମ୍‌ରେ ପହଞ୍ଚି ଆଗନ୍ତୁକଙ୍କୁ ନିଜର ବାହୁବନ୍ଧନରେ ଜାବୁଡ଼ିଧରି କହିଲେ, ମୁଁ ଭାବି ନ ଥିଲି ଆପଣ ମୋ ଚିଠି ପାଇ ଏତେ ଶୀଘ୍ର ମୋତେ ଆସି ଦର୍ଶନ ଦେବେ। ଅବଶ୍ୟ କେବେ ଜଣଶୁଣା ଥିଲେ ହୁଏତ ଆନ୍ତରିକତା ସୂତ୍ରରୁ ଆପଣ ଟାଣି ହୋଇ ଆସିଥାନ୍ତେ; କିନ୍ତୁ ଜଣେ ଅଜଣା ଅଶୁଣା ଅକିଞ୍ଚନଠାରୁ ଖଣ୍ଡିଏ ମାତ୍ର ଚିଠି ପାଇ...

ଆଉ ଆଗକୁ ନ ବଢ଼ିଲେ ଚଳିବ ମିଷ୍ଟର ରାୟ ! କାରଣ ଜଣେ ଅଯୋଗ୍ୟକୁ ଏତେ ସମ୍ମାନ ଦିଅନ୍ତୁ ନାହିଁ । ଆପଣଙ୍କ ଚିଠିରୁ ମୁଁ ଯଥେଷ୍ଟ ଆନ୍ତରିକତା ପାଇଚି । ଏତେବଡ଼ ଏକ ବିରାଟ ସହରରେ ରହି ମଧ୍ୟ, ମୋତେ ଆପଣଙ୍କ କାର୍ଯ୍ୟୋଦ୍ଧାର ପାଇଁ ଖୋଜି ବାହାର କରିଛନ୍ତି, ଏହା କ'ଣ ମୋ ପକ୍ଷରେ କମ୍ ଗୌରବର କଥା !

ସିର୍ଦ୍ଧାର୍ଥ ରାୟ ହସିଲେ। କହିଲେ, ଆପଣ ମୋ ସମ୍ବନ୍ଧରେ କିଛି ଜାଣିନାହାନ୍ତି ମିଃ ମହାପାତ୍ର। ସେଥିପାଇଁ ଆପଣଙ୍କ ମନରେ ଏପରି ଧାରଣା ଜନ୍ମିଛି। ଆପଣ ମୋ ସାନ୍ନିଧ୍ୟକୁ ଆସିଲେଣି ଯେତେବେଳେ ଧୀରେଧୀରେ ମୋତେ ଚିହ୍ନିପାରିବେ। କେବଳ ଏତିକି ଆଜି ମୁଁ ଆପଣଙ୍କୁ କହି ରଖୁଛି, ମୁଁ ଯେତେ ଦୂରରେ ଥିଲେ ମଧ୍ୟ, ମୁଁ ଯେତେ ଧନୀ ହେଲେ ମଧ୍ୟ, ମୋ ଘର ଯେ ଓଡ଼ିଶାରେ ଆଉ ମୁଁ ଯେ ଓଡ଼ିଆ, ସେ କଥା କେବେ ଭୁଲିଯିବି ନାହିଁ।

ସତ୍ୟବ୍ରତ ମହାପାତ୍ରଙ୍କ ମନଟା ଆନନ୍ଦରେ ପୂରି ଆସୁଥିଲା। ସେ ଅତି ବିନୟ ସହକାରେ କହିଲେ, ଠିକ୍ ସେଇ କାରଣରୁ ମୋର ସମସ୍ତ କାର୍ଯ୍ୟ ପଛକୁ ପକାଇ ଦେଇ ଆପଣଙ୍କ ନିକଟକୁ ଛୁଟି ଆସିବା କଥା। ଏଥର କାମର କଥା କୁହନ୍ତୁ।

ସିଦ୍ଧାର୍ଥ ରାୟ ଟିକିଏ ଚିନ୍ତା କଲେ। କହିଲେ, ଆସନ୍ତୁ ଉପରକୁ ଯିବା।

ସତ୍ୟବ୍ରତ ସିଦ୍ଧାର୍ଥ ରାୟଙ୍କ ପଛେ ପଛେ ଉପରକୁ ଉଠିଗଲେ।

ବସନ୍ତୁ ! ସିଦ୍ଧାର୍ଥ ରାୟ ସତ୍ୟବ୍ରତଙ୍କୁ ତ୍ରିତଳର ଏକ ସୁସଜ୍ଜିତ କୋଠରିରେ ଗୋଟିଏ ସୋଫା ଉପରେ ବସିବାକୁ କହି ନିଜେ ଅନ୍ୟ ଏକ ସୋଫା ଉପରେ ବସିଲେ।

ମାଧବକୁ ଡାକି ଚା' ଜଳଖିଆ ଆଣିବାକୁ ନିର୍ଦ୍ଦେଶ ଦେଲେ।

କଥାଟା କେଉଁଠୁ ଆରମ୍ଭ କରିବେ ହୁଏତ ସିଦ୍ଧାର୍ଥ ରାୟ ଭାବି ଠିକ୍ କରିପାରୁନଥିଲେ।

ଦିଆଲ ଘଡ଼ିରେ ଛ'ଟା ବାଜିଲା।

ହୁଏତ ଘଟଣାଟା କେବଳ ମୋ ମନର ବିକାର ହୋଇପାରେ।

ସିଦ୍ଧାର୍ଥ ରାୟ ଗଳା ଖଙ୍କାରି କହିଲେ, ତେବେ ସନ୍ଦେହଟା ମନ ଭିତରେ ଉଙ୍କିମାରିଲା ଯେତେବେଳେ, ଭାବିଲି ଜଣେ ବିଶେଷଜ୍ଞଙ୍କ ସହିତ ପରାମର୍ଶ କରି ନିଃସନ୍ଦେହ ହୋଇଯିବା ଉଚିତ।

ମନୋହର ମୋର ଏକମାତ୍ର ସନ୍ତାନ। ମୁଁ ତାକୁ ଯଥା ସମ୍ଭବ ଶିକ୍ଷା ଦେଇଛି। ମୋ ଆଦର୍ଶରେ ଅନୁପ୍ରାଣିତ କରି ଗଢ଼ି ତୋଳିଛି। ତାକୁ ସତ୍, ମହତ୍ ଓ ଚରିତ୍ରବାନ କରି ଗଢ଼ିବା ପାଇଁ ମୁଁ ସବୁପ୍ରକାର ଚେଷ୍ଟା କରିଛି। ମୋ ଚେଷ୍ଟା ବି ବ୍ୟର୍ଥ ହୋଇନାହିଁ।

ଆପଣ ବୋଧହୁଏ ଜାଣି ନାହାନ୍ତି, ଭଗବାନଙ୍କ ଦୟାରୁ ମୁଁ ଜୀବନରେ ଯଥେଷ୍ଟ ଅର୍ଥର ଅଧିକାରୀ ହୋଇଛି। ତା ସଙ୍ଗେସଙ୍ଗେ ଯଶ, ଖ୍ୟାତି ବି କମ୍ ପାଇନାହିଁ। ଆଜି ମୋର ପ୍ରତିଷ୍ଠିତ 'ମାନିନୀ କଟନ ମିଲ୍ସ' ଭାରତରେ ଏକ ପ୍ରତିଷ୍ଠିତ ପ୍ରତିଷ୍ଠାନ।

ଆଜି ଅବଶ୍ୟ ମନୋହର ସେ ସବୁର ପରିଚାଳନା ପାଇଁ ଯୋଗ୍ୟ ହୋଇଛି। ମୋ ଅନ୍ତେ ଯେ ମନୋହର ହାତରେ ବ୍ୟବସାୟ ପ୍ରତିଷ୍ଠାନ ସୁପରିଚାଳିତ ହେବ, ସେଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ.....

ସିଦ୍ଧାର୍ଥ ରାୟ କିଛି ସମୟ ନୀରବ ରହିଲେ।

ସତ୍ୟବ୍ରତ ପ୍ରଶ୍ନବାଚୀ ନୟନରେ ଚାହିଁ ପଚାରିଲେ, ତା'ହେଲେ ଆଉ କିନ୍ତୁ ରହିଲା କେଉଁଠି ?

ଏଇ ଦେଖନ୍ତୁ। ସିଦ୍ଧାର୍ଥ ରାୟ ହାତରେ ଧରିଥିବା ବହି ଭିତରୁ ଖଣ୍ଡିଏ ଛୋଟ କାଗଜ ବାହାର କରି ସତ୍ୟବ୍ରତଙ୍କ ହାତକୁ ବଢ଼ାଇଦେଲେ।

କାଗଜ ଖଣ୍ଡକରେ ଲେଖାଥିଲା-

ଅନୁରାଧା ଗୀତ ଗାଏ।

ମଧୁଛନ୍ଦା ନାଚେ।

ବନଜ୍ୟୋତ୍ସ୍ନାର ହସରୁ ଗୋଲାପ ଝରେ।

ସତ୍ୟବ୍ରତ ସେହି ଲେଖା ତିନିଧାଡ଼ି ପଢ଼ିସାରି କିପରି ଏକ ବିକଳ ନୟନରେ ସିଦ୍ଧାର୍ଥ ରାୟଙ୍କ ମୁହଁକୁ ଚାହିଁଲେ।

ନା ନା ମି: ମହାପାତ୍ର। ସିଦ୍ଧାର୍ଥ ରାୟ ଯେପରି ଆର୍ତ୍ତନାଦ କରିଉଠିଲେ। ମନୋହରକୁ ମୁଁ ଏପରି ଶିକ୍ଷା ଦେଇନଥିଲି। ମୁଁ ଆଖିକୁ ବା ଅବିଶ୍ୱାସ କରିବି କିପରି ? ଏଇଟା ମନୋହରର ନିଜ ହାତଲେଖା। ଖାଲି ସେତିକି ନୁହେଁ, ମୁଁ କେତେଦିନ ହେବ ଲକ୍ଷ୍ୟ କରୁଛି, ମନୋହର ପ୍ରାୟ ଡେରି କରି ଘରକୁ ଫେରୁଛି। ଦିନେ ଦିନେ ରାତି ବାରଟା ବାଜି ଯାଉଛି।

ତା'ହେଲେ ଆପଣ ମନୋହରର ଆଚରଣରେ ଏକ ପରିବର୍ତ୍ତନ ଲକ୍ଷ୍ୟ କରୁଛନ୍ତି।

ହଁ, ତା'ଛଡ଼ା ମୁଁ ଲକ୍ଷ୍ୟ କରୁଛି, ଆଜିକାଲି ସେ ମୋଠାରୁ ଦୂରେଇ ଦୂରେଇ ରହିବାକୁ ଚେଷ୍ଟା କରୁଛି। ମୋ ସହିତ ଯେତେ କମ୍ କଥା ହୋଇପାରେ, ମୋ ସହିତ ଯେତେ କମ୍ ମିଳାମିଶା କରିପାରେ, ସେଥିପାଇଁ ସେ ମନପ୍ରାଣରେ ପ୍ରଚୁର ଚେଷ୍ଟା କରୁଛି।

ସତ୍ୟବ୍ରତ ହାତରେ ଧରିଥିବା କାଗଜ ଖଣ୍ଡିକ ଆଡ଼େ ଆଉଥରେ ଦୃଷ୍ଟି ବୁଲେଇ ନେଇ କହିଲେ, ଆଚ୍ଛା, ଏ କାଗଜରେ ଯେଉଁ ତିନୋଟି ଝିଅଙ୍କ ନାମ ଲେଖା ଅଛି, ଏମାନଙ୍କ ଭିତରୁ ଆପଣ କାହାରିକୁ ଚିହ୍ନନ୍ତି ?

ନା; ତେବେ ଏମାନେ ନିଶ୍ଚୟ ଅନ୍ୟ ସ୍ତରର ଜୀବ। କାରଣ ଯେଉଁ ଝିଅମାନେ ନାଚ ଗାନ କରନ୍ତି, ସେମାନଙ୍କ ପ୍ରତି ମୋର ଧାରଣା କୌଣସି ଦିନ ଭଲ ନୁହେଁ।

ହୁଁ, ସତ୍ୟବ୍ରତ କିଛିସମୟ ନୀରବ ରହି ପଚାରିଲେ, ଆପଣ ମନୋହର ଠାରେ ଏହି ପରିବର୍ତ୍ତନ କେତେଦିନ ହେବ ଲକ୍ଷ୍ୟ କରୁଛନ୍ତି !

ପ୍ରାୟ ଏକମାସ ହେବ। ସେ ଦିଲ୍ଲୀରୁ ଫେରିବା ପରଠାରୁ।

ଆଚ୍ଛା, ମନୋହରର ଏହି ପରିବର୍ତ୍ତନ ମୂଳରେ କି କାରଣ ଥାଇପାରେ ବୋଲି ଆପଣ ଭାବୁଛନ୍ତି ?

ସେ ବଡ଼ କଠିନ ପ୍ରଶ୍ନ ମୋ [illegible] ମୁଁ ଯଦି ଆପଣଙ୍କ ପ୍ରଶ୍ନର ଉତ୍ତର ଦେଇପାରିଥାଆନ୍ତି, ତେବେ ଆପଣଙ୍କୁ ଏତେ କଷ୍ଟ ଦେଇନଥାନ୍ତି।

ମନୋହରର ବିବାହ ହୋଇଛି ? ସତ୍ୟବ୍ରତ ପୁଣି ପଚାରିଲେ।

ନା, ତେବେ ବିବାହର ସମସ୍ତ ବନ୍ଦୋବସ୍ତ ହୋଇସାରିଛି। ଏ କ୍ଷେତ୍ରରେ ମଧ୍ୟ ମନୋହର ଅନେକଟା ନିଜ ଇଚ୍ଛାରେ ପାତ୍ରୀ ବନ୍ଦୋବସ୍ତ କରିଚି। ଆଗାମୀ ଶୁକ୍ରବାର ଦିନ ସେମାନଙ୍କ ସହିତ ଶେଷ କଥାବାର୍ତ୍ତା ହେବ।

ସେମାନେ କେଉଁଠି ରୁହନ୍ତି ?

ବାଲିଗଞ୍ଜରେ। ବର୍ତ୍ତମାନ ଅବଶ୍ୟ କେହିନାହାନ୍ତି। ବୁଧବାର ଦିନ ଚେଞ୍ଜରୁ ଫେରିବେ ଏବଂ ଶୁକ୍ରବାର ଦିନ ବିବାହର ତାରିଖ ଧାର୍ଯ୍ୟ ହେବ।

ମନୋହର କଣ ସେମାନଙ୍କ ଘରକୁ ଯା' ଆସ କରେ ?

ସେତେଟା ନୁହେ, ତେବେ ମଝିରେ ମଝିରେ ଯାଏ। ଝିଅଟି ସୁନ୍ଦରୀ, ଶିକ୍ଷିତା, ବିନୟୀ। ଆମ ଘରର ବୋହୂ ହେବାର ଯୋଗ୍ୟ।

ସେମାନେ କ'ଣ ଆପଣଙ୍କ ପରି ବିତ୍ତଶାଳୀ ?

ବହୁଗୁଣରେ ଅଧିକ। ଆଉ ନ ହୋଇଥିଲେ ବି ମଣିମାଳାକୁ ବୋହୂ କରିବା ପାଇଁ ମୁଁ ଆପତ୍ତି କରିନଥାନ୍ତି।

ମାଧବ ଚା' ଜଳଖିଆ ଧରି ଆସି ଗୃହ ମଧ୍ୟରେ ପ୍ରବେଶ କଲା।

ଏତେ ଡେରି କଲୁ ମାଧ? ସିଦ୍ଧାର୍ଥ ରାୟ ପଚାରିଲେ।

ମନୁବାବୁ ଆସି ପହଞ୍ଚିଗଲେ । ତାଙ୍କୁ ଖାଇବାକୁ ଦେଲି।

ମନୋହର ଆସିଛି ?

ହଁ, ଆସିଥିଲେ। ଖାଇସାରି ପୁଣି କୁଆଡ଼େ ବାହାରିଗଲେଣି।

ମନୋହର ଚାଲିଗଲା ! ସିଦ୍ଧାର୍ଥ ରାୟଙ୍କ ଛାତି ବିଦୀର୍ଣ୍ଣ କରି ଯେପରି ଏକ ଦୀର୍ଘଶ୍ୱାସ ବାହାରି ଆସିଲା। ତୁ ତୋ ମନୁବାବୁଙ୍କୁ ଅଟକେଇ ପାରିଲୁ ନାହିଁ ମାଧ?

ସତ୍ୟବ୍ରତ ଲକ୍ଷ୍ୟ କଲେ, ସିଦ୍ଧାର୍ଥ ରାୟ ମନୋହର ପାଇଁ ଖୁବ୍ ଚିନ୍ତିତ ହୋଇପଡ଼ିଚନ୍ତି। ହୁଏତ ତାଙ୍କ ମନରେ ଧାରଣା ହୋଇଚି, ମନୋହର ଦିନ ପରେ ଦିନ ଯେପରି ସର୍ବନାଶ ପଥରେ ଆଗେଇ ଚାଲିଛି।

ମନୋହର ପ୍ଲାଇମାଉଥ୍ ଗାଡ଼ିଟି କଲିକତାର ଜନବହୁଳ ରାସ୍ତାରେ ଭାସି ଚାଲିଥିଲା। ମନୋହର 'ନିଜେ ଗାଡ଼ି ଡ୍ରାଇଭ୍ କରୁଥିଲା। ଚୌରଙ୍ଗୀ ରାସ୍ତା ଛାଡ଼ି ଗାଡ଼ି ତା'ର ସେଣ୍ଟ୍ରାଲ ଏଭିନିଉ ଦେଇ ଆଗେଇ ଚାଲିଥିଲା। ମନୋହର ମନରେ ଥିଲା ଅଫୁରନ୍ତ ଆନନ୍ଦ। ସେ ସୁସୁରି ବଜାଇ ମନକୁମନ ଗୀତ ଗାଇ ଗାଇ ଗାଡ଼ିର ଗିଅର ବଦଳାଉଥିଲା।

କ୍ରମେ ସେ ସେଣ୍ଟ୍ରାଲ ଏଭିନିଉର୍ ସମସ୍ତ ରାସ୍ତା ଅତିକ୍ରମ କରି ପହଞ୍ଚିଲା ଯାଇ ସହର ତଳିର ଏକ ବସ୍ତି ଅଞ୍ଚଳରେ। ଗାଡ଼ିଟାକୁ ମେନ୍‌ରୋଡ଼ ଉପରେ ଥୋଇ ହର୍ଣ୍ଣ ବଜାଇଲା।

ଅଳ୍ପ ସମୟ ପରେ ମନୋହର ଦେଖିଲା ଗୀତା ମୁହଁରେ ହସର ଫୁଆରା ଫୁଟେଇ ଧାଇଁ ଆସୁଛି। ବେଶଭୁଷାରେ ଆଜି ତାର ଅପୂର୍ବ ପରିବର୍ତ୍ତନ। ଏପରି କି ଚାହାଣିରେ ଆଜି ତାର କିପରି ମିଠା ମିଠା ଭାବ।

ମନୋହର ଗାଡ଼ିର ଦରଜା ଖୋଲି ରଖିଥିଲା।

ଗୀତା ଛୁଟି ଛୁଟି ଆସି ସିଧା ଗାଡ଼ି ଭିତରକୁ ଉଠିଗଲା।

ଗାଡ଼ିରେ ପୁଣି କମ୍ପନ ଆରମ୍ଭ ହୋଇଗଲା। ଗାଡ଼ି ଲେଉଟିଲା ପୁଣି ବଡ଼ ରାସ୍ତା ଉପରକୁ। ସେଣ୍ଟ୍ରାଲ ଏଭିନିଉ ଧରି ପୁଣି ମନୋହର ଆଡ଼େ ଚାହିଁ ପଚାରିଲା।

ମନୋହର ଦରହସା ମୁହଁରେ ଗୀତ ଆଡ଼େ ଚାହିଁଥିଲା।

ସତ କହ ରଜା, ଏ ଗାଡ଼ି ତୋ ନିଜର?

କ'ଣ ଅବିଶ୍ୱାସ ହେଉଛି? ମନୋହର କହିଲା।

ମୋ ଭାଗ୍ୟ ଉପରେ ମୋର୍ ଆସ୍ଥା ନାହିଁ ରଜା। ସେଇଥିପାଇଁ ମୁଁ କାହାରିକୁ ବିଶ୍ୱାସ କରିପାରୁନାହିଁ। ମୋ ବାପାକୁ କ'ଣ ତୁ ଚିହ୍ନି ନାହୁଁ?

ମନୋହର ହସିଲା। କହିଲା, ମୋ ସଙ୍ଗରେ ଆସିବାକୁ ନିଶ୍ଚୟ ତୋ ବାପାର କୌଣସି ଆପତ୍ତି ନାହିଁ।

ସେ କଥା କ'ଣ ମୁଁ କହୁଚି ! ଏଇଖିଣା ମୋତେ କୁଆଡ଼େ ନେଇଯାଉଚୁ ?

କହିଲୁ କୁଆଡ଼େ ନେଉଚି ?

ଖୋଇବାକୁ।

ମନୋହର ହୋ ହୋ ହୋଇ ହସିଉଠିଲା। ଗୀତାଟା ନିହାତ୍ ସରଳ ଝିଅଟାଏ। ଦୁନିଆ ସମ୍ବନ୍ଧରେ କିଛି ତାକୁ ଜଣାନାହିଁ।

ଗାଡ଼ି ଯାଇ ଭିଡ଼ିଲା ଏକ ହୋଟେଲ ଦୁଆର ମୁହଁରେ। ମନୋହର ଗୀତାକୁ ସଙ୍ଗରେ ଧରି ତଳକୁ ଓହ୍ଲେଇଲା। ଦୁହେଁ ହୋଟେଲ ଭିତରକୁ ପ୍ରବେଶ କଲେ। କାଶ୍ମିରୀ ଗାଲିଚା ଉପରେ ଗୀତା ଚାଲି ଚାଲି ଯାଉଥିବା ବେଳେ ଦେହମନରେ ତାର କିପରି ଅବଶତା ଜମିଆସୁଥିଲା। ଜୀବନରେ କେବେ ହୁଏତ ସେ ଏପରି ଏକ ମୂଲ୍ୟବାନ ଗୃହ ଦେଖିବାକୁ ପାଇନଥିଲା। ଗୀତା ଚାରି ଆଡ଼କୁ ଚାହିଁ ଚାହିଁ, ବୁଲି ବୁଲି ଆଗକୁ ଆଗକୁ ପାଦ ବଢ଼ାଉଥିଲା। ମନୋହର କିନ୍ତୁ ଟାଣି ଟାଣି ଗୀତାକୁ ଭିତରକୁ ନେଇ ଯାଉଥିଲା।

ସେମାନେ ଯେତେବେଳେ ଯାଇ ହୋଟେଲରେ ପ୍ରଶସ୍ତ ହଲରେ ପାଦ ଥୋଇଲେ, ଗୀତାର ସମସ୍ତ ଦେହରେ ଜଡ଼ତା ଭରିଗଲା। ଏତେ ଲୋକ ! ଏତେ ଗୋଳ ! ଏତେ ସାଜସଜ୍ଜା ! ମନୋହର ଟାଣି ଟାଣି ଝିଙ୍କି ଝିଙ୍କି ନେଇ ଗୀତାକୁ ଗୋଟିଏ କେବିନ୍‌ରେ ବସେଇଲା।

ବୟ ଆସି ସାଲ୍ୟୁଟ୍ ବଜେଇଲା।

ପରେ ପରେ ଜଣ ଜଣ କରି ନାରୀ ପୁରୁଷ ଆସି ମନୋହରର କେବିନ୍‌ରେ ପ୍ରବେଶ କଲେ।

ଗୀତା ଜଣ ଜଣକୁ ଦେଖି ଦେଖି ହତଚକିତ ହୋଇଯାଉଥିଲା। ବିଶେଷକରି ଝିଅମାନଙ୍କୁ ଦେଖି ସେ ସହି ପାରୁନଥିଲା। ସେମାନଙ୍କ ବେଶ ପୋଷାକର ପରିପାଟୀ, କଥା କହିବାର ରଙ୍ଗ ଢଙ୍ଗ, ଖିଆପିଆର ରୀତିନୀତିରେ ଗୀତା ଅବାକ୍ ହୋଇଯାଉଥିଲା।

ମନୋହର କେବିନ୍‌ରେ ବନ୍ଧୁ ବାନ୍ଧବୀମାନଙ୍କର ଏକ ଛୋଟ ସଭା ବସି ଯାଇଥିଲା। ଆଳାପ, ଆଲୋଚନା, ପାନ, ଭୋଜନ ପରେ ମନୋହର ଗୀତାର ପରିଚୟ ସମସ୍ତଙ୍କ ଆଗରେ ଦେବାକୁ ଯାଇ କହିଲା, ଏ ମୋର ନବ ଆବିଷ୍କାର। ମିସ୍ ରୀଟା ! ଯାକୁ ଗଢ଼ିବାର ଦାୟିତ୍ୱ ତମର।

ମିସ୍ ରୀଟା ସଙ୍ଗେ ସଙ୍ଗେ ଉଠି ଠିଆ ହୋଇପଡ଼ିଲା।

ନାଚ ପୋଷାକରେ ମିସ୍ ରୀଟାକୁ ଏତେ ସୁନ୍ଦର ଦିଶୁଥିଲା ଯେ, ଗୀତା ମଧ୍ୟ ତା' ଆଡ଼କୁ ଅପଲକ ନୟନରେ ଅନାଇ ରହିଥିଲା।

ରୀଟା ଆସି ଗୀତାକୁ ଟାଣି ଉଠାଇଲା ।

ଗୀତା ଡରି ଡରି ଚେୟାରରୁ ଉଠିଲା ।

ଏହାର ନୂଆ ନାମକରଣ କ'ଣ ହେବ ମନୋହର ? ରୀଟା ଚାହାଣିରେ ସାମାନ୍ୟ କମ୍ପନ ସୃଷ୍ଟି କରି ମନୋହରକୁ ଚାହିଁଲା ।

ନାମକରଣ ? ହଁ, ନୂତନ ନାମକରଣ ମଧ୍ୟ ପ୍ରୟୋଜନ । ବେଶ୍, କିଛି ଗୋଟାଏ ତମ ଇଚ୍ଛା ଅନୁସାରେ ତା'ର ନାମକରଣ କରିଦିଅ ।

ହଠାତ୍ ହୋଟେଲରେ ଘଣ୍ଟା ବାଜି ଉଠିଲା ।

ସମସ୍ତେ ଚଞ୍ଚଳ ହୋଇଉଠିଲେ ।

ବର୍ତ୍ତମାନ ନାଚ ଆରମ୍ଭ ହେବ । ରୀଟା ଉଠି ଠିଆ ହେଲା । ପରେ ପରେ ଜଣ ଜଣ ହୋଇ ସମସ୍ତେ ଉଠିଲେ । ପ୍ରଶସ୍ତ ହଲ ଭିତରେ ଛୋଟ ପେଣ୍ଡାଲଟିରେ ଯନ୍ତ୍ରସଙ୍ଗୀତ ଆରମ୍ଭ ହୋଇଯାଇଥିଲା । ଅଧଘଣ୍ଟା ନାଚ ହେବା ପରେ ହୋଟେଲରେ ଆଜିର କାର୍ଯ୍ୟକ୍ରମ ଶେଷ ହେବ ।

ମନୋହର ଗୀତାକୁ ନେଇ ହଲ୍ ଘରେ ପ୍ରବେଶ କଲା ।

ଧୀରେ ଗୃହର ଆଲୋକ ନିଭି ନିଭି ଆସୁଥିଲା ।

ମନୋହର ଓ ଗୀତା ଦୁଇଟି ଚେଆର ଅଧିକାର କରି ବସିଲେ ।

ନୃତ୍ୟ ଆରମ୍ଭ ହେଲା । ଦେଶୀ ବିଦେଶୀ ନୃତ୍ୟଗୀତ ଅଧ ଘଣ୍ଟାଏ ଧରି ଚାଲିଲା । ଗୀତା ସ୍ତବ୍ଧ ହୋଇ ଦେଖୁଥିଲା ଏଠିକାର ମଣିଷମାନଙ୍କୁ । ସେମାନଙ୍କ ରୀତିନୀତି । ନୃତ୍ୟଗୀତ ଆଡ଼େ ମଧ୍ୟ ଆଗ୍ରହ ଥିଲା ଯଥେଷ୍ଟ ।

ଏକ ସମୟରେ ହଠାତ୍ ହଲ୍ ଘରଟା ଆଲୋକିତ ହୋଇଉଠିଲା । ନୃତ୍ୟଗୀତର ସମାପ୍ତିର ଘଣ୍ଟା ବାଜିଉଠିଲା ।

ମନୋହର ଗୀତାର ହାତ ଧରି ଉଠିଲା ।

ପୁଣି ସେହି କାଶ୍ମୀରୀ ଗାଲିଚା ଉପର ଦେଇ ସେମାନେ ତଳକୁ ଓହ୍ଲେଇଗଲେ । ଗୀତା ଆଖିରେ ଯେପରି ତନ୍ଦ୍ରା ଘୋଟି ଆସିଥିଲା । ସେ ହୁଏତ ବିଶ୍ୱାସ କରିପାରୁନଥିଲା ନିଜକୁ, ନିଜର ସତ୍ତାକୁ ।

ମନୋହର ଘଡ଼ି ଦେଖିଲା । ସାଢ଼େ ନଅଟା ବାଜିଛି ।

ଗାଡ଼ି ପାଖରେ ପହଞ୍ଚି ଦରଜା ଖୋଲି ଗୀତାକୁ ଭିତରେ ବସେଇଲା । ଷ୍ଟାର୍ଟ ଦେଲା ଗାଡ଼ିରେ । ତା' ପରେ ଗାଡ଼ି ଚାଲିଲା ଚୌରଙ୍ଗୀ ପରେ ସେଣ୍ଟ୍ରାଲ ଏଭିନିଉ ରାସ୍ତା ଧରି ।

କାହାରି ତୁଣ୍ଡରେ ଭାଷା ନଥିଲା ।

ଏକ ସମୟରେ ଗୀତା ମନୋହରର ଛାତି ଉପରେ ମୁଣ୍ଡ ରଖି ତନ୍ଦ୍ରାଚ୍ଛନ୍ନ ହୋଇପଡ଼ିଲା ।

ସର୍ପ-ଉର୍ବଶୀ-ରାତ୍ରି

ମନୋହରର ପ୍ଲାଇମାଉଥଟାରେ କିନ୍ତୁ ସ୍ପିଡ୍ ମିଟର କଣ୍ଟାଟା ଥରି ଥରି ମାଡ଼ି ଚାଲିଥିଲା ଆଗକୁ ଆଗକୁ।

ସକାଳ । ପ୍ରାୟ ଆଠଟା ହେବ। ଚା' ଟେବୁଲରେ ବସିଥିଲେ ସିଦ୍ଧାର୍ଥ ରାୟ ଏବଂ ସତ୍ୟବ୍ରତ ମହାପାତ୍ର।

ସିଦ୍ଧାର୍ଥ ରାୟ ଚା' କପ୍‌ଟା ଥରେ ଓଠରେ ଲଗେଇ ମାଧବ ଆଡ଼େ ଚାହିଁ କହିଲେଏ ମନୋହର ଉଠିଲାଣି ମାଧ ?

: ନା ଆଜ୍ଞା। କାଲି ସେ ଅନେକ ରାତିରେ ଫେରିଲେ ?

: ମୁଁ ସେ କଥା ଜାଣିଚି। ସେ ଫେରିବାଯାଏ ମୁଁ ଅପେକ୍ଷା କରି ବସିଥିଲି। ସେ କଣ କାଲି ରାତିରେ ଖାଇଥିଲା ?

: ନା, କହିଲେ ମୁଁ ଖାଇ ଆସିଚି।

: ହୁଁ ।

ସିଦ୍ଧାର୍ଥ ରାୟ ହଠାତ୍ ଗମ୍ଭୀର ହୋଇଗଲେ। କହିଲେ, ମନୋହର ଉଠିଲେ ତାକୁ ମୋ ପାଖକୁ ଥରେ ପଠେଇ ଦେବୁ। ଗତ ଚାରିଦିନ ହେବ ତା ସହିତ ମୋର ଦେଖା ହୋଇନାହିଁ। ଆଶ୍ଚର୍ଯ୍ୟର କଥା ମି: ମହାପାତ୍ର। ଆମେ ଏକାଘରେ ଅଛୁ। ସଂପର୍କ ଆମର ପିତାପୁତ୍ରର। ଅଥଚ ଦୁହିଁଙ୍କ ଭିତରେ ଗତ ଚାରିଦିନ ହେବ ଦେଖା ହୋଇନାହିଁ। ଏହାଠାରୁ ବଳି ଦୁର୍ଭାଗ୍ୟର କଥା...

ହଠାତ୍ ଆରଘରୁ ଟେଲିଫୋନ୍‌ଟା ବାଜିଉଠିଲା।

ସିଦ୍ଧାର୍ଥ ରାୟ କଥା ଅସମାପ୍ତ ରଖି ଉଠିଗଲେ।

ଟେଲିଫୋନ୍ ରିସିଭରଟା କାନରେ ଦେଇ ସିଦ୍ଧାର୍ଥ ରାୟ ଅପର ପ୍ରାନ୍ତରୁ କ'ଣ ଶୁଣିଲେ କେଜାଣି ତାଙ୍କ ହାତରୁ ରିସିଭରଟା ଖସିପଡ଼ିଲା। ସେ ପଡ଼ି ଯାଉଯାଉ ଦିଆଲଟାକୁ ଧରି ପକାଇ ନିଜକୁ ରକ୍ଷା କଲେ।

ସତ୍ୟବ୍ରତ ଛୁଟିଯାଇ ସିଦ୍ଧାର୍ଥ ରାୟଙ୍କୁ ଧରି ପକାଇ କହିଲେ କ'ଣ ହେଲା। ହଠାତ୍ ଆପଣ...

: ଖୁଣ୍ ହୋଇଛି ମି: ମହାପାତ୍ର। ମୁଁ ଯାହା ଆଶଙ୍କା କରୁଥିଲି, ଠିକ୍ ସେଇଆ ହୋଇଛି।

: ଖୁଣ୍, କାହାର ଖୁଣ୍ ?

: ଅନୁରାଧାର।

: ଅନୁରାଧା ?

: ହଁ ହଁ, ଅନୁରାଧା। ଯେଉଁ ତିନିଜଣଙ୍କର ନାମତାଲିକା ମୁଁ କାଲି ଆପଣଙ୍କୁ ଦେଖାଉଥିଲି।

: କିଏ ଫୋନ୍ କରିଥିଲା ?

: ତା' ନାଁ ସେ କହିନାହିଁ। ତେବେ ଫୋନ୍‌ଟା ଅବଶ୍ୟ ମନୋହରର ଥିଲା। ଗୋଟିଏ ନାରୀକଣ୍ଠ ମନୋହରକୁ ସତର୍କ କରାଇଦେଲା ଯେ, କାଲି ରାତିରେ ଅନୁରାଧା ତା ଶୟନକକ୍ଷରେ ଖୁଣ୍ ହୋଇଛି। ସାବଧାନ ଥିବେ।

: ହୁଁ, ତା' ହେଲେ ଆପଣଙ୍କର ସନ୍ଦେହର ପାତ୍ରୀ ତିନୋଟି ଜୀବନ୍ତ ମଣିଷ, କଳ୍ପିତ ନୁହନ୍ତି। ସେଥି ଭିତରୁ ଜଣେ ବାଟ କାଟିଲେ।

: ସତ୍ୟବ୍ରତ ସିଦ୍ଧାର୍ଥ ରାୟଙ୍କ ଚିନ୍ତିତ ମୁହଁଆଡ଼େ ଚାହିଁ କହିଲେ।

: କିନ୍ତୁ ବର୍ତ୍ତମାନ ମୋର କର୍ତ୍ତବ୍ୟ କ'ଣ ମି: ମହାପାତ୍ର ?

: ଆପଣଙ୍କର କର୍ତ୍ତବ୍ୟ, ମାନେ ?

: ଯଦି ପୋଲିସ୍ ଆସେ ?

: ଆସୁ, ଆପଣଙ୍କର ବିଚଳିତ ହେବାର କ'ଣ ଅଛି ?

: ଆପଣ ମୋ ମନର କ୍ଷତ କେଉଁଠି ବୁଝିଲେ ନାହିଁ ମି: ମହାପାତ୍ର। ପୋଲିସ୍ ଆସିବ ମନୋହରକୁ ଏକ ହତ୍ୟା ଅପରାଧର ଅପରାଧୀ ମନେକରି। ଶେଷରେ ହୁଏତ ଜଣାଯିବ ଯେ ଅନୁରାଧା ଏକ ନଷ୍ଟଚରିତ୍ରର ଝିଅ। ହୁଏତ ସେ ଗୋଟାଏ ବେଶ୍ୟା। ସିଦ୍ଧାର୍ଥ ରାୟଙ୍କର ପୁତ୍ର ମନୋହର ରାୟର ସମ୍ବନ୍ଧ ଥିଲା ସେହି ବେଶ୍ୟା ସହିତ। ଖବରକାଗଜମାନଙ୍କରେ ଘଟଣାଟା ପ୍ରକାଶ ପାଇବ। ଲୋକେ ଜାଣିବେ। ମୋର ବୁନିଆଦ, ମୋର ମର୍ଯ୍ୟାଦା। ସବୁ ଆଡ଼କୁ ଚିନ୍ତା କରି ଦେଖନ୍ତୁ ମି. ମହାପାତ୍ର ! ଶେଷରେ ହୁଏତ ମଣିମାଳାକୁ ମୁଁ ପୁତ୍ରବଧୂ ରୂପେ ଆଉ ଗୃହକୁ ଆଣିପାରିବି ନାହିଁ।

ସତ୍ୟବ୍ରତ ସିଦ୍ଧାର୍ଥ ରାୟଙ୍କର ମନର ବେଦନାଟା ବୁଝିଲେ। ସାନ୍ତ୍ୱନା ଦେଇ କହିଲେ, ଆପଣ ସେଥିପାଇଁ ବିଶେଷ ଚିନ୍ତା କରନ୍ତୁ ନାହିଁ। ଯଦି ବା ପୋଲିସ୍ ଆସେ, ମୁଁ ତ ଅଛି, ଅବସ୍ଥାଟାକୁ ସମ୍ଭାଳି ନେବି।

: କିନ୍ତୁ ମନୋହରକୁ ଏ ସମ୍ବନ୍ଧରେ କିଛି ପଚାରିବା ଉଚିତ ହେବନାହିଁ କି ?

: ନା, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। କାଲିଠାରୁ ଆଜିପର୍ଯ୍ୟନ୍ତ ମୁଁ ଏହି ଘଟଣାର କୌଣସି ଯୋଗସୂତ୍ର ପାଇପାରୁନଥିଲି। ଆଜି ଅନୁରାଧାର ମୃତ୍ୟୁସମ୍ବାଦ ଶୁଣି ମୁଁ ଘଟଣାର ସୂତ୍ର ପାଇଛି। ଧୀରେ ଧୀରେ ମଧୁଛନ୍ଦା, ବନଜ୍ୟୋତ୍ସ୍ନା, ସମସ୍ତଙ୍କୁ ଆବିଷ୍କାର କରିହେବ। ତା ସଙ୍ଗେ ସଙ୍ଗେ ମନୋହରର ମନସ୍ତତ୍ତ୍ୱ ମୁଁ ବିଶ୍ଳେଷଣ କରିନେବି। କିନ୍ତୁ ଗୋଟାଏ କଥା ମି: ରାୟ !

: କ'ଣ କୁହନ୍ତୁ ।

: ଆଜିଠାରୁ ମାନେ ଏଇ ମୁହୂର୍ତ୍ତଠାରୁ ଆପଣ ମନୋହରକୁ ଆଉ କିଛି କହିବେ ନାହିଁ। ସେ କ'ଣ କରୁଛି ନ କରୁଛି, କୁଆଡ଼େ ଯାଉଛି ନ ଯାଉଛି,କେତେବେଳେ ଫେରୁଛି ନ ଫେରୁଛି ଆପଣ କୌଣସି କଥା ଉପରେ ନଜର ଦେବେ ନାହିଁ। ତାର ସ୍ୱଚ୍ଛନ୍ଦ ଗତିବିଧିହିଁ ତାକୁ ବିଶ୍ଳେଷଣ କରିବା ପାଇଁ ସହଜ ହେବ।

ସତ୍ୟବ୍ରତଙ୍କ ଏହି କଥା ବୋଧହୁଏ ସିଦ୍ଧାର୍ଥ ରାୟଙ୍କ ମନକୁ ପାଇଲା ନାହିଁ। ସେ ନୀରବରେ ବସି ରହିଥିଲେ।

ସତ୍ୟବ୍ରତ ଟିକିଏ ଅଟକି ଯାଇ ପୁଣି କହି ଚାଲିଲେ : ବର୍ତ୍ତମାନ ମନୋହରର ସ୍ୱଚ୍ଛନ୍ଦ ଗତିବିଧି ହିଁ ଆମ ଉଦ୍ଦେଶ୍ୟ ସାଧନ ପଥରେ ଯଥେଷ୍ଟ ସହାୟତା କରିବ। ଆପଣ ଯଦି ତା' ଉପରେ କଡ଼ା ଦୃଷ୍ଟି ଦିଅନ୍ତି ଅଥବା ତାକୁ ଅଟକ କରନ୍ତି, ତା'ହେଲେ ତା'ର ମନୋବୃତ୍ତି ଆମ ନିକଟରେ ଅବୋଧ୍ୟ ହୋଇ ରହିଯିବ। ଆମେ ସହଜରେ ସଫଳତା ଅର୍ଜନ କରିପାରିବା ନାହିଁ।

: କିନ୍ତୁ...

: ଆପଣ କ'ଣ ଭାବୁଛନ୍ତି ସ୍ପଷ୍ଟ କୁହନ୍ତୁ

: ମୁଁ ଭାବୁଚି ଦକ୍ଷିଣାରଞ୍ଜନ ଚଉଧୁରୀଙ୍କ କଥା।

: ସେ ପୁଣି କିଏ ?

: ମଣିମାଳାର ପିତା।

: ଓଃ ! କିନ୍ତୁ ଆପଣ ତାଙ୍କ କଥା କାହିଁକି ଏତେ ସିରିଅସ୍‌ଲି ଭାବୁଛନ୍ତି ମୁଁ ବୁଝି ପାରୁନାହିଁ।

: ନା ଆପଣ ବୁଝିପାରିବେ ନାହିଁ ମି: ମହାପାତ୍ର। ବହୁ ଚେଷ୍ଟା କରି ତାଙ୍କ ଝିଅ ସହିତ ମନୋହରର ବିବାହ ସ୍ଥିର କରିଚି, କୌଣସି କାରଣରୁ ସେ ଯଦି ଅମତ ହୁଅନ୍ତି, ତେବେ ସିଦ୍ଧାର୍ଥ ରାୟଙ୍କ କଥା ଅସମାପ୍ତ ରହିଗଲା।

: ଆଚ୍ଛା ମି: ରାୟ ! ମଣିମାଳା କ'ଣ ଦକ୍ଷିଣାରଞ୍ଜନ ଚଉଧୁରୀଙ୍କର ଏକମାତ୍ର ସନ୍ତାନ ?

: ଆପଣ ମୋ ମନର କଥା ଠିକ୍ ବୁଝିପାରିଛନ୍ତି ମି: ମହାପାତ୍ର। ଖାଲି ସମ୍ପତ୍ତି ଆଶାରେ ନୁହେଁ, ମଣିମାଳା ଭଳି କନ୍ୟା ଆଜିକାଲିର ଦୁନିଆରେ ବିରଳ। କିନ୍ତୁ ମନୋହରଟା ହତଭାଗା ।

: ମୁଁ ତ ସେଥିପାଇଁ ଆପଣଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଛି। ଆପଣ ଅଥୟ ହୁଅନ୍ତୁ ନାହିଁ। ମନୋହରର ଚାରିତ୍ରିକ ତ୍ରୁଟି ସମ୍ବନ୍ଧରେ ଆପଣଙ୍କ ମନରେ ଯେଉଁ ସନ୍ଦେହର ଉଦ୍ରେକ ହୋଇଛି, ମୁଁ ତା'ର ଅନୁସନ୍ଧାନ କରି ଆପଣଙ୍କୁ ଜଣାଇବି।

: କିନ୍ତୁ ଅନୁରାଧାର ଏଇ ମର୍ଡ଼ର କେସ୍ ! ମୋ ମତରେ ସେ ସମ୍ବନ୍ଧରେ ମନୋହରକୁ ଖୋଲାଖୋଲି ଭାବରେ ପଚାରିବା ଉଚିତ। ଯଦିଓ ତାହା ସତ୍ୟ ହୋଇଥାଏ ଏବଂ ମନୋହର ସେ କେସ୍ ସହିତ ପରୋକ୍ଷ ଭାବରେ ହେଲେ ମଧ୍ୟ ଯଦି ଜଡ଼ିତ ଥାଏ, ତାକୁ ସତର୍କ କରାଇ ଦେବା ଉଚିତ୍ ନୁହେଁ କି ?

: ଉଚିତ୍ ଯେ ! କିନ୍ତୁ ତଦ୍ଦ୍ୱାରା ଆମ ଉଦ୍ଦେଶ୍ୟ ସାଧନରେ ବିଘ୍ନ ସୃଷ୍ଟି ହୋଇପାରେ। ଅର୍ଥାତ୍ ମନୋହର ଏହାପରେ ସତର୍କ ହୋଇଯିବ। ତା'ର ଦୋଷ ତ୍ରୁଟିକୁ ସେ ସବୁବେଳେ ଲୁଚେଇ ଚଳିବାକୁ ଚେଷ୍ଟା କରିବ । ଫଳରେ ଆମ ଆଖିରେ ଯାହା ସହଜରେ ଧରାପଡ଼ିଥାଆନ୍ତା, ସେଥିପାଇଁ ଆମକୁ ବହୁ ଅସାଧ୍ୟ ସାଧନ କରିବାକୁ ହେବ।

: ଯଦି ଆମ ଘରେ ପୋଲିସ୍ ଅନୁସନ୍ଧାନ ହୁଏ ?

: ହେଲେ ଦେଖାଯିବ। ସେ ବ୍ୟବସ୍ଥା ମୁଁ କରିବି। ମୋଟ କଥା ଅନୁରାଧା ହତ୍ୟାରହସ୍ୟ ସମ୍ବନ୍ଧରେ ଯେପରି ମନୋହରର ନାମ ଲୋକମୁଖରେ ଆଲୋଚିତ ନ ହୁଏ, ସେ ବ୍ୟବସ୍ଥା ମୁଁ କରିବି।

ମାଧବ ଆସି ଜଣାଇଲା, ମନୋହର ଉଠି ବାଥ୍‌ରୁମ୍‌କୁ ଯାଇଛି।

ସିଦ୍ଧାର୍ଥ ରାୟ ଚଞ୍ଚଳ ହୋଇଉଠିଲେ। କହିଲେ: ଆପଣଙ୍କ ସହିତ ମନୋହରକୁ ଥରେ ପରିଚୟ କରାଇଦେବା ଉଚିତ୍।

: ନା ନା, ବରଂ ମୋ ସମ୍ବନ୍ଧରେ ମନୋହର ଯେପରି କିଛି ଜାଣି ନ ପାରେ, ସେ ବ୍ୟବସ୍ଥା ଅବଲମ୍ବନ କରିବାକୁ ହେବ। ଏପରି କି ସେ ମୋତେ ଏଠାରେ ମୋଟେ ନ ଦେଖିବା ହିଁ ଭଲ।

: ତା' ହେଲେ ଆପଣ ତାକୁ କଲିକତାର ଏ ବିଶାଳ ଜନସମୁଦ୍ର ମଧ୍ୟରୁ ଖୋଜି ବାହାର କରିବେ କିପରି ?

: ମନୋହରର ଅଲକ୍ଷ୍ୟରେ ମୁଁ ତାକୁ ଥରେ ଦେଖିନେବି। ବରଂ ଆପଣ ତା'ର ଗୋଟାଏ ଫଟୋ ମୋତେ ଦିଅନ୍ତୁ। ମନୋହରକୁ ଦୂରରୁ ଦେଖି ଏବଂ ତା'ର ଫଟୋ ମିଳେଇ ମୁଁ କଲିକତାର ଯେକୌଣସି ସ୍ଥାନରେ ତାକୁ ଦେଖିଲେ ଚିହ୍ନିପାରିବି।

: ବର୍ତ୍ତମାନ ତା'ହେଲେ...

: ନା, ଆବଶ୍ୟକ ନାହିଁ। ମୁଁ ଯାଉଛି। ଦୂରରେ ପ୍ରତୀକ୍ଷା କରିଥିବି। ସେ ଘରୁ ବାହାରି ଯିବାବେଳେ ଠିକ୍ ଦେଖି ନେଇପାରିବି। ଆପଣ ତାକୁ ଏ ସମ୍ବନ୍ଧରେ କିଛି କୁହନ୍ତୁ ନାହିଁ କିମ୍ବା ଆପଣଙ୍କ ମନରେ ଯେ ତା' ପ୍ରତି ସାମାନ୍ୟ ସନ୍ଦେହ ଜାଗିଚି, ତାକୁ ଜାଣିବାକୁ ଦିଅନ୍ତୁ ନାହିଁ। ମନଇଚ୍ଛା ମନୋହରକୁ ଘୂରି ବୁଲିବାର ସୁଯୋଗ ଦିଅନ୍ତୁ।

ସିଦ୍ଧାର୍ଥ ରାୟ ଗମ୍ଭୀର ହୋଇ ସତ୍ୟବ୍ରତଙ୍କ କଥା ଶୁଣୁଥିଲେ ଏବଂ କ'ଣ ଯେପରି

ମନେ ମନେ ଚିନ୍ତା କରୁଥିଲେ।

: ଆଛା ମି: ମହାପାତ୍ର ! ମଣିଷ ହଠାତ୍ ଏପରି ବଦଳିଯାଏ କାହିଁକି କୁହନ୍ତୁ ତ ! ମୁଁ ଆସି ବୃଦ୍ଧ ହେଲିଣି, କେବଳ ଧନ ଉପାର୍ଜ୍ଜନର ଚିନ୍ତା ଆଜିପାଏ କରି ଆସିଲି। ଧନ ଛଡ଼ା ଯେ ଆଉ ଗୋଟାଏ ଦୁନିଆ ଅଛି ଏବଂ ସେ ଦୁନିଆରେ ମଣିଷ ବୋଲି ଗୋଟାଏ ଜାତି ଅଛି, ସେ କଥା ଭାବିବାର ଅବକାଶ କେବେ ପାଇନଥିଲି। ଭାବିଥିଲି, ମନୋହର ମୋଠାରୁ ଯେପରି ଶିକ୍ଷା ପାଇଚି ଆଉ ପିଲାଦିନରୁ ସେ ଯେପରି ମୋର ଅନୁଗତ; ତା' ସମ୍ବନ୍ଧରେ ଭବିଷ୍ୟତରେ ମୋତେ କିଛି ଭାବିବାକୁ ହେବନାହିଁ। କିନ୍ତୁ ହଠାତ୍ ଯେପରି ସବୁ ଅଦଳବଦଳ ହୋଇଗଲା। ମୋ ମନରେ ଏକ ଦୁଶ୍ଚିନ୍ତାର ନିଆଁ ଜଳି ଉଠିଲା। କାହିଁକି ଯେ ହଠାତ୍ ଏପରି ହେଲା ମୁଁ ତାହା ସୁସ୍ଥ ମନରେ ଚିନ୍ତା କରିପାରୁନାହିଁ।

ସତ୍ୟବ୍ରତ ସିଦ୍ଧାର୍ଥ ରାୟଙ୍କ ଗମ୍ଭୀର ଓ ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ ରହି କହିଲେ: ମି: ରାୟ ! ମୁଁ ଦେଖୁଛି ଆପଣ ସମସ୍ୟାଟାକୁ ମନ ଭିତରେ ଏକ ବିରାଟ ରୂପ ଦେଇ ବସିଛନ୍ତି। ଆପଣଙ୍କ ଭାବନାସବୁ ବେଳକୁବେଳ ଏତେ ଜଟିଳ ହୋଇପଡୁଛି ଯେ ଆପଣ ହୁଏତ ଶେଷ ପର୍ଯ୍ୟନ୍ତ...

ସତ୍ୟବ୍ରତ କଥା ଅସମାପ୍ତ କରି ଦର୍ପଣରେ ପ୍ରତିବିମ୍ବିତ ହୋଇଉଠିଥିବା ଗୋଟିଏ ସୁନ୍ଦର ଛାୟା ଆଡ଼େ ଅନାଇ ରହିଲେ।

ମନୋହର ଘର ମଧ୍ୟରେ ପ୍ରବେଶ କରିଥିଲା। ତାରି ପ୍ରତିବିମ୍ବ ପ୍ରତିଫଳିତ ହୋଇ ଉଠିଥିଲା ସତ୍ୟବ୍ରତଙ୍କ ସାମନାରେ ଥିବା ଗୋଟିଏ ବିରାଟ ଦର୍ପଣ ଉପରେ । ସତ୍ୟବ୍ରତ ମନୋହର ଆଡ଼କୁ ପଛକରି ବସିଥିଲେ। ମନୋହର ପ୍ୟାଣ୍ଟ, କୋଟ ଓ ଟାଇପରିହିତ ଅବସ୍ଥାରେ ଗୃହ ମଧ୍ୟରେ ପ୍ରବେଶ କରିଥିଲା। ହାତରେ ଧରିଥିବା ଗୋଟିଏ ଫାଇଲ୍ ସିଦ୍ଧାର୍ଥ ରାୟଙ୍କ ଆଡ଼କୁ ବଢ଼ାଇ ଦେଲା। ସିଦ୍ଧାର୍ଥ ରାୟ ଫାଇଲ୍‌ଟି ନେଲେ। ଖେଳେଇ ଦେଖିଲେ।

ମନୋହର ନୀରବରେ ସିଦ୍ଧାର୍ଥ ରାୟଙ୍କ ମୁହଁକୁ ଚାହିଁ ଠିଆ ହୋଇଥିଲା।

କାହାରି ମୁହଁରେ ଭାଷା ନାହିଁ।

ମନୋହର ମୁଖରେ ମଧ୍ୟ କୌଣସି ପରିବର୍ତ୍ତନ ନାହିଁ।

ସତ୍ୟବ୍ରତ ବି ମୁହଁ ବୁଲେଇ ଚାହିଁଲେ ନାହିଁ।

ସିଦ୍ଧାର୍ଥ ରାୟ ଫାଇଲ୍ ଭିତରେ ଥିବା କାଗଜପତ୍ରଗୁଡ଼ିକ ଉପରେ ଆଖି ବୁଲେଇ ନେଇ, ଚିଠିଗୁଡ଼ିକ ଦସ୍ତଖତ କଲେ। ଶେଷରେ ଫାଇଲ୍‌ଟି ମନୋହର ହାତକୁ ବଢ଼ାଇ ଦେଲେ।

ମନୋହର ଘରୁ ବାହାରି ଗଲା।

ସଙ୍ଗେସଙ୍ଗେ ସତ୍ୟବ୍ରତ ବୁଲି ଚାହିଁଲେ। ମନୋହର ଚାଲିଯାଉଥିଲା। ମନୋହର

ଅଦୃଶ୍ୟ ହେବାଯାଏ ସତ୍ୟବ୍ରତ ସେଇଆଡ଼େ ଅନେଇଥିଲେ। ସୁନ୍ଦର ଚେହେରା। ସୁପୁରୁଷ।

ଆଖି ଫେରାଇ ସତ୍ୟବ୍ରତ କହିଲେ: ଆପଣ ଖୁବ୍ ବଞ୍ଚେଇ ଦେଇଛନ୍ତି। ମନୋହର ସହିତ କୌଣସି କଥାବାର୍ତ୍ତା ନ କରିବା ଦ୍ୱାରା ମୁଁ ଅନ୍ତତ ବଞ୍ଚି ଯାଇଛି। କାରଣ ମୁଁ ତାକୁ ସଂପୂର୍ଣ୍ଣ ରୂପେ ଦେଖିଥିଲେ ମଧ୍ୟ ସେ ମୋତେ ଦେଖିବାର ସୁଯୋଗ ପାଇନାହିଁ।

: କିନ୍ତୁ ମି: ମହାପାତ୍ର। ମନୋହର କ'ଣ ସତେରେ ଖସଡ଼ା ପଥରେ ପାଦ ଦେଇଛି ?

: ଆପଣ ଚିନ୍ତା କରନ୍ତୁ ନାହିଁ ମି: ରାୟ। ଯାଆନ୍ତୁ। ପ୍ରାୟ ଦଶଟା ବାଜିବ। ଘରେ ବସି କେବଳ ମନୋହର କଥା ଚିନ୍ତା ନ କରି ନିଜ କାମରେ ଲାଗି ଯାଆନ୍ତୁ। ମନୋହର କଥା ତ ମୁଁ ଚିନ୍ତା କରିବା ପାଇଁ ରହିଲି।

: ଆପଣ ସତ କହୁଛନ୍ତି ମି: ମହାପାତ୍ର ?

: ଆଃ ! ଆପଣ ଉଠନ୍ତୁ ତ। ଯାଆନ୍ତୁ ନିତ୍ୟକର୍ମ ଶେଷ କରି ଅଫିସ ଯିବେ। ମୁଁ ମଧ୍ୟ ଚାଲିଲି।

: ଆପଣ କୁଆଡ଼େ ଯିବେ ?

: ମୋର ଏଠି ରହିବା ସମ୍ଭବ ହେବନାହିଁ।

: ତା'ହେଲେ ?

: ମୁଁ ଗୋଟାଏ ହୋଟେଲରେ ରହିଯିବି।

: ବେଶ୍, ଆପଣଙ୍କର ଯଦି ତାହାହିଁ ଇଛା, ତେବେ ମୁଁ ଫୋନ୍ କରି ଆପଣଙ୍କ ପାଇଁ ଗ୍ରେଟ୍ ଇଷ୍ଟର୍ଣ୍ଣରେ ଗୋଟାଏ ରୁମ୍ ରିଜର୍ଭ କରେଇ ଦେଉଛି।

: ଆପଣ ମୋ ପାଇଁ ଚିନ୍ତା କରନ୍ତୁ ନାହିଁ ମି: ରାୟ। ମୁଁ ପ୍ରଥମେ ଆସି ଗ୍ରେଟ ଇଷ୍ଟର୍ଣ୍ଣରେ ଉଠିଥିଲି। ମୋର ବିଛଣାପତ୍ର ଏବେ ମଧ୍ୟ ସେଇଠି ପଡ଼ିଛି।

: ବେଶ୍ ବେଶ୍। ସେଠାରେ ଯଦି କିଛି ଅସୁବିଧା ହୁଏ ଆପଣ ଗ୍ରାଣ୍ଡ୍‌କୁ ଚାଲିଆସିବେ। ଆପଣଙ୍କର କଲିକତାର ସମସ୍ତ ଖର୍ଚ୍ଚ ଏପରିକି ନୂଆ ପଇସାଟିଏ ପର୍ଯ୍ୟନ୍ତ ଯେପରି ଆପଣ ପକେଟରୁ ନ ଦିଅନ୍ତି, ସେଥିପାଇଁ ସତର୍କ ରହିବେ।

ସତ୍ୟବ୍ରତ ସ୍ମିତହସି କହିଲେ: ସେ ଦିଗରୁ ମୋତେ ସତର୍କ କରାଇବାକୁ ହେବନାହିଁ ମି: ରାୟ।

ସିଦ୍ଧାର୍ଥ ରାୟ ଡ୍ରୟାର ଟାଣି ଗୋଟିଏ ଚେକ୍ ବହି ବାହାର କଲେ। ସାମାନ୍ୟ ଲେଖାଲେଖି ପରେ ସତ୍ୟବ୍ରତଙ୍କ ହାତକୁ ଚେକ୍‌ଟି ବଢ଼ାଇ ଦେଇ କହିଲେ: ଆପଣଙ୍କ ପ୍ରାରମ୍ଭିକ କାର୍ଯ୍ୟପାଇଁ ଏତକ ଟଙ୍କା ରଖି ଥାଆନ୍ତୁ। କିଛି ମନେ କରିବେ ନାହିଁ।

ସତ୍ୟବ୍ରତଙ୍କ ଅନିଚ୍ଛା ସତ୍ତ୍ୱେ ସିଦ୍ଧାର୍ଥ ରାୟ ଚେକ୍‌ଟି ତାଙ୍କ ହାତରେ ଧରାଇ ଦେଲେ।

ପାଞ୍ଚହଜାର ଟଙ୍କାର ଖଣ୍ଡିଏ ବିଅରର ଚେକ୍।

ଲାଲ ବଜାର ପୋଲିସ୍ ଷ୍ଟେସନ।

ଷ୍ଟେସନର ଭାରପ୍ରାପ୍ତ ଅଫିସର ମିହିର ମଜୁମଦାର ଖୁବ୍ କାର୍ଯ୍ୟବ୍ୟସ୍ତ ଥିଲେ। ସତ୍ୟବ୍ରତ ନିଜର ଭିଜିଟିଂ କାର୍ଡ଼ଟି ପଠାଇ ଦେଇ ଓଏଟିଂ ରୁମ୍‌ରେ ଅପେକ୍ଷା କରିଥିଲେ। ପ୍ରାୟ ଅଧଘଣ୍ଟା ପରେ ଜଣେ କନେଷ୍ଟବଲ ଆସି ସତ୍ୟବ୍ରତଙ୍କୁ ଡାକି ନେଇଗଲା।

ମିହିର ମଜୁମଦାର ଖୁବ୍ ଅମାୟିକ ଲୋକ। ସତ୍ୟବ୍ରତଙ୍କୁ କୌଣସି ପ୍ରକାର ସାହାଯ୍ୟ କରିପାରିଲେ ସେ ଖୁବ୍ ଆନନ୍ଦିତ ହେବେ ବୋଲି କହିଲେ।

ସତ୍ୟବ୍ରତ କିଛି ଭୂମିକା ନ ଦେଇ କହିଲେ, ଗତକାଲି ରାତିରେ ହୋଇଥିବା ଗୋଟିଏ ମର୍ଡ଼ରର ସନ୍ଧାନ ସେ ଚାହାଁନ୍ତି। କେଉଁଠି ମର୍ଡ଼ର ହୋଇଛି ତାଙ୍କୁ ଜଣାନାହିଁ, କିଏ ମର୍ଡ଼ର କରିଛି ତା ମଧ୍ୟ ଅଜଣା। କିନ୍ତୁ ତାଙ୍କର ଦୃଢ଼ ବିଶ୍ୱାସ ଯେ, କଲିକତାରେ ସେ ମର୍ଡ଼ରଟି କାଲି ରାତିରେ ହୋଇଛି।

ମିହିର ମଜୁମଦାର ଏକ ଅଦ୍ଭୁତ ଚାହାଣିରେ ସତ୍ୟବ୍ରତଙ୍କ ଆଡ଼େ କିଛି ସମୟ ଅନାଇ ରହିଲେ: ଆପଣ ଜଣେ ରହସ୍ୟ ସନ୍ଧାନୀ ନା ରହସ୍ୟବାଦୀ ?

ସତ୍ୟବ୍ରତ ସ୍ମିତହସି କହିଲେ: ଦୁଇଟାରୁ ପ୍ରଥମଟା ଆଂଶିକ ସତ୍ୟ। ତେବେ ଯେଉଁ ଭଦ୍ରମହିଳା ଜଣକ ଖୁଣ୍ ହୋଇଛନ୍ତି ତାଙ୍କ ନାଁ ମୁଁ କହି ପାରିବି।

ତା ହେଲେ ଚଳିବ।

ମିହିର ମଜୁମଦାର କଲିଂ ବେଲ୍ ଟିପିଲେ।

କନେଷ୍ଟବଲ୍‌କୁ କହିଲେ: ଏ ସାହାବ୍ କୋ ଦାସଗୁପ୍ତା କା ପାଶ ଲେ ଯାଓ। ବୋଲୋ ସାହେବ୍ ଯୋ ଚାହତେହିଁ ଉସେ ମଦଦ୍ କରେ।

ସତ୍ୟବ୍ରତଙ୍କୁ ଚାହିଁ କହିଲେ: ଆପଣ ଯାଆନ୍ତୁ। ଦାସଗୁପ୍ତ ମୋର ସହକାରୀ। ସବୁ ଥାନାକୁ ଫୋନ୍ କରି ସେ ଆପଣଙ୍କର ଆସାମୀର ସନ୍ଧାନ ଦେବ।

: ଧନ୍ୟବାଦ।

ସତ୍ୟବ୍ରତ କାଳ ବିଳମ୍ବ ନ କରି, ଦ୍ୱିତୀୟ ପ୍ରଶ୍ନଟିଏ ପର୍ଯ୍ୟନ୍ତ ନ ପଚାରି ଉଠି ଠିଆହେଲେ।

ପ୍ରଣବ ଦାସଗୁପ୍ତ ସତ୍ୟବ୍ରତଙ୍କ ପରିଚୟ ପାଇ ଖୁବ୍ ଆନନ୍ଦିତ ପ୍ରକାଶ କଲେ। ସେ ଯେ ସବୁପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି ସେ କଥା ଜଣାଇ ଦେଇ ସଙ୍ଗେସଙ୍ଗେ ଟେଲିଫୋନ୍ ରିସିଭର ଉଠାଇଲେ।

ଅପର ପ୍ରାନ୍ତରୁ କ'ଣ ଉତ୍ତର ଆସିଲା କେଜାଣି,' ପ୍ରଣବ ଦାସଗୁପ୍ତ କହିଲେ ମୃତ ଆସାମୀର ନାମ ଅନୁରାଧା। ପଦବୀ ଜଣାନାହିଁ। ଅନୁମାନ ସେ ଜଣେ ଗାୟିକା। କାଲି ରାତିରେ ଖୁଣ୍ ହୋଇଛି। ଏହି ନାମଧାରିଣୀ ମହିଳା ସମ୍ବନ୍ଧରେ ଯଦି କୌଣସି ଥାନାରେ କିଛି ସମ୍ବାଦ ପହଞ୍ଚିଥାଏ, ଶୀଘ୍ର ଜଣାଇବ। ଏହାପରେ ପ୍ରଣବ ଦାସଗୁପ୍ତ ରିସିଭରଟା ରଖିଦେଲେ।

: ଚା' ନା କଫି କଣ ଆପଣ ପିଇବେ?

: ଯାହାହେଲେ ଚଳିବ। ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ।

: ଯେତେହେଲେ ଆପଣ ଆମର ଅତିଥି। ଆମେ ଭାରତୀୟ ଯେ! ଅତିଥି ସତ୍କାର ଆମର ପ୍ରଥମ କର୍ତ୍ତବ୍ୟ।

ପ୍ରଣବ ଦାସଗୁପ୍ତ କଫି ଆଣିବାକୁ ନିର୍ଦ୍ଦେଶ ଦେଲେ।

: ହୁଁ ଯଦି କିଛି ଆପତ୍ତି ନଥାଏ, ଏଥର ଆପଣଙ୍କ ରହସ୍ୟମୟୀ ନାୟିକା ଅନୁରାଧାଙ୍କ ସମ୍ବନ୍ଧରେ କିଛି କହିପାରନ୍ତି।

: କ୍ଷମା କରିବେ ମିଃ ଦାସଗୁପ୍ତ। ମୋତେ କିଛି ଜଣାନାହିଁ। ହୁଏତ ଅନୁସନ୍ଧାନ ପରେ ଖବର ଆସିବ କାଲି ରାତିରେ ଅନୁରାଧା ନାମ୍ନୀ, ଅଥବା...

ସତ୍ୟବ୍ରତଙ୍କ କଥା ଅସମାପ୍ତ ରହିଗଲା। ଦାସଗୁପ୍ତଙ୍କ ଟେବୁଲ୍ ଉପରେ ଫୋନଟା ଗର୍ଜିଉଠିଲା।

: ହାଲୋ : ଦାସଗୁପ୍ତ କହୁଛି। ହଁ ହଁ, ଅନୁରାଧା। ପାର୍କ ହୋଟେଲରେ? ରୁହନ୍ତୁ।

: ରିସିଭରଟା ସେହିପରି କାନରେ ଲଗାଇ ରଖି ସତ୍ୟବ୍ରତ ଆଡ଼େ ଚାହିଁ କହିଲେ ଇଉ ଆର୍ ଲକି ଏନଫ୍। ଅନୁରାଧାର ସମ୍ବାଦ ମିଳିଛି। ପାର୍କ ହୋଟେଲରେ ଗତ ରାତିରେ ତାର ମୃତ୍ୟୁ ହୋଇଛି। କେସ୍‌ଟା ପାର୍କଷ୍ଟ୍ରୀଟ୍ ଥାନା ଅଣ୍ଡରରେ। ଆପଣ ଆଉ କ'ଣ ଜାଣିବାକୁ ଜାଣିବାକୁ ଚାହାଁନ୍ତି?

: ମୁଁ ଟିକିଏ ପାର୍କଷ୍ଟ୍ରୀଟ୍ ଥାନାର ଭାରପ୍ରାପ୍ତ ଅଫିସରଙ୍କ ସଙ୍ଗରେ କଥା କହିବି।

: ହ୍ୟାଲୋ? ହଁ ହଁ, ପାର୍କଷ୍ଟ୍ରୀଟ୍ ଥାନା ଇନ୍‌ଚାର୍ଯଙ୍କ ସହିତ ସଂଯୋଗ କରାଇ ଦିଅନ୍ତୁ।

: ମୁଁ ପ୍ରଣବ ଦାସଗୁପ୍ତ କହୁଛି। କିଏ? ମିଷ୍ଟର ଶର୍ମା! ହ୍ୟାଲୋ ଶର୍ମାଜୀ! ପାର୍କ ହୋଟେଲ ମର୍ଡ଼ର କେସ ସମ୍ବନ୍ଧରେ ମୁଁ ଡିଟେଲ୍‌ସ ଜାଣିବାକୁ ଚାହେଁ। କ'ଣ କହିଲେ? ଓଃ! ଆଚ୍ଛା ଶୁଣନ୍ତୁ ଶର୍ମାଜୀ, ମିଃ ମହାପାତ୍ର ନାମକ ଜଣେ ଭଦ୍ରଲୋକଙ୍କୁ ମୁଁ ଆପଣଙ୍କ ନିକଟକୁ ପଠାଉଛି। ସେ ଜଣେ କ୍ରିମନଲୋଜିଷ୍ଟ। ଓଡ଼ିଶାରୁ ଆସିଛନ୍ତି। ଅନୁରାଧା କେସ୍ ସମ୍ବନ୍ଧରେ ସେ ଖୁବ୍ ଇଣ୍ଟରେଷ୍ଟେଡ୍। ଆପଣ ତାଙ୍କୁ ଟିକିଏ ସାହାଯ୍ୟ କରିବେ। ଧନ୍ୟବାଦ।

: ପ୍ରଣବ ଦାସଗୁପ୍ତ ଟେଲିଫୋନ୍ ରିସିଭରଟା ରଖୁ ରଖୁ କହିଲେ, ଫୋନ୍‌ରେ ସବୁ କଥା କହିବାକୁ ମି: ଶର୍ମା ରାଜି ହେଲେ ନାହିଁ। ଆପଣ ଏଇ ମୁହୂର୍ତ୍ତରେ ପାର୍କଷ୍ଟ୍ରୀଟ୍ ଥାନାକୁ ଚାଲିଯାଆନ୍ତୁ। ସେ ଆପଣଙ୍କୁ ଅପେକ୍ଷା କରିଛନ୍ତି।

ସତ୍ୟବ୍ରତ ସଙ୍ଗେସଙ୍ଗେ ଉଠିଲେ।

: କିନ୍ତୁ କଫି ପିଆହେଲା ନାହିଁ ଯେ! ପ୍ରଣବ ଦାସଗୁପ୍ତ କହିଲେ।

: କଫିଂପରେ ପିଇଲେ ଚଳିବ। ବରଂ ଆଜି ଚାରିଟା ପାଞ୍ଚଟା ବେଳକୁ ଆପଣ ଗ୍ରେଟ୍ ଇଷ୍ଟର୍ଣ୍ଣକୁ ଆସନ୍ତୁ। କଫିର ନିମନ୍ତ୍ରଣ ମୋ ତରଫରୁ ରହିଲା।

: କିନ୍ତୁ....

ପ୍ରଣବ ଦାସଗୁପ୍ତ କଣ କହିବାକୁ ଯାଉଥିଲେ।

: ନା, ମୁଁ ଆଉ କିନ୍ତୁ ଫିନ୍ତୁ କିଛି ଶୁଣିବି ନାହିଁ। ମୋର ବିଶେଷ ଅନୁରୋଧ ଆପଣ ନିଶ୍ଚୟ ଆସିବେ।

: ଆଚ୍ଛା!

ପ୍ରଣବ ଦାସଗୁପ୍ତ ଉଠି ସତ୍ୟବ୍ରତଙ୍କ ସହିତ କରମର୍ଦ୍ଦନ କଲେ।

ସତ୍ୟବ୍ରତ ପାର୍କଷ୍ଟ୍ରୀଟ୍ ଥାନାରେ ପହଞ୍ଚି ଶୁଣିଲେ ଯେ ଲସ୍ ପର୍ଯ୍ୟନ୍ତ ପାର୍କ ହୋଟେଲର ୧୭ ନମ୍ବର ରୁମ୍‌ରେ ପଡ଼ି ରହିଛି। ଅନୁରାଧା ଆତ୍ମହତ୍ୟା କରିଛି କି ତାକୁ ହତ୍ୟା କରାହୋଇଛି, ତାହା ଠିକ୍ ଜଣାପଡ଼ିନାହିଁ। ତେବେ ଅନୁରାଧା ଯେ ବିଷ ଖାଇ ମୃତ୍ୟୁବରଣ କରିଛି, ଏଇଟା ସତ କଥା। ବିଷ ସେ ନିଜେ ଖାଇଚି କି କେହି ତାକୁ ଖୁଆଇଛି, ତାହାହିଁ ହେଉଛି ସମସ୍ୟା।

ମି: ଶର୍ମା ଘଟଣାସ୍ଥଳକୁ ଯିବାକୁ ବାହାରିଥିଲେ।

ସତ୍ୟବ୍ରତ ତାଙ୍କ ସହିତ ପାର୍କ ହୋଟେଲ ଅଭିମୁଖରେ ଯାତ୍ରା କଲେ।

ହୋଟେଲର ମ୍ୟାନେଜର ଜଣେ ମଧ୍ୟବୟସ୍କ ଆଂଲୋଇଣ୍ଡିଆନ୍। ସେ ଖୁବ୍ ବିଚଳିତ ହୋଇପଡ଼ିଥିଲା ପରି ମନେ ହେଉଥିଲା।

ମି: ଶର୍ମାଙ୍କ ଆଗରେ ଘଟଣା ସେ ଆଉଥରେ ବର୍ଣ୍ଣନା କଲେ।

ଗତକାଲି ରାତି ଠିକ୍ ସାଢ଼େ ଦଶଟା ସମୟରେ ହୋଟେଲର ବାର୍ ବିଭାଗ ବନ୍ଦ ହୋଇଯାଇଥିଲା। ଅନୁରାଧା ଏହି ହୋଟେଲର ୧୭ ନମ୍ବର ରୁମ୍‌ରେ ରହେ। ବାର୍‌ରେ ଗୀତ ଗାଏ।

କାଲି ନୃତ୍ୟ ଗୀତ ପରେ ଅନୁରାଧା ବୋଧହୁଏ ତାର କୌଣସି ବନ୍ଧୁ ସହିତ ବାହାରକୁ ଯାଇଥିଲା। କେତେବେଳେ ଫେରିଲା ସେ ଜାଣି ନାହାନ୍ତି। କାଲି ରାତିରେ ମଧ୍ୟ ସେ ହୋଟେଲରେ ଖାଇନାହିଁ। ବୋଧହୁଏ ବାହାରୁ ଖାଇ ଆସିଥିଲା। ଫେରିଲା ବେଳେ ଅତ୍ୟଧିକ ମାତ୍ରାରେ ମଦ୍ୟପାନ କରିଥିଲା ପରି ମନେ ହେଉଥିଲା ବୋଲି ଜଣେ ଚାକର କହୁଥିଲା।

: ଆଉ ?

: ମିଃ ଶର୍ମା ପଚାରିଲେ।

: ଆଉ କିଛି ମୋତେ ଜଣାନାହିଁ।

: ଅନୁରାଧାର କେହି ଆତ୍ମୀୟସ୍ୱଜନ ଏଠାରେ ଅଛନ୍ତି ?

ସତ୍ୟବ୍ରତ ପଚାରିଲେ।

: ହୁଏତ ଥାଇ ପାରନ୍ତି, ମାତ୍ର ମୁଁ ଜାଣିନାହିଁ।

: ଚାଲନ୍ତୁ ଏଥର ୧୭ ନମ୍ବର ରୁମ୍‌ରୁ ଥରେ ବୁଲି ଆସିବା। ଆସନ୍ତୁ ମି: ଏଡ଼ୱାର୍ଡ଼।

ହୋଟେଲ ମ୍ୟାନେଜରଙ୍କୁ ମି: ଶର୍ମା ଡାକିଲେ।

ତିନି ଜଣ ଯାକ ୧୭ ନମ୍ବର ରୁମ୍ ଅଭିମୁଖରେ ବାହାରିପଡ଼ିଲେ।

ଦୁଇଜଣ କନେଷ୍ଟବଲ୍ ରୁମ୍ ଦୁଆରେ ପହରା ଦେଉଥିଲେ।

ଅନୁରାଧା ତା ଶେଯରେ ଚୁପ୍‌ଚାପ୍ ଶୋଇଥିଲା। ଆଖି ଦୁଇଟା ତାର ବିସ୍ଫାରିତ ହୋଇଯାଇଥିଲା। ମୁହଁଟା କଳା ଦିଶୁଥିଲା।

ସତ୍ୟବ୍ରତ ରୁମ୍‌ଟିର ଚାରିଆଡ଼େ ଆଖି ବୁଲେଇଲେ। କେତେକ ଆବଶ୍ୟକୀୟ ଜିନିଷପତ୍ର ଛଡ଼ା ବିଶେଷ କିଛି ନାହିଁ। ତେଣୁ ଅନୁରାଧା ଯେ ଖୁବ୍ ଗୋଟାଏ ଉଚ୍ଛୃଙ୍ଖଳ ଥିଲା, ମନେ ହେଉନାହିଁ। ସତ୍ୟବ୍ରତ ଅନୁରାଧାର ବାଥରୁମ୍ ପର୍ଯ୍ୟନ୍ତ ଖୋଲି ଦେଖିଲେ। କାଳେ ଯଦି...

ମି. ଶର୍ମା କହିଲେ: ମହାପାତ୍ରଜୀ ! ଆପଣଙ୍କର ଅନୁସନ୍ଧିତ୍ସା ଯଦି ମେଣ୍ଟିଯାଇଥାଏ, ତେବେ ଲାସ୍‌କୁ ମୁଁ ପୋଷ୍ଟମର୍ଟମ ପାଇଁ ପଠାଇ ଦେବି।

ସତ୍ୟବ୍ରତ ସଚେତନ ହୋଇଉଠିଲେ। ତାଙ୍କର ଲକ୍ଷ୍ୟ ତ ଅନୁରାଧାର ହତ୍ୟାରହସ୍ୟ ନୁହେଁ। କିନ୍ତୁ ଅଜାଣତରେ ଯେ ସେ ଏହି ହତ୍ୟାରହସ୍ୟ ସହିତ ଜଡ଼ିତ ହୋଇ ପଡୁଛନ୍ତି।

ହଠାତ୍ ସତ୍ୟବ୍ରତଙ୍କ ଆଖି ଗୋଟାଏ ପଦାର୍ଥ ପ୍ରତି ଆକୃଷ୍ଟ ହେଲା। ଅନୁରାଧା ଯେଉଁ ତକିଆ ଉପରେ ମୁଣ୍ଡ ରଖି ଶୋଇଥିଲା, ସେଇ ତକିଆ ତଳେ ଗୋଟାଏ ପଦାର୍ଥ କ'ଣ ବାରକୁ ସାମାନ୍ୟ ଦିଶୁଥିଲା।

ସତ୍ୟବ୍ରତ କ୍ଷିପ୍ର ହସ୍ତରେ ସେଇଟାକୁ ଟାଣି ବାହାର କଲେ।

ଭ୍ୟାନିଟି ବ୍ୟାଗ।

ହୁଏତ ଅନୁରାଧାର ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ବ୍ୟାଗ୍‌ଟି ତାର ସାଥୀ ହୋଇଥିବ। ହୁଏତ ଏଇ ବ୍ୟାଗ୍ ଭିତରେ ଅନୁରାଧାର ମୃତ୍ୟୁରହସ୍ୟ ଲିପିବଦ୍ଧ ହୋଇରହିଥିବ। ସତ୍ୟବ୍ରତ କୌତୂହଳ ଦମନ କରିନପାରି ଭ୍ୟାନିଟି ବ୍ୟାଗ୍‌ଟି ଖୋଲି ପକାଇଲେ। ସଙ୍ଗେ ସଙ୍ଗେ ସେ ଚିତ୍କାର କରି କହିଲେ: ଶର୍ମାଜୀ ! ଅନୁରାଧାର ଏ କେଶ୍‌ଟି ଆତ୍ମହତ୍ୟା ନୁହେଁ, ଅନୁରାଧାକୁ ହତ୍ୟା କରା ହୋଇଛି।

ସର୍ପ-ଉର୍ବଶୀ-ରାତ୍ରି

: ହତ୍ୟା ?

ମି: ଏଡ୍‌ୱାର୍ଡ଼ଙ୍କ ଆଖି କପାଳକୁ ଉଠିଗଲା।

ମି: ଶର୍ମା ସତ୍ୟବ୍ରତଙ୍କ ପାଖକୁ ଲାଗି ଆସି କହିଲେ: ଆପଣଙ୍କ ଉକ୍ତିର ମର୍ମ ଠିକ୍ ମୁଁ ବୁଝିପାରିଲି ନାହିଁ।

ସତ୍ୟବ୍ରତ ଖୋଲା ଭ୍ୟାନିଟି ବ୍ୟାଗ୍‌ଟି ଦେଖାଇ କହିଲେ: ଦେଖନ୍ତୁ ଏଇଟା ବିଲ୍‌କୁଲ୍ ଖାଲି। ଏପରିକି ରୁମାଲ ଖଣ୍ଡେ ବା ଚିରୁଣୀଟାଏ ବି ଏହା ଭିତରେ ନାହିଁ।

: ତା ହେଲେ...

: ନା, ଆଉ ଦ୍ୱିଧା କରିବାର କିଛି ନାହିଁ ମି: ଶର୍ମା। ଏ କେଶଟା ପରିଷ୍କାର ହୋମିସାଇଡ୍। ଅନୁରାଧାକୁ ହତ୍ୟା କରାହୋଇଛି ଏବଂ ହତ୍ୟାର ସମସ୍ତ ପ୍ରମାଣ ପୋଛି ଦେବାପାଇଁ ତା' ଭ୍ୟାନିଟି ବ୍ୟାଗ୍‌ରୁ କାଗଜପତ୍ର କାଢ଼ି ନିଆହୋଇଛି, ତାହା ଏତେ କ୍ଷିପ୍ରତାର ସହକାରେ ହୋଇଛି ଯେ, ଯା'ଫଳରେ ଅନୁରାଧାର ଭ୍ୟାନିଟି ବ୍ୟାଗଟି ଫମ୍ପା ହୋଇ ପଡ଼ିରହିଛି।

: କିନ୍ତୁ ଏଇଟା କଣ ଅନୁରାଧାର ହତ୍ୟା ସମ୍ବନ୍ଧରେ ଯଥେଷ୍ଟ ପ୍ରମାଣ ଦେଉଛି ?

: ଅବଶ୍ୟ କୋର୍ଟ ପାଇଁ ଦେଉନାହିଁ, ତେବେ ଆମର ଅନୁସନ୍ଧାନ ପାଇଁ ଏହା ଯେ ଯଥେଷ୍ଟ ସହାୟତା କରୁଛି, ଏହା ମୁଁ ଜୋର୍ ଗଳାରେ କହି ପାରିବି।

: କିନ୍ତୁ ମହାପାତ୍ର ଜୀ ! ଆପଣଙ୍କ ଅନୁମାନ ଯଦି ସତ୍ୟ ହୁଏ, ତେବେ ହତ୍ୟାକାରୀ ତ ଭ୍ୟାନିଟି ବ୍ୟାଗଟି ଧରି ଚାଲି ଯାଇ ପାରିଥାଆନ୍ତା, ସେ ତାହା ନ କରି ଭ୍ୟାନିଟି ବ୍ୟାଗ୍ ଶୂନ୍ୟ କରି ସମସ୍ତ ଜିନିଷପତ୍ର ନେଇଯିବାର ସାର୍ଥକତା କ'ଣ ଥିଲା ?

: ହୁଏତ ଥିଲା ଶର୍ମାଜୀ। ସବୁ ସମୟରେ ହତ୍ୟାକାରୀର ମୋଟିଭ୍‌ଟା ଠିକ୍ ଜଣାପଡ଼େନାହିଁ। ଏ କ୍ଷେତ୍ରରେ ଦୁଇଟି କାରଣ ହୋଇପାରେ। ହୁଏତ ହତ୍ୟାକାରୀ ଭାବିଥିଲା, ସେ ଯଦି ଭ୍ୟାନିଟି ବ୍ୟାଗଟି ସଙ୍ଗରେ ନେଇଯାଏ, ତେବେ ପରେ ହୁଏତ ଅନୁରାଧାର ଭ୍ୟାନିଟି ବ୍ୟାଗଟି ଖୋଜା ହୋଇପାରେ କିମ୍ବା ଏହା ମଧ୍ୟ ହୋଇପାରେ, ହତ୍ୟାକାରୀ ଭ୍ୟାନିଟି ବ୍ୟାଗଟିକୁ ହାତରେ ଧରି ଯିବାର ସୁଯୋଗ ନ ଥିଲା। କାରଣ ଆପଣ ତ ଦେଖୁଛନ୍ତି, ଏଇଟି ଅପେକ୍ଷାକୃତ ବଡ଼, ଏହାକୁ ପକେଟରେ ଲୁଚେଇ ନେଇ ହେବନାହିଁ, ନେବାକୁ ହେଲେ ହାତରେ ଧରି ଯିବାକୁ ହେବ। ଆଉ ହତ୍ୟାକାରୀ ଯଦି ଜଣେ ପୁରୁଷ ହୋଇଥାଏ, ତେବେ ସେ ଗୋଟାଏ ଭ୍ୟାନିଟି ବ୍ୟାଗ ଧରି ଚାଲିଲେ ନିଶ୍ଚୟ ଲୋକମାନଙ୍କର ଆଖି ତା ଉପରେ ପଡ଼ିବ। ତେଣୁ...

: ହୁଁ।

ମି: ଶର୍ମା ସତ୍ୟବ୍ରତଙ୍କ ବିଶ୍ଳେଷଣ ଗମ୍ଭୀର ହୋଇ ଶୁଣୁଥିଲେ। ମି: ଏଡ୍‌ୱାର୍ଡ଼ଙ୍କ

ଆଡ୍ରେ ଚାହିଁ ପ୍ରଶ୍ନ କଲେ: କାଲି ରାତିରେ ଯେତେବେଳେ ଅନୁରାଧା ଫେରିଲା ସେତେବେଳକୁ କେତେଟା ବାଜିଥିଲା ?

: ରାତି ବାରଟା ବାଜି ଯାଇଥିଲା।

: ଅନୁରାଧାର ସଙ୍ଗରେ ଆଉ କୌଣସି ଲୋକ ଆସିଥିଲା ?

: ମୁଁ ଠିକ କହିପାରିବି ନାହିଁ।

: ଯିଏ କହିପାରିବ ଆପଣ ତାକୁ ଏଠାକୁ ପଠାଇ ଦିଅନ୍ତୁ। ଆପଣ ଯାଇପାରନ୍ତି। ଦରକାର ହେଲେ ମୁଁ ପୁଣି ଡାକି ପଠାଇବି।

ମି: ଏଡ୍‌ୱାର୍ଡ଼ ସେଠାରୁ ଚାଲିଗଲେ ଏବଂ କିଛି ସମୟପରେ ଗୋଟିଏ ବୟ ଆସି ମି: ଶର୍ମା ଓ ସତ୍ୟବ୍ରତ ମହାପାତ୍ରଙ୍କୁ ସାଲ୍ୟୁଟ୍ ବଜାଇଲା।

: ତୁମ ନାମ କ'ଣ ?

ସତ୍ୟବ୍ରତ ପଚାରିଲେ।

: ରହମାନ।

ବୟ କହିଲା।

: ମୃତ ଅନୁରାଧା ସହିତ ତୁମେ କେତେଦିନ ହେବ ପରିଚିତ ?

: ସେ ଏଠାକୁ ଆସିଲା ଦିନଠାରୁ।

: କେତେଦିନ ହେବ ସେ ଏଠାରେ ଥିଲା ?

: ପ୍ରାୟ ତିନିବର୍ଷ ହେବ।

: ହୁଁ, ତମେ ଅନୁରାଧାକୁ ତା'ହେଲେ ଭଲଭାବରେ ଚିହ୍ନିଚ।

: ଆଜ୍ଞା।

: ତାର ସମସ୍ତ କାମଦାମ୍ ତମେ କରିଥାଅ ?

: ଆଜ୍ଞା।

: ବେଶ୍ କାଲି ରାତିରେ ଯେତେବେଳେ ଅନୁରାଧା ଫେରିଲା ତା ସହିତ ଯେଉଁ ଭଦ୍ରଲୋକ ଜଣେ ଆସିଥିଲେ ତମେ ତାଙ୍କୁ ଚିହ୍ନିଚ ?

: ଭଦ୍ରଲୋକ ? କହାକଥା ଆପଣ କହୁଛନ୍ତି ?

: ଯିଏ ଅନୁରାଧାକୁ ଛାଡ଼ିଦେବାକୁ ଏ ହୋଟେଲକୁ ଆସିଥିଲା।

ରହମାନ କ'ଣ ଟିକିଏ ଚିନ୍ତା କଲା। ବୋଧହୁଏ ସତ୍ୟବ୍ରତଙ୍କ ବୋକାମୀରେ ସେ ପ୍ରାଣଖୋଲି ହସିବାକୁ ଚାହୁଁଥିଲା। କିନ୍ତୁ ମିଃ ଶର୍ମାଙ୍କ ବାଘୁଆ ନିଶ ହଳକ ଆଡ଼କୁ ଚାହିଁ କହିଲା: ଅନୁରାଧା ଦେବୀ ଏକା ଫେରିଥିଲେ।

: ତମେ ଠିକ୍ ଦେଖିଛ ? ଏଥର ମିଃ ଶର୍ମା ଧମେକେଇଲା ପରି ପଚାରିଲେ।

ରହମାନ ଚମକି ପଡ଼ି କହିଲା: ମୁଁ ଦେଖିଛି ଆଜ୍ଞା। ଅନୁରାଧା ଦେବୀଙ୍କ ରୁମ୍ ମୁଁ ନିଜେ ଖୋଲି ଦେଇଥିଲି। ସେଦିନ ସେ ଏତେ ଜୋର ମାତାଲ ହୋଇ ପଡ଼ିଥିଲେ ଯେ, ନିଜ ପାଦ ଯୋଡ଼ାକୁ ଠିକ୍ ଭାବରେ ଉଠାଇ ପକାଇ ପାରୁନଥିଲେ। ଫଳରେ...

: ଆଚ୍ଛା ରହମାନ ! କାଲି ଅନୁରାଧାର ସେହି ମାତାଲ ଅବସ୍ଥାରେ ତା ହାତରେ କ'ଣ ଥିଲା ?

ରହମାନ ଟିକିଏ ଚିନ୍ତା କଲା। କହିଲା: ତାଙ୍କ ଭ୍ୟାନିଟି ବ୍ୟାଗ୍।

: ସେ ବ୍ୟାଗଟା ଦେଖିଲେ ତମେ ଚିହ୍ନି ପାରିବ ? ସତ୍ୟବ୍ରତ ମି: ଶର୍ମାଙ୍କୁ ଚାହିଁ କହିଲେ: ଆପଣ ଯଦି ମୋତେ ଟିକିଏ ଅନୁମତି ଦେବେ ତା'ହେଲେ ବେସରକାରୀ ଭାବରେ ଏହି କେଶ୍ ସମ୍ବନ୍ଧରେ ଆପଣଙ୍କୁ ସାହାଯ୍ୟ କରିବି।

ମି: ଶର୍ମାଙ୍କ ମୁଖଭଙ୍ଗୀ ଧୀରେଧୀରେ ବଦଳୁଥିଲା। ଆଖିରେ କିପରି ଅବିଶ୍ୱାସର ଇଂଗିତ ଫୁଟି ଉଠୁଥିଲା।

: ବେଶ୍, ମୁଁ ତେବେ ବର୍ତ୍ତମାନ ଆସୁଚି। ଦରକାର ହେଲେ ଆପଣଙ୍କୁ କେଉଁଠି ପାଇବି ?

: ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲ। ରୁମ୍ ନମ୍ବର ୭।

ମିଃ ଶର୍ମା ଚାଲିଯାଉଥିଲେ। ପୁଣି ଦୁଇପାହୁଣ୍ଡ ପଛକୁ ଲେଉଟି ଆସି କହିଲେ: ଆପଣ ବର୍ତ୍ତମାନ ଫେରିବେ ନାହିଁ ?

: ନା, ଆଉ ଟିକିଏ କାମ ଅଛି। ଅବଶ୍ୟ କାମଟା ଅନୁରାଧାର ପରିଚିତି ସଂଗ୍ରହ। ମିଃ ଏଡ଼ଓ୍ୱାର୍ଡ଼ଙ୍କ ସହିତ କିଛି ସମୟ କଥାବାର୍ତ୍ତା କରି ଫେରିବି।

: ପୁଣି ଦେଖାହେବ କେତେବେଳେ ?

ସନ୍ଧ୍ୟା ବେଳକୁ ଆପଣ ଗ୍ରେଟ୍ ଇଷ୍ଟର୍ଣ୍ଣକୁ ଆସନ୍ତୁ। ମିଃ ଦାସଗୁପ୍ତଙ୍କ ଆସିବାର ଅଛି। ଆପଣ ଆସିଲେ ଚ'ପର୍ବଟା ବେଶ୍ ଜମନ୍ତା ଆଉ ଅନୁରାଧା କେଶ୍ ସମ୍ବନ୍ଧରେ ମଧ୍ୟ ଆଲୋଚନା ହୁଅନ୍ତା।

ଆଚ୍ଛା ଚେଷ୍ଟା କରିବି।

ମିଃ ଶର୍ମା ମାର୍ଚ୍ଚିଂ କଲାପରି ପାଦ ପରେ ପାଦ ଉଠାଇ ଚାଲିଗଲେ।

ସତ୍ୟବ୍ରତ ଧୀରେ ତଳକୁ ଓହ୍ଲେଇ ଆସିଲେ।

ପାର୍କ ହୋଟେଲର ମ୍ୟାନେଜର ମିଃ ଏଡ଼ଓ୍ୱାର୍ଡ଼ ଅଫିସ ରୁମ୍‌ରେ ଚିନ୍ତିତ ହୋଇ ବସିଥିଲେ। ହଏତ ସେ ଚିନ୍ତା କରୁଥିଲେ, ତାଙ୍କ ମ୍ୟାନେଜର ଅମଳରେ ଏପରି ଏକ ଦୁର୍ଘଟଣା ସୁନାମରେ ନିଶ୍ଚୟ କାଳି ବୋଳିବ।

ସର୍ପ-ଉର୍ବଶୀ-ରାତ୍ରି

ସତ୍ୟବ୍ରତ କ୍ଳାନ୍ତପାଦ ଚାଳି ରୁମ୍‌ରେ ପ୍ରବେଶ କଲେ।

ମିଃ ଏଡ୍‌ୱାର୍ଡ଼ ଉଠି ଠିଆହୋଇ ପଡ଼ିଲେ। ବସିବା ପାଇଁ ଚେଆର ଦେଖେଇ ଦେଇ କହିଲେ: ମିଃ ଶର୍ମା ?

: ସେ ଚାଲିଗଲେ। କିନ୍ତୁ କେଶ୍ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିବାର ଭାର ମୋ ଉପରେ ଦେଇ ଯାଇଛନ୍ତି। ଆଶା କରୁଚି ଆପଣ ମୋତେ ସବୁ ପ୍ରକାର ସାହାଯ୍ୟ କରିବେ।

: ନିଶ୍ଚୟ, ନିଶ୍ଚୟ ମିଷ୍ଟର....

:ମହାପାତ୍ର। ମୋ ନା ସତ୍ୟବ୍ରତ ମହାପାତ୍ର।

ଏଡ୍‌ୱାର୍ଡ଼ ନିଜର ଆସନ ଅଧିକାର କରି ବସିଲେ।

: ଆଚ୍ଛା ମିଃ ଏଡ୍‌ୱାର୍ଡ଼ ! ଅନୁରାଧାକୁ ଆପଣ କେତେ ଦିନ ହେବ ଜାଣନ୍ତି ?

: ମାତ୍ର ବର୍ଷେହେବ।

: ଅନୁରାଧା କ'ଣ ବର୍ଷେ ହେବ ଏ ହୋଟେଲରେ ଚାକିରି କରୁଛି ?

: ନା, ଆହୁରି ଆଗରୁ। କିନ୍ତୁ ମୁଁ ଏ ହୋଟେଲକୁ ମାତ୍ର ବର୍ଷେ ହେବ ମ୍ୟାନେଜର ହୋଇ ଆସିଛି।

: ଯା ପୂର୍ବରୁ ?

: ମୁଁ ବମ୍ବେରେ ଥିଲି। ନୋରମାନ୍ କମ୍ପାନୀର ଏହିପରି ହୋଟେଲ ଭାରତବର୍ଷରେ ଚାରି ଜାଗାରେ ଅଛି। ବମ୍ବେରୁ ମୋତେ କଲିକତା ବଦଳି କରାହୋଇଛି ମାତ୍ର ବର୍ଷେ ହେବ।

: ହୁଁ, ଆପଣ ତା ହେଲେ ଅନୁରାଧାର ପୂର୍ବ ଇତିହାସ କିଛି ଜାଣିନାହାନ୍ତି ?

: ନା, ଜାଣିବାକୁ କେବେ ଚେଷ୍ଟା କରିନାହିଁ। କରଣ ମୁଁ ଜାଣିଛି ଏ ଲାଇନ୍‌ର ପ୍ରତ୍ୟେକଟି ଝିଅଙ୍କର ଇତିହାସ ପ୍ରାୟ ସମାନ ! ସାମାନ୍ୟ ଏପାଖ ସେପାଖ ଛଡ଼ା ବିଶେଷ କୌଣସି ନୂତନତ୍ୱ ନାହିଁ।

: ଆପଣଙ୍କ ହୋଟେଲରେ ଅନୁରାଧା ପରି କେତେଜଣ ଝିଅ ଦରମା ପାଇ ରହିଛନ୍ତି ?

: ଆଉ ଦୁଇଜଣ ଅଛନ୍ତି। ତା'ଛଡ଼ା ଅନେକ ଝିଅ ଆସନ୍ତି, ଯେଉଁମାନେ କି ହୋଟେଲରୁ କୌଣସି ଦରମା ପାଆନ୍ତି ନାହିଁ।

: କିନ୍ତୁ କାହିଁକି ଆସନ୍ତି ?

ଏଥର ମିଃ ଏଡ୍‌ୱାର୍ଡ଼ ନ ହସି ରହି ପାରିଲେ ନାହିଁ।

: ଆପଣଙ୍କ ଆଗରେ ସବୁକଥା ତ ଖୋଲାଖୋଲି ଭାବରେ କହିହେବନାହିଁ। ତେବେ ଯେଉଁ ଝିଅମାନେ ଆସନ୍ତି, ସମସ୍ତେ ପେଟ ପୋଷିବା ପାଇଁ ଏଠାକୁ ଆସନ୍ତି।

: ହୁଁ, ଆଉ ଯେଉଁ ଦୁଇଟି ଝିଅ ଆପଣଙ୍କ କମ୍ପାନୀରୁ ଦରମା ପାଆନ୍ତି, ସେମାନଙ୍କ ନାମ କ'ଣ ?

: ଜଣକ ନାମ ରୀଟା ଗ୍ରେଗରୀ । ଆଉଜଣଙ୍କ ନାଁ ଲଲିପୁଟ୍।

: ସେମାନେ କ'ଣ କରନ୍ତି ?

: ଦୁଇଜଣ ଯାକ ନର୍ତ୍ତକୀ। ବାର୍‌ରେ ନାଚନ୍ତି।

: ଅନୁରାଧା କ'ଣ କରୁଥିଲା ?

: ସେ ମଧ୍ୟ ବାରରେ ନିଯୁକ୍ତି ପାଇଥିଲା । କିନ୍ତୁ ସେ ଗୀତ ଗାଉଥିଲା।

: ହୁଁ ।

ସତ୍ୟବ୍ରତ ଚିନ୍ତିତ ହୋଇପଡ଼ିଥିଲେ। ପ୍ୟାଣ୍ଟ ପକେଟରେ ହାତଭରି କ'ଣ ଯେପରି ଖୋଜୁଥିଲେ।

ମିଃ ଏଡ଼ୱାର୍ଡ଼ 'ପ୍ଲେୟାର୍ସ ନମ୍ବର ଥ୍ରୀ' ଟିଣଟି ସତ୍ୟବ୍ରତ ଆଡ଼କୁ ବଢ଼ାଇ ଦେଇ କହିଲେ: ସିଗାରେଟ୍ ନିଅନ୍ତୁ।

ସତ୍ୟବ୍ରତ ବାଁ ହାତରେ ଖଣ୍ଡିଏ ସିଗାରେଟ୍ ନେଇ କହିଲେ, ଧନ୍ୟବାଦ।

ଏଡ଼ୱାର୍ଡ଼ ଲାଇଟର ଜଳାଇ ଦେଲେ।

ସତ୍ୟବ୍ରତ ସିଗାରେଟ୍‌ରେ ଗୋଟିଏ ଟାଣ ମାରି ଧୂମ ଉଦ୍‌ଗୀରଣ କରି କହିଲେ: ଆପଣାଙ୍କ ରୀଟା ଗ୍ରେଗରୀ ଆଉ ଲିଲିପୁଟ ଏ ଦୁଇଜଣ ନିଶ୍ଚୟ ଏହି ହୋଟେଲରେ ରୁହନ୍ତି ?

: ନା, ମିଃ ମହାପାତ୍ର ! ସେମାନେ ରୁହନ୍ତି ନାହିଁ।

: ତା'ହେଲେ ?

: ସେମାନେ ଅନ୍ୟ କେଉଁଠି ଫ୍ଲାଟ୍ ଭଡ଼ା କରି ରୁହନ୍ତି। ତଦ୍ୱାରା ସେମାନଙ୍କୁ ଖର୍ଚ୍ଚ କମ୍ ପଡ଼େ ଏବଂ ସ୍ୱାଧୀନ ଭାବରେ ରହିପାରନ୍ତି।

ଏଡ଼ୱାର୍ଡ଼ଙ୍କ ମୁହଁରୁ କିପରି ଏକ ବିଦ୍ରୂପର ହସ ଫୁଟି ଆସୁଥିଲା।

: କିନ୍ତୁ ସେମାନଙ୍କ ସହିତ ମୋର ଟିକିଏ ଦେଖା କରିବା ପ୍ରୟୋଜନ ଯେ।

: ବର୍ତ୍ତମାନ ତ ସମ୍ଭବ ହେବନାହିଁ। ଯଦି ଏକାନ୍ତ ଜରୁରୀ ମନେ କରନ୍ତି, ତା'ହେଲେ ମୁଁ ସେମାନଙ୍କ ପାଖକୁ ଲୋକ ପଠାଇବି। ତା' ନ ହେଲେ ଆପଣ ଯଦି ସନ୍ଧ୍ୟା ସାତଟା ବେଳକୁ ଆସନ୍ତି, ଏଇଠି ଦେଖା ହୋଇଯିବ।

ସତ୍ୟବ୍ରତ ନୀରବ ରହିଲେ।

କିଛି ସମୟ ପରେ ପୁଣି ସତ୍ୟବ୍ରତ କହିଲେ: ଅନ୍ୟ ଯେଉଁ ଝିଅମାନେ ନିଜ ଇଚ୍ଛାରେ ଆପଣଙ୍କ ହୋଟେଲକୁ ଆସନ୍ତି, ସେମାନେ କ'ଣ ଆପଣଙ୍କ ବିନା ଅନୁମତିରେ ଆସନ୍ତି ?

: ନା, ଯେଉଁମାନେ ଆସନ୍ତି, ସମସ୍ତଙ୍କୁ ପ୍ରଥମେ ଅନୁମତି ନେବାକୁ ପଡ଼େ।

: ସେମାନଙ୍କ ନାଁ ଠିକଣା ନିଶ୍ଚୟ ଆପଣ ନୋଟ୍ କରି ରଖିଥିବେ।

: ହଁ, ରୁହେ ଯେ, ସେ ଖାଲି ଗୋଟାଏ ଫରମାଲିଟି ସେକ୍। ସତକଥା କହିବାକୁ ଗଲେ, ଭଲ ଭଲ ଝିଅମାନଙ୍କୁ ଆମେ ହୋଟେଲରେ ପ୍ରବେଶ ଅଧିକାର ଦେଇଥାଉ। ଭଲ ଭଲ ଏଇ ଦୃଷ୍ଟିରୁ, ଯେଉଁମାନେ ସୁନ୍ଦରୀ। କେବଳ ଲୋକମାନଙ୍କୁ ଆକର୍ଷିତ କରି ଆଣିବା ପାଇଁ ଆମେ ଏହିପରି ଝିଅମାନଙ୍କୁ ପ୍ରଶ୍ରୟ ଦେଇଥାଉ। ତଦ୍ଵାରା ଆମେ ବି ଲାଭବାନ ହେଇଥାଉ, ଆଉ ସେମାନେ ବି। ଏହି ବ୍ୟବସାୟକୁ ଟିକିଏ ତଳେଇ ଦେଖିଲେ, ଏହା ଅତ୍ୟନ୍ତ ଘୃଣ୍ୟ ଏବଂ ନୀଚ ସ୍ତରର ବ୍ୟବସାୟ। କିନ୍ତୁ ଆପଣ ଆଶ୍ଚର୍ଯ୍ୟ ହେବେ ମି: ମହାପାତ୍ର, ସହରର ସମସ୍ତ ଅଭିଜାତ ଘରର ଲୋକେ ଆସି ଏହିପରି ହୋଟେଲମାନଙ୍କରେ ରୁଣ୍ଡ ହୁଅନ୍ତି। ସେହି ରାସ୍ତାର ଝିଅମାନଙ୍କୁ ଧରି ଆମୋଦ କରନ୍ତି। ଜଘନ୍ୟ କାଣ୍ଡ କାରଖାନା। ଅବଶ୍ୟ ଆମର ଏଇଟା ପେଶା। ଆମେ ଚାକିରିଆ। ଆଖି ବୁଜି ସବୁ ଦେଖିଯିବାକୁ ବା ସହିଯିବାକୁ ବାଧ୍ୟ। ଆପଣ ଯଦି ଦିନେ ରାତି ଆଠଟା ବେଳକୁ ଆସନ୍ତେ, ତେବେ ଦେଖନ୍ତେ ସହରର ବୁଦ୍ଧିଜୀବୀମାନେ କେଉଁ ସ୍ତରରେ ଆସି ପହଞ୍ଚିଲେଣି।

ସତ୍ୟବ୍ରତ ନୀରବରେ ଏଡ଼ୱାର୍ଡ଼ଙ୍କ କଥା ଶୁଣୁଥିଲେ। ଆଉ ଚିନ୍ତା କରୁଥିଲେ ଏହି ଅଜବ ସହର କଥା। ମନୋହରର ଜନ୍ମ ସେହି ବାୟୁମଣ୍ଡଳ ଭିତରେ। ସେ ଆଧୁନିକ ଅଭିଜାତ ଘରର ପିଲା। ତେଣୁ ହୋଟେଲ, କ୍ଲବ୍ ବା ଅନୁରାଧା, ମଧୁଛନ୍ଦାମାନଙ୍କ ସହିତ ସାମାନ୍ୟ ଟିକିଏ ପରିଚୟ ବା ମିଳାମିଶା ବିଶେଷ କିଛି ଦୋଷାବହ ନୁହେଁ। ତଥାପି ସିଦ୍ଧାର୍ଥ ରାୟ ସେତିକି ସହିପାରୁନାହାନ୍ତି।

ଏଡ଼ୱାର୍ଡ଼ଙ୍କ କଥା ଶେଷ ହୋଇଥିଲା।

ସତ୍ୟବ୍ରତ କହିଲେ: ପ୍ରକୃତରେ ଏଠାକାର ଜନ ଜୀବନ ସମ୍ବନ୍ଧରେ ମୋ ମନରେ ଅନେକ ଦିନରୁ ଗୋଟାଏ କୌତୂହଳ ଅଛି। ଆପଣଙ୍କ ସହିତ ପରିଚୟ ହେଲା ଯେତେବେଳେ ଏବଂ ଆପଣ ମୋତେ ବନ୍ଧୁ ଭାବରେ ଗ୍ରହଣ କରିଛନ୍ତି ଯେତେବେଳେ, ଏହି ଅବସରରେ ମୁଁ ଅନ୍ତତଃ ସୁଯୋଗ ନେବା ଉଚିତ। ଯା' ହେଉ ମୁଁ ଆଜି କିମ୍ବା କାଲି ରାତିରେ ଆପଣଙ୍କ ଏଠାକୁ ଆସିବି। ହଁ କ'ଣ କହୁଥିଲିଟି। ବାହାରର ସେହି ଝିଅମାନଙ୍କ କଥା, ଯେଉଁମାନେ ବାହାରୁ ଏଠାକୁ ଆସନ୍ତି, ସେମାନଙ୍କ ନାଁ ଠିକଣାର ତାଲିକା ଟିକିଏ ଦେଖାଇ ପାରିବେ ନାହିଁ?

ଏଡ଼ୱାର୍ଡ଼ ଟିକିଏ ଚିନ୍ତିତ ହୋଇପଡ଼ିଲେ। କହିଲେ: ସେପରି କିଛି ତାଲିକା ଆମ

ପାଖରେ ନାହିଁ। ତେବେ ପ୍ରାୟ ସବୁ ଝିଅଙ୍କର ନାଁ ମୋତେ ଜଣାଅଛି। କୌଣସି ଝିଅର ନାଁ ଯଦି ଜାଣିବାକୁ ଚାହୁଁଥାଆନ୍ତି, ପଚାରିଲେ ମୁଁ ହୁଏତ କହିପାରିବି।

ସତ୍ୟବ୍ରତ ସିଗାରେଟ୍‌ଟିରେ ଶେଷ ଟାଣ ମାରି ଆଷ୍ଟ୍ରେରେ ପକାଉ ପକାଉ କହିଲେ: ମଧୁଛନ୍ଦା ଆଉ ବନଜ୍ୟୋସ୍ନା। ଏଇ ଦୁଇଟି ନାମରେ କୌଣସି ଝିଅ ଆପଣଙ୍କ ଏ ହୋଟେଲକୁ ଆସନ୍ତି ?

: ମଧୁଛନ୍ଦା ଆଉ ବନଜ୍ୟୋସ୍ନା !

ଦୁଇଟି ଯାକ ନାମ ଏଡ଼ୱାର୍ଡ଼ ଉଚ୍ଚାରଣ କଲେ। ହୁଏତ ମନେମନେ ସେ ସବୁ ଝିଅମାନଙ୍କୁ ମନେ ପକେଇବାକୁ ଚେଷ୍ଟା କରୁଥିଲେ। କହିଲେ: ନା ମିଃ ମହାପାତ୍ର। ଏହି ନାମରେ କୌଣସି ଝିଅ ଆମ ଏଠାକୁ ଯା'ଆସ କରିବାର ମନେ ପଡୁନାହିଁ। ନାଁ ଦୁଇଟା ଆଜି ମୁଁ କନ୍‌ଫର୍ମ କରେଇ ରଖିବି। ଆପଣ ଯଦି ଆଜି ରାତିରେ ଏଠାକୁ ଆସନ୍ତି ମୁଁ ଆପଣଙ୍କୁ ଜଣାଇଦେବି।

: ଧନ୍ୟବାଦ। ବର୍ତ୍ତମାନ ମୁଁ ତା'ହେଲେ ଉଠୁଚି। ଆପଣଙ୍କୁ ଅନେକ ବିରକ୍ତ କଲି।

: ନା, ନା ମିଃ ମହାପାତ୍ର। ସେପରି ଭାବିବେ ନାହିଁ। ଆମେ ହେଲୁ ପବ୍‌ଲିକ୍ ସରଭାଣ୍ଟ୍। ଅନ୍ୟର ସେବା କରିବାହିଁ ଆମର ଧର୍ମ। କିନ୍ତୁ ଶେଷରେ ମୋର ଗୋଟାଏ ପ୍ରଶ୍ନ ଅଛି ଆପଣଙ୍କୁ। ଯଦି କିଛି ମନେ ନ କରନ୍ତି...

: ନା, ମନେ କରିବାର କ'ଣ ଅଛି ? ଆପଣ ସ୍ୱଚ୍ଛନ୍ଦରେ ପଚାରି ପାରନ୍ତି।

: ସେଇ ଅନୁରାଧା ସମ୍ବନ୍ଧରେ। ମୁଁ ଖୁବ୍ ଅଡୁଆରେ ପଡ଼ିଯାଇଛି। ଆପଣଙ୍କର କ'ଣ ମନେ ହେଉଛି ?

: ଅନୁରାଧାକୁ ହତ୍ୟା କରାହୋଇଚି। ମୋର ମନେ ହେଉଚି କେଶ୍‌ଟା ବଡ଼ ଜଟିଳ ଆକାର ଧାରଣ କରିବ। ସେଥିପାଇଁ ଆପଣଙ୍କ ଉପରେ ବେଶି ଆଞ୍ଚ ଆସି ନପାରେ। ଅନୁରାଧାର ଏହି କେଶ୍‌ଟା ସହିତ ବାହାରର କୌଣସି ଯୋଗସୂତ୍ର ରହିଛି। ଆପଣ ସେଥିପାଇଁ ବିଶେଷ ଚିନ୍ତା କରନ୍ତୁ ନାହିଁ।

: କିନ୍ତୁ ଅନୁରାଧାର ମୃତ୍ୟୁ ଘଟିଛି ଯେ ଆମର ଏହି ହୋଟେଲରେ ?

: ତା ଅବଶ୍ୟ ସତ୍ୟ। ତଥାପି ସେ ସମ୍ବନ୍ଧରେ ଆପଣ ବିଶେଷ କିଛି ନ ଭାବିବାହିଁ ଭଲ। ଶେଷରେ ଦେଖିବେ ଏହି ଘଟଣା ସହିତ ହୁଏତ କୌଣସି ରାଜନୈତିକ ସମ୍ପର୍କ ଅଙ୍ଗାଙ୍ଗୀ ଭାବରେ ରହିଛି। ଅଥବା କୌଣସି ବଡ଼ ବ୍ୟବସାୟୀ ବା ବଡ଼ ଡକେଇତର ସଂପର୍କ ରହିଛି। ଅବଶ୍ୟ ଯଦି କେଶ୍‌ଟାକୁ ଠିକ୍ ଭାବରେ ତଦନ୍ତ କରାହୁଏ। ଯଦି ଚାପି ଦିଆଯାଏ ତେବେ ତ ସମସ୍ତେ ନିଶ୍ଚିନ୍ତ ହୋଇଯିବେ।

: ଏ କ୍ଷେତ୍ରରେ ସେପରି ହେବା କ'ଣ ସମ୍ଭବ ?

: ଅସମ୍ଭବ କିଛି ନୁହେଁ ମିଃ ଏଡ୍‌ୱାର୍ଡ୍‌। ଅନୁରାଧାର ଏହି କେସ୍ ତଦ୍‌ବୀର କରିବା ପାଇଁ ତା'ର କେହି ନିଜର ଲୋକ ବାହାରିବେ ?

ଏଥର ଏଡ୍‌ୱାର୍ଡ୍ ନ ହସି ରହିପାରିଲେ ନାହିଁ। କହିଲେ: ଏମାନେ ଏପରି ଏକ ଜାତି, ବଞ୍ଚିଥିବା ଯାଏ, ରୂପ ଥିବାଯାଏ ଏହାଙ୍କର ଅଜସ୍ର ବନ୍ଧୁ ଥାଆନ୍ତି, ଆତ୍ମୀୟ ଥାଆନ୍ତି। ତା'ପରେ ଦେଖିଲେ ବି ନ ଚିହ୍ନିବାର ଭାବ କରି ବାଟ ଭାଙ୍ଗି ଚାଲିଯାଆନ୍ତି। ବାସ୍ତବିକ ଏମାନଙ୍କ ଜୀବନ ବଡ଼ କରୁଣ, ବଡ଼ ବେଦନାଜଡ଼ିତ। ଟିକିଏ ତଳେଇ କରି ଚିନ୍ତା କଲେ ଦୁଃଖ ହୁଏ।

ସତ୍ୟବ୍ରତ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ଉଠିଲେ। କହିଲେ: କୌଣସି ଉପାୟ ନାହିଁ ମିଃ ଏଡ୍‌ୱାର୍ଡ୍। ଏମାନଙ୍କୁ ରକ୍ଷା କରିବା ସମ୍ଭବ ନୁହେଁ। କାରଣ ସବୁ ଦେଶରେ ଏହିପରି ଗୋଟିଏ ଶ୍ରେଣୀ ବଞ୍ଚି ରହିଛନ୍ତି, ଏବଂ ଏହିଭଳି ବଞ୍ଚି ରହିବାରେ ହିଁ ସେମାନଙ୍କର ଆନନ୍ଦ। ତେଣୁ ସେମାନଙ୍କ ପାଇଁ ସାମାନ୍ୟ ସମବେଦନା ପ୍ରକାଶ କରିବା ଛଡ଼ା ଆଉ କିଛି କରାଯାଇପାରେନାହିଁ।

ମିଃ ଏଡ୍‌ୱାର୍ଡ୍ ସିଗାରେଟ୍ ଟିଣଟା ଆଉ ଥରେ ବଢ଼ାଇଦେଲେ।

ଧନ୍ୟବାଦ ଦେଇ ସତ୍ୟବ୍ରତ ହୋଟେଲରୁ ବାହାରିଗଲେ।

ସର୍ପ-ଉର୍ବଶୀ-ରାତ୍ରି

ମନୋହର ପ୍ଲାଇମାଉଥ୍ ଗାଡ଼ିଟା ଜୁଭିନାଇଲ୍ ଲଜ୍‌ର ହତା ଭିତରେ ପ୍ରବେଶ କଲା। ଦ୍ୱିତଳ ପ୍ରାସାଦ ଉପରୁ ଗୋଟିଏ ସୁନ୍ଦର କଅଁଳିଆ ମୁହଁ ତଳକୁ ଚାହିଁଥିଲା। ମନୋହର ଗାଡ଼ିରୁ ଉପରକୁ ଚାହିଁଲା। ଚାରି ଆଖିର ମିଳନ ହେଲା। ହସର ଗୋଲାପ ଝରିପଡ଼ିଲା ଦୁଇଟି ମୁହଁରୁ।

ମନୋହର ଲିଫ୍‌ଟରେ ଉଠିଗଲା ଦ୍ୱିତଳକୁ।

ରୀଟା ଗ୍ରେଗରୀ ଛୁଟି ଆସିଥିଲା ତା'ର ସରୁ କଟିଟିକୁ ଦୋହଲେଇ। ଲିଫ୍‌ଟରୁ ଓହ୍ଲେଇବା ମାତ୍ରେ ରୀଟା ମନୋହରକୁ ଭିଡ଼ିନେଲା। ଯେପରି ବହୁଯୁଗରୁ ତପସ୍ୟା କରି ବସିଥିଲା ରୀଟା।

ଦୁହେଁ ଆଗେଇଗଲେ। ସୁଇଟ୍ ନମ୍ବର ୧୧। ଦରଜା ଖୋଲି ଭିତରେ ପଶିଲେ। ରୀଟା ଆଉ ହୁଏତ ସମ୍ଭାଳି ହୋଇପାରିଲା ନାହିଁ, ମନୋହରର୍ ମୁହଁରେ ଅଜସ୍ର ଚୁମ୍ବନ ଆଙ୍କ ଦେଇଗଲା।

ମନୋହରର ହାତ ଦୁଇଟି ରୀଟାର କଟିକୁ ବେଷ୍ଟନ କରିଥିଲା। ମନୋହର ମଧ୍ୟ ପ୍ରତିଦାନରେ ରୀଟାର ମୁହଁରେ ଚୁମ୍ବନର ରେଖା ଆଙ୍କିଦେଲା। ରୀଟା ସେତେବେଳେ ଆଖିବୁଜି ଅନୁଭବ କରୁଥିଲା ଏକ ମିଠା ଆମୋଦ।

ଦରଜାରେ କାହାର କରାଘାତରେ ଦୁହିଁଙ୍କର ଧ୍ୟାନଭଙ୍ଗ ହେଲା।

ରୀଟା କହିଲା: କମ୍ ଇନ୍।

ବୟ ଅର୍ଡ଼ର ପ୍ରତୀକ୍ଷାରେ ଠିଆ ହୋଇଛି।

ମନୋହର କହିଲା: ମୁଁ କେବଳ କପେ କଫି ଖାଇବି। ଏଇକ୍ଷଣି ଜଣେ ବନ୍ଧୁଙ୍କ ସହିତ ଖାଇ ଆସିଲି। ତମେ ମୋ ପାଇଁ ମୋଟେ ବ୍ୟସ୍ତ ହୁଅନି। ଭୋକ କଲେ ମୁଁ ତମକୁ ଜଣେଇବି। ତମେ ତ ଜାଣିଚ, ତମ ପାଖରେ ମୋର କୌଣସି ଲାଜ ନାହିଁ।

ରୀଟା ବୟକୁ ଦୁଇକପ୍ କଫିର ଅର୍ଡ଼ର ଦେଲା।

: ତୁମେ ଆଜି ବଡ଼ ଡେରି କରି ଆସିଲ ମନୋହର। ପ୍ରାୟ ଦୁଇଘଣ୍ଟା ହେବ ମୁଁ ତମର ପଥ ଚାହିଁ ବସି ରହିଛି। ଏଇ ନିର୍ଜୀବ କାଠ ଝରକାଟା ଖୋଲି ମୁଁ ଚାହିଁ ରହିଚି ତଳକୁ, କେତେ ଗାଡ଼ି ଆସୁଚି ଯାଉଚି, ମୁଁ ଅପଲକ ନୟନରେ ଅନାଇ ରହିଛି। ସବୁ ଗୁଡ଼ିକୁ।

: ମୁଁ ଜାଣେ ରୀଟା। ତମ ହୃଦୟର କମ୍ପନ ମୁଁ ଅନୁଭବ କରୁଥିଲି। କିନ୍ତୁ ଉପାୟ ନ ଥିଲା। ଏପରି ଗୋଟାଏ କାମରେ ଅଟକି ଯାଇଥିଲି ଯେ, ସହଜରେ ଆସିବା ସମ୍ଭବ ହେଲାନାହିଁ।

: ମନୋହର !

ରୀଟାର ସ୍ୱରରୁ ଯେପରି ଅମୃତ ଝରିପଡ଼ିଲା। ଆଖିରେ ଫୁଟି ଉଠିଲା ଲକ୍ଷେ ପାରିଜାତ।

ମନୋହର ମୁଗ୍ଧ ନୟନରେ ଅନାଇ ରହିଲା।

ରୀଟା ମନୋହରର ହାତ ଦୁଇଟା ନିଜର ହାତ ମୁଠାରେ ମୁଠେଇ ଧରି କହିଲା: ଆଉ ମୁଁ ଅପେକ୍ଷା କରିପାରୁନାହିଁ ବନ୍ଧୁ, ମୋତେ ଶୀଘ୍ର ବେଦନାମୁକ୍ତ କରିଦିଅ।

ମନୋହର ଓଠରୁ ହସର ପାଖୁଡ଼ା ଝରିପଡ଼ିଲା।

: ଏଇକଥା ? ତମ ମନକୁ ବେଦନାମୁକ୍ତ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରୁଚି ରୀଟା। ମୋତେ ବିଶ୍ୱାସ କର।

: କିନ୍ତୁ କାଲିର ସେହି ଝିଅଟା, କିଏ ସେ ସେ ? କାହିଁକି ତାକୁ ସଙ୍ଗରେ ଆଣିଥିଲ ?

ମନୋହର ଏଥର ହୋ ହୋ ହୋଇ ହସିଉଠିଲା।

: ତମେ ଗୀତା କଥା କହୁଚ ରୀଟା। ଗୋଟାଏ ମଫସଲି ଅନୁନ୍ନତ ଝିଅ।

: ତମ ଉପରେ ସେ ପ୍ରଭାବ ବିସ୍ତାର କରି ବସିଛି।

: ଛି ଛି ଛି। ଅନ୍ତତଃ ତମଭଳି ଏକ ଶିକ୍ଷିତା ଝିଅ ପକ୍ଷରେ...

ରୀଟା ହସିଲା। ସେ ହସ ସ୍ୱଚ୍ଛନ୍ଦ ନୁହେଁ। କହିଲା: ତମେ ସେଇଭଳି ଗୋଟାଏ ଝିଅକୁ ଧରି ସଙ୍ଗରେ ବୁଲୁଛ କାହିଁକି ?

: ସେ କଥା ତମେ ବୁଝିବ ନାହିଁ ରୀଟା। ମଣିଷ ଜୀବନର ସବୁ କଥା ସମସ୍ତଙ୍କ ଆଗରେ କୁହାଯାଇପାରେନା। ଗୀତାର ବାପା ପାଖରେ ମୁଁ ବହୁ ଦୃଷ୍ଟିରୁ ଋଣୀ। ତେଣୁ ଗୀତା ପାଇଁ ବେଳେବେଳେ ଇଚ୍ଛା ବିରୋଧରେ ଅନେକ କଥା କରିବାକୁ ହୋଇଥାଏ।

: ବୁଝିଲି। ଗୀତା ପାଇଁ ତମ ମନରେ ବହୁତ କଷ୍ଟ ଦେଇଛି। ଆଉ ତା ସମ୍ବନ୍ଧରେ ତମକୁ କିଛି ପଚାରିବି ନାହିଁ। ତା'ପରେ କୁହ। କାଲି ଶନିବାର। ମୁଁ ପ୍ରସ୍ତୁତ ହୋଇ ରହିବି ତ ?

: ନିଶ୍ଚୟ ! ତମେ ନ ରହିଲେ ମୁଁ ଯେ ଅସହାୟ ହୋଇପଡ଼ିବି। ବିଶେଷକରି

ଜମିବ ନାହିଁ ମୋଟେ। କିନ୍ତୁ ଅନ୍ୟମାନେ ଆସି ମୋତେ ବଡ଼ ସମସ୍ୟାରେ ପକାଇ ଦେଉଛନ୍ତି। ସେମାନଙ୍କୁ ନାହିଁ କରିବାର ମଧ୍ୟ ଉପାୟ ନାହିଁ। କାରଣ ମୋର ଯାହା ପରିସ୍ଥିତି, ସେଥିରେ...

ମନୋହର କଥା ଅସମାପ୍ତ କରି ରୀତା ମୁହଁକୁ ଚାହିଁ ହସିଲା।

: ତମେ ଭାଗ୍ୟବାନ ମନୋହର। ତମଭଳି ଭାଗ୍ୟ ନେଇ କେଇଜଣ ଜନ୍ମ ହେଇଛନ୍ତି ଏ ପୃଥିବୀରେ? କିନ୍ତୁ ବେଳେବେଳେ ବଡ଼ବଡ଼ିଆମାନେ ସାନମାନଙ୍କୁ ଭୁଲି ଯାଆନ୍ତି। ଏଇ ଯେପରି ତମ ମୋର ସମ୍ବନ୍ଧ। ତମେ ଆଉ କାହାପ୍ରତି ଆକୃଷ୍ଟ ହେଲେ, ଧୀରେଧୀରେ ମୋଠାରୁ ଆକର୍ଷଣ କମି କମି ଆସିବ।

ମନୋହର ହସିଲା। କହିଲା: ମନଦୁଃଖ କରନି ରୀତା, ମୁଁ କଥା ଦେଉଚି, ତମକୁ ସବୁଦିନେ ମନେ ରଖିବାକୁ ଚେଷ୍ଟା କରିବି।

ରୀତା କହିଲା: ଏହିପରି ଚାଟୁକଥା ମୁଁ ଆହୁରି ଶୁଣିଥିଲି ମନୋହର, କିନ୍ତୁ ସେମାନଙ୍କ ସହିତ ଆଜି ଆଉ ଦେଖା ବି ହୁଏନାହିଁ। ଯଦିବା କେଉଁଠି ସମୟ ଅସମୟରେ ଭେଟ ହୋଇଯାଏ, ନ ଚିହ୍ନିଲାର ବାହାନା କରି ସେମାନେ ବାଟ ଭାଙ୍ଗି ଚାଲିଯାଆନ୍ତି। ଏଇଆ ହୁଏ ମନୋହର। ଯାହା ସତ୍ୟ ତାହାହିଁ ଘଟିବ। କେହି ବାଧାଦେଇ ପାରିବେ ନାହିଁ। ଜୀବନର ଜ୍ୱାଳାରେ ଶେଷ ପର୍ଯ୍ୟନ୍ତ ଜଳି ଜଳି ପାଉଁଶ ହେବାକୁ ହେବ।

ରୀତାର ସ୍ୱରରେ କରୁଣତା ଭରି ଆସୁଥିଲା।

: ତମେ କଣ ଚାହଁ ରୀତା? କ'ଣ କଲେ ତମ ମନରୁ ଏହି ଦୁର୍ଭାବନା ଦୂର ହେବ?

: ନା ମନୋହର, ତମକୁ ମୋର ସେ ଦୁର୍ବାର ଲାଳସା କଥା କହିବି ନାହିଁ। କହି ପୁଣି ଯଦି ବ୍ୟର୍ଥ ହୁଏ, ତେବେ ମୁଁ ଆଉ ବଞ୍ଚିପାରିବି ନାହିଁ।

: କୁହ ରୀତା। ମୁଁ ତମର ଇଚ୍ଛା ପୂରଣ ପାଇଁ ଚେଷ୍ଟା କରିବି।

: କଣ ତମେ ଚେଷ୍ଟା କରିବ ମନୋହର? ତମେ ଆଜି ଅଗାଧ ଧନର ଅଧିକାରୀ। ଧନ ଦେଇ ମୋର ପିପାସା ମେଣ୍ଟାଇପାରିବ ନାହିଁ। ମନଟା ମଧ୍ୟ ତମର ସଂପୂର୍ଣ୍ଣ ମୋତେ ଦେଇପାରିବ ନାହିଁ। ମୁଁ ଜାଣେ ମୋର ଦୁର୍ଦ୍ଦିନ ଘନେଇ ଆସୁଛି। ତମଠାରେ ମୋର ସଂପୂର୍ଣ୍ଣ ଆଶା ଭରସା ଥିଲା, କିନ୍ତୁ ଆଜି ଆଉ ନୁହେଁ। ନା, ତମର ସମୃଦ୍ଧିରେ ମୁଁ ବାଧାଦାନ କରିବିନାହିଁ। ତା'ଠାରୁ ବରଂ...

: ରୀତା, ତମେ ପାଗଳୀ ହୁଅନାହିଁ। ମୁଁ ବଦଳି ନାହିଁ ରୀତା। ମୋତେ ତୁମେ ଚିହ୍ନିବାରେ ଭୁଲ୍ କରିଚ। କୁହ କ'ଣ ଚାହଁ ତୁମେ ମୋଠାରୁ?

: ମୁଁ କ'ଣ ଚାହେଁ?

ରୀଟା ହୋ ହୋ ହୋଇ ହସି ଉଠିଲା। ଆଖିରୁ ତା'ର ଝରୁଥିଲା ଅଶ୍ରୁ। ସେହି ହସ ଅଶ୍ରୁର ମିଶ୍ରଣରେ ପରିବେଶଟା କରୁଣ ହୋଇଉଠିଥିଲା।

ରୀଟା ସେମିତି ହସି ହସି କହିଲା: ସବୁ ଝିଅ ଯାହା ଚାହାନ୍ତି ମୁଁ ସେଇଆ ଚାହେଁ ମନୋହର। ପୁରୁଷ ତମେ, ନାରୀର ହୃଦୟ ବୁଝି ପାରିବ ନାହିଁ। ପ୍ରତ୍ୟେକ ନାରୀ, ସେ ଯେତେ ସମୃଦ୍ଧ ହେଉ, ଯେତେ କ୍ଷମ ହେଉ, ଯେତେ ବିତ୍ତଶାଳୀ ହେଉ, ସେ ଚାହେଁ ଗୋଟିଏ ଆଶ୍ରୟ। ଖାଲି ମୁଣ୍ଡ ଗୁଞ୍ଜିବାକୁ ଗୋଟିଏ ନୀଡ଼। ମୋର ସେତିକି ଲୋଡ଼ା ମନୋହର, ସେତିକି ପାଇଲେ ଜୀବନର ସମସ୍ତ କ୍ଲେଶ ମୁଁ ଭୁଲିଯାଇ ପାରିଥାଆନ୍ତି, କିନ୍ତୁ ଆଶା ମୋର ମରି ମରି ଆସୁଚି। ତମକୁ ଆଉ ଅଡୁଆରେ ପକେଇବା ପାଇଁ ମୋର ଇଚ୍ଛା ନାହିଁ, ତମେ ସୁଖୀ ହୁଅ। ଆନନ୍ଦରେ ରହ। ଏତିକି ମୋର କାମନା।

ମନୋହର ରୀଟା ଆଖିରୁ ଲୁହ ପୋଛିଦେଲା। ତାକୁ କୋଳ ଉପରେ ଶୁଆଇ ଦେଇ କହିଲା: ତମେ ବଡ଼ ଅଧୀର ହୋଇ ପଡ଼ିଚ ରୀଟା। ମୁଁ ଦେଖୁଚି ମୋ ଉପରେ ତୁମେ ଆସ୍ଥା ସ୍ଥାପନ କରିପାରୁନାହିଁ। ସବୁ ଦିଗକୁ ଭାବି ବିଚାରି ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ବାଟ ତିଆରି କରିବାକୁ ହେବ ସିନା ! ତୁମେ ଏତିକି ମନେରଖ, ମୁଁ ତୁମକୁ ହତାଶ କରିବି ନାହିଁ। ଥରେ କଥା ଦେଇଛି ଯେତେବେଳେ, ନିଶ୍ଚୟ ତାହା ପାଳନ କରିବି। ତମେ ଉଠ, ଟାଣ ହୁଅ। କାମରେ ଲାଗିଯାଅ।

ରୀଟା ମନୋହର କଥା ଉପରେ ଆସ୍ଥା ସ୍ଥାପନ କରି ପାରିଲା କି ନାହିଁ କେଜାଣି, ଧୀରେ ଧୀରେ ଉଠି ବସିଲା। ମୁହଁରୁ ବେଦନାର ଚିହ୍ନ ଘୁଞ୍ଚେଇବାକୁ ଚେଷ୍ଟା କରି କହିଲା: କିନ୍ତୁ ମୁଁ ମୋର କର୍ତ୍ତବ୍ୟ କରିଯିବି ମନୋହର। କୌଣସିପ୍ରକାର ପ୍ରତିଦାନର ଆଶା ମୋ ମନରେ ନାହିଁ। ତମର ମଙ୍ଗଳ ପାଇଁ ମୁଁ ଜୀବନ ଦେବାକୁ କେବେ ପଛଘୁଞ୍ଚା ଦେବି ନାହିଁ।

: ମୁଁ ଭବିଷ୍ୟତରେ ତମକୁ କେବେ ଭୁଲି ପାରିବି ନାହିଁ ରୀଟା।

ରୀଟା ଉଠି ଠିଆହେଲା। ଡ୍ରେସିଂ ଟେବୁଲ ପାଖକୁ ଯାଇ ମୁହଁର ମେକ୍ ଅପ୍‌ଟା ଆଉ ଥରେ ଦେଉ ଦେଉ କହିଲା: କାଲି ତା'ହେଲେ ଠିକ୍ ଗୋଟାଏ ବେଳେ ଆସି ଏଠାରେ ପହଞ୍ଚୁଛ ?

: ହଁ, ତମେ ପ୍ରସ୍ତୁତ ଥିବ। କିନ୍ତୁ ସେମାନଙ୍କୁ କିପରି ଆଭଏଡ୍ କରାଯିବ କହିଲ ? ମୁଁ ଭୟ କରୁଚି, ସେମାନେ ହୁଏତ ଦିନେନାଦିନେ ମୋତେ ବିପଦରେ ପକାଇଦେବେ।

: ମୁଁ ବଞ୍ଚି ଥାଉଁ ଥାଉଁ ତମେ ସେ ଭୟ କରନାହିଁ ମନୋହର। ଆଖି ଆଗରେ ଦେଖିଲ ତ ! ତା'ଠାରୁ ଆଉ ବଡ଼ ନିରାପତ୍ତା ତମପାଇଁ କ'ଣ ହୋଇପାରେ ? ଏମାନଙ୍କୁ ଯଦି ସେହିପରି ଆଶଙ୍କା କରାଯାଏ, ତେବେ ମୁଁ ତ ଅଛି।

: ତା'ହେଲେ ତମେ କହୁଚ କାଲି-ସେମାନଙ୍କୁ ମୁଁ ସଙ୍ଗରେ ନେବି ?

: ଯଦି ନିହାତି ଆସି ଯାଆନ୍ତି, ତେବେ ନ ନେବାର ଉପାୟ ନାହିଁ।

: ସେମାନେ ଆସିବେ, ଆସିବାକୁ ବାଧ୍ୟ। କାରଣ ଅଫିସକୁ ଟେଲିଫୋନ୍ କରି ବେଳେ ବେଳେ ମୋତେ ବିବ୍ରତ କରିପକାଉଛନ୍ତି। ନିତାନ୍ତ ବାଧ୍ୟ ହୋଇ ମୁଁ ସେମାନଙ୍କୁ ପ୍ରଶ୍ରୟ ଦେଉଛି। ନ ହେଲେ ଘରକୁ ଚାଲିଯିବା ପାଇଁ ବାହାରୁଛନ୍ତି।

: ସେଥିପାଇଁ ତମେ କିଛି ଭାବ ନାହିଁ ମନୋହର। କେବଳ ଚେଷ୍ଟା କର ସେମାନେ ଯେପରି ଘରେ ଯାଇ ନ ପହଞ୍ଚନ୍ତି। ତା'ହେଲେ ସିଦ୍ଧାର୍ଥ ଶଙ୍କର ବାବୁ ଖୁବ୍ ବିରକ୍ତ ହେବେ। ତମକୁ ସନ୍ଦେହ କରିବେ। ତୁମ ସୁନାମରେ କଳଙ୍କ ଲାଗିଯିବ।

: ମୋର କେବଳ ଭୟଟା ସେଇଠି ରୀଟା। ଅସୁବିଧାଟା କେଉଁଠି ଜାଣୁଚ ତ! ସମସ୍ତଙ୍କୁ ତ ଆଉ ସବୁକଥା ଖୋଲି କହି ହେବନାହିଁ। କହିବା ମଧ୍ୟ ଉଚିତ ନୁହେଁ। ତଦ୍ଦ୍ୱାରା ନିଜର ସମ୍ମାନ ରୁହେନାହିଁ।

: ତମେ ଚିନ୍ତାକରନି ମନୋହର, ମୁଁ ଧୀରେଧୀରେ ସବୁ ଠିକ୍ କରିଦେବି। କିନ୍ତୁ ଆର ଦିଗଟା ପ୍ରତି ତମେ ଖୁବ୍ ସତର୍କ ଥିବ।

: ଆର ଦିଗଟା ମାନେ ?

ମନୋହର କିପରି ଆତଙ୍କିତ ହେଲାପରି ଚାହିଁ ରହିଲା।

: ମୁଁ ପାନୀୟ ଦିଗଟା କଥା କହୁଚି ମ, ତମେ ଇମିତି ଭୟ କରୁଚ କାହିଁକି ?

: ଓଃ ! ଏଇ କଥା।

ମନୋହର ହସି ଉଠିଲା।

ରୀଟାର ମେକ୍ ଅପ୍ ପ୍ରାୟ ଶେଷ ହୋଇଆସିଥିଲା। କହିଲା: ଟିକିଏ ଅପେକ୍ଷା କର ମନୋହର। ପୋଷାକଟା ବଦଳାଇ ଆସେ। ସମୟ ହୋଇଗଲାଣି।

ରୀଟା ଚାଲିଗଲା।

ବିଆଳରେ ଟଙ୍ଗା ହୋଇଥିବା ରୀଟାର କେତେଖଣ୍ଡି ଅର୍ଦ୍ଧଉଲଗ୍ନ ଫଟୋଆଡ଼େ ମନୋହର ଅନେଇଥିଲା।

ରୀଟା ଅଭିନେତ୍ରୀ!

ରୀଟା ନର୍ତ୍ତକୀ!

ରୀଟା ସୁନ୍ଦରୀ!

ଆଉ ?

ମନୋହର ଆଗକୁ ଭାବି ପାରୁନଥିଲା। ସତେ ରୀଟାର ତୁଳନା ହୁଏନାହିଁ। ତା'ଭଳି କେଇଟା ଝିଅ ସେ ଜୀବନରେ ଦେଖିଛି ?

ରୀଟା ପୋଷାକ ପରିବର୍ତ୍ତନ ଶେଷକରି ମନୋହର ଆଗରେ ଆସି ଠିଆହେଲା।

ଅପୂର୍ବ ! ମନୋହର ଆଖି ଝଲସି ଉଠିଲା।

ଠିକ୍ ସାତଟା ପଇଁତିରିଶ ମିନିଟରେ ସତ୍ୟବ୍ରତ ଯାଇ ପହଞ୍ଚିଲେ ପାର୍କ ହୋଟେଲରେ।

ପ୍ରଥମେ ତାଙ୍କର ମି: ଏଡ଼ୱାର୍ଡ଼ଙ୍କ ସହିତ ଭେଟ ହୋଇଗଲା। ସେ କିପରି ଚିନ୍ତିତ ଓ ବିଚଳିତ ମନେ ହେଉଥିଲେ। ସତ୍ୟବ୍ରତଙ୍କୁ ଦେଖିବାକ୍ଷଣି ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି କହିଲେ: ଆସନ୍ତୁ ମି: ମହାପାତ୍ର।

: କିନ୍ତୁ ଆପଣ ଖୁବ୍ ଚିନ୍ତିତ ଦେଖାଯାଉଛନ୍ତି ଯେ, କାରଣ କ'ଣ?

ସତ୍ୟବ୍ରତ ପଚାରିଲେ।

: ଆମ କଥା ଛାଡ଼ି ଦିଅନ୍ତୁ। ଯେତେସବୁ ରାଣ୍ଡ ଭାଣ୍ଡମାନଙ୍କୁ ନେଇ ଆମର କାରବାର। ତେଣୁ ଅବସ୍ଥାଟା ସହଜରେ ଅନୁମାନ କରିପାରୁଥିବେ।

: ତଥାପି....

: ମିସ୍ ରୀଟା ଗ୍ରେଗରୀ। ସେ ଏପର୍ଯ୍ୟନ୍ତ ଆସି ପହଞ୍ଚି ନାହିଁ। ଅଥଚ ଠିକ୍ ଆଠଟାରେ ତାର ପ୍ରୋଗ୍ରାମ ଅଛି। ବାରରେ ଲୋକ ଭର୍ତ୍ତି। ଆଜି ରୀଟାର ଏକ ବିଶେଷ ପ୍ରୋଗ୍ରାମ। ସେଥିପାଇଁ ଅଧିକ ଲୋକଙ୍କର ଭିଡ଼ ହୋଇଚି ବାର୍‌ରେ। ଅଥଚ...

ମି: ଏଡ଼ୱାର୍ଡ଼ଙ୍କ କଥା ଶେଷ ହେଲାନାହିଁ। ପଛଆଡୁ ଦ୍ରୁତ ପଦଶବ୍ଦ ଶୁଣାଗଲା। ଦୁହେଁ ବୁଲି ଅନେଇଲେ। ରୀଟା ଗ୍ରେଗରୀ ଏବଂ....

: କ୍ଷମା କରିବେ ମି: ଏଡ଼ୱାର୍ଡ଼। ଖୁବ୍ ଡେରି ହୋଇଗଲା! ମୁଁ ଏଇ ପନ୍ଦର ମିନିଟ୍ ଭିତରେ ମେକଅପ୍ ନେଇପାରିବି।

ରୀଟା ପଛେ ପଛେ ଯେଉଁ ଯୁବକ ଜଣକ ଆସୁଥିଲେ, ମି: ଏଡ଼ୱାର୍ଡ଼ ତାଙ୍କୁ ଅଭିବାଦନ ଜଣାଇଲେ। ଯୁବକଙ୍କ ସହିତ ସତ୍ୟବ୍ରତଙ୍କର ପରିଚୟ କରାଇଦେବାକୁ ମନସ୍ଥ କରି

ବୁଲି ଚାହିଁଲା ବେଳକୁ ଦେଖିଲେ, ସତ୍ୟବ୍ରତ ଧୀରେ ଧୀରେ ଅଫିସ୍‌ରୁମ୍ ଭିତରେ ପ୍ରବେଶ କରୁଛନ୍ତି।

ଯୁବକ ଜଣକ ୫୫୫ ସିଗାରେଟ୍ ଟିଣଟି ବାହାର କରି ମି: ଏଡ୍‌ୱାର୍ଡ୍‌ଙ୍କ ଆଡ଼କୁ ଦେଖାଇଲେ।

: ଧନ୍ୟବାଦ।

ଏଡ୍‌ୱାର୍ଡ୍‌ଙ୍କ ମୁହଁରେ ବିନୟ ଭାବ ଫୁଟି ଉଠିଲା।

ଯୁବକଟି ସ୍ମିତ ହସି ବାରଆଡ଼େ ଆଗେଇଗଲା।

ଏଡ୍‌ୱାର୍ଡ୍ ଅଫିସ ଘରକୁ ଫେରିଗଲେ। ଶ୍ୱସ୍ତିର ଭାବ ଫୁଟି ଉଠିଥିଲା ଅଙ୍ଗପ୍ରତ୍ୟଙ୍ଗରେ। ସତ୍ୟବ୍ରତ ଅଫିସ୍ ରୁମ୍‌ରେ ଖଣ୍ଡିଏ ଚେୟାର ଅଧିକାର କରି ବସିଥିଲେ।

: ଦେଖିଲେ ମି: ମହାପାତ୍ର? ରୀଟା ସଙ୍ଗରେ ଯେଉଁ ଯୁବକ ଜଣକ ଆସୁଥିଲା, ତାକୁ ଚିହ୍ନିଛନ୍ତି?

ସତ୍ୟବ୍ରତ ସହଜ ସ୍ୱରରେ କହିଲେ: ହେଇଥିବ କେହିଜଣେ। ବାପାର ପଇସା ଥିବ। ଫୂର୍ତ୍ତି କରିବାକୁ ବାର୍‌କୁ ଆସିଥିବ।

: ଆପଣ ଠିକ୍ କହିଛନ୍ତି ମି: ମହାପାତ୍ର। ଏ ଯୁବକଟି କିନ୍ତୁ ଜଣେ କୋଟିପତିର ସନ୍ତାନ। ମନୋହର ରାୟ। ତା'ର ପୁଣି ସାଙ୍ଗ ରୀଟା ଗ୍ରେଗରୀ। ଦେଖୁଛନ୍ତି ତ ଅଭିଜାତର ନମୁନା? ଆଜି ବାର୍‌କୁ ଚାଲନ୍ତୁ, ମୁଁ ଆହୁରି କେତେ ଦୃଷ୍ଟାନ୍ତ ଆପଣଙ୍କୁ ଦେଖାଇଦେବି।

: ହୁଁ, ଆପଣ ମୋ କାମ କରିଛନ୍ତି?

: ଆପଣଙ୍କ କାମ?

: ମୁଁ ଯେଉଁ ନାଁ ଦୁଇଟା କହିଥିଲି।

: ଓଃ, ହଁ, ବୁଝିଥିଲି। ସେ ନାମଧାରିଣୀ କୌଣସି ଝିଅ ଆମ ଏଠାକୁ ଆସନ୍ତି ନାହିଁ।

ଆଚ୍ଛା, ଏମାନଙ୍କୁ ଛାଡ଼ିଦେଲେ, ଅନ୍ୟ କୌଣସି ଅଭିଜାତ ଝିଅ, ମାନେ ଏଇ ଯେପରି ପୁଅମାନେ ଆସୁଚନ୍ତି, ସେପରି କେହି ଆସନ୍ତି ନାହିଁ?

: ଯଥେଷ୍ଟ ଆସନ୍ତି ମିଃ ମହାପାତ୍ର। ପୁଅମାନଙ୍କ ପରି ଝିଅମାନଙ୍କର କ'ଣ ପିପାସା ନାହିଁ? ବିଶେଷକରି ଆଜିକାଲିର ଉଠନ୍ତି ଅଭିଜାତ ପରିବାରରେ ସେପରି ଝିଅମାନଙ୍କର ସଂଖ୍ୟା ଧୀରେ ଧୀରେ ବଢ଼ି ଚାଲିଛି। ତେବେ ଝିଅମାନଙ୍କ ବେଳକୁ ଏତିକି ବ୍ୟତିକ୍ରମ ଯେ, ସେମାନେ ଏକା ଆସନ୍ତି ନାହିଁ। ତାଙ୍କର ପ୍ରିୟବନ୍ଧୁମାନଙ୍କୁ ସଙ୍ଗରେ ଧରି ଆସନ୍ତି। ଆପଣ ଆସନ୍ତୁ, ମୁଁ ଆପଣଙ୍କୁ ବାରଆଡ଼େ ବୁଲେଇ ଜଣ ଜଣ କରି ଦେଖେଇ ଦେଉଚି।

ସତ୍ୟବ୍ରତ ଉଠୁଥିଲେ।

: କ୍ଷମା କରିବେ ମି: ମହାପାତ୍ର। ଦୁଇ ମିନିଟ୍। ଏଇ ବିଲ୍‌ଟା ଟିକିଏ ମୁଁ କରିଦିଏ। ଭଦ୍ରଲୋକ ଆଜି ଚାଲିଯିବେ।

ସତ୍ୟବ୍ରତ ପୁଣି ବସିଲେ। ଟେବୁଲ ଉପରେ ରଖା ହୋଇଥିବା 'ପ୍ଲେୟାର୍ସ ନମ୍ବର ଥ୍ରୀ' ଟିଣରୁ ଗୋଟିଏ ସିଗାରେଟ୍ ଉଠାଇ ନେଇ ଅଗ୍ନି ସଂଯୋଗ କଲେ। ପୁଣି ଠିଆ ହେଲେ। ଅଳ୍ପ ଦୂରରୁ ହୋ ହୋ ଘୋ ଘୋ ଶବ୍ଦ ଶୁଣାଯାଉଥିଲା। ବୋଧହୁଏ ବାରରେ ଆମୋଦ ପ୍ରମୋଦରେ ଦଳେ ଲୋକ ମାତିଥିଲେ। ସତ୍ୟବ୍ରତ କିପରି ଅଶ୍ୱସ୍ତି ଅନୁଭବ କରୁଥିଲେ। ସେ ଅଫିସ୍ ରୁମ୍‌ରୁ ବାହାରି ଦୁଆରେ ଯାଇ ଠିଆହେଲେ। ତା'ପରେ ଏଡ୍‌ୱାର୍ଡ୍‌ଙ୍କୁ ଆଉ ସେ ଅପେକ୍ଷା ନ କରି ଧୀରେଧୀରେ ବାର୍ ମଧ୍ୟରେ ଯାଇ ପ୍ରବେଶ କଲେ।

ଉନ୍ମତ୍ତ ନରନାରୀ।

ଆନନ୍ଦ କଳରୋଳ।

ଦଳ ଦଳ ରଙ୍ଗିନ୍ ପ୍ରଜାପତି ପରି ଯୋଡ଼ି ଯୋଡ଼ି ହୋଇ ବସି ଯାଇଛନ୍ତି ଗୋଟିଏ ଗୋଟିଏ ଟେବୁଲ ଆବୋରି।

ହସର ଫୁଆରା।

ଆଖିର ଇଙ୍ଗିତ।

ଅର୍ଦ୍ଧଉଲଗ୍ନ ଦେହର ଅଲଂଘ୍ୟ ଆକର୍ଷଣ।

ରଙ୍ଗୀନ ପାନୀୟର ମାଦକତା।

ସତ୍ୟବ୍ରତ ଅତ୍ୟନ୍ତ ସନ୍ତର୍ପଣରେ ଯାଇ ବସିଲେ ଗୋଟିଏ ଉହାଡ଼ିଆ ଜାଗାରେ। ଠିକ୍ ଗୋଟିଏ ଟେବୁଲ ଛାଡ଼ି ବସିଥିଲା ମନୋହର। ତାକୁ ଘେରି ବସିଥିଲେ ଦୁଇଟି ତରୁଣୀ। ପାନ ପାତ୍ର ଭରୁଥିଲା ଗୋଟିଏ ଚାରୁହାସିନୀ।

ମନୋହର କଥା କହୁଥିଲା ଅନ୍ୟ ତରୁଣୀଟି ସହିତ। ମନେ ହେଉଥିଲା, ମନୋହର ଖୁବ୍ ଗମ୍ଭୀର।

ଅନ୍ୟ ତରୁଣୀଟି ପାନପାତ୍ର ବଢ଼ାଇଦେଲା ମନୋହରର ହାତକୁ। ସେ ହାତଯୋଡ଼ି ବାରଣ କଲା।

ରହିରହି ମନୋହର ଚାହୁଁଥିଲା ସମ୍ମୁଖର ଛୋଟ ଷ୍ଟେଜଟି ଆଡ଼େ। କଳା ପରଦାର ଆବରଣରେ ସେତେବେଳଯାଏ ଆବୃତ ଥିଲା ସ୍ଥାନଟି।

ମନୋହର ଦୁଇପାଖ ଘେରି ଯେଉଁ ତରୁଣୀ ଦୁଇଟି ବସିଥିଲେ, ସେମାନଙ୍କ ସହିତ କଥାବାର୍ତ୍ତା କରିବାର ଯେପରି ବିଶେଷ ଆଗ୍ରହ ନଥିଲା ତାର। ତେବେ ରହି ରହି ପଦେପଦେ ଉତ୍ତର ଦେଉଥିଲା ସେମାନଙ୍କ କଥାର। ଗୋଳମାଳ ଭିତରେ କିଛି ଶୁଣାଯାଉନଥିଲା।

ହଠାତ୍ ପଛଆଡୁ ସତ୍ୟବ୍ରତ ଯେପରି କାହାର ସ୍ପର୍ଶ ଅନୁଭବ କଲେ। କିଛି ବୁଝିପାରିବା ଆଗରୁ ଗଳାରେ ଯେପରି ଚାପ ଅନୁଭୂତ ହେଲା, ଆଖି ଆଗରେ ଭାସିଉଠିଲା ଦଶଟି ସରୁ ସରୁ ଆଙ୍ଗୁଳି। ତା'ପରେ କାହାର ସଂପୂର୍ଣ୍ଣ ଦେହଭାର ଏବଂ କୋମଳ ମୃଦୁଝଙ୍କାର: ମୁଁ ଆସି ଗଲିଣି। ଆଉ ଚିନ୍ତା କରନାହିଁ।

ସତ୍ୟବ୍ରତ ବୁଲି ଅନେଇବାକୁ ଅବକାଶ ପାଇଲେ ନାହିଁ। ତରୁଣୀଟି ସତ୍ୟବ୍ରତଙ୍କ ପାର୍ଶ୍ୱରେ ଖାଲି ଚେଆରଟି ଦଖଲ କରି ବସିଲା। ଆଖିରେ ନୀରବ ଭାଷା, ମୁହଁରେ ଗୋଲାପୀ ହସ।

ସତ୍ୟବ୍ରତ କିଛି ସମୟ କେବଳ ନୀରବରେ ଅନେଇ ରହିଲେ ତରୁଣୀଟିର ମୁହଁକୁ।

: ମୋ ନାଁ ବୁଲ୍‌ବୁଲ୍। ଆପଣ ବୋଧେ ଏଠାକୁ ନୂଆ ଆସିଛନ୍ତି ?

ସତ୍ୟବ୍ରତ କିଛି ଉତ୍ତର ଦେବା ଆଗରୁ ହଠାତ୍ ହଲର ଆଲୋକ ଲିଭିଗଲା। ଷ୍ଟେଜ୍ ଉପରେ ଦେଖାଦେଲା ମିସ୍ ରୀଟାର ନୃତ୍ୟଛନ୍ଦ। କରତାଳିରେ ସମସ୍ତ ହଲଟା କମ୍ପିଉଠିଲା। ସତ୍ୟବ୍ରତ ଅନୁଭବ କଲେ ତାଙ୍କ ଦେହ ଉପରେ ଯେପରି କାହାର ଦେହ ଆସ୍ତେ ଜମି ଆସୁଛି। ସେ ଖୁବ୍ ଅଶ୍ୱସ୍ତି ଅନୁଭବ କରିବାକୁ ଲାଗିଲେ। ଶ୍ୱାସ ଯେପରି ତାଙ୍କର ରୁଦ୍ଧ ହୋଇଆସୁଥିଲା।

ଷ୍ଟେଜ ଉପରେ ରୀଟା ଗ୍ରେଗରୀ ପାଶ୍ଚାତ୍ୟ ନୃତ୍ୟ ଆରମ୍ଭ କରିଦେଇଥିଲା। କିନ୍ତୁ ବୁଲ୍ ବୁଲ୍। ସେ ଯେ....

ସତ୍ୟବ୍ରତ ଠିଆ ହୋଇପଡ଼ିଲେ।

ପଛଆଡୁ ଦଳେ ଲୋକ ଚିତ୍କାର କରି ଉଠିଲେ: ବସି ପଡ଼ନ୍ତୁ, ବସି ପଡ଼ନ୍ତୁ।

ବୁଲ୍‌ବୁଲ୍ ସତ୍ୟବ୍ରତଙ୍କ ହାତ ଟାଣି ପୁଣି ଚେଆରରେ ବସେଇଲା।

ବାଦ୍ୟର ତାଳେତାଳେ ନାଚି ଚାଲିଥିଲା ରୀଟା। ସେ ଯେପରି ଏକ ରବର କଣ୍ଢେଇ। ଦେହର ପ୍ରତିଟି ଅଂଶ ଏତେ ସ୍ୱଚ୍ଛନ୍ଦ ଭାବରେ ଗତି କରୁଥିଲା ଯେ, ମନେ ହେବନାହିଁ ଜଣେ ରକ୍ତମାଂସଧାରୀ ମଣିଷ ପକ୍ଷରେ ଏହା ସମ୍ଭବ। ହୁଏତ ରୀଟା ଦେହରେ ଖଣ୍ଡିଏ ହେଲେ ହାଡ଼ ନଥିଲା ଅଥବା ରୀଟା ଗୋଟାଏ ସଜୀବ ମଣିଷ ମୂର୍ତ୍ତି ହୋଇନପାରେ।

ରୀଟା ଦୁଇ ଗୋଡ଼ ସନ୍ଧିରେ ବେକ ଭରିଦେଲା।

ସେ ଗଡ଼ି ଚାଲିଲା, ଷ୍ଟେଜର ଏ ମୁଣ୍ଡରୁ ସେ ମୁଣ୍ଡ, ସେ ମୁଣ୍ଡରୁ ଏ ମୁଣ୍ଡ। ଯେପରି ଗାଡ଼ିଚକ।

ବାଦ୍ୟର ତାଳ ବେଗରୁ ବେଗବାନ ହେଲା।

ଷ୍ଟେଜ୍ ଉପରର ଗାଡ଼ିଚକଟା ସେହି ପରିମାଣରେ ଗଡ଼ିବାକୁ ଲାଗିଲା।

କରତାଳି ଧ୍ୱନିତ ହୋଇଉଠିଲା ହଲର ପ୍ରତ୍ୟେକ କୋଣରୁ।

ସତ୍ୟବ୍ରତ ମଧ୍ୟ ଦୁଇ ହାତରେ ତାଳି ବଜାଇଲେ।

ବାସ୍ତବିକ୍ ଅପୂର୍ବ!

ପୁଣି ଧୀରେଧୀରେ ହଲ୍‌ର ବତିଗୁଡ଼ିକ ଜଳି ଉଠିଲା।

ବୁଲ୍‌ବୁଲ୍ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ କହିଲା, ଏହାପରେ ବଲ୍ ଡାନ୍ସ ହେବ।

ସେଇ ମୁହୂର୍ତ୍ତରେ ବଲ୍‌ଡାନ୍‌ସର ମ୍ୟୁଜିକ୍ ବାଜି ଉଠିଲା।

ନିଜ ନିଜ ଆସନ ଛାଡ଼ି ପ୍ରାୟ ଅଧିକାଂଶ ତରୁଣ ତରୁଣୀ ଠିଆ ହୋଇପଡ଼ିଲେ।

ବୁଲ୍‌ବୁଲ୍ ସତ୍ୟବ୍ରତଙ୍କ ହାତଧରି ଟାଣି ଉଠାଇବାକୁ ଚେଷ୍ଟା କରୁଥିଲା। ସାମ୍ନାରେ ମନୋହରକୁ ଦୁଇଟିଯାକ ଝିଅ ଦୁଇ ହାତ ଧରି ଟାଣୁଥିଲେ। ମନୋହର ମୁହଁରେ ବିରକ୍ତି ଭରି ରହିଥିଲା।

ସତ୍ୟବ୍ରତ ଦେଖିଲେ, ସେହି ଭିଡ଼ ଠେଲି ରୀଟା ମନୋହର ଆଡ଼କୁ ଛୁଟି ଆସୁଛି। ମନୋହର ମୁହଁରେ ଆନନ୍ଦର ଜ୍ୟୋତି ଫୁଟିଉଠୁଛି।

: ଉଠ ଉଠ ଡିଅର୍।

ବୁଲ୍‌ବୁଲ୍ ସତ୍ୟବ୍ରତଙ୍କୁ ଉଠାଇଲା।

: ମୋତେ ଯେ ନାଚି ଆସେନାହିଁ। ତୁମେ ଭୁଲ୍ ଲୋକକୁ ଧରିଚ ବୁଲ୍‌ବୁଲ୍। ଲାଭ କିଛି ହେବନାହିଁ।

: ପ୍ରଥମେ କାହାରିକୁ କିଛି ଜଣାନଥାଏ, ତୁମେ ଚାଲିଆସ। ଧୀରେଧୀରେ ସବୁ ଠିକ୍ ହୋଇଯିବ।

ବୁଲ୍‌ବୁଲ୍ ସତ୍ୟବ୍ରତଙ୍କୁ ଟାଣି ଉଠେଇଲା ଏବଂ ହାତ ଦୁଇଟିକୁ ତା' ହାତରେ ମୁଠେଇ ଧରି ଭିଡ଼ ଭିତରକୁ ଟାଣି ନେଇଗଲା। ସତ୍ୟବ୍ରତ କୌଣସି ପ୍ରକାର ବାଦ୍ୟ ସହିତ ପାଦର ତାଳ ମିଳେଇବାକୁ ଚେଷ୍ଟା କରି କରି ମନୋହର ପାଖକୁ ଲାଗିଗଲେ।

ମନୋହର ସେତେବେଳକୁ ରୀଟାର ବାହୁବନ୍ଧନରେ ଆବଦ୍ଧ ଥିଲା।

ନୃତ୍ୟ ତାଳେତାଳେ ରୀଟା ମନୋହରକୁ ପଚାରିଲା: ନାଚ କିମିତି ଲାଗିଲା! ମନୋହର?

: ଅପୂର୍ବ!

: ଆଉ ଏମାନେ, କ'ଣ କହୁଥିଲେ?

: ଖାଲି ଲାଳସା। ମୋତେ କିନ୍ତୁ ମଧୁଛନ୍ଦା ରହି ରହି ଚାହୁଁଥିଲା। ମୋର ମନେ ହେଉଥିଲା...

: ଭୟ କରନି ମନୋହର। ତମର କ'ଣ ମଧୁଛନ୍ଦାକୁ ସନ୍ଦେହ ହେଉଚି?

ମଧୁଛନ୍ଦା ନାଁ ଶୁଣି ସତ୍ୟବ୍ରତଙ୍କ କାନ ଦୁଇଟି ଠିଆ ହୋଇଗଲା। ସେ ଆହୁରି

ମନୋହର ପାଖକୁ ଲାଗି ଲାଗି ଯାଉଥିଲେ। ବୁଲ୍‌ବୁଲ୍‌ର ପାଦ ସହିତ ସତ୍ୟବ୍ରତ ତାଳ ଦେଇ ପାରୁନଥିଲେ। କିନ୍ତୁ ସେ ଯେପରି ନାଚିବା ପାଇଁ ଯଥେଷ୍ଟ ପ୍ରେରଣା ପାଇଥିଲେ।

ରୀଟା ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମନୋହର କହିଲା: ଠିକ୍ ସନ୍ଦେହ ହେଉନାହିଁ। ତେବେ ସେ ମୋତେ ଆଜି ବାରମ୍ବାର ଚାହୁଁଥିଲା କାହିଁକି ?

: ତମେ ଗୋଟାଏ କଥା କର ମନୋହର। ତମ ସହିତ ନାଚିବାକୁ ତାର ବିଶେଷ ଆଗ୍ରହ ଥିଲା। ବିଚାରୀ ଆଘାତ ପାଇଚି, ଯାଅ ତା' ସହିତ ଟିକିଏ...ରୀଟା ମନୋହରକୁ ଠେଲି ଠେଲି ନେଇ ମଧୁଛନ୍ଦା ହାତ ସହିତ ଛନ୍ଦାଇ ଖସିଆସିଲା।

ମନୋହର ଦୁଇହାତରେ ମଧୁଛନ୍ଦାକୁ ଗୁଡ଼ାଇ ଧରିଲା।

ହସ ଫୁଟି ଉଠିଲା ମଧୁଛନ୍ଦା ମୁହଁରେ।

ମଧୁଛନ୍ଦା ନର୍ତ୍ତକୀ।

କିନ୍ତୁ ବଜାରର ଅନ୍ୟ ପାଞ୍ଚଟା ଝିଅ ପରି ସେ ଏତେ ଶସ୍ତା ନୁହେଁ। ତା'ର ଘର ଅଛି, ବାପ ମା ଅଛନ୍ତି। ସେ ସାମୟିକ ନାଚେ। ବିଶେଷ କୌଣସି ଅନୁଷ୍ଠାନରୁ ନିମନ୍ତ୍ରଣ ପାଇଲେ ନାଚିବାକୁ ଯାଏ। ତା' ନ ହେଲେ ନୁହେଁ।

ସତ୍ୟବ୍ରତ ସୁଯୋଗ ଦେଖି ପାର୍କ ହୋଟେଲ ବାର୍‌ରେ ମଧୁଛନ୍ଦା ସହିତ ପରିଚିତ ହୋଇଥିଲେ। ସାମାନ୍ୟ ମାତ୍ର। ମଧୁଛନ୍ଦା ସତ୍ୟବ୍ରତଙ୍କୁ ଘରକୁ ଯିବା ପାଇଁ ନିମନ୍ତ୍ରଣ କରିଥିଲା। କାରଣ ସତ୍ୟବ୍ରତଙ୍କ ଆୟୋଜିତ ବିଚିତ୍ରାନୁଷ୍ଠାନର ସେ ଅଂଶ ଗ୍ରହଣ କରିବ କି ନାହିଁ, ବିଚାର କରି ଉତ୍ତର ଦେବ।

ମଧୁଛନ୍ଦା ବାପାଙ୍କ ସହିତ ପ୍ରଥମେ ଦେଖାହେଲା।

ସତ୍ୟବ୍ରତ ବିନମ୍ର ନମସ୍କାର ଜଣାଇ ଆଗମନର ଉଦ୍ଦେଶ୍ୟ ଜଣାଇଲେ।

ଭଦ୍ରଲୋକ ଅଳ୍ପ ଅଳ୍ପ ହସି କହିଲେ: ଛନ୍ଦା ଆମର ନୃତ୍ୟରେ ଖୁବ୍ ନାଁ କରିଛି। ଜଣେ ନୃତ୍ୟ ସମାଲୋଚକ କହୁଥିଲେ, ଛନ୍ଦାର ଜନ୍ମ କେବଳ ନୃତ୍ୟ ପାଇଁ। ତା'ର ହସ୍ତ, ପଦ, ଆଖି, ନାକ ସବୁଠି ନୃତ୍ୟର ଛନ୍ଦ ଭରି ରହିଛି। ଭବିଷ୍ୟତରେ ସେ ଜଣେ ଅଦ୍ୱିତୀୟ ନୃତ୍ୟଶିଳ୍ପୀ ହୋଇ ବାହାରିବ।

ନମସ୍କାର ବିନିମୟ ପରେ ପ୍ରଥମେ ସତ୍ୟବ୍ରତ କଥା ଆରମ୍ଭ କଲେ: ଆପଣଙ୍କ ପ୍ରଶଂସା ମୁଁ ଶୁଣୁଥିଲି। ଅନେକଙ୍କଠାରୁ ଇତି ପୂର୍ବରୁ ଶୁଣିଛି। କିନ୍ତୁ ମନୋହର ଠାରୁ କାଲି ଶୁଣିଲା ପରଠାରୁ....

: ମନୋହର ବାବୁ ! ମନୋହର ବାବୁ ମୋର ପ୍ରଶଂସା କରୁଥିଲେ ?

ମଧୁଛନ୍ଦାର ମନପ୍ରାଣ ଯେପରି ପୁଲକରେ ଭରିଗଲା।

: କାଲି ଆମେ ପାର୍କ ହୋଟେଲରୁ ଏକା ସଙ୍ଗରେ ଫେରିଲୁ। ମନୋହର ମୋର ଖୁବ୍ ଅନ୍ତରଙ୍ଗ ବନ୍ଧୁ।

: କାହିଁ, ଆପଣଙ୍କୁ କେବେ ତ ତାଙ୍କ ସହିତ ଦେଖି ନଥିଲି ?

ପ୍ରସଙ୍ଗ ଅନ୍ୟ ଦିଗକୁ ଗତି କରୁଚି ଶୁଣି ମଧୁଛନ୍ଦାର ବାପା ଉଠି ଠିଆହେଲେ। ନା, ତାଙ୍କୁ ଆଉ ପୋଷେଇବ ନାହିଁ। ସେ ଧୀରେଧୀରେ ଘରୁ ବାହାରିଗଲେ।

ସତ୍ୟବ୍ରତ କହିଲେ: ମୁଁ ତ କଲିକତାରେ ନ ଥାଏ, ସେଇଥି ପାଇଁ ଆପଣ ମୋତେ ମନୋହର ସହିତ ଦେଖିବାକୁ ପାଆନ୍ତି ନାହିଁ । ଏବେ ଆଶା କରୁଛି ବେଳେବେଳେ ତାଙ୍କ ସହିତ ମୋତେ ଦେଖିବାକୁ ପାଇବେ। ତା' ଛଡ଼ା ଆପଣଙ୍କ ସହିତ ପରିଚୟ ହେଲାଣି ଯେତେବେଳେ....

: ଆଚ୍ଛା, ଆପଣ ଯଦି କିଛି ମନେ ନ କରନ୍ତି ମନୋହର ବାବୁଙ୍କ ସମ୍ବନ୍ଧରେ ମୁଁ ଦୁଇଚାରିଟା କଥା ପଚାରିବି।

ମଧୁଛନ୍ଦା କହିଲା।

: ନିଶ୍ଚୟ ଛନ୍ଦାଦେବୀ। ଆପଣ ଯାହା ପାରନ୍ତି ପଚାରନ୍ତୁ। ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ତିଳେହେଲେ କୁଣ୍ଠାବୋଧ କରିବି ନାହିଁ।

: ଆପଣ କଲିକତା କେତେଦିନ ହେବ ଆସିଚନ୍ତି ?

: ଏଇ ଦୁଇ ତିନିଦିନ ହେବ।

: ଏହା ପୂର୍ବରୁ ମନୋହରବାବୁଙ୍କ ସହିତ ଆପଣଙ୍କର କେବେ ଦେଖା ହୋଇଥିଲା ?

: ପ୍ରାୟ ତିନି ଚାରିମାସ ପୂର୍ବରୁ।

: ବେଶ୍ ।

ମଧୁଛନ୍ଦା ଟିକିଏ ସଜାଡ଼ି ହୋଇ ବସି କହିଲା: ଏଇ ତିନି ଚାରିମାସ ପରେ ଆପଣଙ୍କ ସହିତ ପୁଣି ଯେତେବେଳେ ମନୋହର ବାବୁଙ୍କର ଦେଖାହେଲା, ଆପଣଙ୍କର କ'ଣ ମନେ ହେଉଛି ?

: ମାନେ ? ମୁଁ ଆପଣଙ୍କର ଇଙ୍ଗିତଟା ଠିକ୍ ବୁଝି ପାରିଲି ନାହିଁ ଛନ୍ଦା ଦେବୀ।

: ମୋର ପଚାରିବାର ଉଦ୍ଦେଶ୍ୟ ହେଉଛି, ଆପଣ ଚାରିମାସ ପରେ ପୁଣି ଯେତେବେଳେ ମନୋହରବାବୁଙ୍କୁ ଭେଟିଲେ, ତାଙ୍କଠାରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରୁଛନ୍ତି କି ?

: ପରିବର୍ତ୍ତନ ?

ସତ୍ୟବ୍ରତ ସନ୍ଦିଗ୍ଧ ନୟନରେ ମଧୁଛନ୍ଦା ଆଡ଼େ ଅନେଇ ରହି କହିଲେ: କି ଧରଣର ପରିବର୍ତ୍ତନ କଥା ଆପଣ ପଚାରୁଛନ୍ତି ?

: ଆପଣ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରିନାହାନ୍ତି ?

: ନା, ମୋ ନଜରରେତ ସେପରି କିଛି ପଡ଼ିନାହିଁ। ଅବଶ୍ୟ ତା ସହିତ ମୋର କଥା ହୋଇଛି ଅଳ୍ପ। ଦେଖା ବି ହୋଇଚି ଖୁବ୍ କମ୍ ସମୟ। ତେଣୁ ଏତେଟା ମୁଁ ଲକ୍ଷ୍ୟ କରିନାହିଁ।

: ଆପଣ ଲକ୍ଷ୍ୟ କରି ଦେଖିବେ, ମନୋହର ବାବୁଙ୍କର ବହୁ ପରିବର୍ତ୍ତନ ହୋଇଚି, ବେଳେ ବେଳେ ମୋର ମନେ ହେଉଚି, ଯେପରି ଏ ମନୋହର ବାବୁ ସେ ମନୋହର ବାବୁ ନୁହନ୍ତି।

ମଧୁଛନ୍ଦାର ବ୍ୟର୍ଥତାରେ ସତ୍ୟବ୍ରତଙ୍କୁ ହସ ମାଡ଼ି ଆସୁଥିଲା। ସେ ନିଜକୁ ସମ୍ଭାଳି ନେଇ କହିଲେ: ଆଚ୍ଛା ପ୍ରଥମେ କେବେ ମନୋହର ସହିତ ଦେଖା ହୋଇଥିଲା ?

: ଖୁବ୍ ବେଶିଦିନ ନୁହେଁ, ପ୍ରାୟ ଦୁଇ ତିନି ବର୍ଷ ହେବ। ଗୋଟାଏ ନୃତ୍ୟାନୁଷ୍ଠାନରେ। ସେ ପ୍ରଧାନ ଅତିଥି ହୋଇ ସେଠାକୁ ଆସିଥିଲେ।

: ତା' ପରେ ?

: ସେଇଠି ତାଙ୍କ ସହିତ ମୋର ପରିଚୟ ହୋଇଥିଲା। ସେ ମୋର ନୃତ୍ୟ ଦେଖି ଖୁବ୍ ମୁଗ୍ଧ ହୋଇଥିଲେ। ମୋତେ ପାଖକୁ ଡାକି ବସାଇ ପ୍ରଶଂସା କରିଥିଲେ। ତା' ପରଠାରୁ ମଝିରେ ମଝିରେ ଏଠି ସେଠି ଦେଖା ହେଉଥିଲା। କିନ୍ତୁ ଏଇ ବର୍ଷେ ହେବ...

: ଖୁବ୍ ଘନିଷ୍ଠତା ବଢ଼ି ଯାଇଥିଲା, ନା ଛନ୍ଦାଦେବୀ !

: ପ୍ରାୟ ଥରେ ଦୁଇଥର ମନୋହର ବାବୁ ଆମ ଘରକୁ ମଧ୍ୟ ଆସିଥିଲେ।

: ତା'ଛଡ଼ା ଆପଣ କେଉଁଠି ତାଙ୍କୁ ଭେଟୁଥିଲେ ?

: ସେଇ ପାର୍କ ହୋଟେଲରେ। କିନ୍ତୁ ଆଜିକାଲିକା ପରି ଆଗେ ସେ ହୋଟେଲକୁ ଖୁବ୍ କମ୍ ଆସୁଥିଲେ ଏବଂ ଯେଉଁଦିନ ଆସୁଥିଲେ ରିଜର୍ଭ କେବିନ୍‌ରେ ବସି ଗଳ୍ପ କରୁଥିଲେ।

: ହୁଁ। ଆପଣ କେବେ ମନୋହର ଘରକୁ ଯାଇଛନ୍ତି ?

: ନା।

: ଆପଣ ବନଜ୍ୟୋତ୍ସ୍ନାକୁ ? ଚିହ୍ନନ୍ତି ?

ବନଜ୍ୟୋତ୍ସ୍ନା: ସେ ପୁଣି କିଏ ?

: ଗୋଟିଏ ଝିଅର ନାମ। କାଳେ ଯଦି ଆପଣ ତାଙ୍କୁ ଚିହ୍ନିଥାଆନ୍ତି, ସେଥିପାଇଁ ପଚାରୁଥିଲି।

: ନା, ସେପରି କୌଣସି ଝିଅକୁ ମୁଁ ଚିହ୍ନି ନାହିଁ ତ ! ଏଥର ଆପଣଙ୍କ ନୃତ୍ୟାନୁଷ୍ଠାନ କଥା କୁହନ୍ତୁ। ସେଠାକୁ କ'ଣ ମନୋହର ବାବୁ ଯାଉଛନ୍ତି ?

: ନିଶ୍ଚୟ। ମନୋହର ତ ଯିବ। ତା'ଛଡ଼ା ଆହୁରି ବହୁ ପଦସ୍ଥ ଅତିଥି ଆସିବେ।

: କେଉଁଦିନକୁ ଠିକ୍ କରିଚନ୍ତି ?

: ଏ ପର୍ଯ୍ୟନ୍ତ ତାରିଖଟା ଠିକ୍ ହୋଇନାହିଁ। ତେବେ ଏଇ ଆଠଦିନ ଭିତରେ ହେବାର ଆୟୋଜନ କରା ହୋଇଚି। ଆଚ୍ଛା ଛନ୍ଦାଦେବୀ! ମନୋହର ସହିତ ରୀଟାର ପରିଚୟ କେତେ ଦିନର କହିପାରିବେ ?

: ଆଗରୁ ରୀଟାକୁ ସେ ପାର୍କ ହୋଟେଲରେ ଅନେକଥର ଦେଖିଥିଲି। କିନ୍ତୁ ଏତେଟା ଆନ୍ତରିକତା ମୁଁ ଏଇ ପନ୍ଦର କୋଡ଼ିଏ ଦିନ ହେବ ଲକ୍ଷ୍ୟ କରୁଛି। ଖାଲି ସେତିକି ନୁହେଁ, ମନୋହରବାବୁ ଦିନକୁ ଦିନ ତାଙ୍କର ଗମ୍ଭୀରତା ନଷ୍ଟ କରି ଚାଲିଛନ୍ତି। ଯା'ଛା ତା ଝିଅମାନଙ୍କ ସହିତ ମିଶିବାକୁ ଆରମ୍ଭ କରି ଦେଇଛନ୍ତି। ରେସ୍‌କୋର୍ସକୁ ଯିବା ଆରମ୍ଭ କରି ଦେଲେଣି। ତାଙ୍କର ଅଧଃପତନ ଯେ ଖୁବ୍ ଶୀଘ୍ର ଘନେଇ ଆସୁଛି, ତାହା ଜଳଜଳ ହୋଇ ମୋତେ ଦିଶି ଯାଉଛି।

: ଆପଣ ତାଙ୍କୁ ଏହି ଅଧଃପତନରୁ ବଞ୍ଚେଇବାକୁ ଚେଷ୍ଟା କରୁନାହାନ୍ତି ?

: ମୁଁ ନିରୁପାୟ। କାରଣ ଆଗ ଭଳି ସେ ଆଉ ମୋ କଥା ଶୁଣୁନାହାନ୍ତି। ରୀଟା ଗ୍ରେଗରୀ ଏଇକ୍ଷିଣା ତାଙ୍କର ଡାହାଣ ହାତ।

: ଅନୁରାଧା ସହିତ ଆପଣଙ୍କର ପରିଚୟ ଥିଲା ?

ହଠାତ୍ ସତ୍ୟବ୍ରତ ପଚାରିଦେଲେ।

ମୁହୂର୍ତ୍ତେ ମଧୁଛନ୍ଦା ଥକ୍କା ମାରିଯାଇ କହିଲା: ପାର୍କ ହୋଟେଲର ଅନୁରାଧା କଥା କହୁଛନ୍ତି ? ବିଚାରୀ ଖୁବ୍ ଭଦ୍ର ଥିଲା। ହୋଟେଲ ଗାର୍ଲଙ୍କ ଭିତରେ ଏତେ ଭଦ୍ର ଝିଅ କେଉଁଠି ମୋ ଆଖିରେ ପଡ଼ିନାହାନ୍ତି। ଶେଷରେ ଶୁଣୁଚି ସେ ଆତ୍ମହତ୍ୟା କଲା।

: ତା'ର ମନୋହର ସଙ୍ଗରେ କିପରି ସମ୍ବନ୍ଧ ଥିଲା ?

: ମନୋହରବାବୁ ତା' ଗୀତକୁ ଖୁବ୍ ପସନ୍ଦ କରୁଥିଲେ। ବେଳେବେଳେ ତାକୁ ଡାକି ଏକା ଏକା ଗୀତ ଶୁଣୁଥିଲେ। ଦିନେ ଆମ ଘରେ ଆସି ଅନୁରାଧା ମନୋହରକୁ ବହୁତ ଗୀତ ଗାଇ ଶୁଣାଇଥିଲା।

: ଆଉ ସେଦିନ ଆପଣ ମଧ୍ୟ ନୃତ୍ୟ ଦେଖାଇଥିଲେ ?

: ଆପଣ କିପରି ଜାଣିଲେ ?

ସତ୍ୟବ୍ରତ ସ୍ମିତହସି କହିଲେ: ସେଇଟା ସ୍ୱାଭାବିକ। ଅନୁରାଧା ଗୀତ ଗାଇ ଶୁଣାଇଲା ଯେତେବେଳେ, ଆପଣ ନିଶ୍ଚୟ ନୃତ୍ୟ ଦେଖାଇଥିବେ। ତା' ହେଲେ ସେଦିନ ଆପଣଙ୍କ ଘରେ ଗୋଟିଏ ଛୋଟକାଟିଆ ଆସର ବସି ଯାଇଥିଲା।

: ପ୍ରାୟ। ସେ ଦିନଟି ମୋ ଜୀବନରେ ସ୍ମରଣୀୟ ହୋଇରହିବ। କାରଣ ଏତେ ଆନ୍ତରିକତା...

ମଧୁଛନ୍ଦା କଥା ଅସମାପ୍ତ ରଖି ମୃଦୁହସି ସତ୍ୟବ୍ରତଙ୍କ ମୁହଁକୁ ଅନାଇଲା।

ସତ୍ୟବ୍ରତ ହସରେ ହସ ମିଶେଇ କହିଲେ: ଏଇଟା କେତେଦିନ ତଳର ଘଟଣା ?

: ଏଇ ଦୁଇମାସ ହେବ। ତାଙ୍କର ଦିଲ୍ଲୀ ଯିବାର ଠିକ୍ ଦୁଇ ଚାରିଦିନ ଆଗରୁ। ସେଦିନ ମନୋହରବାବୁ ମୋର ଯଥେଷ୍ଟ ପ୍ରଶଂସା କରିଥିଲେ। ନିରୋଳାରେ ବସାଇ ମୋତେ ଅନେକ ଆଶାର ବାଣୀ ଶୁଣାଇଥିଲେ। କିନ୍ତୁ ଦିଲ୍ଲୀରୁ ଫେରିବା ପରେ ହଠାତ୍ ତାଙ୍କର କ'ଣ ଯେ ପରିବର୍ତ୍ତନ ହେଲା, ମୁଁ ମୋଟେ ବୁଝିପାରୁନାହିଁ। ଦିଲ୍ଲୀରୁ ଫେରିବା ପରେ ପ୍ରଥମେ ଯେଉଁଦିନ ତାଙ୍କ ସହିତ ମୋର ଦେଖାହେଲା, ସେ ଏପରି ଭାବ ଦେଖାଇଲେ ଯେ, ସେ ଯେପରି ମୋତେ ଚିହ୍ନିନାହାନ୍ତି। ଆଶ୍ଚର୍ଯ୍ୟ! ମୁଁ ତ ବୋକୀ ପାଲଟିଗଲି।

ସତ୍ୟବ୍ରତ ମନଯୋଗ ସହକାରେ ଶୁଣୁଥିଲେ।

: ତା'ପରେ ?

: ତା'ପରେ ଅବଶ୍ୟ ମୋ ସହିତ କଥାବାର୍ତ୍ତା କଲେ, କିନ୍ତୁ ସେଥିରେ ଆନ୍ତରିକତାର ଗନ୍ଧ ନ ଥିଲା।

: ହୁଁ।

ସତ୍ୟବ୍ରତ ଯେପରି ଆଲୋକ ସନ୍ଧାନ ପାଇଲେ। କହିଲେ: ଅନେକ ଡେରି ହୋଇଗଲାଣି ଛନ୍ଦା ଦେବୀ! ଆହୁରି ଅନେକଙ୍କ ପାଖକୁ ଯିବାକୁ ହେବ। ତେଣୁ ଦୟାକରି ଯଦି ଆପଣ, ମତାମତଟା...

: ମୋର ଆପତ୍ତି ନାହିଁ। ମନୋହର ବାବୁଙ୍କ ବନ୍ଧୁ ଆପଣ। ତେଣୁ ଆପଣଙ୍କର ମୋ ଉପରେ ସଂପୂର୍ଣ୍ଣ ଅଧିକାର ରହିଛି। ଯେତେବେଳେ, ଯେଉଁ ମୁହୂର୍ତ୍ତରେ ଇଚ୍ଛା ଆପଣ ଧରି ନେଇଯାଇପାରନ୍ତି।

: ସେଇଟା ତ କଥାର କଥା ନୁହେଁ ଛନ୍ଦାଦେବୀ! ମନୋହର ବାବୁଙ୍କର ସେ ଅଧିକାର ଥାଇପାରେ, କିନ୍ତୁ ଆମର ଅନ୍ତତଃ ଏତେ ବଡ଼ ସ୍ପର୍ଦ୍ଧା ଉଚିତ୍ ନୁହେଁ। ଯା ହେଉ ଆପଣ ରାଜି ହୋଇଛନ୍ତି, ଆମର ପରମ ସୌଭାଗ୍ୟ। ଆଉ ସାମାନ୍ୟ ଗୋଟାଏ କଥା। ସେଇ ସାମାନ୍ୟ କଥାଟା ବହୁ ସମୟରେ ମହାନ୍ ହୋଇ ଠିଆ ହୁଏ। ଆପଣ ନୃତ୍ୟ ବାବଦରେ କେତେ କ'ଣ ଦକ୍ଷିଣା ନିଅନ୍ତି ମୋତେ ଜଣାନାହିଁ। ଦୟାକରି ଯଦି କିଛି ମନେ ନ କରି...

ମଧୁଛନ୍ଦା ଗମ୍ଭୀର ହୋଇ ବସିଥିଲା। ଏଥର ସେ ହସିଦେଲା।

: ମୁଁ ଯେ ପ୍ରଫେସନାଲ ନୁହେଁ। ଆମେଚରମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରେଟ୍ ନଥାଏ। ତେବେ ମୋର ଗୋଟାଏ ନିୟମ ଅଛି। ସେଇଟା ହେଉଛି, ମୋତେ ଆସି ଗାଡ଼ିକରି ଆମ ଘରୁ ନେଇଯିବେ ଏବଂ ପୁଣି ଗାଡ଼ିକରି ଆଣି ଛାଡ଼ିଦେଇଯିବେ।

: ଧନ୍ୟବାଦ ।

ସତ୍ୟବ୍ରତ ଉଠୁଥିଲେ । ମଧୁଛନ୍ଦା ଆଉ ଟିକିଏ ବସିବାକୁ ଅନୁରୋଧ କରି ଘର ଭିତରକୁ ଚାଲିଗଲା । ପୁଣି ଫେରି ଆସି କହିଲା: ମୁହଁ ଟିକିଏ ମିଠା କରି ନ ଗଲେ ବାପା ମୋ ଉପରେ ବିରକ୍ତ ହେବେ ।

: କିନ୍ତୁ ମୋର ଯେ ଡେରି ହୋଇଯାଉଚି ।

: ଆପଣ କିନ୍ତୁ ମନୋହର ବାବୁଙ୍କୁ ମୋ କଥା ଟିକିଏ କହିବେ ।

ମଧୁଛନ୍ଦା ମୁହଁରେ ଆଶାର ଆଲୋକ ଫୁଟି ଆସୁଥିଲା ।

: ଛନ୍ଦାଦେବୀ ।

ସତ୍ୟବ୍ରତ କିପରି ଭଙ୍ଗା ସ୍ୱରରେ କହିଲେ: ମନୋହର ହେଲା ବଡ଼ଲୋକ । ଅଗାଧ ସମ୍ପତ୍ତିର ମାଲିକ । ସେହି ତୁଳନାରେ ତା ମନ ଉତ୍ତାଳ-ଅସ୍ଥିର ହେବାର କଥା । ସେଭଳି ମନ ଉପରେ ଯେ କାହାରି ଗୋଟାଏ ସ୍ମୃତି ଗଭୀର ରେଖା ଆଙ୍କି ପାରିବ ମନେ ହୁଏନାହିଁ । ତଥାପି ମୁଁ ମନୋହରକୁ ପଚାରିବି । ସେଦିନ ସେହି ନୃତ୍ୟାନୁଷ୍ଠାନରେ ଆପଣ ଓ ତା ମୋ ଭିତରେ କଥାବାର୍ତ୍ତା ହେବ ।

: ମୁଁ କିନ୍ତୁ ମନୋହର ବାବୁଙ୍କୁ ବାଗରେ ନ ପକାଇ ଛାଡ଼ିବି ନାହିଁ । ରୀଟା ତାଙ୍କୁ ପଥଭ୍ରଷ୍ଟ କରିଚି । ପୁରୁଷଲୋକତ ।

: ଦେଖାଯାଉ ।

ସିଦ୍ଧାର୍ଥଶଙ୍କର ରାୟ ତାଙ୍କର ତ୍ରିତଳ ପ୍ରାସାଦର ବାରଣ୍ଡାରେ ଆରାମ ଚେୟାର ଉପରେ ଆଖି ବୁଜି ଶୋଇଥିଲେ। ସାମ୍ନା ଟି'ପୟ ଉପରେ ମନୋହରର ଖଣ୍ଡିଏ ଫଟୋଗ୍ରାଫ୍ ରଖାହୋଇଥିଲା।

ସତ୍ୟବ୍ରତ ଧୀରେଧୀରେ ଗୋଟିଏ ଚେୟାର ଅଧିକାର କରି ବସିଥିଲେ ଏବଂ ଫଟୋଗ୍ରାଫ୍‌ଟି ଉଠାଇନେଲେ ଦେଖିଲେ।

ତଥାପି ସିଦ୍ଧାର୍ଥରାୟଙ୍କର ନିଦ୍ରାଭଙ୍ଗ ହେଲାନାହିଁ।

ସତ୍ୟବ୍ରତଙ୍କ ହାତରୁ ଫଟୋଗ୍ରାଫ୍‌ଟି ଆସି ତଳେ ପଡ଼ିଗଲା।

ସିଦ୍ଧାର୍ଥ ରାୟ ସ୍ୱପ୍ନରୁ ଉଠିଲା ପରି ଉଠିବସିଲେ। ଆଗରେ ସତ୍ୟବ୍ରତ ମହାପାତ୍ରଙ୍କୁ ଦେଖି କହିଲେ: ମୁଁ ଶୋଇନଥିଲି ମି: ମହାପାତ୍ର। ଖାଲି ଚିନ୍ତା କରୁଥିଲି। କାଲି ଦକ୍ଷିଣା ରଞ୍ଜନ ଚଉଧୁରୀଙ୍କୁ ପକ୍‌କା ଜବାବ ଦେବାକୁ ହେବ। ଆଜି ସେ ଲୋକ ପଠାଇଥିଲେ।

: ସେଥିପାଇଁ ଆପଣ ଏତେ ଚିନ୍ତିତ ହୋଇପଡ଼ିଛନ୍ତି କାହିଁକି ?

: ମୁଁ ଖୁବ୍ ଦୁର୍ଭାବନାରେ ପଡ଼ିଯାଇଛି। ସେଥିପାଇଁ ଆପଣଙ୍କୁ ଫୋନ୍ କରିଥିଲି।

: ବୁଝିଲି ଦୁର୍ଭାବନାଟା ଆପଣଙ୍କର କେଉଁଠି। ସେମାନେ କ'ଣ ମନୋହରର ଚରିତ୍ର ସମ୍ବନ୍ଧରେ କୌଣସି ସନ୍ଦେହ ପ୍ରକାଶ କରୁଛନ୍ତି ? ଆପଣ ତ କାଲି ଯାଇଥିଲେ, ସେପରି ଆଭାସ ପାଇଥିଲେ କି ?

: ନା, ତା ନୁହେଁ। ମନୋହରର ଗତିବିଧି ଦିନକୁଦିନ ସନ୍ଦେହର ଚରମକୁ ଉଠିଯାଉଚି। ଏଇ ଦେଖନ୍ତୁ।

ସିଦ୍ଧାର୍ଥ ରାୟ ଗୋଟିଏ ବହି ଭିତରୁ କେତେଗୁଡ଼ିଏ ଚିରାକାଗଜ ବାହାର କରିଦେଲେ।

ସତ୍ୟବ୍ରତ ଦେଖିଲେ, ଖଣ୍ଡିଏ ଚିଠି ଚିରା ହୋଇଛି। ସେ ବିଭିନ୍ନ ଖଣ୍ଡମାନଙ୍କୁ ଏକତ୍ର କରି ପଢ଼ିବାକୁ ଚେଷ୍ଟା କଲେ, ସହଜରେ ପଢ଼ି ହୋଇଗଲା।

ସର୍ପ-ଉର୍ବଶୀ-ରାତ୍ରି

'ମୁଁ ଫେରିଆସିଲିଣି ସେଦିନୁ। ତମେ ତ ଶୁଣିଥିବ। ତମର ଛାଇ ପର୍ଯ୍ୟନ୍ତ ଦେଖିଲି ନାହିଁ। ରାଗିଚ? ବାହାରେ ତ ମାତ୍ର ମାସ ଗୋଟାଏ କଟିଲା। ମୁଁ କ'ଣ କରିବି କୁହ। ବାପା ମା'ଙ୍କର ଅବାଧ୍ୟ ତ ହୋଇପାରିନଥାନ୍ତି।

'ତମ ଦେଖାନପାଇ ମନଟା ସବୁବେଳେ ବିକଳ ହେଉଚି। କାହିଁକି ମନ ମାରିଚ? କାଲି ମୁଁ ତମକୁ ଅପେକ୍ଷା କରିବି। ସକାଳେ ଏଇଠି ଆସି ଚା' ଖାଇଲେ ଭଲ ହୁଅନ୍ତା। ମୁଁ ଅପେକ୍ଷା କରିବି। ଉତ୍ତର ଦେବ। ଚାହିଁ ରହିଲି।'

ସତ୍ୟବ୍ରତ ଚିଠିଟି ପଢ଼ିସାରି ସିଦ୍ଧାର୍ଥ ରାୟଙ୍କ ମୁହଁକୁ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲେ।

: ମଣିମାଳା ଦକ୍ଷିଣା ରଞ୍ଜନଙ୍କର କନ୍ୟା। ମୋର ଭାବୀ ପୁତ୍ରବଧୂ ଲୋକହାତରେ ଚିଠିଦେଇ ମନୋହର ପାଖକୁ ପଠାଇଥିଲା।

: ତା'ପରେ?

: ମନୋହର ଚିଠିଟିର କୌଣସି ଉତ୍ତର ତ ଦେଲାନାହିଁ। ଚିଠିଟିକୁ ଚାରିଖଣ୍ଡ କରି ଚିରି ଫିଙ୍ଗି ଦେଇଥିଲା।

: ଆଜି ସକାଳେ ସେ ମଣିମାଳା ସହିତ ଦେଖା କରିବାକୁ ଯାଇଥିଲା ?

: ନା, ସେଥିପାଇଁ ତ ମୋର ଦୁର୍ଭାବନା। ମନୋହର ଆଜି ବିଛଣାରୁ ଉଠିଲା ନଅଟା ବେଳେ। ମୁଁ ଅଫିସ ଗଲାବେଳକୁ ତା'ର ନିତ୍ୟକର୍ମ ଶେଷ ହୋଇ ନଥିଲା। ସେ ଆଜି ଘରେ ସାଢ଼େବାରଟା ଯାଏ ଥିଲା। ତା'ପରେ କୁଆଡ଼େ ବାହାରି ଯାଇଚି ଯେ ଏ ପର୍ଯ୍ୟନ୍ତ ଫେରିନାହିଁ।

: ହୁଏତ ମଣିମାଳା ସହିତ ଦେଖା କରିବାକୁ ଯାଇଥିବ।

: ନା, ଯାଇନାହିଁ। ମୁଁ ଫୋନ୍ କରି ବୁଝିଥିଲି।

: ଆପଣଙ୍କର କ'ଣ ମନେ ହେଉଛି ?

: ମୁଁ କିଛି ଭାବି ପାରୁନାହିଁ ମି: ମହାପାତ୍ର। ମୋର ମନେ ହେଉଛି, ମନୋହରକୁ ମୁଁ ଆଉ ମୋର କରି ରଖିପାରିବି ନାହିଁ। ଆପଣ ମୋର ଶେଷ ଆଶା ଭରସା।

ସତ୍ୟବ୍ରତ ବାରମ୍ବାର ଚିଠିଟିକୁ ପଢୁଥିଲେ।

: ଏ ଯେ ମଣିମାଳା ହାତର ଲେଖା ଆପଣ ଠିକ୍ ଜାଣିଛନ୍ତି ?

: ହଁ, ମି: ମହାପାତ୍ର! ମଣିମାଳା ଏ ଚିଠି ଲେଖିବି। ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।

: ତା'ହେଲେ ବୁଝିବାକୁ ହେବ ମନୋହର ଆନ୍ତରିକତା ସହ ମଣିମାଳାକୁ ଭଲପାଏ ନାହିଁ। ଏ ବିବାହ ପ୍ରସଙ୍ଗରେ ଆପଣ ମନୋହରକୁ ଖୋଲାଖୋଲି ଭାବରେ ପଚାରିଥିଲେ?

: କ'ଣ ଆଉ ପଚାରିବି ମି: ମହାପାତ୍ର! ମଣିମାଳା ଭଳି କନ୍ୟା ଦକ୍ଷିଣାରଞ୍ଜନ ଚଉଧୁରୀଙ୍କ ପରି ଶ୍ୱଶୁର, କେତେଜଣଙ୍କ ଭାଗ୍ୟରେ ଯୁଟେ ? ମନୋହର ମୋ ପୁତ୍ର ହିସାବରେ ଅନ୍ତତଃ ସେତକ ବୁଝିବା ଉଚିତ୍।

: ଆପଣ ଭୁଲ୍ କରୁଛନ୍ତି ମି: ରାୟ ! ଆପଣଙ୍କ ମନ ଦେଇ ମନୋହରକୁ ବିଚାର କରିବା ଉଚିତ୍ ହେଉନାହିଁ। କାରଣ ତା'ର ଗୋଟିଏ ସ୍ୱତନ୍ତ୍ର ସତ୍ତା ଅଛି। ସେ ଏକ ସ୍ୱତନ୍ତ୍ର ମଣିଷ।

ସିଦ୍ଧାର୍ଥଶଙ୍କର ରାୟ ଧକ୍କା ଖାଇଲା ପରି ଦୋହଲି ଗଲେ। ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲେ କିପରି କରୁଣ ଦୃଷ୍ଟିରେ। ଶାନ୍ତ ସ୍ୱରରେ କହିଲେ: ଆପଣ କିଛି ଖବର ପାଇଛନ୍ତି ?

: ଶୁଣନ୍ତୁ ମିଃ ରାୟ। ଜଗତଟା ପରିବର୍ତ୍ତନଶୀଳ। ବର୍ତ୍ତମାନ ଯୁଗ ସହିତ ଆପଣ ଠିକ୍ ତାଳଦେଇ ଚଳି ପାରୁନାହାନ୍ତି। ତେଣୁ ଆପଣଙ୍କର ମନେ ହେଉଚି ମନୋହର ଯାହା କରୁଛି ସବୁ ଅନ୍ୟାୟ, ସବୁ ଅକାରଣ। ମୁଁ କହୁନାହିଁ ଯେ, ମନୋହର ଯାହା କରୁଚି ସବୁ ସଂଗତ, କିନ୍ତୁ କିଛିଟା ସ୍ୱାଧୀନତା ମନୋହରକୁ ଆପଣଙ୍କର ଦେବା ଉଚିତ ଥିଲା। ଯା' ହେଉ, ଆପଣ ଏହି ଅତ୍ୟଧିକ ଚିନ୍ତା ତ୍ୟାଗ କରନ୍ତୁ। ମନୋହରକୁ ମୁଁ ବିଶ୍ଳେଷଣ କରୁଛି। ଏଇ ଅଳ୍ପଦିନ ଭିତରେ ମୁଁ ତାର ମନୋବୃତ୍ତି ସମ୍ବନ୍ଧରେ ଠିକ୍ ବିବରଣୀ ଆପଣଙ୍କୁ ଦେଇପାରିବି।

: କିନ୍ତୁ କାଲି, କାଲି କଥା କ'ଣ ହେବ ?

: କାଲି ପୁଣି କୋଉ କଥା ?

: ଦକ୍ଷିଣାରଞ୍ଜନ ଚଉଧୁରୀଙ୍କୁ ଜବାବ ଦେବାକୁ ହେବ ଯେ !

: ଆପଣ ଯାଇ ଦେଖି ଆସିବେ। ସେଥିରେ ଭାବିବାର କ'ଣ ଅଛି ?

: ଦକ୍ଷିଣାରଞ୍ଜନ କହିଥିଲେ ମନୋହରକୁ ସଙ୍ଗରେ ନେଇଯିବା ପାଇଁ।

: ନେଇ ଯିବେ।

: ସେ ଯଦି ଯିବାକୁ ରାଜି ନ ହୁଏ ?

: ନ ହେଲେ ନ ଯିବ। ମନୋହରକୁ ନ ଦେଖିଲେ ଯେ ଦକ୍ଷିଣାରଞ୍ଜନ ବାବୁ ବିବାହର ସ୍ୱୀକୃତି ଦେବେନାହିଁ, ସେପରି ତ କିଛି କଥାନାହିଁ।

: ହୁଏତ ସେ ଅନ୍ୟ କିଛି ଭାବି ପାରନ୍ତି।

: ଦେଖନ୍ତୁ ମି: ରାୟ ! ବିବାହଟା ଏକା ଆପଣଙ୍କର ପ୍ରୟୋଜନ ନୁହେଁ, ତାଙ୍କର ମଧ୍ୟ ଗରଜ ଅଛି। ବିଶେଷକରି ସେମାନେ କନ୍ୟାପକ୍ଷ। ଆପଣଙ୍କର ଜୋର ବେଶି।

ସିଦ୍ଧାର୍ଥ ରାୟ ହସିବାକୁ ଚେଷ୍ଟା କରି ମଧ୍ୟ ହସିପାରିଲେ ନାହିଁ। ସତ୍ୟବ୍ରତ ଲକ୍ଷ୍ୟ କରୁଥିଲେ, ମନୋହର ପାଇଁ ତାଙ୍କର ଯେତେ ଚିନ୍ତା ନାହିଁ, ତା'ଠାରୁ ବଳି ଦୁର୍ଭାବନା ଦକ୍ଷିଣାରଞ୍ଜନଙ୍କ ପାଇଁ। କାଳେ ସେ ଅମତ ହେବେ କି ! କାଳେ ଦକ୍ଷିଣାରଞ୍ଜନଙ୍କ ସମ୍ପତ୍ତି ହାତଛଡ଼ା ହୋଇଯିବ କି ?

ସିଦ୍ଧାର୍ଥ ରାୟ କହିଲେ: ଆପଣଙ୍କ ଯୁକ୍ତିଟା ଯଦିଓ ଅକାଟ୍ୟ ତାହା କ୍ଷେତ୍ର ବିଶେଷରେ। ଏଠାରେ ଗରଜଟା ଯେ ବେଶି ଆମର।

ସତ୍ୟବ୍ରତ ନୀରବ ରହିଲେ। ସିଦ୍ଧାର୍ଥ ରାୟଙ୍କର ଅତ୍ୟଧିକ ଆଗ୍ରହକୁ ଭାଙ୍ଗି ଦେବାକୁ ସାହସ କରିପାରିଲେ ନାହିଁ।

: କ'ଣ କରିବି କୁହନ୍ତୁ ମଃ ମହାପାତ୍ର !

ଶିଶୁଙ୍କ ପରି ଅସହାୟ ସ୍ୱରରେ କହିଲେ ସିଦ୍ଧାର୍ଥ ରାୟ।

: ଆପଣ ମନୋହରକୁ କାଲିଯିବା ପାଇଁ କୁହନ୍ତୁ। ସେ ହୁଏତ ଅସ୍ୱୀକାର କରିବ ନାହିଁ।

: ଯଦି ରାଜି ନ ହୁଏ ?

: ତା'ହେଲେ ମୋତେ ସଙ୍ଗରେ ନେଇଯିବେ।

: ଆପଣ, ଆପଣ ଯାଇ...

: ମୁଁ ଯାଇ ଚଳେଇ ନେବି। କିଛି ଗୋଟାଏ ବାହାନା କରି ମନୋହରର ଅନୁପସ୍ଥିତି ଚଳେଇ ନେଇ ହେବ। ଛାଡ଼ନ୍ତୁ, କାଲି କଥା ଆଜି ଚିନ୍ତା କରି ଲାଭନାହିଁ। ଆଚ୍ଛା କହିଲେ, ଆପଣ ଏଠାରେ ମନୋହରର ଫଟୋ ଖଣ୍ଡେ କାହିଁକି ରଖିଥିଲେ ?

: ଇମିତି। ମୋର କାହିଁକି ମନୋହରକୁ ଦେଖିବାକୁ ପ୍ରବଳ ଇଚ୍ଛା ହେଲା। ସେଥିପାଇଁ...

ସତ୍ୟବ୍ରତ ଉଠିଲେ। କହିଲେ: ଆଜି ମୁଁ ଆସୁଛି ମି: ରାୟ। ଆପଣ କାଲିପାଇଁ ପ୍ରସ୍ତୁତ ହୁଅନ୍ତୁ। ମନରୁ ମନୋହରର ଚିନ୍ତା ପୋଛି ପକାନ୍ତୁ। ସେ ଠିକ୍ ବାଟକୁ ଆସିଯିବ।

: ଆପଣ ସତ କହୁଛନ୍ତି ମି: ମହାପାତ୍ର ? ତା' ପାଇଁ ମୁଁ ଆଉ ଭାବିବିନାହିଁ ?

: ନ ଭାବିବା ତ ଉଚିତ୍। ପ୍ରତ୍ୟେକ ମଣିଷର ଗୋଟାଏ ବୟସ ଥାଏ,- ଯେତେବେଳେ ସେ ଟିକିଏ ଉଚ୍ଛୃଙ୍ଖଳ ହୋଇପଡ଼େ। ମନୋହରର ଦେହଟା ତ ରକ୍ତ ମାଂସରେ ଗଢ଼ା।

ସତ୍ୟବ୍ରତ ଧୀରେଧୀରେ ତଳକୁ ଓହ୍ଲେଇ ଯାଉଥିଲେ। ମଝି ଶିଡ଼ିରେ ମାଧବ ସହିତ ଦେଖାହୋଇଗଲା।

: ଆରେ ମାଧବ ଯେ ! ଖବର କ'ଣ ?

: କ'ଣ ଆଉ ଆଜ୍ଞା ! କିଛି ଭଲ ନୁହେଁ। ସାଆନ୍ତେ ସବୁବେଳେ ମନୁ ବାବୁଙ୍କ କଥା ଭାବି ଭାବି ଭାଙ୍ଗି ପଡ଼ିଲେଣି। ଏ ଘର ଆଉ ଭଲ ଲାଗୁନାହିଁ।

: ଆଚ୍ଛା ମାଧ ! ତମେ ମନୋହରକୁ କିପରି ଲକ୍ଷ୍ୟ କରୁଚ ? ପ୍ରକୃତରେ ସେ କ'ଣ ବଦଳିଯାଇଛି ?

: ମତେ କାହିଁକି ମନୁବାବୁଙ୍କ କଥା କିମିତି କିମିତି ଲାଗୁଛି ଆଜ୍ଞା। ଛୋଟ ମୁହଁରେ ବଡ଼ କଥା କହିବା ଠିକ୍ ହେବନାହିଁ। ହେଲେ...

: କ'ଣ କୁହ ମାଧ। ସବୁକଥା ଖୋଲି ନ କହିଲେ ଚଳିବ ନାହିଁ।

: ମନୁବାବୁ ଦିଲ୍ଲୀରୁ ଫେରିବା ପରେ କିମିତି ବୋକା ପାଲଟି ଯାଇଛନ୍ତି। ପ୍ରଥମେ ଯେଉଁ ଦିନ ଆସିଲେ, ତାଙ୍କ କାରବାର ଦେଖି ମୁଁ ତ ବୋକା ପାଲଟି ଯାଇଥିଲି। ମନେହେଲା ମନୁବାବୁ ଯେପରି ଏ ଘରର ଲୋକ ନୁହନ୍ତି।

: କିପରି ?

: ସେ ମୋତେ ପାଖକୁ ଡାକି ଚୁପ୍‌ଚୁପ୍ ମୋ କାନରେ କହିଲେ, କିଛି ମନେ କରିବୁ ନାହିଁ ମାଧ। କାଲି ରାତିରେ ଟିକିଏ ମଦ ପିଇଦେଇଥିଲି। ନିଶାଟା ଏ ପର୍ଯ୍ୟନ୍ତ ଛାଡ଼ିନାହିଁ। ଘରଦ୍ୱାର ସବୁ ମୋତେ ଅନ୍ଧକାର ଦେଖାଯାଉଛି।

: ତା'ପରେ ?

: ମୁଁ ତାଙ୍କୁ ଗାଧୁଆ ଘରକୁ ହାତଧରି ନେଇଗଲି। ସେଦିନ ସେ ଗାଧୋଇ ସାରି ଖାଇ ପିଇ ଘରେ ଶୋଇ ରହିଲେ। ସାଆନ୍ତଙ୍କ ସହିତ ଦେଖା ବି କଲେ ନାହିଁ।

: ସେଉଠୁ ?

: ମୋତେ କାହିଁକି କେମିତି କେମିତି ଲାଗୁଛି। ମନୁବାବୁଙ୍କ ଆଚରଣରେ ବହୁ ଅଦଳବଦଳ ହେଇଚି।

: କିପରି ?

ନିଜେ ସେ ପୋଷାକପତ୍ର ପିନ୍ଧୁଛନ୍ତି। ନିଜ ହାତରେ ଯୋତା ପିନ୍ଧୁଛନ୍ତି। ଦିନରାତି ସବୁବେଳେ ଗୋଡ଼ରେ ମୋଜା ପିନ୍ଧି ବସୁଛନ୍ତି। ମୋର ମନେ ହେଉଚି, ମନୁବାବୁଙ୍କ ମୁଣ୍ଡଟା ବିଗିଡ଼ି ଯାଇଛି। କିଏ ତାଙ୍କୁ ଓଷଦ କରି ଦେଇଚି।

: କ'ଣ କହିଲ ମାଧ ? ମନୋହର ଦିନରାତି ସବୁବେଳେ ମୋଜା ପିନ୍ଧୁଚି ?

: ଆଜ୍ଞା !

: ଦିଲ୍ଲୀ ଯିବା ଆଗରୁ ତା'ର ସେ ଅଭ୍ୟାସ ନଥିଲା ?

: ନା, ମନୁବାବୁ ବରଂ ଆଗରୁ ମୋଜା ପିନ୍ଧିବାକୁ ଭଲ ପାଉନଥିଲେ। ବାହାରୁ ଫେରିଆସିବା ମାତ୍ରେ ସଙ୍ଗେ ସଙ୍ଗେ ମୋତେ କହୁଥିଲେ ଯୋତା ମୋଜା ଖୋଲି ଦେବାପାଇଁ।

: ହୁଁ।

ସତ୍ୟବ୍ରତ ଗମ୍ଭୀର ହୋଇଗଲେ।

ପୁଣି ଧୀରେ ଧୀରେ ସେ ସିଡ଼ିର ପାହାଚ ଅତିକ୍ରମ କରିବାକୁ ଲାଗିଲେ। ଏଥର ତାଙ୍କୁ ଫେରି ଯିବାକୁ ହେବ। ମଧୁଛନ୍ଦା ସହିତ ଆଉଥରେ ଦେଖା କରିବା ନିତାନ୍ତ ଆବଶ୍ୟକ। କାରଣ ସେ ବି କହୁଥିଲା, ମନୋହରର ଦିନକୁଦିନ କିପରି ପରିବର୍ତ୍ତନ ଘଟୁଚି।

ମଧୁଛନ୍ଦାର ଘରେ ପହଞ୍ଚିଲା ବେଳକୁ ପ୍ରାୟ ଛ'ଟା ବାଜି ଯାଇଥିଲା।

ସତ୍ୟବ୍ରତ ଦୁଆରେ ପାଦ ଦେଲା ମାତ୍ରେ ମନେହେଲା, ଘର ଭିତରେ ଯେପରି ଅଶୋଭନ ଘଟଣା କିଛି ଘଟିଛି।

ସତ୍ୟବ୍ରତ ଅପେକ୍ଷା ନ କରି ଭିତରକୁ ପଶିଗଲେ।

ମଧୁଛନ୍ଦାର ବାପା ସତ୍ୟବ୍ରତଙ୍କୁ ଦେଖିବାକ୍ଷଣି ଭୋ ଭୋ ହୋଇ କାନ୍ଦି ଉଠିଲେ।

ଘଟଣା କ'ଣ ?

ଛନ୍ଦା, ଛନ୍ଦାର କ'ଣ ହୋଇଯାଉଛି।

ଭିତରୁ ବୋଧହୁଏ ମଧୁଛନ୍ଦାର ମା' କାନ୍ଦି ଉଠିଲେ। ମୋର ସର୍ବନାଶ ହୋଇଗଲା। ଛନ୍ଦା ଆଉ...

ମଧୁଛନ୍ଦା ଘର ଭିତରେ ଖଟ ଉପରେ ଶୋଇଥିଲା।

ସତ୍ୟବ୍ରତ ନାଡ଼ି ପରୀକ୍ଷା କରି ଦେଖିଲେ । ବେଳକୁ ବେଳ ଦୁର୍ବଳ ହୋଇଆସୁଛି। ଆଖିବନ୍ଦ। ମୁହଁର ରଙ୍ଗ କଳା ପଡ଼ିଆସିଲାଣି।

: ଡାକ୍ତର, ଡାକ୍ତର ଡାକନ୍ତୁ।

ଲୋକ ପଠେଇଚି। ମଧୁଛନ୍ଦାର ବାପା କହିଲେ।

: ହଠାତ୍ କ'ଣ ହେଲା ଛନ୍ଦାର ?

: ଛନ୍ଦା ଆଜି ଦିନ ଗୋଟାକରୁ ବାହାରି ଯାଇଥିଲା। ଫେରିଲା ଏଇ ଅଧଘଣ୍ଟା ପୂର୍ବରୁ। ଘରେ ଗୋଡ଼ ଦେଇଛି କି ନାହିଁ ବାନ୍ତି ଆରମ୍ଭ ହୋଇଗଲା। ତାପରେ ମୁଣ୍ଡ ବୁଲେଇ ତଳେ କଚାଡ଼ି ହୋଇପଡ଼ିଲା। ପଦେ ହେଲେ କଥା କହିନାହିଁ। ଏଣୁ ତେଣୁ କ'ଣ ଗୁଡ଼ାଏ ଗପୁଚି।

ମୃଦୁ ହାସ୍ୟଧ୍ୱନି ଶୁଣି ସତ୍ୟବ୍ରତ ବୁଲି ଅନାଇଲେ। ମଧୁଛନ୍ଦା ହସୁଛି। ପୁଣି ମୁହଁରେ ବେଦନାର ଛାପ। ଉଃ...ନା ନା। ସେ ମୋର କ'ଣ କରିବ? ଚାଲିଯା, ଚାଲିଯା ଏଠୁ। ମୁଁ ଠିକ୍ ଚିହ୍ନିବି। କିଏ? ନା, ନା, ନା ମଧୁଛନ୍ଦା କାନ୍ଦି ଉଠିଲା।

ସତ୍ୟବ୍ରତ ଶେଯ ପାଖକୁ ଯାଇ ଡାକିଲେ: ଛନ୍ଦାଦେବୀ! ଛନ୍ଦାଦେବୀ!

ମଧୁଛନ୍ଦା ପୁଣି କହିବାକୁ ଆରମ୍ଭ କଲା, ହିଅର, ହିଅର ଏଲିଜାବେଥ୍।

ଛନ୍ଦାଦେବୀ।

: ସତ୍ୟବ୍ରତ ମଧୁଛନ୍ଦାକୁ ହଲେଇ ଦେଇ ଜୋର୍‌ରେ ଡାକିଲେ।

ଚୌରଙ୍ଗୀ...ଗରଳ....ସେର୍‌ପା...ମଧୁଛନ୍ଦା ଆଉ କ'ଣ କହିବାକୁ ଚାହୁଁଥିଲା, କିନ୍ତୁ କହିପାରିଲା ନାହିଁ। କେବଳ ଓଠ ଦୁଇଟା ତା'ର ଥରୁଥିଲା।

ସେତିକିବେଳେ ଡାକ୍ତର ପହଞ୍ଚିଲେ।

ମୁହୂର୍ତ୍ତେ ସମୟ ନଷ୍ଟ ନ କରି ବ୍ୟାଗ୍‌ଟା ସତ୍ୟବ୍ରତଙ୍କ ଆଡ଼କୁ ବଢ଼ାଇ ଦେଇ, ମଧୁଛନ୍ଦାର ହାତଟା ଉଠାଇ ନେଲେ, ନାଡ଼ି ଦେଖିଲେ। ମଧୁଛନ୍ଦା ମୁହଁକୁ ଚାହିଁଲେ। ପାଦରେ ହାତ ଦେଲେ ଡାକ୍ତରଙ୍କ ମୁହଁରେ ଉଦ୍‌ବେଗ ଫୁଟି ଉଠିଲା।

ସତ୍ୟବ୍ରତ ଚମଡ଼ା ବ୍ୟାଗ୍‌ଟି ଡାକ୍ତରଙ୍କ ହାତକୁ ବଢ଼ାଇଦେଲେ।

ଡାକ୍ତର କ୍ଷିପ୍ର ହସ୍ତରେ ଟାଣିନେଇ, ସିରିଞ୍ଜଟି ଖୋଲି ଇଞ୍ଜେକ୍ସନ ଭରିବାକୁ ଆରମ୍ଭ କଲେ।

ଖୁବ୍ କ୍ଷୀଣ ସ୍ୱର ଶୁଣାଗଲା ମଧୁଛନ୍ଦାର- ସର୍ପ-ଉର୍ବଶୀ-ରାତ୍ରି।

ସତ୍ୟବ୍ରତ କାନ ଠିଆ କରି ଶୁଣିଲେ। କିନ୍ତୁ ଡାକ୍ତରଙ୍କ ସିରିଞ୍ଜର ଛୁଞ୍ଚି ଆଉ ମଧୁଛନ୍ଦାର ଦେହ ସ୍ପର୍ଶ କରି ପାରିଲା ନାହିଁ। ମଧୁଛନ୍ଦାର ବେକ ମୋଡ଼ି ହୋଇପଡ଼ିଲା।

ଡାକ୍ତର ନାଡ଼ି ପରୀକ୍ଷା କଲେ। ନିସ୍ତବ୍ଧ ହୋଇଯାଇଚି।

ମଧୁଛନ୍ଦାର ମା' ମୁଣ୍ଡ ପିଟିଦେଲେ। କ୍ଷଣକେ କାନ୍ଦଣାର ରୋଳ ଉଠିଲା। ଡାକ୍ତର ତାଙ୍କର ଚମଡ଼ା ବ୍ୟାଗଟିକୁ ପୁଣି ବନ୍ଦ କରିବାକୁ ଲାଗିଲେ। ସତ୍ୟବ୍ରତ ଭାବୁଥିଲେ, ମଧୁଛନ୍ଦାର ଶେଷ ଅସଂଲଗ୍ନ ଶବ୍ଦ କେଇଟା କଥା। ସର୍ପ-ଉର୍ବଶୀ-ରାତ୍ରି।

କ'ଣ ଆଉ ଏହାର ଅର୍ଥ ହୋଇପାରେ?

ହୁଏତ କେବଳ ପ୍ରଳାପ। ହଁ, ପ୍ରଳାପ ହିଁ ହେବ। ଇତିପୂର୍ବରୁ ମଧୁଛନ୍ଦା ଏହିପରି କେତେକ ଅସଂଲଗ୍ନ ଶବ୍ଦ ଉଚ୍ଚାରଣ କରିଚି। ସେଗୁଡ଼ିକର ଅର୍ଥ ଖୋଜି ବସିବା ହୁଏତ ନିରର୍ଥକ ହେବ। କିନ୍ତୁ ମଧୁଛନ୍ଦାର ମୃତ୍ୟୁର ଅସଲ କାରଣ କ'ଣ ହୋଇପାରେ।

ଡାକ୍ତର ତାଙ୍କ କାର୍ଯ୍ୟ ଶେଷ କରିଥିଲେ। ସତ୍ୟବ୍ରତଙ୍କ ଉତ୍ସୁକ ନୟନ ଆଡ଼େ ଚାହିଁ

କହିଲେ: ମୁଁ ଠିକ୍ ଜାଣି ପାରୁନାହିଁ। ମୋର ମନେ ହେଉଚି ବିଷ ପ୍ରକ୍ରିୟା ଦ୍ୱାରା ମୃତ୍ୟୁ ହୋଇଚି। ଆପଣ ରୋଗର ଇତିହାସ କିଛି ଜାଣିଛନ୍ତି ?

: ନା, ବିଶେଷକିଛି ଜାଣିନାହିଁ। ମୁଁ ମଧ୍ୟ ଆପଣଙ୍କ ଆସିବାର ଦଶ ପନ୍ଦର ମିନିଟ୍ ପୂର୍ବରୁ ଆସିଚି। ମୋ ଜାଣିବାରେ ମଧୁଚ୍ଛନ୍ଦା ଆଜି ଦିନ ବାରଟା ଗୋଟାଏ ପର୍ଯ୍ୟନ୍ତ ସୁସ୍ଥ ଥିଲା। ସେ ଗୋଟାଏ ବେଳେ କୁଆଡ଼େ ବାହାରକୁ ଯାଇଥିଲା। ଘରକୁ ଫେରିଲା ଅସୁସ୍ଥ ଶରୀରରେ। ଘରେ ଆସି ବାନ୍ତି କରିଚି, ପରେ ପହଞ୍ଚିବାର ଘଣ୍ଟାକ ଭିତରେ ସବୁ ଶେଷ ହୋଇଯାଇଚି।

: ବାନ୍ତି ଝାଡ଼ା ଦୁଇଟାଯାକ ହୋଇଥିଲା ?

: ଝାଡ଼ା କଥାଟା ମୋତେ ଠିକ୍ ଜଣାନାହିଁ। ଏଇକ୍ଷିଣା କାହାରିକୁ ପଚାରିବା ମଧ୍ୟ ସମ୍ଭବ ନୁହେଁ। ଦେଖୁଛନ୍ତି ତ ପରିବାରର ସମସ୍ତେ କାନ୍ଦିବାକୁ ଆରମ୍ଭ କରିଦେଇଛନ୍ତି।

: ସେଇଟା ତ ସ୍ୱାଭାବିକ। ବର୍ତ୍ତମାନ କେହି ସୁସ୍ଥ ଭାବରେ ରୋଗର ହିଷ୍ଟିରୀ ଦେଇପାରିବେ ନାହିଁ। ତେଣୁ ନ ପଚାରିବାହିଁ ଭଲ। ମୁଁ ଆସୁଚି। ଆପଣ ପୋଲିସକୁ ଖବରଟା ଜଣାଇଦିଅନ୍ତୁ।

: ପୋଲିସ୍‌କୁ ଜଣାଇବାକୁ ହେବ ?

ସତ୍ୟବ୍ରତ ପଚାରିଲେ।

: ତା'ଛଡ଼ା ଉପାୟ ନାହିଁ। ମୁଁ ଡେଥ୍ ସାର୍ଟିଫିକେଟ ଦେଇପାରିବି ନାହିଁ। ମୋର ଯେତେଦୂର ଧାରଣା କେଶଟା ପଏଜନିଂ। ଆତ୍ମହତ୍ୟା ବି ହୋଇପାରେ। ତେଣୁ ପୋଲିସ୍ ନିହାତି ଜାଣିବା ଉଚିତ୍।

ସତ୍ୟବ୍ରତ ଡାକ୍ତରଙ୍କ ସହିତ କଥାବାର୍ତ୍ତା ହେଉ ହେଉ ଆଗେଇ ଯାଇଥିଲେ। ଫେରିଆସି ଦେଖିଲେ, ସମସ୍ତଙ୍କର ବିଚାର ବୁଦ୍ଧି ଯାଇଛି। କେହି ମଧୁଚ୍ଛନ୍ଦାର ମୃତଦେହଟାରେ ଲୁଗା ଖଣ୍ଡିଏ ବି ଘୋଡ଼େଇ ଦେଇ ନାହାନ୍ତି।

ସତ୍ୟବ୍ରତ ନିଜେ ସେ କାର୍ଯ୍ୟଟି ସମାଧାନ କଲେ। ଏ କ୍ଷେତ୍ରରେ ତାଙ୍କର କର୍ତ୍ତବ୍ୟ କ'ଣ ? କେବଳ ମାତ୍ର ପୋଲିସକୁ ଖବର ଦେବାଛଡ଼ା ଦ୍ୱିତୀୟ ପନ୍ଥା କିଛି ତାଙ୍କ ମୁଣ୍ଡରେ ପଶିଲା ନାହିଁ। ସେ ମଧ୍ୟ ଧୀରେଧୀରେ ଗୃହ ତ୍ୟାଗ କଲେ।

ମଧୁଚ୍ଛନ୍ଦାର ଜୀବନର ଛନ୍ଦପତନ ହୋଇଗଲା।

ସତ୍ୟବ୍ରତଙ୍କ ମନରେ ତା'ର ଗଭୀର ପ୍ରଭାବ ପଡ଼ିଲା। କାଲି ପାର୍କ ହୋଟେଲରୁ ସେ ଯେତିକି ତଥ୍ୟ ସଂଗ୍ରହ କରିଥିଲେ, ତାର ସାରାଂଶ ହେଉଚି, ମନୋହର ସହିତ ମଧୁଚ୍ଛନ୍ଦାର ଦିନ ଦୁଇଟା ବେଳେ କେଉଁଠିକୁ ଯିବାର ଥିଲା। ପ୍ରଥମେ ଜାଣିବାକୁ ହେବ

ମଧୁଛନ୍ଦା ମନୋହର ସହିତ ଯାଇଥିଲା କି ନାହିଁ ? ଏବଂ କେଉଁଠାକୁ। ତା'ପରେ ହୁଏତ ମଧୁଛନ୍ଦାର ମୃତ୍ୟୁ ରହସ୍ୟ ଧୀରେଧୀରେ ଜଣାପଡ଼ିଯିବ।

ସବୁଠାରୁ ରହସ୍ୟବିଜଡ଼ିତ ହେଉଛି, ସିଦ୍ଧାର୍ଥ ରାୟ ସଂଗ୍ରହ କରିଥିବା ସେଇ ଚିଟ୍ କାଗଜ ଖଣ୍ଡିକ। ଯେଉଁଥିରେ ତଳକୁ ତଳ ଲେଖା ହୋଇଥିଲା।

ଅନୁରାଧା ଗୀତ ଗାଏ।

ମଧୁଛନ୍ଦା ନାଚେ

ବନଜ୍ୟୋସ୍ନାର ହସରୁ ଗୋଲାପ ଝରେ।

ସେଇ ଚିଟ୍ ଖଣ୍ଡିକରୁ ଅନୁରାଧା ଆଉ ବନଜ୍ୟୋସ୍ନାର ନାମ କାଟିଦେଲେ ଚଳିବ। ବର୍ତ୍ତମାନ ବନଜ୍ୟୋସ୍ନାର ପାଳି। ତାକୁ ତ ସତ୍ୟବ୍ରତ ଏ ଯାଏ ଖୋଜି ବାହାର କରିପାରିଲେ ନାହିଁ। ବନଜ୍ୟୋସ୍ନା ରୀଟା ନୁହେଁ ତ ? ଗୋଟାଏ ଲାଇଟ୍ ପୋଷ୍ଟରେ ଧକ୍କା ଖାଇ ସତ୍ୟବ୍ରତଙ୍କର ହୋସ୍ ହେଲା।

ଆରେ କୁଆଡ଼େ ସେ ଚାଲିଛନ୍ତି ?

ଥାନାରେ ଖବର ଦିଆ ହୋଇପାରିଲା ନାହିଁ। କିନ୍ତୁ ବନଜ୍ୟୋସ୍ନାର ଘରଟା କେଉ ଥାନା ଅଣ୍ଡରରେ କିଏ ଜାଣେ? ଯା ହେଉ ସେ ବର୍ତ୍ତମାନ ହୋଟେଲକୁ ଫେରିଯାଇ ଫୋନ୍‌କରି ବୁଝିବେ।

ଖଣ୍ଡିଏ ରିକ୍‌ସାରେ ବସିଲେ ସତ୍ୟବ୍ରତ।

ସେତେବେଳକୁ ରାସ୍ତାର ଆଲୋକ ସବୁ ଜଳି ଉଠିଥିଲା। ସତ୍ୟବ୍ରତ ଚିନ୍ତିତ ଭାବରେ ଚାରିଆଡ଼କୁ କେବଳ ଚାହୁଁଥିଲେ। ହଠାତ୍ ତାଙ୍କ ମନରେ ଗୋଟାଏ ଭାବର ଉଦ୍ରେକ ହେଲା। ଏହି ସବୁ ହତ୍ୟାକାଣ୍ଡ ପଛରେ ସିଦ୍ଧାର୍ଥଶଙ୍କର ରାୟଙ୍କର କୌଣସି ହାତ ନାହିଁ ତ?

କିଏ ଜାଣେ! ବୃଦ୍ଧ ବୟସରେ ତାଙ୍କ ମୁଣ୍ଡରେ ସଂପତ୍ତିର ଭୂତ ଚଢ଼ିଛି। ଦକ୍ଷିଣାରଞ୍ଜନଙ୍କୁ ସମ୍ମୁଦି କରିବା ପାଇଁ ସେ ବିକଳ ଭାବରେ ଲାଗି ପଡ଼ିଛନ୍ତି। ଏହି ସମୟରେ ତାଙ୍କର କୌଣସି ଅନ୍ତରାୟ ସେ ସହ୍ୟ କରିପାରିବେ ନାହିଁ। ଅନୁରାଧା ମଧୁଛନ୍ଦା ଏମାନେ ତ ତାଙ୍କ ଦୃଷ୍ଟିରେ ସାମାନ୍ୟ ମଣିଷ। ଏମାନେ ଯଦି ପ୍ରକୃତରେ ତାଙ୍କ ଉଦ୍ଦେଶ୍ୟ ସାଧନ ପଥରେ ଅନ୍ତରାୟ ହୋଇଥାଆନ୍ତି, ତେବେ...

ରିକ୍‌ସାବାଲା ରିକ୍‌ସାଟାକୁ ତଳେ ଥୋଇଦେଲା।

ସତ୍ୟବ୍ରତ ଗ୍ରେଟ୍ ଇଷ୍ଟର୍ଣ୍ଣ ଦୁଆରେ ପହଞ୍ଚିଯାଇଥିଲେ। ସିଡ଼ିକୁ ଦୁଇଖେପା କଲା ପରି ସେ ଛୁଟି ଚାଲିଲେ ଟେଲିଫୋନ୍ ପାଖକୁ। ଡାୟାଲ୍ ଘୂରାଇ ଲାଲବଜାର ଥାନା ସହିତ ଯୋଗସୂତ୍ର ସ୍ଥାପନ କଲେ।

ଲାଲ ବଜାର ? ପ୍ରଣବ ଦାଶଗୁପ୍ତଙ୍କୁ ଟିକିଏ...

ପଛଆଡ଼ୁ କିଏ ତାଙ୍କ ହାତରୁ ରିସିଭରଟା ହଠାତ୍ ଛଡ଼େଇ ନେଇଗଲା। ସେ ବୁଲି ଚାହିଁଲେ। ସ୍ୱୟଂ ପ୍ରଣବ ଦାଶଗୁପ୍ତ ହସୁଛନ୍ତି।

: ମୁଁ ଆପଣଙ୍କୁ ରୁମ୍‌ରେ ଦେଖି ଫେରିଯାଉଥିଲି, ପ୍ରଣବ ଦାଶଗୁପ୍ତ କହିଲେ। କିନ୍ତୁ ସୌଭାଗ୍ୟ ଯେ, ଆପଣଙ୍କ ସହିତ ଭେଟହେଲା। ଗୋଟାଏ ଜରୁରୀ କାମରେ ଆସିଥିଲି। କିନ୍ତୁ ଆପଣ ମୋତେ ଫୋନ୍ କରୁଥିଲେ କାହିଁକି କହିଲେ ?

: ମୁଁ ମଧ୍ୟ ଏକ ଜରୁରୀ କାମରେ ଆପଣଙ୍କୁ ଫୋନ୍ କରୁଥିଲି।

ପ୍ରଣବ ଦାଶଗୁପ୍ତ ହସି ଉଠିଲେ: ତା'ହେଲେତ ସୁବର୍ଣ୍ଣ ସୁଯୋଗ। ଆସନ୍ତୁ ରୁମ୍‌ରେ ବସି କଥାବାର୍ତ୍ତା ହେବା।

ଦୁହେଁ ୭ ନମ୍ବର ରୁମ୍ ଆଡ଼େ ଆଗେଇଲେ।

: କହିଲେ ଆପଣଙ୍କ ଜରୁରୀ କାର୍ଯ୍ୟଟା କ'ଣ ?

ସତ୍ୟବ୍ରତ ରୁମ୍‌ର ଚାବି ଖୋଲୁ ଖୋଲୁ ପଚାରିଲେ।

: ନା ଆଗ ଆପଣ କୁହନ୍ତୁ।

: ମୁଁ ଆପଣଙ୍କୁ ଗୋଟାଏ ମୃତ୍ୟୁର ସମ୍ବାଦ ଦେବି।

: ମୃତ୍ୟୁ ସମ୍ବାଦ ଆପଣ କିପରି ପାଇଲେ, ସେଇକଥା ମୁଁ ଜାଣିବାକୁ ଆସିଚି।

ପ୍ରଣବ ଦାସଗୁପ୍ତ ହସି ହସି କହିଲେ।

: ମାନେ ? ଆପଣଙ୍କ ପାଖରେ ମଧୁଛନ୍ଦାର ମୃତ୍ୟୁସମ୍ବାଦ ପହଞ୍ଚି ସାରିଲାଣି ?

: ନା ନା, ମୁଁ ମଧୁଛନ୍ଦା କଥା କହୁନାହିଁ, କହୁଛି ଅନୁରାଧା କଥା। ପୁଣି କେଉଁ ମଧୁଛନ୍ଦାର କାଳ ପୂରିଲା ? ହତ୍ୟା ନା ଆତ୍ମହତ୍ୟା ?

: ଦୁଇଟାରୁ କେଉଁଟା ବି ନ ହୋଇପାରେ। ତେବେ ଡାକ୍ତର ଡେଥ୍ ସାର୍ଟିଫିକେଟ ଦେଲେ ନାହିଁ। ମୋତେ ଟିକିଏ ଥାନାରେ ସମ୍ବାଦଟା ପହଞ୍ଚାଇ ଦେବାକୁ କହିଛନ୍ତି।

ତା'ପରେ ସତ୍ୟବ୍ରତ ମଧୁଛନ୍ଦାର ମୃତ୍ୟୁ ସଂପର୍କୀୟ ବିବରଣୀଟା ଦେଇ କହିଲେ: ମୋ ମତରେ ଆପଣ ସେଠାକୁ ଶୀଘ୍ର ଦୁଇ ଜଣ କନେଷ୍ଟବଲ୍ ଅନ୍ତତଃ ପଠାଇ ଦେବା ଉଚିତ୍। କାରଣ ସେହି ମୃତ୍ୟୁ ପଛଆଡ଼େ କୌଣସି ରହସ୍ୟ ଲୁଚିଥିବା ପରି ମୋର ମନେ ହେଉଛି।

: ଆଚ୍ଛା, ଆପଣ ଇଣ୍ଟରେଷ୍ଟେଡ୍ ଯେତେବେଳେ ମୁଁ ଏକ ମୁହୂର୍ତ୍ତରେ ବ୍ୟବସ୍ଥା କରିଦେଉଚି। ଆପଣ କଫି ଅର୍ଡ଼ର ଦେଉଥାଆନ୍ତୁ। ମୁଁ ଟିକିଏ ଫୋନ୍ କରିଦେଇଆସୁଚି। ଆଉ ପ୍ରସ୍ତୁତ ହେଉ ଥାଆନ୍ତୁ ଅନୁରାଧାର ମୃତ୍ୟୁରହସ୍ୟ ଜଣାଇବା ପାଇଁ।

: ଅନୁରାଧାର ମୃତ୍ୟୁରହସ୍ୟ ?

ସତ୍ୟବ୍ରତ ନ ହସି ରହିପାରିଲେ ନାହିଁ।

: ଆପଣ ହସୁଛନ୍ତି ଯେ ?

ପ୍ରଣବ ଦାସଗୁପ୍ତ ପଚାରିଲେ।

: ନ ହସି ଆଉ ଉପାୟ କ'ଣ ଅଛି କୁହନ୍ତୁ। ଯେଉଁ ରହସ୍ୟ ଏବେ ବି କୁହେଳି ପରି ମୋର ମନ ଭିତରେ ବ୍ୟାପି ରହିଛି, ସେ ରହସ୍ୟଭେଦ ହୁଏତ ଜୀବନରେ କରିହେବ ନାହିଁ, ସେ ସମ୍ବନ୍ଧରେ ମୁଁ କି ଉତ୍ତର ଦେବି ଆପଣଙ୍କୁ ?

: ଆମ ବଡ଼ ସାହେବ କିନ୍ତୁ ଜାଣିବାକୁ ଚାହାନ୍ତି, ଆପଣ ଅନୁରାଧାର ମୃତ୍ୟୁ ସମ୍ବାଦ କିପରି ପାଇଲେ, କେଉଁଠାରୁ ପାଇଲେ। ମିଃ ଶର୍ମାଙ୍କ ସହିତ ଆପଣ ଘଟଣାସ୍ଥଳକୁ ଯାଇ ବିଶେଷ କୌଣସି ସୂତ୍ର ଆବିଷ୍କାର କରିଛନ୍ତି କି ? ସବୁ ସେ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବାକୁ ଚାହାନ୍ତି।

: କିନ୍ତୁ ପୃଥିବୀର ଏତେ ଲୋକ ଥାଉ ଥାଉ ଆପଣଙ୍କ ବଡ଼ ସାହେବ ମୋ ଉପରେ ହଠାତ୍ କରୁଣା କରି ବସିଲେ କାହିଁକି ?

: ଅବଶ୍ୟ କାରଣ ଅଛି। ଆପଣ ବଡ଼ ସାହେବଙ୍କ ଆସନରେ ବସିଥିଲେ ବି ଠିକ୍ ଏହିପରି ଆଦେଶ ଦେଇଥାଆନ୍ତେ। ସଂପୂର୍ଣ୍ଣ ଅନାହୂତ ଭାବରେ ଆସି ଆପଣ ଯେତେବେଳେ ଏହିପରି ଏକ ମୃତ୍ୟୁରହସ୍ୟର ସୂତ୍ର ଖୋଜି ବସିଲେ, ନିଶ୍ଚୟ ଏଇଟା ଆପଣଙ୍କର କେବଳ ପାଗଳାମି ନୁହେଁ। ଏ ସମ୍ବନ୍ଧରେ ଆପଣଙ୍କ ମନରେ କୌଣସି ଭିତ୍ତି ଅବଶ୍ୟ ଥିଲା।

ସତ୍ୟବ୍ରତ ହସି ହସି କହିଲେ: ଆପଣଙ୍କ ଯୁକ୍ତିର ସତ୍ୟତାକୁ ମୁଁ ଅସ୍ୱୀକାର କରୁନାହିଁ। ଏହା ସତ୍ୟ ଯେ, ଅନୁରାଧାର ମୃତ୍ୟୁ ରହସ୍ୟ ସ୍ୱପ୍ନଫଳ ନୁହେଁ। କିନ୍ତୁ ସୂତ୍ରଟା ଏତେ ଆକସ୍ମିକ ଯେ ସେ ସମ୍ବନ୍ଧରେ ବିଶ୍ଳେଷଣ କରିବାକୁ ଯେପରି କୌଣସି ଯୁକ୍ତି ନାହିଁ, ତା'ଠାରୁ ଅସୁବିଧା ହେଉଚି ସୂତ୍ରଟା ଏପରି ଏକ ପାରିବାରିକ ଘଟଣା ସହିତ ଜଡ଼ିତ, ଯାହାକୁ ଉନ୍ମୋଚନ କରିବାକୁ ଗଲେ ଅଭିଜାତ ପରିବାରର ଫାମିଲି ସିକ୍ରେସି ପଦାରେ ପକାଇବାକୁ ହୁଏ। ଯା, ହେଉ ତଥାପି ମୁଁ ସେ କଥା ଆପଣଙ୍କ ଆଗରେ କହିବି। ଆପଣ ଆଜି ବଡ଼ ସାହେବଙ୍କ ଦ୍ୱାରା ପ୍ରେରିତ ହୋଇ ମୋ ପାଖକୁ ନ ଆସିଥିଲେ ମଧ୍ୟ ମୁଁ ଆପଣଙ୍କୁ ନିଜେ ଯାଇ ଧରି ଆଣିଥାଆନ୍ତି। ଆଉ ମିଃ ଶର୍ମାଙ୍କ ସହିତ ଆପଣଙ୍କର ଦେଖା ହୋଇଥିଲା ?

: ଆଜି ଆମେ ଫୋନ୍‌ରେ କଥା ହେଉଥିଲୁ।

ପ୍ରଣବ ଦାସଗୁପ୍ତ କହିଲେ, ଅନୁରାଧାର ହତ୍ୟା ରହସ୍ୟ ଉନ୍ମୋଚନ କରିବା ପାଇଁ ସେ ଖୁବ୍ ଲାଗିପଡ଼ିଛନ୍ତି।

: ହଠାତ୍ କାହିଁକି ଏ ସୁବୁଦ୍ଧି ତାଙ୍କ ମନରେ ଉଦୟ ହେଲା ?

: ପଦୋନ୍ନତି କିଏ ଚାହେଁନା କହିଲେ ? ବାଡ଼ି ବୁଲଉ ବୁଲଉ ଯଦି ବାଜିଯାଏ। ମୋର ମନେହେଉଛି କେସ୍‌ଟା ଖୁବ୍ ଜଟିଳ। ଆପଣ ତ ସ୍ପଟ୍‌କୁ ଯାଇଥିଲେ, ଧାରଣା କ'ଣ ?

: ମୁଁ ବର୍ତ୍ତମାନ କିଛି କହିପାରିବି ନାହିଁ ମିଃ ଦାଶଗୁପ୍ତ। ମୃତ ମଧୁଛନ୍ଦାର ପୋଷ୍ଟମର୍ଟମ୍ ରିପୋର୍ଟ ଉପରେ ମୋର ମତାମତ ନିର୍ଭର କରୁଛି।

: ମାନେ ? ମଧୁଛନ୍ଦା ନା ଅନୁରାଧା କାହାକଥା ଆପଣ କହୁଛନ୍ତି ?

: ମଧୁଛନ୍ଦା। ଯାହାର ମୃତ୍ୟୁ ସମ୍ବାଦ ଏଇ ମୁହୂର୍ତ୍ତରେ ମୁଁ ଆପଣଙ୍କୁ ଦେଲି।

: ତା' ସହିତ ଅନୁରାଧା ମୃତ୍ୟୁର ସମ୍ବନ୍ଧ କଣ ?

: ଅଛି ମି ଦାସଗୁପ୍ତ। ହୁଏତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ଖାଲି ସେତିକି ନୁହେଁ, ଦିନେ ଦୁଇଦିନ ଭିତରେ ବନଜ୍ୟୋସ୍ନାକୁ ବି ହତ୍ୟା କରାଯାଇପାରେ।

: ବନଜ୍ୟୋସ୍ନା ? ସେ ପୁଣି କିଏ ?

ପ୍ରଣବ ଦାଶଗୁପ୍ତଙ୍କ ମୁହଁରେ ସନ୍ଦେହର କୁହେଳୀ ଘୋଟି ଆସୁଥିଲା।

: ଆପଣ ବିଶ୍ୱାସ କରନ୍ତୁ ମିଃ ଦାଶଗୁପ୍ତ, ମୁଁ ବନଜ୍ୟୋସ୍ନାକୁ ଚିହ୍ନି ନାହିଁ। କିନ୍ତୁ ମୋର ସ୍ପେକୁଲେସନ ଅନୁସାରେ ଏଇ ଦିନେ ଦୁଇଦିନ ଭିତରେ ତାକୁ ହତ୍ୟା କରାଯିବ। ତା'ପରେ ହେବ ନିଷ୍କଣ୍ଟକ ମେଦିନୀ।

: ଆପଣଙ୍କ ମୁହଁରୁ ଏ ସବୁ କଥା ଶୁଣି ମନେହେଉଛି ଯେପରି ଆପଣ ହେଉଛନ୍ତି ଏ ରହସ୍ୟର ନାୟକ।

ପ୍ରଣବ ଦାସଗୁପ୍ତ ହସି ହସି କହିଲେ।

: ସତ କଥାଟା ଆପଣ ଖୁବ୍ ବିଳମ୍ବରେ ପ୍ରକାଶ କଲେ ମିଃ ଦାସଗୁପ୍ତ। ମୁଁ ଯେ ରହସ୍ୟର ନାୟକ ହୁଏତ ହୋଇପାରେ, ଏ ଧାରଣା ମିଃ ଶର୍ମା ଓ ଆପଣଙ୍କ ବଡ଼ ସାହେବଙ୍କ ମନରେ ନିଶ୍ଚୟ ଉଦୟ ହୋଇଛି। ଯା' ଫଳରେ ଆପଣ ଆସିଛନ୍ତି ମୋତେ ଅନୁସନ୍ଧାନ କରିବା ପାଇଁ ବା ମୋ ଉପରେ ଦୃଷ୍ଟି ରଖିବା ପାଇଁ। ନୁହେଁ ମିଃ ଦାସଗୁପ୍ତ ! ମୁଁ କ'ଣ ମିଛକଥା କହୁଛି ?

ପ୍ରଣବ ଦାସଗୁପ୍ତ ସେହିପରି ହସି ହସି କହିଲେ: ଆପଣ ବିଷୟଟାକୁ ଟିକିଏ ଅଧିକ ଭାବରେ ଚିତ୍ରଣ କରୁଛନ୍ତି। ଆମ ବଡ଼ ସାହେବଙ୍କ ମନରେ ହୁଏତ ସନ୍ଦେହ ଜନ୍ମି ଥାଇପାରେ, ମାତ୍ର ଆପଣଙ୍କ ଉପରେ ଦୃଷ୍ଟି ରଖିବା ପାଇଁ ସେ ମୋତେ କୌଣସି ପ୍ରକାର ଇଂଗିତ ବି ଦେଇ ନାହାନ୍ତି।

ସେତିକିବେଳେ ବୟ ଗୋଟିଏ ଟ୍ରେ' ହାତରେ ଧରି ଗୃହ ମଧ୍ୟରେ ପ୍ରବେଶ

କଲା। ସତ୍ୟବ୍ରତ କହିଲେ: ଛାଡ଼ନ୍ତୁ ସେ କଥା । ମତେ ଭାଷଣ ଭୋକ କଲାଣି। ଆପଣ ନିଶ୍ଚୟ ଅଫିସରୁ ଇଆଡ଼େ ଆସିଛନ୍ତି। ଆଗ ପେଟ ପୂଜା କରି ନିଅନ୍ତୁ, ତା'ପରେ ଅନ୍ୟକଥା।

ବୟଟି ଟ୍ରେ' ଉପରୁ ଖାଦ୍ୟ ପଦାର୍ଥ ବାହାର କରି ଦୁଇଟି ଡିସ୍‌ରେ ସଜାଇବାକୁ ଲାଗିଥିଲା।

ପ୍ରଣବ ଦାସଗୁପ୍ତ କହିଲେ: ସତରେ ମିଃ ମହାପାତ୍ର, ଆପଣଙ୍କ କଥା ଶୁଣି ମୋର ମନେ ହେଉଛି ଆପଣ ଜଣେ ରହସ୍ୟମୟ ନାୟକ। କିଏ କେଉଁଠି ଖୁଣ୍ ହେବ ଏବଂ କେଉଁଦିନ ଖୁଣ୍ ହେବ, ଆପଣ ପୂବରୁ ଫୋର୍‌କାଷ୍ଟ କରୁଛନ୍ତି। ତେଣୁ ଆମେ ପୋଲିସ୍ ବିଭାଗର ଲୋକ ହିସାବରେ ଜ୍ୟୋତିଷଶାସ୍ତ୍ରକୁ ତ ବିଶ୍ୱାସ କରିପାରିବୁ ନାହିଁ, କିନ୍ତୁ ଫୋର୍‌କାଷ୍ଟ ସତ୍ୟ ହେଲା ପରେ କାହା ଦୁଆରେ ଯାଇ ହାତକଡ଼ି ଧରି ଠିଆ ହେବୁ କୁହନ୍ତୁ ?

ସତ୍ୟବ୍ରତ ସ୍ମିତ ହସି କହିଲେ: ମୋ ସ୍ଥାନରେ ଆପଣ ଥିଲେ ମଧ୍ୟ ମୋରି ପରି ଫୋରକାଷ୍ଟ କରିପାରନ୍ତେ। ଛାଡ଼ନ୍ତୁ, ଏଇ ଡିସ୍‌ଟା ନେଲେ। ପେଟପୂଜା ପରେ ମୁଁ ଆପଣଙ୍କ ସନ୍ଦେହମୋହନ କରିବାକୁ ଚେଷ୍ଟା କରିବି।

ପ୍ରଣବ ଦାସଗୁପ୍ତ ସତ୍ୟବ୍ରତ ମହାପାତ୍ରଙ୍କ ମୁହଁରୁ ସିଦ୍ଧାର୍ଥ ରାୟଙ୍କ ସମ୍ବନ୍ଧରେ ସବୁକଥା ଶୁଣିସାରି ଏକ ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲେ: ଚମତ୍କାର ରହସ୍ୟ ତ ! ମୋର ମନେ ହେଉଛି ଏଇ ଘଟଣାର ପଛଆଡ଼େ ଏପରି କୌଣସି ସତ୍ୟ ଆତ୍ମଗୋପନ କରି ରହିଚି, ଯାହା ସିଦ୍ଧାର୍ଥ ରାୟ ଆପଣଙ୍କ ଆଗରେ ଏପର୍ଯ୍ୟନ୍ତ ପ୍ରକାଶ କରିନାହାନ୍ତି।

: ହଏତ ତା' ହୋଇ ଥାଇପାରେ ।

ସତ୍ୟବ୍ରତ କହିଲେ: କିନ୍ତୁ ଯଦି କିଛି ଥାଏ ତାହା ସିଦ୍ଧାର୍ଥ ରାୟଙ୍କ ଅଜ୍ଞାତରେ ରହିଯାଉଚି, ଅଥବା ସେଇଟାକୁ ପ୍ରକାଶ କରିବାକୁ ସେ ଆବଶ୍ୟକ ମନେ କରୁନାହାନ୍ତି।

: କିନ୍ତୁ ଏହି ଘଟଣା ସହିତ ଅନୁରାଧା ଆଉ ମଧୁଛନ୍ଦାର ମୃତ୍ୟୁ ରହସ୍ୟ ଖୁବ୍ ଆକସ୍ମିକ ନ ହେଲେ ମଧ୍ୟ, ବେଶ ରହସ୍ୟମୟ। ଆଚ୍ଛା ମଧୁଛନ୍ଦାର ସେ ଯେଉଁ ପ୍ରଳାପ, ତା ଭିତରୁ କୌଣସି ସୂତ୍ରର ଆଭାସ ଆପଣ ପାଉନାହାନ୍ତି ?

: ନା, ସେଇଟା କେବଳ ବିକୃତ ମନ ପ୍ରଳାପ। କେହି କେହି ମୃତ୍ୟୁ ପୂର୍ବରୁ ଏହିପରି ନାନା ପ୍ରକାର ଅସଂଲଗ୍ନ କଥା କହି ଥାଆନ୍ତି। ତା'ର କୌଣସି ଅର୍ଥ ନ ଥାଏ। ମଧୁଛନ୍ଦାର ମୃତ୍ୟୁ ପୂର୍ବର ପ୍ରଳାପ ଠିକ୍ ସେହି ଜାତୀୟ।

: ତା'ହେଲେ ବର୍ତ୍ତମାନ ଆପଣଙ୍କର ସନ୍ଦେହର ପାତ୍ରଟି କିଏ ?

ସତ୍ୟବ୍ରତ ସ୍ମିତ ହସିଲେ। କହିଲେ: ଆପଣଙ୍କ ପ୍ରଶ୍ନର ଉତ୍ତରଟା ମୋଟେ ସହଜ

ନୁହେଁ। ତେବେ ମୋର ମନେ ହେଉଚି ମନୋହର ଉପରେ ସମ୍ପୂର୍ଣ୍ଣ ଲକ୍ଷ୍ୟ ରଖି ତାକୁ ବିଶ୍ଳେଷଣ କରିବାକୁ ହେବ। ସେ ଦିଲ୍ଲୀରୁ ଫେରିବା ପରେ ତା' ଆଚରଣରେ ଏହି ପରିବର୍ତ୍ତନମାନ ପରିଲକ୍ଷିତ ହେଉଛି। ତେଣୁ....

: ଆପଣ କ'ଣ ଭାବୁଛନ୍ତି, ଏ ସେହି ଅସଲ ମନୋହର ନୁହେଁ?

ସତ୍ୟବ୍ରତ ଜୋର ଗଳାରେ ଯଦି ଓ ପ୍ରତିବାଦ କରି ପାରିଲେନାହିଁ, ତଥାପି କହିଲେ: ମୁଁ କିନ୍ତୁ ଏତେଟା ଭାବିପାରୁନାହିଁ। ସେହିପରି ଭାବିବା ମୂଳରେ ବହୁ ପ୍ରତିବନ୍ଧକ ଅଛି। ଯେଉଁମାନେ ମନୋହରର ଆତ୍ମୀୟ, ଯେଉଁମାନଙ୍କ ସହିତ ମନୋହରର ପରିଚୟ ଅଛି, ସେମାନେ କେହି କହୁନାହାନ୍ତି ଯେ ଏ ମନୋହର ନୁହେଁ। ସମସ୍ତେ କହୁଚନ୍ତି ମନୋହରର ପରିବର୍ତ୍ତନ ଘଟିଛି। ଏପରିକି ମନୋହରର ବାପା, ଚାକର ମଧ୍ୟ। ସମସ୍ତେ ତା'ରି ପରିବର୍ତ୍ତନ କଥା କହୁଚନ୍ତି। ଆଜିକାଲି ଦୁନିଆରେ ଜଣେ ଲୋକର ମତିଗତି ଚାଲିଚଳନରେ ପରିବର୍ତ୍ତନ ଘଟିବା ଖୁବ୍ ଗୋଟାଏ ଅସ୍ୱାଭାବିକ କଥା ନୁହେଁ। କିନ୍ତୁ ଜଣେ ଲୋକ ଜାଗାରେ ଆଉ ଜଣେ ଲୋକକୁ ଠିଆ କରେଇବା, ବିଶେଷତଃ ଚେହେରାର ସାମଞ୍ଜସ୍ୟ ଦୃଷ୍ଟିରୁ ଖୁବ୍ କଠିନ ନୁହେଁ କି?

: କିନ୍ତୁ ଗୋଟାଏ କଥା ଆପଣ ଲକ୍ଷ୍ୟ କରନ୍ତୁ ମିଃ ମହାପାତ୍ର। ଧରନ୍ତୁ, ତିନିଜଣ ଝିଅ, ଅନୁରାଧା, ମଧୁଛନ୍ଦା, ବନଜ୍ୟୋତ୍ସ୍ନା। ଏ ତିନିଜଣଙ୍କ ନାମ ମନୋହର ନିଜ ହାତରେ ଲେଖିଥିଲା, ଆଉ ସେଇ ତିନିଜଣ ଏ ରହସ୍ୟର କେନ୍ଦ୍ରବିନ୍ଦୁ, କିନ୍ତୁ ଧୀରେଧୀରେ ସେମାନେ କେନ୍ଦ୍ରଚ୍ୟୁତ ହେଉଛନ୍ତି। ଟିକିଏ ତଳେଇ ଚିନ୍ତା କଲେ ଆପଣଙ୍କର କ'ଣ ମନେ ହେବ?

ପ୍ରଣବ ଦାସଗୁପ୍ତ ଆଶାୟୀ ନୟନରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇଲେ।

: ଆପଣ ବିପରୀତ ଦିଗଟା ଚିନ୍ତା କରୁନାହାନ୍ତି କାହିଁକି?

: ଯଥା?

: ଧରନ୍ତୁ, ମନୋହର ଯେଉଁ ତିନୋଟି ଝିଅଙ୍କ ନାମ ଲିଷ୍ଟ କରିଥିଲା, ସେମାନଙ୍କୁ ଯେ ସେ ଭଲପାଏ, ସେପରି କୌଣସି ଆଭାସ ତ ନଥିଲା ସେଥିରେ। ହୁଏତ ବହୁ ତାରକାବେଷ୍ଟିତ ମନୋହର ତା ଜୀବନବୃତ୍ତରୁ ଏହି ତିନୋଟି ତାରକାଙ୍କୁ କକ୍ଷଚ୍ୟୁତ କରିବାର ପରିକଳ୍ପନା କରିଥିଲା ଏବଂ ଧୀରେଧୀରେ ତାହା କାର୍ଯ୍ୟକାରୀ ହେଉଚି।

: ଆପଣ କିନ୍ତୁ ସବୁବେଳେ ଜଟିଳ ଦିଗଟା କଥା ଚିନ୍ତା କରୁଚନ୍ତି ମିଃ ମହାପାତ୍ର।

: ଆପଣ ଭୁଲ୍ କହୁଚନ୍ତି ମି: ଦାସଗୁପ୍ତ। ଗୋଟାଏ ଲୋକ ଜାଗାରେ ଆଉ ଗୋଟିଏ ଲୋକକୁ ଠିକ୍ ତାରି ସ୍ଥାନରେ ପରିକଳ୍ପନା କରବା ଅପେକ୍ଷା, ମୋର ଏହି ଅନୁମାନ ଆଦୌ ଜଟିଳ ନୁହେଁ। ତା' ବୋଲି ମୁଁ ଆପଣଙ୍କ ଯୁକ୍ତିକୁ ଉଡ଼େଇ ଦେଉନାହିଁ। ମୋର ମଧ୍ୟ ପ୍ରଥମେ ସେହିପରି ମନେ ହୋଇଥିଲା, ଏବେ ମଧ୍ୟ ଧାରଣାଟା ସେହି ପଥରେ

ଦୃଢ଼ ହେଉଚି। କିନ୍ତୁ ସିଦ୍ଧାର୍ଥ ରାୟ, ମନୋହରର ପିତା। ଯା' ପାଖରେ ମନୋହର ତା'ର ବାଲ୍ୟ କୈଶୋର ସମସ୍ତ କଟାଇ ଆସିଛି, ତାଙ୍କ ଆଖିର ଭୁଲ୍ ହେବ କିପରି ?

: ଅବଶ୍ୟ ଆପଣଙ୍କର ଏଇଟା ଏକ ଅକାଟ୍ୟ ଯୁକ୍ତି। ତଥାପି...

ସେତିକିବେଳେ ବୟ ରୁମ୍ ମଧ୍ୟରେ ପ୍ରବେଶ କରି ସତ୍ୟବ୍ରତଙ୍କୁ ଲକ୍ଷ୍ୟ କରି କହିଲା, ଫୋନ୍ ଆସିଚି।

ସତ୍ୟବ୍ରତ ସଙ୍ଗେ ସଙ୍ଗେ ଉଠିଗଲେ। ଅଳ୍ପ ସମୟ ପରେ ଫେରିଆସି କହିଲେ: ଆପଣଙ୍କର କିଛି କାମ ଅଛି ମିଃ ଦାସଗୁପ୍ତ ?

: ନା, ଥାନାକୁ ଆଜି ଆଉ ଫେରିବାର ନାହିଁ। କିନ୍ତୁ ହଠାତ୍ ?

: ପାର୍କ ହୋଟେଲର ମ୍ୟାନେଜର ଫୋନ୍ କରିଥିଲେ। ମୋତେ ଏଇ ମୁହୂର୍ତ୍ତରେ ସେଠାକୁ ଯିବାକୁ ହେବ। ଆପଣ ମୋ ସଙ୍ଗରେ ଗଲେ ଭଲ ହୁଅନ୍ତା।

: ମୋର କିଛି ଆପତ୍ତି ନାହିଁ। ତେବେ ଟିକିଏ ଘର ହୋଇ...

: ଓଃ, ବୌଦି ଅପେକ୍ଷା କରିଥିବେ ? ସେଥିପାଇଁ ଚିନ୍ତା କରନ୍ତୁ ନାହିଁ। ଫେରିଲା ବେଳେ ମୁଁ ଆପଣଙ୍କ ସଙ୍ଗରେ ଫେରିବି। ବୌଦିଙ୍କ ଠାରୁ କ୍ଷମା ମାଗି ନେବାକୁ ବିଶେଷ ଅସୁବିଧା ହେବ ନାହିଁ।

ପ୍ରଣବ ଦାସଗୁପ୍ତ ଉଠ ଠିଆ ହେଲେ, କହିଲେ: ପାର୍କ ହୋଟେଲରୁ ହଠାତ୍ ଫୋନ୍ ଆସିଲା କାହିଁକି ?

: ମୁଁ ମ୍ୟାନେଜରଙ୍କୁ କହିଥିଲି। ମନୋହର ସେଠାକୁ ଆସି ସାରିଲାଣି। ତା' ସହିତ ଆଜି ଆଉ ଗୋଟିଏ ନୂଆ ଝିଅ ଆସିଚି। ତେଣୁ ମୋର ଉପସ୍ଥିତିଟା ସେଠାରେ ପ୍ରୟୋଜନ ନୁହେଁ କି ?

: ଆପଣ ତା'ହେଲେ ବନଜ୍ୟୋତ୍ସ୍ନା କଥା ଭାବୁଛନ୍ତି ?

ସତ୍ୟବ୍ରତ ରୁମ୍ ଦୁଆରେ ଚାବି ଦେଉ ଦେଉ କହିଲେ: ସେ ଝିଅଟା ବନଜ୍ୟୋତ୍ସ୍ନା ବି ନ ହୋଇପାରେ। କିନ୍ତୁ ମନୋହରକୁ ତ ବିଶ୍ଳେଷଣ କରିବାକୁ ହେବ। ସିଦ୍ଧାର୍ଥଶଙ୍କର ରାୟଙ୍କଠାରୁ ମୁଁ ଟଙ୍କା ନେଇଛି। କର୍ତ୍ତବ୍ୟରେ ତ୍ରୁଟି କଲେ, ଭଗବାନ ଅସନ୍ତୁଷ୍ଟ ହେବେ ଯେ !

ସତ୍ୟବ୍ରତ ଆଉ ପ୍ରଣବ ଦାସଗୁପ୍ତ ତଳକୁ ଓହ୍ଲେଇ ଯାଉଥିଲେ। ମଝିରେ ସିଡ଼ିରେ ଗ୍ରେଟ ଇଷ୍ଟର୍ଣ୍ଣ ହୋଟେଲର ମ୍ୟାନେଜରଙ୍କ ସହିତ ଦେଖା ହୋଇଗଲା।

ସେ କହିଲେ: ଆପଣଙ୍କୁ ଗୋଟିଏ ଝିଅ ଖୋଜିବାକୁ ଆସିଥିଲା, ଦେଖା ହୋଇଚି ?

: ମୋତେ ?

: ହଁ ଆପଣଙ୍କୁ। ଆପଣ ୭ ନମ୍ବର ରୁମ୍‌ରେ ରହୁଚନ୍ତି ତ ?

ସତ୍ୟବ୍ରତ ଟିକିଏ ଚିନ୍ତିତ ହୋଇପଡ଼ିଲେ।

: କେତେବେଳେ ଆସିଥିଲା ?

: ଏଇ ସାଢ଼େ ତିନିଟା ଚାରିଟା ହେବ। ତା' ନା ଠିକଣା ସବୁ ଲେଖି ରଖି ଯାଇଚି। ଅଫିସ୍‌ରେ ଅଛି। ଆପଣ ଆସନ୍ତୁ।

ସତ୍ୟବ୍ରତ ପ୍ରଣବ ଦାସଗୁପ୍ତ ମୁହଁକୁ ଚାହିଁଲେ। ସେ ସ୍ଥିର ନେତ୍ରରେ ସତ୍ୟବ୍ରତଙ୍କୁ ଚାହିଁଥିଲେ। ତା'ପରେ ମ୍ୟାନେଜରଙ୍କ ପଛେ ପଛେ ପୁଣି ସେ ଉଠିଲେ।

ମ୍ୟାନେଜର ଖଣ୍ଡିଏ ଚିଟ୍ ବଢ଼େଇ ଦେଲେ ସତ୍ୟବ୍ରତଙ୍କ ହାତକୁ। ନାମ ଠିକଣା। ତା ତଳକୁ ସଂକ୍ଷେପରେ ଲେଖା ହୋଇଛି। ଆଜି ସନ୍ଧ୍ୟା ବେଳକୁ ନିଶ୍ଚୟ ଆମ ଘରକୁ ଯିବେ, ବିଶେଷ ଦରକାର।

ସତ୍ୟବ୍ରତ ଚିଟ୍‌ଟି ପଢ଼ିସାରି ମ୍ୟାନେଜରଙ୍କୁ ପଚାରିଲେ: ଠିକ୍ କେତେଟାବେଳେ ଝିଅଟି ଆପଣଙ୍କ ଏଠାକୁ ଆସିଥିଲା ମନେପଡୁଛି ?

ମ୍ୟାନେଜର ଟିକିଏ ଚିନ୍ତା କରି କହିଲେ: ତିନିଟାରୁ ସାଢ଼େ ତିନିଟା ଭିତରେ ହେବ। କାରଣ ମୁଁ ଠିକ୍ ଚାରିଟା ବେଳେ ବାହାରକୁ ବାହାରି ଯାଇଥିଲି, ମୋର ମନେ ଅଛି।

: ଓଃ !

ସତ୍ୟବ୍ରତ ଗୋଟିଏ ଦୀର୍ଘଶ୍ୱାସ ପକାଇ ଧୀରେଧୀରେ ପୁଣି ସିଡ଼ି ଅତିକ୍ରମ କରି ତଳକୁ ଆସିଲେ। ପ୍ରଣବ ଦାସଗୁପ୍ତ ସେତେବେଳକୁ ରାସ୍ତାରେ ଯାଇ ଗୋଟିଏ ଟ୍ୟାକ୍‌ସିରେ ଉଠି ବସିଥିଲେ। ସତ୍ୟବ୍ରତଙ୍କୁ ବାହାରିବାର ଦେଖି ସେ ଟ୍ୟାକ୍‌ସି ଭିତରୁ ଡାକ ଛାଡ଼ିଲେ।

ସତ୍ୟବ୍ରତ ଗମ୍ଭୀର ହୋଇ ଟ୍ୟାକ୍ସିରେ ବସିଲେ। ପ୍ରଣବ ଦାସଗୁପ୍ତ କିଛି ପଚାରିବା ପୂର୍ବରୁ ସେ ଚିଟ୍‌ଟି ବଢ଼େଇଦେଲେ ତାଙ୍କ ହାତକୁ।

ପ୍ରଣବ ଦାସଗୁପ୍ତ ମଧୁଛନ୍ଦା ମଣ୍ଡଳର ନାଁ ପଢ଼ି ଚମକି ଉଠିଲେ। ପ୍ରଶ୍ନବାଚୀ ନୟନରେ ପଚାରିଲେ: ମାନେ ?

: ଆଜି ସାତଟାରେ ମୃତ ମଧୁଛନ୍ଦା ମଣ୍ଡଳ ଦିନ ତିନିଟା ବେଳେ ମୋ ସହିତ ଦେଖା କରିବାକୁ ଆସିଥିଲା।

ସତ୍ୟବ୍ରତ ଗମ୍ଭୀର ହୋଇ କହିଲେ।

: ସେ କ'ଣ ଆପଣଙ୍କ ପରିଚୟ ଜାଣିଥିଲା ?

: ନା, ମୁଁ ଯେ ମନୋହରର ବନ୍ଧୁ ସେ କଥା ତାକୁ ଜଣାଥିଲା।

: ଆପଣଙ୍କ ଠିକଣା ?

: ମୁଁ ତାକୁ କହିଥିଲି।

: କିନ୍ତୁ ସେ ଆସିଥିଲା କାହିଁକି ?

: ହୁଏତ ତା'ର କୌଣସି ବକ୍ତବ୍ୟ ଥିଲା। ମୋତେ ନ ପାଇ ଆଜି ତାଙ୍କ ଘରକୁ ଯିବାପାଇଁ ଲେଖି ଦେଇଯାଇଛି। ତେଣୁ ଖୁବ୍ ଯେ ଗୋଟାଏ ଦରକାର ତା'ର ଥିଲା, ଏଥିରୁ ସହଜରେ ଅନୁମାନ କରି ହେଉଛି।

: କିନ୍ତୁ ବକ୍ତବ୍ୟଟା ତା'ର କ'ଣ ଥିଲା ?

: ହୁଏତ ମନୋହର ସମ୍ବନ୍ଧରେ କିଛି ଥିଲା। କିନ୍ତୁ ବିଚାରୀ ! ବକ୍ତବ୍ୟ ଶେଷ କରିବା ଆଗରୁ ତାକୁ ମୃତ୍ୟୁବରଣ କରିବାକୁ ହେଇଚି। ମୁଁ ଯଦି ଆଜି ବାହାରକୁ ବାହାରି ଯାଇନଥାନ୍ତି, ତା'ହେଲେ ମଧୁଛନ୍ଦାର ବକ୍ତବ୍ୟ ଶୁଣିବାର ସୁଯୋଗ ପାଇ ଥାଆନ୍ତି। ହୁଏତ ମନୋହର ସମ୍ବନ୍ଧରେ ସେ କିଛି କହିଥାଆନ୍ତା।

: ବର୍ତ୍ତମାନ ଆଉ ସେ କଥା ଭାବି କିଛି ଲାଭନାହିଁ ମିଃ ମହାପାତ୍ର। ସେକଥା ଭାବିଲେ ଖାଲି ମନସ୍ତାପ ବଢ଼ିବ ସିନା ଫଳ କିଛି ହେବନାହିଁ।

ଟ୍ୟାକ୍‌ସି ପାର୍କ ହୋଟେଲ ପାଖରେ ଆସି ପହଞ୍ଚି ଯାଇଥିଲା।

ଦୁହେଁ ହୋଟେଲକୁ ଉଠିଗଲେ।

ପ୍ରଥମେ ମି: ଏଡ଼ୱାର୍ଡ଼ଙ୍କ ସହିତ ଦେଖାକଲେ ସତ୍ୟବ୍ରତ। ପ୍ରଣବ ଦାସଗୁପ୍ତଙ୍କର ପରିଚୟ ମଧ୍ୟ କରାଇଦେଲେ ମ୍ୟାନେଜରଙ୍କ ସହିତ।

ମି: ଏଡ଼ୱାର୍ଡ଼ କୃତ୍ୟ କୃତ୍ୟ ହେଲାପରି କହିଲେ: ମୋର ଆଜି ପରମ ସୌଭାଗ୍ୟର ଦିନ। ଆପଣମାନଙ୍କ ସହିତ ପରିଚୟ ହେଲା।

ସତ୍ୟବ୍ରତ ମନୋହର କଥା ପଚାରିଲେ।

: ସେ ଏ ପର୍ଯ୍ୟନ୍ତ ବାର୍‌ରେ ଅଛନ୍ତି।

: ଆମେ ତା'ହେଲେ ଯାଉଚୁ।

ସତ୍ୟବ୍ରତ ଉଠିଲେ। ପ୍ରଣବ ଦାସଗୁପ୍ତ ପଛେ ପଛେ ବାହାରିଲେ।

ରାତ୍ରି ସେତେବେଳକୁ ପ୍ରାୟ ସାଢ଼େ ଆଠଟା ହୋଇଯାଇଥିଲା। ବାର୍‌ଟା ବେଶ୍ ଜମି ଆସିଥିଲା। ସତ୍ୟବ୍ରତ ହଲ୍ ଭିତରେ ଆଖି ବୁଲାଉଥିଲେ। ମନୋହର କାହିଁ ? ସେ ପ୍ରାୟ ପ୍ରତିଟି ନରନାରୀଙ୍କୁ ଦେଖିଗଲେ। କିନ୍ତ ମନୋହର ଆଖିରେ ପଡ଼ିଲା ନାହିଁ। ବୋଧହୁଏ ସେ କୌଣସି କେବିନ୍ ଭିତରେ ପଶି ଯାଇ ମଧୁର ଆଳାପରେ ମତ୍ତ ହୋଇଛି। ତା'ହେଲେ ଉପାୟ ?

ସତ୍ୟବ୍ରତ ପ୍ରଣବ ଦାସଗୁପ୍ତଙ୍କୁ ପଚାରିଲେ।

: କେବଳ ଅପେକ୍ଷା ଛଡ଼ା ଅନ୍ୟ କୌଣସି ବା଼' ନାହିଁ। କେବିନ୍ ଭିତରେ ଯଦି ପଶି ଥାଆନ୍ତି, ତେବେ କଥାବାର୍ତ୍ତା ଶୁଣିବାର ସୁଯୋଗ ଜୁଟିବ କିପରି ?

ସତ୍ୟବ୍ରତ ଓ ପ୍ରଣବ ଦାସଗୁପ୍ତ ବ୍ୟର୍ଥ ହେଲାପରି ବାର୍‌ରୁ ପଦାକୁ ବାହାରିଗଲେ।

ମିଃ ଏଡ଼ୱାର୍ଡ଼ ଉଦ୍‌ବିଗ୍ନ କଣ୍ଠରେ ପଚାରିଲେ: କ'ଣ ହେଲା ? ଆପଣମାନେ ଫେରିଆସିଲ ଯେ !

: ମନୋହରକୁ କେଉଁଠି ଖୋଜି ପାଇଲୁ ନାହିଁ ?

: ପାଇଲେ ନାହିଁ ? ସେ ତା'ହେଲେ କେବିନ୍‌ରେ ବସିଛନ୍ତି। ମୁଁ ବର୍ତ୍ତମାନ ଖବର ନେଉଛି। ଆପଣ ଅଫିସ ଘରେ ବସନ୍ତୁ। ମୁଁ ନିଜେ ଯାଇ ଖୋଜି ଆସୁଛି।

ମ୍ୟାନେଜର ବାର୍‌ରେ ଯାଇ ପ୍ରବେଶ କଲେ।

ସତ୍ୟବ୍ରତ ନୀରବରେ ବସି ଚିନ୍ତା କରୁଥିଲେ। ପ୍ରଣବ ଦାସଗୁପ୍ତ ହୁଏତ ଭାବୁଥିଲେ ଘର କଥା। ବେଳକୁ ବେଳ ରାତି ବଢୁଛି। ଆଜି ସେ ସଅଳ ସଅଳ ଘରକୁ ଫେରିବା ପାଇଁ ମନସ୍ଥ କରି ବାହାରି ଆସିଲେ, କିନ୍ତୁ ଲାଭ କିଛି ହେଲାନାହିଁ।

ମିଃ ଏଡ଼ୱାର୍ଡ଼ ଫେରିଆସି ଖବର ଦେଲେ ଯେ, ମନୋହର ଉଠିଲାଣି। ସେ ଏଥର ଚାଲିଯିବ।

: ଆଉ ସେ ଝିଅଟି ?

ସତ୍ୟବ୍ରତ ଉଦ୍‌ବିଗ୍ନ ହୋଇ ପଚାରିଲେ।

: ସେ ସଙ୍ଗରେ ଅଛି।

ସତ୍ୟବ୍ରତ ସଙ୍ଗେ ସଙ୍ଗେ ଉଠି ଠିଆହେଲେ।

ପ୍ରଣବ ଦାସଗୁପ୍ତଙ୍କୁ କହିଲେ: ଆଜି ମୁଁ ଆଉ ଆପଣଙ୍କୁ ବିରକ୍ତ କରିବାକୁ ଚାହେନାହିଁ। ଆପଣ ଏବେ ବୌଦିଙ୍କ ପାଖକୁ ଫେରିଯାଆନ୍ତୁ। ଏଇଖିଣା ମୋତେ କେଉଁଆଡ଼େ ଯିବାକୁ ହେବ ଜଣାନାହିଁ। କାଲି ମୁଁ ଆପଣଙ୍କ ସହିତ ଦେଖା କରିବି। ଆଉ ମୋର ଅନୁରୋଧ, ଆପଣ ମଧୁଛନ୍ଦାର ପୋଷ୍ଟମର୍ଟେମ୍ ରିପୋର୍ଟଟା ଶୀଘ୍ର ସଂଗ୍ରହ କରିବାକୁ ଚେଷ୍ଟା କରିବେ।

ମନୋହର ସେତେବେଳକୁ ବାହାରକୁ ବାହାରି ଆସିଥିଲା।

ତା ପଛେ ପଛେ ରୀତା ଗ୍ରେଗରୀ ଓ ତାହାଣ ପାଖକୁ ଆଉ ଗୋଟିଏ ଝିଅ ଚାଲିଥିଲେ। ରୀତା ଗ୍ରେଗରୀ ମନୋହରକୁ କ'ଣ କହୁଥିଲା।

ସତ୍ୟବ୍ରତ ପ୍ରଣବ ଦାସଗୁପ୍ତଙ୍କୁ କହିଲେ: ଆପଣ ଶୀଘ୍ର ଯାଇ ତଳେ ଗୋଟିଏ ଟ୍ୟାକ୍ସିର ବ୍ୟବସ୍ଥା କରନ୍ତୁ। ମୋତେ ମନୋହର ପଛରେ ଛୁଟିବାକୁ ହେବ।

ରୀତା ଗ୍ରେଗରୀ ମନୋହରର ପଛେ ପଛେ ଚାଲିଗଲା।

ତଳେ ଫୁଟପାଥ ଧାରରେ ମନୋହରର ଫ୍ରିଡମାଉଥ ଗାଡ଼ିଟା ଠିଆ ହୋଇଥିଲା। ଗାଡ଼ି ପାଖରେ ଯାଇ ତିନିହେଁ ପହଞ୍ଚିଲେ। ବୋଧହୁଏ ରୀତାକୁ ସଙ୍ଗରେ ଯିବାକୁ ମନୋହର ଡାକୁଥିଲା। ରୀତା ହୁଏତ ରାଜିହେଲା ନାହିଁ।

ପ୍ଲାଇମାଉଥ୍ ଗାଡ଼ିର ପଛପଟରେ ଗୋଟିଏ ଟ୍ୟାକ୍‌ସିରେ ସତ୍ୟବ୍ରତ ବସିଥିଲେ। ପ୍ରଣବ ଦାସଗୁପ୍ତ ଶୁଭରାତ୍ରି ଜଣାଇ ବିଦାୟ ନେଲେ।

ରୀଟା ମଧ୍ୟ ବିଦାୟ ନେଲା ମନୋହରଠାରୁ।

ପ୍ଲାଇମାଉଥ୍ ଗାଡ଼ିର ଇଞ୍ଜିନ୍ ଗର୍ଜିଉଠିଲା।

ସଙ୍ଗେସଙ୍ଗେ ଟ୍ୟାକ୍‌ସିର ଇଞ୍ଜିନ୍‌ଟା ମଧ୍ୟ ଥରି ଉଠିଲା।

ଆଗେ ଆଗେ ପ୍ଲାଇମାଉଥ୍।

ପଛେ ପଛେ କେବି ହିନ୍ଦୁସ୍ଥାନ।

ମନୋହର ଗାଡ଼ିଟା ଯାଇ ଗୋଟାଏ ବସ୍ତି ଅଞ୍ଚଳରେ ଠିଆ ହେଲା। ଗାଡ଼ିରୁ ଓହ୍ଲାଇଲେ ମନୋହର ଆଉ ଝିଅଟିଏ।

ସତ୍ୟବ୍ରତଙ୍କ ଟ୍ୟାକ୍‌ସି ବେଶ୍ ଦୂରତ୍ୱ ବଜାୟ ରଖି ଠିଆ ହୋଇଗଲା।

ମନୋହର ଝିଅଟିର ପଛେ ପଛେ ଆଗେଇଥିଲେ।

ଆଉ ସେମାନଙ୍କ ପଛେ ପଛେ ଆଗେଇଥିଲେ ସତ୍ୟବ୍ରତ ମହାପାତ୍ର।

ମନୋହର କିଛିଦୂର ଯାଇ ଠିଆ ହୋଇଗଲା। ଝିଅଟିଠାରୁ ବିଦାୟ ନେବା ପାଇଁ ବୋଧହୁଏ ଚାହୁଁଥିଲା। କିନ୍ତୁ ଝିଅଟି ଛାଡ଼ିଲା ନାହିଁ। ହାତଧରି ଟାଣିଲା, କହିଲା: ବାପାଙ୍କ ଦେହ ଖୁବ୍ ଖରାପ। ପୁଣି ଦୁଇ ତିନିଦିନ ହେବ ତାଙ୍କର ସେ ବାତଟା ବଢ଼ିଯାଇଛି। ତମେ ଦେଖିନଗଲେ ସେ ବିଶେଷ ମନ ଦୁଃଖ କରିବେ।

ମନୋହର ଆଉ କୌଣସି ପ୍ରତିବାଦ କଲାନାହିଁ।

ଧୀରେଧୀରେ ଝିଅଟି ପଛେପଛେ ଆଗେଇଲା।

ସେମାନେ ଯେଉଁ କୋଠାଟି ମଧ୍ୟରେ ପ୍ରବେଶ କଲେ, ସେଇଟି ଦୋମହଲା। ସାଧାରଣତଃ ବସ୍ତି ଅଞ୍ଚଳରେ ସେପରି କୋଠା ଖୁବ୍ ଗୋଟାଏ ଆଖିରେ ପଡ଼େନାହିଁ। କୋଠାଟି ବେଶିଦିନର ନୁହେଁ। ଆଧୁନିକ ରୁଚିସମ୍ପନ୍ନ, ଅତି ସୁନ୍ଦର ତାର ଗଠନ ପ୍ରଣାଳୀ। ରାତ୍ରିର ଅନ୍ଧକାର ମଧ୍ୟରେ ଅଳ୍ପ ବିଜୁଳି ଆଲୋକରେ ଯେତିକି ଦିଶୁଥିଲା, ସତ୍ୟବ୍ରତ ସେତିକିରୁ କୋଠାଟା ସମ୍ବନ୍ଧରେ ଗୋଟାଏ ଧାରଣା କରୁଥିଲେ ମାତ୍ର।

ସତ୍ୟବ୍ରତ କୋଠା ଦୁଆର ମୁହଁରେ ଠିଆ ହୋଇଥିଲେ। ଭିତରକୁ ଯିବେ ନା ନାହିଁ।

କୋଠା ଭିତରେ କୌଣସି ଲୋକମାନଙ୍କ ଶୁଣାଯାଉନଥିଲା। ତଳ ଭାଗଟା ଅନ୍ଧକାରରେ ବୁଡ଼ି ରହିଥିଲା। ସତ୍ୟବ୍ରତ ଧୀରେ ଧୀରେ କୋଠା ଭିତରେ ପ୍ରବେଶ କଲେ। ତଳେ କାହାରି କଣ୍ଠସ୍ୱର ଶୁଣାଯାଉନଥିଲା। ବୋଧହୁଏ ତଳେ କାହାରି ଅସ୍ତିତ୍ୱ ନଥିଲା। ତାପରେ ଧୀରେ ଧୀରେ ସେ ଉପରକୁ ଉଠିବାକୁ ଲାଗିଲେ।

ସର୍ପ-ଦର୍ଶିଣୀ-ରାତ୍ରି

ସିଢ଼ି ମୁଣ୍ଡରେ ନତ ସ୍ୱରର ଆଳାପ ଶୁଭିଲା ।

: ତମେ ଆଜି ରହିଯାଅ ରାଜା, ଏତେ ରାତି ହେଲାଣି, ନ ଗଲେ କ'ଣ ଚଳନ୍ତା ନାହିଁ ?

: ନା ଗୀତା, ତମେ ବୁଝି ପାରିବ ନାହିଁ ମୁଁ ନ ଗଲେ ଖୁବ୍ ଅସୁବିଧା ହେବ। ମୋତେ ସେପରି ଅନୁରୋଧ ତମର ନ କରିବାହିଁ ଭଲ। ବାପା ଶୁଣିଲେ ରାଗିବେ।

: ରାଜା !

: କ'ଣ ଗୀତା !

: ତମେ ଦିନକୁ ଦିନ ଯେପରି ବଦଳି ଯାଉଚ-ମୋତେ ଏଠାକୁ ଆସି କିଛି ଭଲ ଲାଗୁନାହିଁ। ପୁଣି ଚାଲ ଆମେ ଫେରିଯିବା। ମୋର ମନେ ହେଉଚି ଦିନକୁଦିନ ତମେ ମୋଠାରୁ ଦୂରେଇ ଦୂରେଇ ଯାଉଚ। କୁହ ରାଜା, ଶେଷରେ ମୋତେ...

ଗୀତା ବୋଧହୁଏ କାନ୍ଦି ପକାଇଲା।

ମନୋହର ସାନ୍ତ୍ୱନା ଦେବା ସ୍ୱରରେ କହିଲା: ମତେ ଡେରି ହେଉଛି ଗୀତା। ଫେରିନଗଲେ ଅସୁବିଧା ହେବ। ବାପା ତ ଶୋଇଛନ୍ତି। ମୋ ମତରେ ତାଙ୍କୁ ବିରକ୍ତ କରିବା ଉଚିତ ହେବ ନାହିଁ। କାଲି ପୁଣି ମୁଁ ଆସିବି। ପାଞ୍ଚଟା ଛଅଟା ବେଳକୁ ତମେ ପ୍ରସ୍ତୁତ ହୋଇଥିବ। କାଲି ଗୋଟାଏ ନୂଆ ଜାଗାକୁ ଯିବା।

: ସତ କହିବାକୁ ଗଲେ ରାଜା, ମୋତେ ସେସବୁ ପରିବେଶ ଆଦୌ ଭଲ ଲାଗୁନାହିଁ। କେତେ ଆଉ ଅଭିନୟ କରିବି ?

: ଏଇ ତ ଜୀବନ ଗୀତା। ତମକୁ ହୁଏତ ସାରା ଜୀବନ ଏଇଠାରେ କଟେଇବାକୁ ହେବ। ତେଣୁ ମୋ ପାଖେ ପାଖେ ରହିବାକୁ ହେଲେ, ଏହି ସଭ୍ୟତା ସହିତ ଖାପ ଖୁଆଇ ନେବାକୁ ହେବ। ସେଇଥିପାଇଁ ତ ଏତେ ମୋର ଚେଷ୍ଟା, ଏତେ ଯତ୍ନ।

: ରାଜା, ମୁଁ ଏସବୁ ଭିଡ଼ ଭିତରେ ଅର୍ଦ୍ଧମୃତ ହୋଇଗଲିଣି। ଖାଲି ତମରି ପାଇଁ...ବଞ୍ଚି ରହିଚି। ତମ ଇଚ୍ଛା ବିରୁଦ୍ଧରେ ଯିବାର ଦୁଃସାହସ ମୋର ନାହିଁ। ତେଣେ ବାପାଙ୍କ ତାଗିଦ୍ ତମ ଇଚ୍ଛା ଅନୁସାରେ, ତମ ରୁଚି ଅନୁସାରେ ମୁଁ ନିଜକୁ ଗଢ଼ିବି।

: ଆଜି ତା' ହେଲେ ମୁଁ ଆସୁଚି ଗୀତା, ରାତି ଅନେକ ହେଲାଣି। କାଲି ପୁଣି ଦେଖାହେବ।

ସିଢ଼ିର ପାହାଚ ଉପରେ ମନୋହରର ପାଦଶବ୍ଦ ଫୁଟି ଉଠିଲା।

ସତ୍ୟବ୍ରତ ସ୍ଥିର କରିପାରୁନଥିଲେ ମନୋହର ସହିତ ଫେରିଯିବେ ନା ଏଠାରେ ରହି ଗୀତାର ଇତିବୃତ୍ତ ସଂଗ୍ରହ କରିବେ। କିନ୍ତୁ ଏଠାକୁ କାଲି ଆସିଲେ ତ ଚଳିବ। ମନୋହରର ମୋଟିଭ୍ ସମ୍ବନ୍ଧରେ ଯଥେଷ୍ଟ ଜାଣିବାକୁ ବାକି ଅଛି।

ଦର୍ପ - ଦର୍ବିଶ୍ରା - ରାତ୍ରି

ଆଉ ମୁହୂର୍ତ୍ତେ ଡେରି ନ କରି ସତ୍ୟବ୍ରତ ମନୋହରର ପଛେପଛେ ବାହାରି ଆସିଲେ।

ମନୋହର ବାହାରକୁ ଆସି ଚାରିଆଡ଼କୁ ଥରେ ଚାହିଁଲା। କେହି ତାକୁ ଲକ୍ଷ୍ୟ କରୁଛି କି ନାହିଁ? ବୋଧହୁଏ ସେଇଥିପାଇଁ ଚାରିଆଡ଼େ ସତର୍କ ଦୃଷ୍ଟି ବୁଲାଉଥିଲା।

ତା'ପରେ ରାସ୍ତାକୁ ଓହ୍ଲେଇ ପଡ଼ିଲା ମନୋହର।

ଏଇ ଅପ୍ରଶସ୍ତ ଗଳି ଭିତର ଦେଇ ତାକୁ ମେନ୍‌ରୋଡ଼ ପର୍ଯ୍ୟନ୍ତ ଚାଲିଯିବାକୁ ହେବ। କଦର୍ଯ୍ୟ ଗନ୍ଧ, ଅନ୍ଧକାର। ଏଠାକାର ଲୋକମାନେ ଦରିଦ୍ର, ଅଶିକ୍ଷିତ। ତଥାପି ସେ ଗୀତାର ବାପା କାହିଁକି ଏଇଠି ରହିବା ପାଇଁ କୋଠା ତିଆରି କଲେ, ମନୋହର ସେଇକଥା ଭାବି ଭାବି ଆଗେଇଥିଲା।

ସତ୍ୟବ୍ରତ କିନ୍ତୁ ଭାବୁଥିଲେ, ଗୀତା! କିଏ ଏଇ ଗୀତା? ସେ ଖୋଜୁଥିଲେ ବନଜ୍ୟୋତ୍ସ୍ନାକୁ। ଦେଖାହେଲା ଗୀତା ସହିତ। ସହର ତଳିର ଏଇ ବସ୍ତି ଅଞ୍ଚଳରେ ରହେ ଗୀତା। ତା' ପ୍ରତି ମନୋହରର ଏତେ ଦରଦ କାହିଁକି? ତା'ଛଡ଼ା ଗୀତା ଯେ ଜବର ଗୋଟାଏ ଶିକ୍ଷିତା ଆଉ ସୁନ୍ଦରୀ ଝିଅ, ତା' ବି ମନେ ହେଉନାହିଁ। କିନ୍ତୁ ମନୋହର ତା' ପଛରେ ଛୁଟିଛି କାହିଁକି?

କିଏ ଏହି ଗୀତାର ବାପା?

ତା' ସହିତ ମନୋହରର ସଂପର୍କ କ'ଣ?

ମନୋହରର ପ୍ଲାଇ ମାଉଥ୍ ଗାଡ଼ିଟା ଯାଇ ଫାଟକ ଦୁଆରେ ଠିଆ ହେଲା।

ଦରଓ୍ୱାନ ଲୁହା ଗେଟ୍‌ଟା ଖୋଲିଦେଲା।

ମନୋହର ଗାଡ଼ିନେଇ ହତା ଭିତରେ ପ୍ରବେଶ କଲା।

ସତ୍ୟବ୍ରତଙ୍କ ଟ୍ୟାକ୍‌ସିଟା ଠିଆ ହେଲା ଖଣ୍ଡେ ଦୂରରେ। ସତ୍ୟବ୍ରତ ଟ୍ୟାକ୍‌ସିରୁ ଓହ୍ଲେଇ ଧୀରେଧୀରେ ସିଦ୍ଧାର୍ଥ ରାୟଙ୍କ କୋଠା ଭିତରେ ପ୍ରବେଶ କଲେ। ସେତେବେଳକୁ ମନୋହର ଉପରକୁ ଉଠିଯାଇଥିଲା।

ସତ୍ୟବ୍ରତ ଉପରକୁ ଚାହିଁଲେ। ଅନ୍ଧକାର ଭିତରେ କିଏ ଯେପରି ଜଣେ ତ୍ରିତଳ ବାରଣ୍ଡା ଉପରେ ଠିଆ ହୋଇଥିବା ପରି ମନେହେଲା। ବୋଧହୁଏ ସିଦ୍ଧାର୍ଥ ରାୟ। ସେ ନୀରବରେ ମନୋହରର ଗତିବିଧି ଲକ୍ଷ୍ୟ କରୁଥିଲେ।

ସତ୍ୟବ୍ରତ ଖୁବ୍ ଧୀରପାଦ ଚାଳି ଉପରକୁ ଉଠିଗଲେ।

ତ୍ରିତଳ ବାରଣ୍ଡାର ଆରାମ ଚୌକି ଉପରେ ସିଦ୍ଧାର୍ଥ ରାୟ ଶୋଇ ଅର୍ଦ୍ଧନିମୀଳିତ ନୟନରେ କ'ଣ ଚିନ୍ତା କରୁଥିଲେ।

କିଏ? ସତ୍ୟବ୍ରତଙ୍କ ପାଦଶବ୍ଦରେ ତାଙ୍କର ଧ୍ୟାନ ଭଙ୍ଗ ହେଲା।

: ମୁଁ ସତ୍ୟବ୍ରତ ମହାପାତ୍ର।

: ଆପଣ ଏତେ ରାତିରେ ? ବସନ୍ତୁ।

ସିଦ୍ଧାର୍ଥ ରାୟ ବାରଣ୍ଡାରେ ନୀଳ ଆଲୋକଟି ଜଳାଇଲେ। ଧୀରେ ଧୀରେ କହିଲେ: ଆଉ ମୁଁ ପାରୁନାହିଁ ମିଃ ମହାପାତ୍ର। ସହିବାର ଗୋଟାଏ ସୀମା ଥାଏ। ମୁଁ ଧୀରେଧୀରେ ସବୁ ଅତିକ୍ରମ କରିଗଲିଣି।

ସତ୍ୟବ୍ରତ ମଧ୍ୟ ଚିନ୍ତିତ ପଡ଼ିଥିଲେ। କହିଲେ: ଗୋଟାଏ କଥା ମି: ରାୟ। ଏପରି କୌଣସି ଘଟଣା ମନୋହରକୁ କେନ୍ଦ୍ରକରି ଆପଣଙ୍କ ପାରିବାରିକ ଜୀବନରେ କେବେ ଘଟିଛି, ଯାହା ଆପଣ ମୋ ପାଖରେ ଗୋପନ ରଖିଛନ୍ତି ?

ହଠାତ୍ ସିଦ୍ଧାର୍ଥ ରାୟ କିପରି ବୋକା ପାଲଟି ଗଲେ। ତାଙ୍କ ମୁହଁରୁ କୌଣସି ଉତ୍ତର ବାହାରିଲା ନାହିଁ। ବହୁ ସମୟ ପରେ ସେ କହିଲେ: ମାନେ?

: ମୁଁ ଅବଶ୍ୟ ଜାଣି ନାହିଁ, ସତ୍ୟବ୍ରତ କହିଲେ। ଆପଣଙ୍କ ପାରିବାରିକ ଜୀବନରେ ମନୋହରକୁ ନେଇ କେବେ କୌଣସି ବିଶେଷ ଘଟଣା ଘଟିଛି କି? ଯେପରି କୌଣସି ଦୁର୍ଘଟଣା ବା ସେହିପରି କିଛି...

ସିଦ୍ଧାର୍ଥ ରାୟ ଆକାଶରୁ ଛିଡ଼ିଲା ପରି ଚମକି ଉଠିଲେ।

: ଦୁର୍ଘଟଣା? ଦୁର୍ଘଟଣା କଥା ଆପଣ କିପରି ଜାଣିଲେ ମି: ମହାପାତ୍ର? ହଁ ହଁ, ଦୁର୍ଘଟଣା ଗୋଟାଏ ଘଟିଥିଲା। ସେତେବେଳକୁ ମନୋହର ଖୁବ୍ ସାନ। ସେ ଭୟାବହ ଦୁର୍ଘଟଣା କଥା କେବେ ମୁଁ ଭୁଲି ପାରିବି ନାହିଁ। କିନ୍ତୁ ସେ ଦୁର୍ଘଟଣା ସହିତ ଆଜିର ଘଟଣାର ସଂପର୍କ କ'ଣ ଅଛି ?

: ହୁଏତ ଥାଇପାରେ ମି: ରାୟ। ସେ ସମ୍ବନ୍ଧରେ ସବୁ କଥା କହିବାକୁ ଆପଣଙ୍କର କୌଣସି ଆପତ୍ତି ଅଛି ?

: ନା, ମି: ମହାପାତ୍ର। କିନ୍ତୁ ସେ ଦିନଟା ମୋ ଜୀବନ୍‌ରେ ଏପରି ଏକ ଚରମ ଦୁର୍ଦ୍ଦଶାର ଦିନ, ଯେଉଁଥିରେ ମୁଁ ଜୀବନର ସବୁ କିଛି ହରାଇଥିଲି। କେବଳ ଅବଶିଷ୍ଟ ଥିଲା ଏଇ ମନୋହର। ସେ ବି ଆଜି ଦୂରେଇ ଯାଉଚି। ମୁଁ ବଞ୍ଚି ପାରିବି ନାହିଁ ମି: ମହାପାତ୍ର। ମୁଁ ପାଗଳ ହୋଇଯିବି।

: ତା'ହେଲେ ମୋତେ ଆପଣଙ୍କର ସେହି ଦୁର୍ଘଟଣାର କଥା କୁହନ୍ତୁ।

ସିଦ୍ଧାର୍ଥ ରାୟଙ୍କ ନାକରୁ ଏକ ଦୀର୍ଘନିଃଶ୍ୱାସ ବାହାରି ଆସିଲା।

ସେ ଧୀରେଧୀରେ କହିଲେ: ସେ ଅନେକ ଦିନ ତଳର କଥା। ମନୋହରକୁ ସେତେବେଳେ ପାଞ୍ଚ କି ଛଅବରଷ ହେବ। ମନୋହରର ଆଉ ଗୋଟିଏ ଭାଇ ଥିଲା। ତା ନା ଦେଇଥିଲୁ ସୁକୁମାର। ଏଠାରେ ଆଉ ଗୋଟିଏ କଥା କହି ରଖିବା ଭଲ।

ମନୋହର ଆଉ ସୁକୁମାର ଦୁହେଁ ଥିଲେ ଯାଆଁଳା ଭାଇ। ଦୁହିଁଙ୍କ ଚେହେରାରେ ବି ଥିଲା ଅପୂର୍ବ ସାମଞ୍ଜସ୍ୟ। କିଏ ମନୋହର ଆଉ କିଏ ସୁକୁମାର, ଦୁହିଁଙ୍କୁ ଚିହ୍ନିବାର ଗୋଟିଏ ମାତ୍ର ସଂକେତ, ମନୋହରର ନାସିକା ଅଗ୍ରରେ ଗୋଟିଏ ଛୋଟ ତିଳଚିହ୍ନ ଥିଲା। ସୁକୁମାରର ସେତିକି ବାଦ୍ ଦେଲେ, ଆଉ ମନୋହର ସହିତ କୌଣସି ତଫାତ୍ ନଥିଲା।

ମନୋହର ମୁହୂର୍ତ୍ତେ ଆଗରୁ ଜନ୍ମ ହୋଇଥିବାରୁ ଆମେ ତାକୁ ବଡ଼ ବୋଲି ଧରି ନେଇଥିଲୁ ଏବଂ ସୁକୁମାରକୁ ସାନ ବୋଲି ଧରି ନେଇଥିଲୁ।

ଦୁଇଭାଇଙ୍କ ଭିତରେ ଅଦ୍ଭୁତ ସୌହାର୍ଦ୍ଦ୍ୟ ଥିଲା।

ଆମେ ସେତେବେଳେ ରାଞ୍ଚିରେ ରହୁଥିଲୁ।

ମୋର ଗୋଟିଏ ଛୋଟ ବ୍ୟବସାୟ ଥିଲା। ପରିବାରଟି ଆମର ବେଶ୍ ଆନନ୍ଦମୁଖର ହୋଇ ରହୁଥିଲା। ମୋ ସ୍ତ୍ରୀ ସତ୍ୟଭାମା ଏକ ସୁଗୃହିଣୀ ଥିଲେ। ସ୍ୱାମୀ-ପୁତ୍ରଙ୍କ ସେବାରେ ନିଜକୁ ସେ ଉତ୍ସର୍ଗ କରି ଦେଇଥିଲେ। ତେଣୁ ଆମ ପରିବାରଟିରେ ସେତେବେଳେ ସ୍ୱର୍ଗ-ସୁଖ ପୂରି ରହିଥିଲା।

ଭଗବାନ ବୋଧହୁଏ ଆମର ଏତେ ଆନନ୍ଦ ସହି ପାରିଲେ ନାହିଁ। ମୁଁ ସେତେବେଳେ ଘରେ ନ ଥାଏ। ଛ' ସାତଦିନ ପାଇଁ ବ୍ୟବସାୟ ଉପଲକ୍ଷରେ କଲିକତା ଆସିଥିଲି। କଲିକତାରେ ପହଞ୍ଚି ତିନୋଟି ଦିନ ଅତିବାହିତ ହୋଇଛି କି ନାହିଁ, ଗୋଟାଏ ଟେଲିଗ୍ରାମ୍ ପାଇଲି। ଘରେ ନିଆଁ ଲାଗି ସମସ୍ତ ପୋଡ଼ି ଧ୍ୱଂସ ହୋଇଯାଇଛି।

ମୁଁ ପାଗଳ ପ୍ରାୟ ହୋଇ ସେଇଦିନ କଲିକତା ଛାଡ଼ିଲି।

କିନ୍ତୁ ଯାଇ ଦେଖିଲି କ'ଣ? କେବଳ ପାଉଁଶଗଦା। ସ୍ତ୍ରୀ, ପୁତ୍ର ଏମାନେ ଗଲେ କେଉଁଆଡ଼େ ?

ଚାକର ସୁଦର୍ଶନ ଛୁଟି ଆସିଲା। ସେ କାନ୍ଦି କାନ୍ଦି ମୋ ପାଦତଳେ ଲୋଟିଗଲା। ତା' ବକ୍ତବ୍ୟରୁ ଶୁଣିଲି, ସତ୍ୟଭାମା ହସ୍ପିଟାଲରେ ବେହୋସ ହୋଇ ପଡ଼ିରହିଛନ୍ତି। ମନୋହର ସୁଦର୍ଶନ ଘରେ ଅକ୍ଷତ ଶରୀରରେ ରହିଛି, କିନ୍ତୁ ସୁକୁମାର... ତାକୁ ଆଉ ସୁଦର୍ଶନ ଉଦ୍ଧାର କରି ପାରିନାହିଁ। ସେ ସେହି ପ୍ରଳୟଙ୍କରୀ ଅଗ୍ନିର ଲେଲିହାନ ଶିଖା ଭିତରେ ପୋଡ଼ି ପାଉଁଶ ହେଇଯାଇଛି। ସୁଦର୍ଶନ ନିଜେ ଦେଖିଚି, ସତ୍ୟଭାମା ସୁକୁମାରକୁ ଧରି ନିଆଁ ଭିତରୁ ବାହାରି ଆସୁଥିବା ବେଳେ, ଏକ ବିରାଟ ଜଳନ୍ତା କାଠଖଣ୍ଡ ଦୁହିଁଙ୍କ ଉପରେ ଖସିପଡ଼ିଲା। ସୁଦର୍ଶନ ସେହି ନିଆଁ ଭିତରକୁ ପଶିଯାଇ ସତ୍ୟଭାମାଙ୍କୁ ଟାଣି ଆଣିଲା, କିନ୍ତୁ ସୁକୁମାରକୁ ଉଦ୍ଧାର କରିପାରିଲା ନାହିଁ। ସେ ସେହି କାଠଖଣ୍ଡ ଭିତରେ ଚାପା ପଡ଼ିଯାଇଥିଲା।

ସିଦ୍ଧାର୍ଥ ରାୟଙ୍କ ପଞ୍ଜରା ଥରାଇ ଆଉ ଏକ ଦୀର୍ଘଶ୍ୱାସ ବାହାରି ଆସିଲା।

ସେ କିଛିସମୟ ସ୍ତବ୍ଧ ରହି ପୁଣି କହିଲେ: ସତ୍ୟଭାମା ଆଉ ପ୍ରାଣ ଫେରି ପାଇଲା ନାହିଁ। ଚାରିଦିନ ହସ୍ପିଟାଲରେ ରହିବା ପରେ ତା ପ୍ରାଣବାୟୁ ଉଡ଼ିଗଲା। ବୋଧହୁଏ ସୁକୁମାରକୁ ଛାଡ଼ି ସେ ଆଉ ରହିପାରିଲା ନାହିଁ। ସେତେବେଳେ ମୋ ମନର ଅବସ୍ଥା ଯାହା ଆପଣ କଳନା କରିପାରିବେ ନାହିଁ। ସୁଦର୍ଶନ ବିଚାରା ମୋର ଯଥେଷ୍ଟ ଉପକାର କରିଛି। ତା'ରି ପାଇଁ ମୁଁ ପ୍ରାଣ ବଞ୍ଚେଇପାରିଥିଲି। ସେ ମୋତେ ଗୋଡ଼େଗୋଡ଼େ ଜଗି ରହିଥିଲା। ମନୋହରର ହାନିଲାଭ, ଭଲମନ୍ଦ ସବୁ ସେହି ବୁଝାସୁଝା କରୁଥିଲା।

ତା'ପରେ ମୁଁ ଯେତେବେଳେ ପ୍ରକୃତିସ୍ଥ ହେଲି, ମୋତେ ସେଠାରେ ଆଉ ଭଲ ଲାଗିଲା ନାହିଁ। ସବୁବେଳେ ମନେପଡ଼ିଲା ସତ୍ୟଭାମା କଥା, ସୁକୁମାର କଥା; ମୁଁ କୌଣସି କାର୍ଯ୍ୟକ୍ରମ କରିପାରିଲି ନାହିଁ। ଶେଷରେ ଠିକ୍ କଲି, ଆଉ ଏଠାରେ ରହି ହେବନାହିଁ। କିଛିଦିନ ପରେ ମନୋହରକୁ ଧରି ମୁଁ କଲିକତା ଚାଲିଆସିଲି।

ସୁଦର୍ଶନକୁ ଆସିବା ପାଇଁ ମୁଁ କହିଥିଲି। କିନ୍ତୁ ସେ ଆସିଲା ନାହିଁ। ତା'ଦେଶ ଛାଡ଼ି ଅନ୍ୟ କେଉଁଆଡ଼େ ସେ ଯିବ ନାହିଁ ବୋଲି ସ୍ଥିର କରିଥିଲା। ତେଣୁ ମୁଁ ତାକୁ ବାଧ୍ୟ କରିପାରିଲି ନାହିଁ।

କଲିକତାରେ ଆସି ପହଞ୍ଚିବା ମାତ୍ରେ ବ୍ୟବସାୟରେ ଉନ୍ନତି ଘଟିଲା। ଯେଉଁ କମ୍ପାନୀର ମୁଁ ଏଜେଣ୍ଟ ଥିଲି, ସେ କମ୍ପାନୀ ଏପରି ଦ୍ରୁତଗତିରେ ବଢ଼ିବାକୁ ଲାଗିଲା ଯେ ତା' ସହିତ ମୋ ଭାଗ୍ୟରେ ମଧ୍ୟ ପରିବର୍ତ୍ତନ ଘଟିଲା। କିଛିଦିନ ପରେ ମୁଁ ସେହି କମ୍ପାନୀର ଏକ ପାର୍ଟନର ହୋଇ ବସିଲି। ତା'ପରେ ପରେ ମୋ ଭାଗ୍ୟଦ୍ୱାର ଉନ୍ମୁକ୍ତ ହୋଇଗଲା।

ଛାଡ଼ନ୍ତୁ, ସେ ସବୁ କହି କିଛି ଲାଭ ନାହିଁ। ଯାହା ହରେଇଥିଲି, ଏତେ ପଇସା ରୋଜଗାର କରି ମଧ୍ୟ ତାହା ଆଉ ପୂରଣ କରି ହେବାର ନୁହେଁ। ସବୁ ଦୁଃଖ ମୁଁ ସହି ଯାଉଥିଲି ମନୋହରର ଚାନ୍ଦ ମୁହଁକୁ ଚାହିଁ। ଧୀରେଧୀରେ ସେ ବଡ଼ ହେଉଥିଲା। ମୋ ଆଦର୍ଶରେ ଅନୁପ୍ରାଣିତ ହୋଇ ମୋତେ ପ୍ରେରଣା ଦେଉଥିଲା। ମୁଁ ଦିନ ରାତି ଭୁଲି ଯାଇ କର୍ତ୍ତବ୍ୟରେ ଲାଗି ପଡ଼ିଥିଲି। କିନ୍ତୁ ମୋର ଆଜି ପୁଣି ଦୁର୍ଦ୍ଦିନ ଘନେଇ ଆସୁଛି ମି: ମହାପାତ୍ର ! ଏ ବୟସରେ ଆଉ ଦୁଃଖର ଧକ୍କା ସହିବାକୁ ମୋ ଛାତିରେ ବଳ ନାହିଁ।

ସିଦ୍ଧାର୍ଥ ରାୟ ନୀରବ ରହିଲେ। ତାଙ୍କ ଆଖିରୁ ଦୁଇବିନ୍ଦୁ ଅଶ୍ରୁ ଝରି ପଡ଼ିଲା।

ହୁଁ, ସତ୍ୟବ୍ରତ ଗମ୍ଭୀର ହୋଇ ଏକ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ।

ମାଧବ ଆସି ଜଣାଇଲା, ଖାଇବେ ଆସନ୍ତୁ ବାଆନ୍ତେ। ଆଜି ଅନେକ ରାତି ହୋଇଗଲାଣି।

: ମନୋହର କ'ଣ କରୁଛି ମାଧ।

ସର୍ପ-ଉର୍ବଶୀ-ରାତ୍ରି

ସିଦ୍ଧାର୍ଥ ରାୟ ପଚାରିଲେ।

: ସେ ଶୋଇଲେଣି।

: ଆଜି ଘରେ ଖାଇଚି ?

: ଆଜ୍ଞା ! ଘରେ ପହଞ୍ଚିବାମାତ୍ରେ ମନୁବାବୁ ମୋତେ ଡାକି କହିଲେ, ଭାରି ଭୋକ କଲାଣି ମାଧ, କିଛି ଖାଇବାକୁ ଦେଇପାରିବୁ ?

: ମନୋହର ଆଜି ତା'ହେଲେ....

: ହଁ ଆଜି ମନୁବାବୁଙ୍କ ମିଜାସ ଭଲ ଅଛି। ଖାଉ ଖାଉ ସେ ଅନେକ କଥା ପଚାରିଲେ। ଆପଣଙ୍କ କଥା ପଚାରୁଥିଲେ।

: ମୋ କଥା ପଚାରୁଥିଲା ?

ସିଦ୍ଧାର୍ଥ ରାୟଙ୍କ ଆଗ୍ରହ ଯେପରି ଶହେଗୁଣ ବଢ଼ିଯାଇଥିଲା।

: ଆଜ୍ଞା। ମୁଁ ମନୁବାବୁଙ୍କୁ କହୁଥିଲି କାଲି ଦକ୍ଷିଣାରଞ୍ଜନ ବାବୁଙ୍କ ଘରକୁ ଯିବା କଥା।

: ସେ କଣ କହିଲା ?

କହିଲେ: ମୋତେ ସେଠାକୁ ଯିବାକୁ ଭାରି ଲାଜ ମାଡୁଛି। ଆଗ କଥା ହେଲା ଅଲଗା, ଏବେ ବାହାଘର ସବୁ ଠିକ୍‌ଠାକ୍ ହୋଇଗଲାଣି ଯେତେବେଳେ, ଆଉ ଭଲ ଲାଗୁନାହିଁ।

: ଶେଷରେ କ'ଣ ହେଲା ! କାଲି ସେ ଯିବ ତ ?

: ସେ ତ ଲାଜ କରୁଛନ୍ତି। ଆପଣ ଯଦି ଡାକନ୍ତି ତା'ହେଲେ ଯିବେ ବୋଧେ।

ସତ୍ୟବ୍ରତ ଲକ୍ଷ୍ୟ କଲେ, ସିଦ୍ଧାର୍ଥ ରାୟଙ୍କ ଦୁର୍ଭାବନା ଯେପରି ମୁହୂର୍ତ୍ତକ ମଧ୍ୟରେ ଦୂର ହୋଇଗଲା। ସେ ସଙ୍ଗେସଙ୍ଗେ ଇଜିଚେଆରରୁ ଉଠି ଠିଆ ହେଲେ। କହିଲେ: ରାତି ଅନେକ ହେଲାଣି ମି: ମହାପାତ୍ର ! ଆପଣ ଆଜି ଏଇଠି ଖାଇ ଦେଇ ଯାଆନ୍ତୁ। ଶାଗ ମୃଗ କରି ଯାହା ଆମର ହେଇଚି, ସେଇଆ ଆପଣଙ୍କୁ ଖାଇବାକୁ ହେବ।

ସତ୍ୟବ୍ରତ ହଁ କି ନା କିଛି କହିଲେ ନାହିଁ। ସିଦ୍ଧାର୍ଥ ରାୟଙ୍କ ପଛେ ପଛେ ଖାଇବା ଘରକୁ ଗଲେ।

ସିଦ୍ଧାର୍ଥ ରାୟଙ୍କ ମୁହଁରୁ ତାଙ୍କ ଅତୀତ ଇତିହାସ ଶୁଣିବା ପରଠାରୁ ସତ୍ୟବ୍ରତ ମହାପାତ୍ରଙ୍କ ମୁଣ୍ଡଟା ଭାରାକ୍ରାନ୍ତ ହୋଇପଡ଼ିଥିଲା। ଖାଇବା ବେଳେ କ'ଣ ସେ ଖାଇଲେ; ସିଦ୍ଧାର୍ଥ ରାୟଙ୍କ ସହିତ କ'ଣ କଥାବାର୍ତ୍ତା ହେଲେ, କିଛି ତାଙ୍କର ମନେ ନ ଥିଲା। ଯେତେବେଳେ ଖାଇସାରି ସେ ଉଠିଲେ, ସେତେବେଳେ ରାତି ଏଗାରଟା ବାଜୁଥିଲା।

ସିଦ୍ଧାର୍ଥ ରାୟ କହିଲେ: ଅନେକ ଡେରି ହୋଇଗଲା ମି: ମହାପାତ୍ର। ମୁଁ ଡ୍ରାଇଭରକୁ କହୁଚି, ଆପଣଙ୍କୁ ନେଇ ଛାଡ଼ିଦେଇ ଆସିବ।

ସତ୍ୟବ୍ରତ ମନେମନେ କ'ଣ ଚିନ୍ତା କରୁଥିଲେ କେଜାଣି, କହିଲେ: ଆଜି ଏଠାରେ ରହିଗଲେ ହୁଅନ୍ତା ନାହିଁ ? ଖାଇ ସାରିଲା ପରେ ମୋତେ ଆଉ କୁଆଡ଼େ ଯିବାକୁ ଇଚ୍ଛା ହୁଏ ନାହିଁ। ଅବଶ୍ୟ ଯଦି ଅସୁବିଧା ନ ଥାଏ...

ସିଦ୍ଧାର୍ଥ ରାୟ ଯେପରି ଆନନ୍ଦରେ ମାତି ଉଠିଲେ। ଅସୁବିଧା ଆପଣଙ୍କର କିଛି ହେବନାହିଁ ମି: ମହାପାତ୍ର। ଆପଣ ରହିବେ, ମୋର ତ ପରମ ସୌଭାଗ୍ୟ। ଏତେ ଘର ଖାଲି ପଡ଼ିଛି, ଅସୁବିଧା ପୁଣି କ'ଣ? ଅବଶ୍ୟ ଆପଣ ଯଦି ଅସୁବିଧା ନ ମଣନ୍ତି।। ମାଧ, ବାବୁଙ୍କ ପାଇଁ ଗେଷ୍ଟରୁମ୍‌ରେ ସବୁପ୍ରକାର ବନ୍ଦୋବସ୍ତ କରିଦେବୁ।

ସତ୍ୟବ୍ରତ ଆଉ ମୁହୂର୍ତ୍ତେ ବିଳମ୍ବ ନ କରି ମାଧ ପଛେପଛେ ଗେଷ୍ଟରୁମ୍ ଆଡ଼େ ବାହାରିଗଲେ।

ଦୋତାଲାରେ ଏକ ସୁନ୍ଦର ସୁସଜ୍ଜିତ କକ୍ଷ।

ସତ୍ୟବ୍ରତ ପୋଷାକପତ୍ର ଖୋଲୁ ଖୋଲୁ ପଚାରିଲେ: ଆଚ୍ଛା ମାଧ ମନୋହର ଶୋଇବା ଘରଟା କିଏ?

ମାଧବ କହିଲା: ଏଇ ତାଲାର ଶେଷ ରୁମ୍‌ଟା।

: ମନୋହର ଶୋଇଲାଣି?

: ସେ କେତେବେଳୁ ଶୋଇପଡ଼ିଲେଣି।

: ଆଜି କ'ଣ ଗୋଡ଼ରେ ମୋଜା ପିନ୍ଧି ଶୋଇଛି?

: ଆଜ୍ଞା ! ମୁଁ ଦେଖୁଚି ଦିଲ୍ଲୀ ଯାଇ ତାଙ୍କର ସେଇଟା ଅଭ୍ୟାସ ହୋଇଯାଇଚି।

: ଆଚ୍ଛା ମାଧ, ଆଗେ ତୁମେ ମନୋହରକୁ ଯୋତା ପିନ୍ଧାଇ ଦେଉଥିଲ?

: ଆଜ୍ଞା।

: ତା' ଗୋଡ଼ରେ କୌଣସି ପ୍ରକାର ପୋଡ଼ାଚିହ୍ନ ବା କ୍ଷତଚିହ୍ନ ଅଛି କି?

: ନାଇଁ ଆଜ୍ଞା, କିଛି ନାହିଁ। କେଡ଼େ ସୁନ୍ଦର ଗୋରା ତକତକ ପାଦ ଦୁଇଟି। ଇମିତିକି କଳାଜାଇ ଚିହ୍ନଟିଏ ବି ନାହିଁ।

: ହୁଁ, ତୁମେ ଏଥର ଯାଇପାର ମାଧ। ମୋର ଆଉ କିଛି ଦରକାର ନାହିଁ।

ମାଧ ଚାଲିଯାଉଥିଲା। ସତ୍ୟବ୍ରତ ପୁଣି ତାକୁ ଡାକି କହିଲେ: ଗୋଟାଏ ଟର୍ଚ୍ଚ ଦେଇ ପାରିବ ମାଧ ?

: ଟର୍ଚ୍ଚ? ଟର୍ଚ୍ଚ କଣ କରିବେ। ଆସନ୍ତୁ ବାଥରୁମ୍ ଲାଇଟ୍‌ର ସୁଇଚ୍ ମୁଁ ଆପଣଙ୍କୁ ଦେଖେଇ ଦେଉଚି।

ସତ୍ୟବ୍ରତ ପକେଟରେ ହାତ ଭରି ଦେଖିଲେ, ଡିଆସିଲିଟାଏ ଅଛି। କହିଲେ: ନା, ନା, ତମେ ଯାଅ। ମୋ ପାଖରେ ଡିଆସିଲି ଅଛି, ଚଳିଯିବ।

ମାଧ କ'ଣ ଭାବିଲା କେଜାଣି, ଆଉ କିଛି ନ କହି ଚାଲିଗଲା।

ସତ୍ୟବ୍ରତ ରୁମ୍‌ର ଲାଇଟ୍ ନିଭେଇ ଦେଲେ। ଦରଜା ଭିତରୁ ବନ୍ଦ କରିଦେଲେ। ମୁକ୍ତଆକାଶକୁ ଚାହିଁ ଠିଆ ହେଲେ।

ପ୍ରବଳ ଉତ୍ତେଜନାରେ ତାଙ୍କ ନାକରୁ ଖରଶ୍ୱାସ ବାହାରୁ ଥିଲା।

ଯଦି ତାଙ୍କର ଏକ୍ସପେରିମେଣ୍ଟ ସତ୍ୟ ହୁଏ, ତା'ହେଲେ। ଅବଶ୍ୟ ସମସ୍ତ ପ୍ରକାର ବାତାବରଣ ତାଙ୍କ ସପକ୍ଷରେ। ଦେଖାଯାଉ କ'ଣ ହେଉଛି !

ରାତି ଯେତିକି ବଢ଼ିବାକୁ ଲାଗିଲା ସତ୍ୟବ୍ରତଙ୍କ ମନରେ ଉତ୍ତେଜନା ସେତିକି ବଢ଼ିବାକୁ ଲାଗିଲା।

ସେ ଆସି ବିଛଣାରେ ଗଡ଼ିଲେ। ଆରମ ଚଉକିରେ ବସିଲେ। ପୁଣି ଉଠିଗଲେ ବାରଣ୍ଡାକୁ। ରାତିଟା ଶୀଘ୍ର ଶୀଘ୍ର ବଢ଼ି ଯାଉନାହିଁ କାହିଁକି ?

ମଣିଷର ଗାଢ଼ନିଦ ତିନିଚାରିଟା ବେଳକୁ ହୋଇଥାଏ। ବର୍ତ୍ତମାନ ମାତ୍ର ଦୁଇଟା। ଆହୁରି ଦେଢ଼ଘଣ୍ଟା ଅପେକ୍ଷା କରିବାକୁ ହେବ। କିନ୍ତୁ ଅପେକ୍ଷାରେ ମୁହୂର୍ତ୍ତଗୁଡ଼ାକ ଯେପରି ଘଣ୍ଟା ଘଣ୍ଟା ହୋଇ ବଢ଼ି ଯାଉଛି।

ରୀଟା ଗ୍ରେଗରୀ। ମନୋହର କ'ଣ ପ୍ରକୃତରେ ତାକୁ ଭଲ ପାଏ ? ସେହିପରି ତ ମନେ ହେଉଛି। ମନୋହରର ମନକୁ ଯେପରି ରୀଟା ଗ୍ରେଗରୀ ଘେରି ରହିଛି। କିନ୍ତୁ ବନଜ୍ୟୋତ୍ସ୍ନା ଗଲା କୁଆଡ଼େ ?

ନାନା, ବନଜ୍ୟୋତ୍ସ୍ନା ସହିତ ସତ୍ୟବ୍ରତଙ୍କର ଆଉ କୌଣସି ପ୍ରୟୋଜନ ନାହିଁ। ବିଚାର ହୁଏତ ଏ ଯାତ୍ରାରୁ ବଞ୍ଚିଗଲା।

ସତ୍ୟବ୍ରତ ପୁଣି ଘର ଭିତରେ ଆସି ଆରାମ ଚେୟାର ଉପରେ ଆଉଜି ପଡ଼ିଲେ।

ରାତି ତିନିଟା ବାଜିଲା।

ନା, ଆଉ ଅପେକ୍ଷା କରି ହେବନାହିଁ।

ସତ୍ୟବ୍ରତ ଉଠିଲେ। ପାଦରୁ ଯୋତା ଖୋଲିଲେ। ସନ୍ତର୍ପଣରେ ଦ୍ୱାର ଖୋଲିଲେ। ନିସ୍ତବ୍ଧ ରାତ୍ରି।

ଦୋତାଲାର ଶେଷ ରୁମ୍‌ରେ ମନୋହର ଶୁଏ। ସତ୍ୟବ୍ରତ ଡିଆସିଲି କାଠି ଜାଳି ଜାଳି ଆଗେଇ ଗଲେ।

ଶେଷ ରୁମ୍ । ସତ୍ୟବ୍ରତଙ୍କ ଛାତିରୁ ଯେପରି ଅତଡ଼ା ଖସିପଡ଼ିଲା। ଯଦି ଅନୁମାନଟା ତାଙ୍କର ସତ୍ୟ ହୋଇଥାଏ ?

ରୁମ୍‌ର ଦୁଆର ଖୋଲା ଥିଲା। ରହିବାର କଥା। ମାଧବ ଠାରୁ ସେ ସେହିପରି ଆଭାସ ପାଇଥିଲେ।

ଶ୍ୱାସପ୍ରଶ୍ୱାସରୁ ଭାବିଲେ, ମନୋହର ଗଭୀର ନିଦ୍ରାରେ ଅଚେତନ। ପୁଣି ଦିଆସିଲି କାଠି ଜଳାଇଲେ। ମନୋହର ଚିତ୍ ହୋଇ ଶୋଇଚି । ନାସିକା ଅଗ୍ରର ତିଳଚିହ୍ନଟି ଉଜ୍ଜ୍ୱଳ ଦିଶୁଚି।

ସତ୍ୟବ୍ରତଙ୍କ ମନଟା ଟିକିଏ ମଉଳି ପଡ଼ିଲା।

ଧୀରେଧୀରେ ସେ ମନୋହରର ପାଦ ଆଡ଼େ ଆଗେଇ ଗଲେ। ଆଉ ଗୋଟିଏ ଡିଆସିଲି କାଠି ଜଳାଇଲେ। ଦୁଇ ପାଦରେ ଦୁଇଟି ନାଇଲନ୍ ମୋଜା ପିନ୍ଧି ମନୋହର ନିଶ୍ଚିନ୍ତ ନିଦ୍ରାମଗ୍ନ।

ସତ୍ୟବ୍ରତଙ୍କ ଆଖି ଦୁଇଟାରେ ଆଶାର ଦୀପ ଜଳି ଉଠିଲା। ହୁଏତ ଏଇ ନାଇଲନ୍ ମୋଜା ଯୋଡ଼ାକ ସବୁ ରହସ୍ୟର ସମାଧାନ କରିବ। ଧୀରେ ସେ ଯାଇ ମନୋହରର ଡାହାଣ ପାଦରେ ହାତ ଦେଲେ। ନାଇଲନ୍ ମୋଜାଟିର ଇଲାଷ୍ଟିକ୍ ଅଂଶଟା ଦୁଇ ହାତରେ ମେଲେଇ ଧରି ଆସ୍ତେ ପାଦରୁ ମୋଜାଟି ବାହାର କରି ନେଲେ। ମନୋହର ନିଶ୍ଚିନ୍ତରେ ଶୋଇଥିଲା।

ସତ୍ୟବ୍ରତ ଆଉ ଗୋଟିଏ ଡିଆସିଲି କାଠି ଜାଳିବା ଆଗରୁ ତାଙ୍କ ମନରେ ଦ୍ୱନ୍ଦ୍ୱ ଆରମ୍ଭ ହୋଇଯାଇଥିଲା, କ'ଣ ଦେଖିବେ? ହୁଏତ କୌଣସି କ୍ଷତଚିହ୍ନ, ଅଥବା...

ସତ୍ୟବ୍ରତଙ୍କ ମୁହଁ ଫିକା ପଡ଼ିଗଲା। ମାଧବ ବର୍ଣ୍ଣିତ ପାଦ ପରି ଗୋରା ଟକଟକ। ତା'ହେଲେ ?

ସତ୍ୟବ୍ରତ ଆଉ ଅପେକ୍ଷା କରିପାରିଲେ ନାହିଁ। ବାଁ ପାଦର ମୋଜାଟା କାଢ଼ି ଦେଖି ସାରିଲେ ସେ ନିଶ୍ଚିନ୍ତ ହେବେ। ସେହିପରି ସାବଧାନ ସହକାରେ ମୋଜାଟି କାଢ଼ିଦେଲେ।

ଡିଆସିଲି କାଠି ଜଳାଇବାମାତ୍ରେ ସେ ଚମକି ପଡ଼ିଲେ। ବାଁ ପାଦର ଉପରଟା ନଖଠାରୁ ଗଣ୍ଠି ପର୍ଯ୍ୟନ୍ତ କିପରି କଳା ଆଉ ଧଳା ଦାଗରେ ପୂର୍ଣ୍ଣ ହୋଇରହିଚି। ଲୋଚାକୋଚା। ଦିନେ ବୋଧହୁଏ ପାଦଟା ପୋଡ଼ି ସିଝି ଏକାକାର ହୋଇଯାଇଥିଲା।

ସତ୍ୟବ୍ରତଙ୍କର ସମସ୍ତ ଦେହଟା ଶିହରି ଉଠିଲା।

ଆନନ୍ଦ ଆଉ ଉତ୍ତେଜନାରେ ସେ ଅଧୀର ହୋଇପଡ଼ିଲେ।

ଏହାପରେ ସାତଦିନ ଅତିବାହିତ ହୋଇଗଲା।

ସତ୍ୟବ୍ରତ ମହାପାତ୍ର କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ, ସିଦ୍ଧାର୍ଥ ଶଙ୍କର ରାୟ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲକୁ ଫୋନ୍ କରି କରି କୌଣସି ସମ୍ବାଦ ସଂଗ୍ରହ କରିପାରିଲେ ନାହିଁ। ଶେଷକୁ ବାଧ୍ୟ ହୋଇ ନିଜେ ସେ ଗଲେ। ମ୍ୟାନେଜର କହିଲେ ଗତ ଶନିବାର ଦିନ ଛ'ଟା ସାଢ଼େଛ'ଟା ବେଳେ ସେ ତାଙ୍କୁ ଦେଖିଥିଲେ। ତା' ପରଠାରୁ ସତ୍ୟବ୍ରତ ଆଉ ଫେରିନାହାନ୍ତି। ରୁମ୍‌ର ଚାବି ତାଙ୍କ ପାଖରେ ଅଛି।

ସିଦ୍ଧାର୍ଥ ରାୟଙ୍କର ଆହୁରି ଦୁଶ୍ଚିନ୍ତା ବଢ଼ିଗଲା।

ସେ ଘରକୁ ଫେରି ଆସିଲେ। ବ୍ୟର୍ଥତା ଯେପରି ତାଙ୍କ ଜୀବନରେ ପରମ ବନ୍ଧୁ ହୋଇ ଠିଆହେଲା। ତେଣେ ଦକ୍ଷିଣା ରଞ୍ଜନ ଏ ବର୍ଷ ମଣିମାଳାର ବିବାହ ସ୍ଥଗିତ ରଖିବା ପାଇଁ ପ୍ରସ୍ତାବ ଦେଲେ। ଏଣେ ମନୋହର ଦିନେଦିନେ ରାତିରେ ଘରକୁ ଫେରିବା ବନ୍ଦ କରିଦେଇଥିଲା। ସବୁ ପ୍ରକାର ମନସ୍ତାପରେ ପଡ଼ି ସିଦ୍ଧାର୍ଥ ରାୟ ବିବ୍ରତ ହୋଇପଡ଼ିଲେ।

ସେ ଦିନ ସନ୍ଧ୍ୟାବେଳେ ସେ ତାଙ୍କ ପ୍ରାସାଦର ତ୍ରିତଳ ଉପରେ ଆରାମ ଚେୟାରରେ ବସି ନିଜର ଦୁର୍ଭାଗ୍ୟ କଥା ଚିନ୍ତା କରୁଥିଲେ।

ମାଧି ଆସି ଖବର ଦେଲା: ପୋଲିସ୍ ଆସିଛି। ସାଆନ୍ତେ।

: ପୋଲିସ୍ ?

ସିଦ୍ଧାର୍ଥ ରାୟ ଚମକି ଉଠିଲେ।

: ହଁ ପୋଲିସ୍ ଆସିଛି। ଆପଣଙ୍କ ସହିତ ଦେଖା କରିବାକୁ ଚାହେଁ।

ସିଦ୍ଧାର୍ଥ ରାୟ ଆଉ କୌଣସି ପ୍ରଶ୍ନ ନ ପଚାରି ଧୀରେଧୀରେ ତଳକୁ ଓହ୍ଲେଇ ଗଲେ। ଜଣେ କନେଷ୍ଟବଲ୍ ଖଣ୍ଡିଏ ଚିଠି ବଢ଼ାଇ ଦେଇ କହିଲା: ବଡ଼ ସାହେବ ଗାଡ଼ି ପଠାଇଛନ୍ତି। ଆପଣଙ୍କୁ ଟିକିଏ ଥାନାକୁ ଯିବାକୁ ହେବ।

: ମୋତେ ଥାନାକୁ ଯିବାକୁ ହେବ ?

ସିଦ୍ଧାର୍ଥ ରାୟ ଚିଠିଟି ପଢ଼ିଲେ। ଲାଲବଜାର ଥାନାର ଭାରପ୍ରାପ୍ତ ଅଫିସର ଲେଖିଛନ୍ତି: ମନୋହର ସମ୍ବନ୍ଧରେ ବହୁ ତଥ୍ୟ ସଂଗୃହୀତ ହୋଇ ଆମ ପାଖରେ ରହିଛି। ସବୁଗୁଡ଼ିକ ଅବଶ୍ୟ ଆପଣଙ୍କ ମଙ୍ଗଳପାଇଁ। ମୁଁ ଗାଡ଼ି ପଠାଇଲି। ଆପଣ ଏଇ ସମ୍ବନ୍ଧରେ ଦୟାକରି ଥାନାକୁ ଆସିଲେ ଆପଣ ଆଉ ଆମେ ଉଭୟେ ଉପକୃତ ହୁଅନ୍ତୁ।

ଚିଠିଟି ପଢ଼ି ସିଦ୍ଧାର୍ଥ ରାୟ କନେଷ୍ଟବଲ୍ ମୁହଁକୁ କିଛି ସମୟ ସ୍ତବ୍ଧ ହୋଇ ଅନାଇ ରହିଲେ। କ'ଣ କରିବେ ? ଯିବାକୁ ବାଧ୍ୟ। କମ୍ପିତ-କଣ୍ଠରେ କହିଲେ: ତୁମେ ଟିକିଏ ଅପେକ୍ଷା କର ମୁଁ ଲୁଗାପଟା ବଦଳେଇ ଆସୁଛି।

ସିଦ୍ଧାର୍ଥ ରାୟ ଖୁବ୍ ଅଳ୍ପ ସମୟ ମଧ୍ୟରେ ବେଶ ପରିବର୍ତ୍ତନ କରି ଫେରିଆସିଲେ।

ଗାଡ଼ି ଯେତେବେଳେ ଯାଇ ଲାଲବଜାର ପୋଲିସ୍ ଷ୍ଟେସନ ଭିତରେ ପ୍ରବେଶ କଲା, ସେତେବେଳକୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଆସୁଥିଲା।

କନେଷ୍ଟବଲଟି ସିଦ୍ଧାର୍ଥ ରାୟଙ୍କୁ ପଥ ଦେଖାଇ ବଡ଼ ସାହେବଙ୍କ ଚେମ୍ବରକୁ ନେଇଗଲା।

ଭିତରେ ପ୍ରବେଶ କରି ସେ କାବା ହୋଇଗଲେ। ସେଠାରେ ସତ୍ୟବ୍ରତ ମହାପାତ୍ର ବସିଛନ୍ତି ! ତାଙ୍କ ପାଖକୁ ମନୋହର, ପାଖକୁ ଲାଗି ଜଣେ ଆଂଲୋ ଭଦ୍ରମହିଳା, ପୋଲିସ୍ ଅଫିସର ଆଉ ଦୁଇ ତିନିଜଣ ଅପରିଚିତ ଲୋକ।

ସିଦ୍ଧାର୍ଥ ରାୟ ଗୃହ ମଧ୍ୟରେ ପ୍ରବେଶ କରିବା ମାତ୍ରେ, ପୋଲିସ୍ ଅଫିସର ଉଠି ତାଙ୍କ ସହିତ କରମର୍ଦ୍ଦନ କଲେ। ବସିବାକୁ ଦେଖେଇ ଦେଇ କହିଲେ: କ୍ଷମା କରିବେ ମି: ରାୟ। ନିତାନ୍ତ ବାଧ୍ୟ ହୋଇ ଆପଣଙ୍କୁ ଡକେଇଲି।

ସିଦ୍ଧାର୍ଥ ରାୟ ଚାରିଆଡ଼କୁ ଚାହିଁ ସ୍ତବ୍ଧ ହୋଇଯାଇଥିଲେ।

ସତ୍ୟବ୍ରତଙ୍କ ମୁଖମଣ୍ଡଳ ଉପରେ ତାଙ୍କର ଆଖିଦୁଇଟି ନିବଦ୍ଧ ଥିଲା।

: ମୋତେ କ୍ଷମା କରିବେ ମି; ରାୟ।

ସତ୍ୟବ୍ରତ ବିନୟ କଣ୍ଠରେ କହିଲେ: ସେଦିନ ଆପଣଙ୍କ ଘରୁ ଏକପ୍ରକାର ମୁଁ ଲୁଚି କରି ଚାଲିଆସିଥିଲି। ସକାଳୁ ଆପଣଙ୍କ ସହିତ ଦେଖା କରିବାକୁ ବି ସୁଯୋଗ ପାଇ ନଥିଲି। ଅବଶ୍ୟ ଆପଣଙ୍କ କାମରେ ମୋତେ ଘୂରି ବୁଲିବାକୁ ପଡ଼ିଥିଲା।

ମନୋହର ବାବୁଙ୍କ ସମ୍ବନ୍ଧରେ ଆପଣଙ୍କ ମନରେ ଯେଉଁ ସନ୍ଦେହ ଉଦ୍ରେକ ହୋଇଥିଲା, ସେହି ସନ୍ଦେହର ଅବସାନ ଆଜି ଘଟିଛି। କିନ୍ତୁ ଘଟଣାଚକ୍ରରେ ସମସ୍ୟାଟା ଏଡ଼େ ଜଟିଳ ହୋଇଉଠିଛି ଯେ, ମି: ମଜୁମଦାର ଆଉ ମି: ଦାସଗୁପ୍ତଙ୍କ ସାହାଯ୍ୟ ନ ପାଇଥିଲେ ମୁଁ ଏତେ ଶୀଘ୍ର ଏହାର ସମାଧାନ କରିବାକୁ ସକ୍ଷମ ହୋଇନଥାନ୍ତି।

ଆପଣ ମୋତେ ଘରୋଇ ଭାବରେ ନିଯୁକ୍ତି ଦେଇଥିଲେ। ମୁଁ ମଧ୍ୟ ପ୍ରାଇଭେଟ୍‌ଲି କେସ୍‌ଟା ତନଖି କରୁଥିଲି। କିନ୍ତୁ ଯେତେବେଳେ ମୁଁ ଜାଣିପାରିଲି ଯେ ପୋଲିସ୍‌ର ବିନା ସହାୟତାରେ ଏହାର ସମାଧାନ ଅସମ୍ଭବ, ସେତେବେଳେ ମୁଁ ବାଧ୍ୟ ହେଲି ପୋଲିସ୍ ବିଭାଗର ସାହାଯ୍ୟ ନେବା ପାଇଁ। ଅବଶ୍ୟ ଘଟଣାଟା ଆପଣଙ୍କର ପୂରାପୂରି ଘରୋଇ ବ୍ୟାପାର, କିନ୍ତୁ ଆଜି ଆଉ ତାହା ଘରୋଇ ହୋଇନାହିଁ। ଆପଣ ଶୁଣିଲେ ଦୁଃଖିତ ହେବେ ଯେ, ମନୋହର ବାବୁ ଆଜି ଆଇନ୍ ଦୃଷ୍ଟିରେ ଜଣେ କ୍ରିମିନାଲ !

: କ୍ରିମିନାଲ? ମନୋହର କ୍ରିମିନାଲ୍ ?? ନା, ନା, ନା। ଅସମ୍ଭବ। ସିଦ୍ଧାର୍ଥ ଶଙ୍କରରାୟର ପୁତ୍ର ମନୋହର ରାୟ ଆଉ ଯାହା ହେଉ ନ ହେଉ ସେ କ୍ରିମିନାଲ ହୋଇପାରେନା । ତା'ର ଶିକ୍ଷା, ତାର ଦୀକ୍ଷାରେ ଏପରି କୌଣସି ତ୍ରୁଟି ନଥିଲା, ଯଦ୍ଵାରା ସେ ଭବିଷ୍ୟତରେ ଜଣେ କ୍ରିମିନାଲ ହୋଇଉଠିବ।

ସିଦ୍ଧାର୍ଥ ରାୟ ଗର୍ଜି ଉଠିଲେ।

ମନୋହର ତଳକୁ ମୁହଁ କରି ଚୁପ୍‌ଚାପ୍ ବସିଥିଲା। ତା ପାଖକୁ ଲାଗି ବସିଥିବା ରୀଟା ଗ୍ରେଗରୀ ମୁହଁଟା ଧୀରେଧୀରେ କାଗଜଫୁଲ ପରି ଶେତା ପଡ଼ିଆସୁଥିଲା।

ସତ୍ୟବ୍ରତ କହିଲେ: ଆପଣ ଉତ୍ତେଜିତ ହୁଅନ୍ତୁ ନାହିଁ ମି: ରାୟ! ଆପଣଙ୍କ ଶିକ୍ଷା, ଆପଣଙ୍କ ଦୀକ୍ଷା ଯେଉଁ ପ୍ରଣାଳୀର ଥିଲା, ତହିଁରେ କେହି କ୍ରିମିନାଲ ହୋଇପାରେନା- ଏହା ମୁଁ ବିଶ୍ଵାସ କରୁଛି। କିନ୍ତୁ ଏହାଠାରୁ ଆହୁରି ହୃଦୟବିଦାରକ ଏକ ସମ୍ବାଦ ମୁଁ ଆପଣଙ୍କୁ ଶୁଣାଇବି। ଜାଣେନା ଆପଣ ତାହା କିପରି ଭାବରେ ଗ୍ରହଣ କରିବେ। ଯାହା ସତ୍ୟ, ତାହା ଗୋପନ କରିବାକୁ କାହାରି ଶକ୍ତି ନାହିଁ।

ସିଦ୍ଧାର୍ଥଶଙ୍କର ରାୟ ଉତ୍କର୍ଣ୍ଣ ହୋଇ ଚାହିଁଥିଲେ। ସତ୍ୟବ୍ରତଙ୍କ ନୀରବତା ଆଉ ସହ୍ୟ କରିହେଉନଥିଲା। ସେ ମନୋହର ଆଡ଼କୁ ଆକୁଳ ନୟନରେ ଅନାଇରହି ଥରିଲା କଣ୍ଠରେ କହିଲେ: ଯାହା କହିବାର ଶୀଘ୍ର କୁହନ୍ତୁ ମି: ମହାପାତ୍ର! ମୁଁ ଜୀବନର ସବୁଠାରୁ ଦୁଃସମ୍ବାଦ ଶୁଣିବା ପାଇଁ ପ୍ରସ୍ତୁତ ହୋଇରହିଛି। ମୋତେ ଆଉ ମନସ୍ତାପ ଭିତରେ ଜାଳିପୋଡ଼ି ମାରନ୍ତୁ ନାହିଁ।

ସତ୍ୟବ୍ରତ ମନୋହର ଆଡ଼କୁ ଚାହିଁଲେ। ଦୃଷ୍ଟି ପକେଇଲେ ରୀଟା ଗ୍ରେଗରୀ ଉପରେ। ପ୍ରଣବ ଦାସଗୁପ୍ତଙ୍କ ସାହାଯ୍ୟରେ ଏମାନଙ୍କୁ ସେ ଥାନା ଭିତରକୁ ଆଣିବାକୁ ସମର୍ଥ ହୋଇଥିଲେ।

ମନୋହରର ଚାହାଣି ସିଦ୍ଧାର୍ଥ ରାୟଙ୍କ ପ୍ରବେଶ ପରଠାରୁ ନତ ହୋଇ ରହିଥିଲା। ରୀଟା ଗ୍ରେଗରୀ ଆଖି ଯୋଡ଼ାକ ରହି ରହି ଥରି ଉଠୁଥିଲା। ସତ୍ୟବ୍ରତ ସବୁ ଲକ୍ଷ୍ୟ କରୁଥିଲେ ଏବଂ କଥାଟା କେଉଁଠୁ ଓ କିପରି ଭାବରେ ଆରମ୍ଭ କରିବେ ଠିକ୍ କରିପାରୁନଥିଲେ।

ଘରେ କେବଳ ନୀରବତା ।

: ମିଃ ରାୟ !

ସତ୍ୟବ୍ରତଙ୍କ କଣ୍ଠସ୍ୱର କଠିନ ଶୁଣାଯାଉଥିଲା: ଆପଣ ମନୋହରର ମୁହଁକୁ ଭଲ ଭାବରେ ନିରୀକ୍ଷଣ କରି କହନ୍ତୁ, ସେ ମନୋହର ନା ଅନ୍ୟ କେହି ?

ହଠାତ୍ ମନୋହର ଉଠି ଠିଆ ହୋଇପଡ଼ିଲା । କଣ୍ଠରେ ତା'ର ଉଗ୍ରତା ଫୁଟି ଉଠିଲା: ଆପଣ କ'ଣ ମନେ କରିଛନ୍ତି ମି: ମହାପାତ୍ର ! ଆମକୁ ଥାନା ଭିତରକୁ ଡାକି ଆଣି ଅପମାନିତ କରିବାର ଅଧିକାର ଆପଣଙ୍କର ନାହିଁ ।

: ମୋର ଧୃଷ୍ଟତା ମାର୍ଜ୍ଜନା କରିବେ ମନୋହର ବାବୁ । ପ୍ରଶ୍ନ ମୁଁ ମି: ରାୟଙ୍କୁ ପଚାରିଚି । ଆପଣଙ୍କୁ ନୁହେଁ ।

ସିଦ୍ଧାର୍ଥ ରାୟଙ୍କ ଆଖିକୁ ସବୁ ଯେପରି ଭୋଜବାଜି ପରି ମନେ ହେଉଥିଲା । ଦୁଃଖ, ବେଦନା ଓ କାରୁଣ୍ୟରେ ତାଙ୍କର ସମସ୍ତ ଶରୀରଟା ଜାଲୁବାଲୁ ହୋଇଯାଉଥିଲା ।

ସେ ଧୀର ଆଉ ବ୍ୟଥିତ କଣ୍ଠରେ କହିଲେ: ହଁ ସେ ମନୋହର । ମୋର ଏକମାତ୍ର ସନ୍ତାନ ମନୋହର ରାୟ ।

: ଆପଣ ବାତ୍ସଲ୍ୟ ମମତାରେ ସବୁ ଭୁଲି ବସିଛନ୍ତି ମି: ରାୟ । ଏ ଆପଣଙ୍କ ପୁତ୍ର ମନୋହର ନୁହେଁ । ଅସଲ ମନୋହରର ମୃତ୍ୟୁ ହୋଇଛି ।

: ଏଁ ! ମନୋହରର ମୃତ୍ୟୁ ହୋଇଛି । ଭୁଲ୍, ସବୁ ଭୁଲ୍ କହୁଛନ୍ତି ଆପଣ । ମୋତେ ପାଗଳ କରିଦେବା ପାଇଁ ଆପଣମାନେ ଷଡ଼ଯନ୍ତ୍ର କରିଛନ୍ତି । ମୁଁ କିଛି ଶୁଣିବି ନାହିଁ । ମୋ ଆଖିର ଭୁଲ୍ ହୋଇନପାରେ ।

ସିଦ୍ଧାର୍ଥ ରାୟ ଉଠି ଠିଆ ହେଲେ । ମନୋହର ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ: ତୁ ଚାଲିଆ ମନୋହର । ଏମାନେ ସବୁ ଷଡ଼ଯନ୍ତ୍ର କରିଛନ୍ତି । ସମ୍ପତ୍ତିର ମୋହ ସମସ୍ତଙ୍କୁ ଆକୃଷ୍ଟ କରିଚି । ତୁ ଚାଲିଆ । ଆମେ ଚାଲିଯିବା । ଏଇ ମୁହୂର୍ତ୍ତରେ କଲିକତା ଛାଡ଼ି ଚାଲିଯିବା । ମୁଁ ଆଉ ତୋତେ ସନ୍ଦେହ କରିବି ନାହିଁ । ତୁ ଚାଲିଆ ମନୋହର ।

ମନୋହର ମଧ୍ୟ ଉଠି ଠିଆହେଲା ।

ରୀଟା ଗ୍ରେଗରୀ କାଠ ପାଲଟି ଯାଇଥିଲା । ତା' ମୁହଁ ଆଖି ସମସ୍ତ ସ୍ଥିର ହୋଇଯାଇଥିଲା ।

ପୋଲିସ ଅଫିସର ମିହିର ମଜୁମଦାର ଗର୍ଜ୍ଜନ କରି ଉଠିଲେ: ଯେଉଁଠି ବସିଥିଲ ସେଇଠି ବସିଯାଅ ମନୋହର । ଆପଣ ବସନ୍ତୁ ମି: ରାୟ । ଭୁଲି ଯାଆନ୍ତୁ ନାହିଁ ଯେ ଏଇଟା ଘର ନୁହେଁ । ରାମ ତିୱାରୀ ?

: ଜୀ ହଜୁର ।

ଗୋଟିଏ କନେଷ୍ଟବଲ୍ ଆସି ସାଲ୍ୟୁଟ୍ ବଜାଇଲା।

: ଓ ଘରମେ ଯୋ ବାବୁ ବେଠେହେଁ ଉସ୍‌ସେ ବୋଲାଅ।

: ଜୀ ହଜୁର।

କିଛିକ୍ଷଣ ପରେ ଘର ଭିତରେ ଯେଉଁ ଲୋକଟି ପ୍ରବେଶ କଲା, ତା' ଆଡ଼କୁ ଚାହିଁ ସିଦ୍ଧାର୍ଥ ରାୟ ସ୍ତବ୍ଧ ହୋଇଗଲେ। ଲୋକଟି ମଧ୍ୟ ଘର ଭିତରେ ପ୍ରବେଶ କରି ସିଦ୍ଧାର୍ଥ ରାୟଙ୍କୁ ଦେଖି ବିସ୍ଫାରିତ ନୟନରେ ଅନାଇ ରହିଲା।

କିଛିସମୟ ନୀରବତା ଭିତରେ କଟିଗଲା।

ତା'ପରେ ସିଦ୍ଧାର୍ଥ ରାୟ ଧୀରେ ଧୀରେ କହିଲେ: କିଏ, କିଏ ? ସୁଦର୍ଶନ ନା? ଆରେ ତୁ ଏଠିକି କାହିଁକି ଆସିଛୁ?

ଆଗନ୍ତୁକଟି ସ୍ଥାନ କାଳ ପାତ୍ର ଭୁଲିଯାଇ ଭୋ କରି କାନ୍ଦି ଉଠିଲା ଏବଂ ସିଦ୍ଧାର୍ଥ ରାୟଙ୍କ ଗୋଡ଼ ଦୁଇଟା ଜାବୁଡ଼ି ଧରି କହିଲା: ମତେ କ୍ଷମା କରନ୍ତୁ ଆଜ୍ଞା। ମୁଁ ଅପରାଧ କରିଚି। ମୋ ଅପରାଧର ସୀମା ନାହିଁ।

ଘର ଭିତରଟା ନିସ୍ତବ୍ଧ ହୋଇଯାଇଥିଲା।

ସୁଦର୍ଶନ ସିଦ୍ଧାର୍ଥ ରାୟଙ୍କ ମୁହଁକୁ ଚାହିଁ ଅଶ୍ରୁ ବିସର୍ଜନ କରୁଥିଲା ଆଉ ସିଦ୍ଧାର୍ଥ ରାୟ କଠୋର ନୟନରେ ସୁଦର୍ଶନକୁ ଚାହିଁଥିଲେ। କିଛି ସମୟ ପରେ ସିଦ୍ଧାର୍ଥ ରାୟଙ୍କ ମୁଖଭଙ୍ଗୀରେ ସାମାନ୍ୟ ପରିବର୍ତ୍ତନ ଦେଖାଗଲା। ସେ ଜଡ଼ିତ କଣ୍ଠରେ କହିଲେ: ତୁ ଠିକ୍ ବେଳରେ ଆସିଛୁ ସୁଦର୍ଶନ।

ପୋଲିସ୍ ଅଫିସରଙ୍କ ଦୃଷ୍ଟି ଆକର୍ଷଣ କରି କହିଲେ: ଶୁଣନ୍ତୁ ଆଜ୍ଞା! ସୁଦର୍ଶନ ଏକ ସମୟରେ ମୋ ପାଖରେ ଚାକିରି କରୁଥିଲା। ତାରି ହାତରେ ମନୋହର ଲାଳିତ ପାଳିତ ହୋଇଥିଲା। ଆପଣ ସୁଦର୍ଶନକୁ ପଚାରନ୍ତୁ, ଏ ମନୋହର କି ନୁହେଁ ସେ କହିବ। କହ, ସୁଦର୍ଶନ, ମନୋହରକୁ ତୁ ଚିହ୍ନିପାରୁନାହୁଁ?

ସୁଦର୍ଶନ କହିଲା: ମନୋହର ବାବୁ ଆଉ ନାହାନ୍ତି ସାଆନ୍ତେ। ଗତ ମାସରେ ଦିଲ୍ଲୀ ମେଲ୍‌ର ଭୟାନକ ଆକ୍‌ସିଡେଣ୍ଟରେ ତାଙ୍କର ମୃତ୍ୟୁ ହୋଇଛି। ସେ ସମ୍ବାଦ ଆପଣମାନେ କେହି ଜାଣିନାହାନ୍ତି।

: ଆଉ ଏ, ଏ କିଏ?

ସିଦ୍ଧାର୍ଥ ରାୟ ଥରି ଥରି ମନୋହର ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଲେ।

: ଏ ହେଉଛନ୍ତି ସାନବାବୁ। କୁଳକୁମାର ବାବୁ!!

: ନା ନା, ତମେ ସମସ୍ତେ ଭୁଲ୍ କରୁଛ। ମୋତେ ଠକିଦେବା ପାଇଁ ସମସ୍ତେ

ମୋପଛରେ ଲାଗିଚ। ସୁକୁମାର ନିଆଁରେ ପୋଡ଼ି ମରିଯାଇଛି। ଖାଲି ସେତିକି ନୁହେଁ, ସୁକୁମାରର ନାକ ଆଗରେ ଏହି ତିଳଚିହ୍ନଟି ନ ଥିଲା। ତମେ ସମସ୍ତେ ମେଳି ହେଇଚ। ସମସ୍ତେ ପରିକଳ୍ପନା କରି ମୋ ପଛରେ ଲାଗିଛ। ସିଦ୍ଧାର୍ଥ ରାୟ ଥରି ଥରି ବସିପଡ଼ିଲେ।

ମନୋହର ଏକପ୍ରକାର ଜଡ଼ ପାଲଟି ଯାଇଥିଲା।

ସତ୍ୟବ୍ରତ ଆସନରୁ ଉଠି ଯାଇ ମନୋହର ପାଖରେ ଠିଆ ହେଲେ ଏବଂ କହିଲେ: କ୍ଷମା କରିବେ ମନୋହର ବାବୁ। ଆପଣଙ୍କର ଏହି ଛଦ୍ମ ଆବରଣଟି ଅପସାରଣ କରନ୍ତୁ।

ଏହା କହି ସେ ମନୋହରର ନାସିକା ଅଗ୍ରରେ ଆଙ୍ଗୁଳି ସଞ୍ଚାଳନ କରି କଳାଚିହ୍ନଟି ଉଠାଇ ଦେଲେ।

ସିଦ୍ଧାର୍ଥ ରାୟଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ।

ସେ ଆକାଶରୁ ପଡ଼ିଲାପରି ଛଦ୍ମବେଶୀ ମନୋହର ମୁହଁକୁ ଚାହିଁଥିଲେ।

ସତ୍ୟବ୍ରତ ସୁଦର୍ଶନଙ୍କୁ ଲକ୍ଷ୍ୟ କରି କହିଲେ: ମୋତେ ସେଦିନ ଯେଉଁ ଇତିହାସ କହିଥିଲ, ଆଜି ଏଠାରେ ଆଉ ଥରେ ତା'ର ପୁନରାବୃତ୍ତି କରିଯାଅ। ବିଶେଷ କରି ମିଃ ରାୟଙ୍କ ମନରୁ ଅବିଶ୍ୱାସ ଦୂର କରିବାକୁ ହେବ।

ସୁଦର୍ଶନ କହିଲା: ଆପଣ ରାଞ୍ଚିରେ ଥିଲାବେଳେ ଯେଉଁଦିନ ଆପଙ୍କର ଘରେ ନିଆଁ ଲାଗିଲା, ସେଦିନ ସେଠାରେ ମୋ ଛଡ଼ା କେହି ନ ଥିଲେ। ଅଧରାତିରେ ନିଆଁ ଲାଗିଯିବା ହେତୁ ଆମେସବୁ କେହି ଜାଣିପାରିନଥିଲୁ ଏବଂ ସେଇଥିପାଇଁ ଦୁର୍ଘଟଣା ଘଟିଗଲା।

ସେଦିନ ମୁଁ କିନ୍ତୁ ଗୋଟାଏ ବିରାଟ ଅପରାଧ ଆପଣଙ୍କ ନିକଟରେ କରିବସିଥିଲି।

ମନୋହର ଓ ସୁକୁମାର ଦୁଇଜଣଙ୍କ ଭିତରୁ କେହି ନିଆଁରେ ପୋଡ଼ି ମରି ନଥିଲେ। ସୁକୁମାର ବାଁ ପାଦଟା ଖାଲି ପୋଡ଼ିଯାଇଥିଲା। ଦୁଇଜଣଙ୍କୁ ବେହୋସ ଅବସ୍ଥାରେ ମୁଁ ଯେତେବେଳେ ନେଇ ଆମ ବସାରେ ଶୁଆଇ ଦେଇ ଆସି ସାଆନ୍ତାଣୀଙ୍କୁ ହସ୍ପିଟାଲରେ ଛାଡ଼ିଦେଇ ଆସିଲି, ସେତେବେଳେ ଦେଖିଲି ମୋ ସ୍ତ୍ରୀ ଦୁଇ ଜଣଙ୍କୁ ଜଗିବସି ରହିଚି ଏବଂ ତା' ଆଖିରେ କିପରି ଏକ ଲାଳସାର ଚିହ୍ନ ଫୁଟି ଉଠିଚି। ସେ ଲାଳସାର ଇଙ୍ଗିତ ମୁଁ ବୁଝିଲି। ବହୁତ ଦିନରୁ ଆମର ବିବାହ ସମ୍ପନ୍ନ ହୋଇଥିଲେ ସୁଦ୍ଧା କୌଣସି ସନ୍ତାନସନ୍ତତି ହୋଇନଥିଲେ।

'ଦୁହିଁଙ୍କ ଭିତରେ କଥାବାର୍ତ୍ତା ସ୍ଥିର ହୋଇଗଲା।

ତହିଁ ଆରଦିନ ସକାଳୁ ସେ ମନୋହରକୁ କୋଳରେ ଧରି ଆମ ଗାଁକୁ ବାହାରିପଡ଼ିଲା। ମୁଁ ତାକୁ ଗାଡ଼ିରେ ଚଢ଼େଇ ଦେଇ ଆସିଲି।

ତା ଦିନକ ପରେ ଆପଣ ଯାଇ ପହଞ୍ଚିଲେ। ସେତେବେଳେ ମୁଁ ଆପଣଙ୍କୁ କହିଦେଲି ଯେ, ସୁକୁମାରର ମୃତ୍ୟୁ ହୋଇଛି।

ତା'ପରଠାରୁ ମୋ ମନରେ କୌଣସି ଦିନ ଶାନ୍ତି ଆସିନାହିଁ। ସୁକୁମାରକୁ ମୁଁ ମଣିଷ କରି ଗଢ଼ିବା ପାଇଁ ସବୁଦିନ ଚେଷ୍ଟା କରିଚି। ମନୋହରର ଶିକ୍ଷାଦୀକ୍ଷା ସମ୍ବନ୍ଧରେ ଖବର ନେଇ ସେହିପରି ତାକୁ ଗଢ଼ିବାକୁ ଅହରହ ଯତ୍ନ କରିଚି। ସେ ମୋତେ ବାପା ଡାକୁ ଏପରି ଦୁଃସାହସ ମୁଁ କରିପାରିନଥିଲି। ମୁଁ ତା' କକା, ସୁକୁମାର ଏହି କଥା ଆଜିଯାଏ ଜାଣିଛି।

କିଛିଦିନ ଯିବା ପରେ ଆମର ଗୋଟିଏ ଝିଅ ଜନ୍ମ ହେଲା। ତା' ନା ଗୀତା। ପିଲାଟି ଦିନରୁ ମୁଁ ସଙ୍କଳ୍ପ କରିଥିଲି ଯେ ସୁକୁମାର ସହିତ ଗୀତାକୁ ବାହାଘର କରିଦେଇ ନିଶ୍ଚିନ୍ତ ହେବି। ସମୟ ଗଡ଼ି ଚାଲିଥିଲା। କିନ୍ତୁ ହଠାତ୍ ସେଦିନ କାହିଁକି ଏପରି ଏକ ସୁଯୋଗ ମୋତେ ଜୁଟିଲା ମୁଁ କହିପାରୁନାହିଁ। ଯେଉଁ ଦିଲ୍ଲୀ ମେଲ୍‌ରେ ମନୋହର ବାବୁ ଆସୁଥିଲେ, ସେହି ଗାଡ଼ିରେ ମୁଁ ଆସୁଥିଲି। ଦୈବାତ୍ ଆମର ଷ୍ଟେସନରେ ଦେଖାହେଲା। ମୁଁ ସିନା ମନୋହର ବାବୁଙ୍କୁ ଚିହ୍ନିଲି, ସେ ବା ମୋତେ ଚିହ୍ନନ୍ତେ କିପରି ?

ଠିକ୍ ମୋ ପାଖ କମ୍ପାଟମେଣ୍ଟରେ ସେ ବସିଥିଲେ।

ତା'ପରେ...

ସେଇ ଭୟାବହ ଟ୍ରେନ୍ ଦୁର୍ଘଟଣାରୁ ଦୈବକ୍ରମେ ମୁଁ ବଞ୍ଚି ଯାଇଥିଲି। ମନୋହରର ଦେହ ଏପରି ଭାବରେ ନଷ୍ଟ ହୋଇଯାଇଥିଲା ଯେ, ତାକୁ ଚିହ୍ନଟ କରିବାର ଉପାୟ ନଥିଲା। ମୁଁ ଦେଖିଲି । କିନ୍ତୁ ସେତିକିବେଳେ ମୋ ମୁଣ୍ଡରେ ଗୋଟାଏ ଦୁଷ୍ଟ ବୁଦ୍ଧି ଖେଳିଗଲା। ସଙ୍ଗେ ସଙ୍ଗେ ସୁକୁମାର କଥା ମୋର ମନେ ପଡ଼ିଗଲା।

ସୁକୁମାରକୁ ଆପଣଙ୍କ ଘରକୁ ପଠାଇବା ପୂର୍ବରୁ ମୁଁ ନିଜେ ଯାଇ ମାଧବଠାରୁ ଘରର ସମସ୍ତ ହାଲ ବୁଝି ଆସିଥିଲି। ମନୋହରର ଚାଲିଚଳନ ସମ୍ବନ୍ଧରେ ମଧ୍ୟ କେତେକ ଆଭାସ ପାଇଥିଲି। ମନୋହରକୁ ଆସି ସେହିପରି ଶିକ୍ଷା ଦେଲି। ମୋ ମନରେ ଅନ୍ୟ କୌଣସି ଉଦ୍ଦେଶ୍ୟ ନ ଥିଲା। କେବଳ ମୁଁ ଭାବିଥିଲି, ସୁକୁମାର ଯଦି ସେଠାରେ ଆସନ ଜମେଇ ପାରିବ, ତେବେ ଗୀତାଟି ମୋର ଅନ୍ତତଃ ଭବିଷ୍ୟତରେ ସୁଖରେ ରହିବ।

ସୁକୁମାରକୁ ମୁଁ ସମସ୍ତ କଥା ବୁଝେଇ ସୁଝେଇ, ଟ୍ରେନ୍‌ରୁ ଗୋଟେଇ ଆଣିଥିବା ମନୋହରର ଗୋଟାଏ ସୁଟ୍‌କେଶ ତା' ହାତରେ ଦେଇ ତାକୁ ପଠେଇଦେଲି। ସୁକୁମାରର ଉପସ୍ଥିତ ବୁଦ୍ଧି ଯଥେଷ୍ଟ ଥିଲା। ସେ ଚଳେଇ ନେଇଥାଆନ୍ତା। କିନ୍ତୁ ଏଇ ରୀଟା ଗ୍ରେଗରୀ, ସୁଦର୍ଶନ ମୁହଁରେ କଠିନତା ଫୁଟି ଉଠିଲା। ସେଇ ସୁକୁମାରର ସର୍ବନାଶ କରିଛି। ତା'ରି ଫାନ୍ଦରେ ପଡ଼ି ସୁକୁମାର ଗୀତାକୁ ମଧ୍ୟ ଆଉ ପସନ୍ଦ କରି ପାରୁନାହିଁ।

ଏଇଆ ହେଉଚି ଛଦ୍ମବେଶୀ ମନୋହରର କାହାଣୀ। ତେବେ ମୋର ଆଜି ଏତିକି ସାନ୍ତ୍ୱନା ଯେ, ଖୁବ୍ ଗୋଟାଏ କିଛି ଅନ୍ୟାୟ କରିନାହିଁ। ଘର ପୁଅ ଘରକୁ ଫେରେଇ

ଦେଇଛି। ମନୋହରର ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ସୁକୁମାର ଯେ ସମର୍ଥ ହେବ, ସେ ଆଶା ମୁଁ ପୋଷଣ କରୁଚି।

ସୁଦର୍ଶନ ନୀରବ ରହିଲା।

: ତା'ପରର ଘଟଣା ମୁଁ କହୁଚି ଶୁଣନ୍ତୁ।

ସତ୍ୟବ୍ରତ ଉଠି ଠିଆ ହେଲେ। କହିବାକୁ ଆରମ୍ଭ କଲେ: ବେଶ୍ ଚଳି ଯାଉଥିଲା। ମନୋହର ସ୍ଥାନରେ ସୁକୁମାର ମି: ରାୟଙ୍କ ଆଖିରେ ଧରାପଡ଼ିନଥିଲା। ତେବେ ଗୋଟାଏ ସଂପୂର୍ଣ୍ଣ ନୂଆ ଜାଗାରେ ଆଉ ଜଣକ ଭୂମିକାରେ ଅଭିନୟ କରିବା ନିଶ୍ଚୟ ଖୁବ୍ କଠିନ କାର୍ଯ୍ୟ। ତେଣୁ ସୁକୁମାର କାର୍ଯ୍ୟକଳାପରେ ସାମାନ୍ୟ ବ୍ୟତିକ୍ରମ ଦେଖାଦେଲା। ମନୋହରର ବନ୍ଧୁବାନ୍ଧବ ଯେତେବେଳେ ସୁକୁମାର ସହିତ ମିଶିବାକୁ ଲାଗିଲେ, କିପରି ଖାପଛଡ଼ା ଭାବ ଲକ୍ଷ୍ୟ କଲେ।

ରୀଟା ଗ୍ରେଗରୀ କିନ୍ତୁ ଶେଷ ପର୍ଯ୍ୟନ୍ତ ସୁକୁମାରକୁ ଧରାପକାଇଲା। ସୁକୁମାର ଗୋପନରେ ରୀଟା ଗ୍ରେଗରୀ ଆଗରେ ସବୁ କଥା ସ୍ୱୀକାର କରିଥିଲା ଏବଂ ପ୍ରତିଶ୍ରୁତି ଦେଇଥିଲା, ସେ ରୀଟାକୁ ବିବାହ କରିବ। ସେହି ଦିନଠାରୁ ରୀଟା ସୁକୁମାରର ହୋଇ ତାକୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିବାକୁ ଲାଗିଲା।

ସୁକୁମାର ଦେଖିଲା ଯେ, ମନୋହରର ବନ୍ଧୁ ଅପେକ୍ଷା ବାନ୍ଧବୀ ବେଶି ଥିଲେ ଏବଂ ସେମାନଙ୍କ ଭିତରୁ କେହି କେହି ମନୋହରର ଖୁବ୍ ଅନ୍ତରଙ୍ଗ ହେବାକୁ କାମନା କରୁଥିଲେ। ସେମାନେ ମଧ୍ୟ ଆସି ସୁକୁମାର ପାଖରେ ଭିଡ଼ ଜମେଇଲେ।

ସୁକୁମାର ମହାସଙ୍କଟରେ ପଡ଼ିଗଲା।

ଦିନ ପରେ ଦିନ ସେମାନେ ଆସି ସୁକୁମାର ସହିତ ଏପରି ସବୁ କଥାବାର୍ତ୍ତା ଆରମ୍ଭ କଲେ, ଯାହାର ପୂର୍ବାପର ସଙ୍ଗତି ରକ୍ଷା କରି ସୁକୁମାର ଉତ୍ତର ଦେଇପାରିଲା ନାହିଁ। ଫଳରେ ସେମାନେ ସନ୍ଦେହୀ ଦୃଷ୍ଟିରେ ସୁକୁମାରକୁ ଚାହିଁବାକୁ ଲାଗିଲେ।

ଏ କ୍ଷେତ୍ରରେ ଉପାୟ କ'ଣ ?

ଯଦି ସେମାନଙ୍କ ଆଖିରେ ସୁକୁମାର ଧରା ପଡ଼ିଯାଏ ! !

ଶେଷରେ ସୁକୁମାର ରୀଟାର ଶରଣାପନ୍ନ ହେଲା। ରୀଟା ହସି ହସି କହିଲା, ଏଇକଥା। ଯାହିପାଇଁ ଏତେ ମୁଣ୍ଡ ବଥାଉଚି କାହିଁକି ? ମୁଁ ସବୁ ଠିକ୍ କରିଦେବି। ଏପରି ଭାବରେ ତମ ଶତ୍ରୁ ନିପାତ କରିବି ଯେ, ଜୀବନରେ ଆଉ କେବେ ସେମାନେ ଆସି ତମକୁ ବିରକ୍ତ କରିବେ ନାହିଁ।

କଥା ସଙ୍ଗେ ସଙ୍ଗେ କାମ ଆରମ୍ଭ ହୋଇଗଲା।

ରୀଟାର ପ୍ରଥମ ଶିକାର ହେଲା ଅନୁରାଧା। ଲକ୍ଷ୍ୟଭେଦ ଯେତେ ଅବ୍ୟର୍ଥ ହେଲେ ମଧ୍ୟ, ପୋଷ୍ଟମର୍ଟମରୁ ଅନୁରାଧା ପେଟରୁ ବିଷ ବାହାରିଲା।

ସର୍ପ-ଉର୍ବଶୀ-ରାତ୍ରି

ତା'ପରେ କେତେଟା ଦନ ଅତିବାହିତ ହୋଇଛି କି ନାହିଁ, ରୀଟା ଗ୍ରେଗରୀର ଦ୍ୱିତୀୟ ଶିକାର ହେଲା, ମଧୁଛନ୍ଦା। ଏକା ପ୍ରକାରର ହତ୍ୟା। ପୋଷ୍ଟମର୍ଟମ ରିପୋର୍ଟରୁ ବାହାରିଲା ସେହି ଏକା ଧରଣର ବିଷ।

ରୀଟା ଗ୍ରେଗରୀ ସୁକୁମାରର ପଥ ନିଷ୍କଣ୍ଟକ କରିବାପାଇଁ ଏବଂ ସୁକୁମାରର ହୃଦୟ ସିଂହସନରେ ନିଜର ଆସନ ପ୍ରତିଷ୍ଠତ କରିବା ପାଇଁ ହତ୍ୟା ପରେ ହତ୍ୟା କରି ଚାଲିଥିଲା। ଯଦି ଏହି ଘଟଣାର ଅନସନ୍ଧାନ ହୋଇ ନ ଥାନ୍ତା, ତେବେ ହୁଏତ ଆହୁରି କେତୋଟି ନିରୀହ ଜୀବ ଅକାଳରେ ପ୍ରାଣ ବିସର୍ଜନ ଦେଇ ଥାଆନ୍ତେ।

ରୀଟା ଦେବୀ! ରୀଟା ଦେବୀ!! ସତ୍ୟବ୍ରତ ଚିତ୍କାର କରି ଉଠିଲେ। ଛୁଟିଗଲେ ରୀଟା ଗ୍ରେଗରୀ ପାଖକୁ। ହାତରୁ ତା'ର ଭ୍ୟାନିଟି ବ୍ୟାଗ୍‌ଟି ଛଡ଼ାଇ ଆଣି କହିଲେ: ଏ କ'ଣ କରୁଛନ୍ତି ଆପଣ ? ନିଜେ ବିଷ ଖାଇ ଆତ୍ମହତ୍ୟା କରିବାର ପ୍ରାୟସ କରନ୍ତୁନାହିଁ। ଏତେ ଅପରାଧ ପରେ ଆତ୍ମହତ୍ୟାର ଅପରାଧ ଆହୁରି ଚରମକୁ ଉଠିଯିବ।

ସତ୍ୟବ୍ରତ ରୀଟା ହାତରୁ ଭ୍ୟାନିଟି ବ୍ୟାଗଟା ଛଡ଼ାଇନେଇ ପୋଲିସ ଅଫିସରଙ୍କ ହାତକୁ ବଢ଼ାଇ ଦେଇ କହିଲେ: ଏହା ଭିତରେ ହଳାହଳ ଅଛି। ମୁଁ ଟିକିଏ ଲକ୍ଷ୍ୟଭ୍ରଷ୍ଟ ହୋଇଥିଲେ, ରୀଟା ଆଖିରେ ଧୂଳି ଫିଙ୍ଗି ବାଟଭାଙ୍ଗି ଚାଲି ଯାଇଯାଆନ୍ତା।

ସତ୍ୟବ୍ରତ ନୀରବ ହୋଇ ସିଦ୍ଧାର୍ଥଶଙ୍କର ରାୟଙ୍କ ମୁହଁକୁ ଚାହିଁଲେ। ସେ ଯେପରି ସ୍ଥାଣୁ ପାଲଟି ଯାଇଥିଲେ। ବେଳେବେଳେ ରହି ରହି ତାଙ୍କର ସ୍ଥିର ଆଖି ଦୁଇଟା ସୁକୁମାର ଆଡ଼େ ଧାଇଁ ଯାଉଥିଲା। ସୁକୁମାର କିନ୍ତୁ ଅପରାଧୀଟି ଭଳି ତଳକୁ ମୁହଁ ପୋତି ବସି ରହିଥିଲା।

ସୁଦର୍ଶନ ସୁକୁମାର ପାଖକୁ ଯାଇ ତା' ହାତ ଧରି ଟାଣିଟାଣି ସିଦ୍ଧାର୍ଥ ରାୟଙ୍କ ପାଖକୁ ଆଣିଲା।

ସୁକୁମାର ନଇଁପଡ଼ି ସିଦ୍ଧାର୍ଥ ରାୟଙ୍କ ପଦଛୁଇଁ ପଦଧୂଳି ନେଇ ମୁଣ୍ଡରେ ଲଗାଇଲା।

ସିଦ୍ଧାର୍ଥ ରାୟଙ୍କ ଆଖିରୁ ଲୋତକ ଝରିଆସିଲା।

ସେ ଦୁଇ ହାତରେ ସୁକୁମାରକୁ ଜଡ଼େଇ ଧରି ଆଲିଙ୍ଗନ କଲେ।

ରଚନାକାଳ: ୧୯୬୦




ନେଲିର କଥା ଶେଷ ହେଲାନାହିଁ । ହଠାତ୍ ଘର ଅନ୍ଧକାର ହୋଇଗଲା । ରକ-ଏନ୍-ରୋଲ୍‌ର ମିଉଜିକ୍ ବନ୍ଦ ହୋଇଗଲା ।
ନେଲି ମୁହଁରୁ ଯେପରି ଏକ ଆର୍ତ୍ତ ଚିତ୍କାର ଫୁଟି ବାହାରିଲା ଏବଂ ଶେଖର ଅନୁଭବ କଲା, ସେହି ଗଭୀର ଅନ୍ଧକାର ଭିତରେ କିଏ ଯେପରି ନେଲିକୁ ତା'ଠାରୁ ଝିଙ୍କି ଛଡ଼େଇ ନେଇଗଲା !
ଆହୁରି କୋଳାହଳ ବଢ଼ି ଉଠିଥିଲା ପର ମୁହୂର୍ତ୍ତରେ ।
ଭୟରେ ଅନ୍ୟମାନେ ଆତଙ୍କିତ ହୋଇ ଚିତ୍କାର କରି ଉଠିଥିଲେ ।
କିନ୍ତୁ ତାହା ବେଶୀ ସମୟ ସ୍ଥାୟୀ ହେଲା ନାହିଁ । ପର ମୁହୂର୍ତ୍ତରେ ହଲ୍‌ରେ ଆଲୋକ ଜଳି ଉଠିଲା ଏବଂ ପୁଣି ରକ-ଏନ୍-ରୋଲ୍‌ର ମ୍ୟୁଜିକ୍ ବାଜି ଚାଲିଲା ।
ଅନ୍ୟ ସମସ୍ତଙ୍କ ପାଖରେ ସେମାନଙ୍କ ପେଆର୍ ରହିଥିଲେ । ଅବଶ୍ୟ ଭୟରେ ସେମାନଙ୍କ ମୁହଁ ଶେତା ପଡ଼ି ଯାଇଥିଲା । କିନ୍ତୁ ନେଲି ଗଲା କୁଆଡ଼େ ?
କିଏ କ'ଣ ଜୋର୍ କରି ନେଲିକୁ ଶେଖରଠାରୁ ଟାଣି ନେଇଗଲା ?

ଫାଉଣ୍ଟେନ୍ ବାର୍‌ରେ ଶେଖର ବସିଥିଲା। ନିଭୃତରେ, ଗୋଟିଏ କୋଣକୁ। ସୁନ୍ଦର ସ୍ୱାସ୍ଥ୍ୟ। ହିପ୍‌ପୀ ଷ୍ଟାଇଲ୍। ଜୀବିକା ନିର୍ବାହ ପାଇଁ କ'ଣ କରେ କେଜାଣି! କିନ୍ତୁ ତା'ର ଗାଡ଼ି ଅଛି। ଡ୍ରାଇଭର ଅଛି। ଦାମୀ ପୋଷାକ ପିନ୍ଧେ। ଦାମୀ ଏସେନସ ଲଗାଏ।

ହବି- ଲଟାରୀ ଟିକେଟ କାଟିବା ଏବଂ ବନ୍ଧୁବାନ୍ଧବୀମାନଙ୍କୁ ସେଥିରୁ ଗୋଟିଏ ଗୋଟିଏ ଉପହାର ଦେବା।

ସେଦିନ ଫାଉଣ୍ଟେନ ବାର୍‌ରେ ସେତେ ଭିଡ଼ ନ ଥିଲା।

ରକ-ଏନ୍-ରୋଲର୍ ମ୍ୟୁଜିକ୍ ବାଜୁଥିଲା।

କେତୋଟି ପେଆର ମ୍ୟୁଜିକ୍‌ର ତାଳେତାଳେ ନୃତ୍ୟ କରୁଥିଲେ।

ଶେଖର ଗୁଡ଼ାଏ ଲଟାରୀ ଟିକେଟ କାଟି ଟେବୁଲ୍ ଉପରେ ଥୋଇ, ଗଭୀର ମନଯୋଗ ସହକାରେ ପ୍ରତିଟି ଟିକେଟରେ ଜଣ ଜଣଙ୍କର ନାଁ ଲେଖୁଥିଲା।

: ହ୍ୟାଲୋ ?

ଏକ ମଧୁର କଣ୍ଠସ୍ୱରରେ ଶେଖରର ଧ୍ୟାନ ଭଙ୍ଗ ହେଲା। ସେ ଚାହିଁଲା ସାମ୍ନାକୁ। ଗୋଟିଏ ଅସାମାନ୍ୟ ସୁନ୍ଦରୀ ତରୁଣୀ ସ୍ମିତ ହସି ଚାହିଁଛି।

ଶେଖର ବି ଚାହିଁଲା। ପଚାରିଲା: ତମ ନାଁ ?

: ନେଲି ।

ଶେଖର ଟେବୁଲ୍ ଉପରୁ ଗୋଟାଏ ଲଟାରୀ ଟିକେଟ ଉପରେ ନେଲିର ନାଁ ଲେଖି ତା' ହାତକୁ ବଢ଼ାଇ ଦେଲା।

: ମାନେ ?

: ଗୁଡ୍‌ଲକ୍ ଗିଫ୍‌ଟ।

ନେଲି ଲଟାରୀ ଟିକେଟି ଦେଖିଲା। ସେଥିରେ ଲେଖା ଥିଲା 'ପ୍ରଥମ ପୁରସ୍କାର ପାଞ୍ଚଲକ୍ଷ ଟଙ୍କା'।

ଶେଖର ମୁହଁକୁ ପୁଣି ଚାହିଁ ସ୍ମିତ ହସି କହିଲା: ଅଶେଷ ଧନ୍ୟବାଦ।

: ବସ।

ନେଲି ଶେଖର ସାମ୍‌ନାରେ ବସିଲା।

: ଡ୍ରିଙ୍କ୍?

: ନୋ, ଥ୍ୟାଙ୍କ୍‌ସ।

ଶେଖର ଆଉ ଚାରି ପାଞ୍ଚଟା ଟିକେଟରେ ନାମ ଲେଖିବାକୁ ବାକିଥିଲା। ବୋଧହୁଏ ତା'ର ଆଉ କୌଣସି ବନ୍ଧୁଙ୍କର ନାମ ମନେ ପଡୁନଥିଲା। ସେ ଆଖି ବୁଜି, ମୁହୂର୍ତ୍ତେ ଚିନ୍ତା କରି, ନେଲି ମୁହଁକୁ ଚାହିଁ କହିଲା: ତମର ଚାରୋଟି ବାନ୍ଧବୀଙ୍କର ନାମ କୁହ।

ରୋଜି, ପାମେଲା, ରାଧା, ସୌମିତ୍ରା।

ଶେଖର ଚାରୋଟି ଟିକେଟରେ ସେଇ ଚାରିଜଣଙ୍କ ନାଁ ଲେଖିସାରି ନେଲି ହାତକୁ ଚାରିଖଣ୍ଡଯାକ ଟିକେଟ ବଢ଼ାଇ ଦେଇ କହିଲା: ସେମାନଙ୍କୁ ଦେଇଦେବ।

ନେଲି ଟିକଟ ଚାରିଖଣ୍ଡ ରଖିଲା।

ତା, ପରେ....

ନେଲି ଉଠି ଠିଆହେଲା। ଇଙ୍ଗିତରେ ତା' ସହିତ ନାଚିବାକୁ କହିଲା।

ଫାଉଣ୍ଟେନ୍ ବାର୍‌ରେ ପୂର୍ବ ପରି ରକ୍-ଏନ-ରୋଲର୍ ମ୍ୟୁଜିକ୍ ବାଜି ଚାଲିଥିଲା। ହଲ୍ ଘରଟାର ମୃଦୁ ଆଲୋକ ଇନ୍ଦ୍ରଜାଲ ସୃଷ୍ଟି କରିଥିଲା। ନେଲି ଠିଆ ହୋଇଥିଲା। ଶେଖର ନେଲି ମୁହଁକୁ ଚାହିଁ ମୃଦୁ ହସୁଥିଲା।

: ପ୍ଲିଜ୍। ନେଲି ହାତ ବଢ଼େଇ ଡାକିଲା।

ଶେଖର କହିଲା: ଆଜି ନୁହେଁ, ଆଉ ଦିନେ।

ନେଲି ନଇଁପଡ଼ି ଶେଖରର ହାତ ଧରି ଟାଣି ଉଠାଇଲା।

ଦୁହେଁ ଓସ୍ତାଦ୍ ନଚାଳି। ମିଉଜିକ୍‌ର ତାଳ ସହିତ ତାଳ ମିଳେଇ ନାଚିବାକୁ ଲାଗିଲେ।

ନାଚ ଚାଲିଥିଲା। ବେଳେବେଳେ ନେଲି ଅସଂଯତ ମନେ ହେଉଥିଲା। ଶେଷରେ କାନ ପାଖକୁ ମୁହଁ ନେଇ କ'ଣ କହିବାକୁ ଯାଇ କହିପାରୁନଥିଲା। ଶେଖର ଲକ୍ଷ୍ୟ କରୁଥିଲା। ନେଲିକୁ ବିଶ୍ଳେଷଣ କରିବାକୁ ତା'ର ଇଚ୍ଛା ନ ଥିଲା। କାରଣ ହୋଟେଲ ଜୀବନରେ ଇମିତି ଅନେକ ଅପରିଚିତ ଝିଅ ଆସନ୍ତି। ପରିଚିତ ହୁଅନ୍ତି। ଦିନେ, ଦୁଇଦିନ ମାସେ ଦି'ମାସେ। ତା'ପରେ ଯେ ଯାହାର ବାଟରେ ଚାଲିଯାଆନ୍ତି।

: ଶେଖର ଡାକିଲା: ନେଲି!

: ଉଁ।

: ଏହାପରେ?

: ଅନେକ ସମୟ ତମ ସହିତ କଟାଇବାକୁ ଚାହେଁ।

: କେତେ ସମୟ ?

: କୌଣସି ନିର୍ଦ୍ଦିଷ୍ଟ ସୀମା ମୋତେ ଭଲ ଲାଗେ ନାହିଁ।

: ମୁଁ କିନ୍ତୁ ଶୃଙ୍ଖଳା ମାନି ଚଳେ।

: ତା' ହେଲେ ?

: ତମ ମୋର ବନ୍ଧୁତ୍ୱ ଟେକି ପାରିବ ନାହିଁ।

: ମୁଁ ବି ଚାହେଁନି, କିନ୍ତୁ ଆଜି ରାତିକ ପାଇଁ... ତମ ପାଖରେ ଆଜି ରାତିଟା ମୁଁ ଗପି ଗପି କଟାଇ ଦେବାକୁ ଚାହେଁ। ଏଇ ହୋଟେଲର ଏକ ନିଭୃତ କକ୍ଷରେ।

: ମୋର ପ୍ରିଚୟ ତୁମେ ଜାଣିଚ ?

: ଜାଣିବା ଦରକାର ନାହିଁ। ରାତିକର ବନ୍ଧୁତ୍ୱ। ସୂର୍ଯ୍ୟୋଦୟ ପୂର୍ବରୁ ମୁଁ ଚାଲି ଯାଇଥିବି ଅନେକ, ଅନେକ ଦୂରକୁ। ଆଉ କେବେ ହୁଏତ ତମ ସହିତ ମୋର ଦେଖାସାକ୍ଷାତର...

ନେଲିର କଥା ଶେଷ ହେଲାନାହିଁ। ହଠାତ୍ ଘର ଅନ୍ଧକାର ହୋଇଗଲା। ରକନ୍-ରୋଲର୍ ମିଉଜିକ୍ ବନ୍ଦ ହୋଇଗଲା। ନେଲି ମୁହଁରୁ ଯେପରି ଏକ ଆର୍ତ୍ତ ଚିତ୍କାର ଫୁଟି ବାହାରିଲା ଏବଂ ଶେଖର ଅନୁଭବ କଲା, ସେହି ଗଭୀର ଅନ୍ଧକାର ଭିତରେ କିଏ ଯେପରି ନେଲିକୁ ତା'ଠାରୁ ଝିଙ୍କି ଛଡ଼େଇ ନେଇଗଲା।

ଆହୁରି କୋଳାହଳ ବଢ଼ି ଉଠିଥିଲା ପର ମୁହୂର୍ତ୍ତରେ।

ଭୟରେ ଅନ୍ୟମାନେ ଆତଙ୍କିତ ହୋଇ ଚିତ୍କାର କରି ଉଠିଥିଲେ।

କିନ୍ତୁ ତାହା ବେଶୀ ସମୟ ସ୍ଥାୟୀ ହେଲା ନାହିଁ। ପର ମୁହୂର୍ତ୍ତରେ ହଲ୍‌ରେ ଆଲୋକ ଜଳି ଉଠିଲା ଏବଂ ପୁଣି ରକନ୍-ରୋଲର୍ ମ୍ୟୁଜିକ୍ ବାଜି ଚାଲିଲା।

ଅନ୍ୟ ସମସ୍ତଙ୍କ ପାଖରେ ସେମାନଙ୍କ ପେଆର ରହିଥିଲେ। ଅବଶ୍ୟ ଭୟରେ ସେମାନଙ୍କ ମୁହଁ ଶେତା ପଡ଼ି ଯାଇଥିଲା। କିନ୍ତୁ ନେଲି ଗଲା କୁଆଡ଼େ ?

କିଏ କଣ ଜୋର୍ କରି ନେଲିକୁ ଶେଖରଠାରୁ ଟାଣି ନେଇଗଲା ?

ଶେଖର ଚିନ୍ତିତ ମନରେ ଫେରିଆସିଲା ତା'ର ପୂର୍ବ ସ୍ଥାନକୁ।



ପୂର୍ବ ସ୍ଥାନରେ ଟେବୁଲ୍ ଉପରେ ଶେଖରର ଆଟାଚିଟା ସେହିପରି ଥୁଆ ହୋଇଥିଲା। ସେ ଚେଆର ଉପରେ ବସି ପଡ଼ି ସ୍ତବ୍ଧ ହୋଇ ଚିନ୍ତା କରୁଥିଲା। ଘଟଣାଟା ଅଘଟଣ ନୁହେଁ ତ।

: ମିଷ୍ଟର ଶେଖର!

ଶେଖର ବୁଲି ଅନେଇଲା। ବାଁ ପାଖରେ ଜଣେ ଭଦ୍ରଲୋକ ଠିଆହୋଇ ତା' ଆଡ଼େ କିପରି ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଛନ୍ତି।

ଶେଖର ଭଦ୍ରଲୋକଙ୍କୁ ଚିହ୍ନି ପାରିଲା ନାହିଁ। ବୟସରେ ସେ ଅଳ୍ପ ବଡ଼ ହେବେ। ବେଶ ପୋଷାକ ସବୁ ଆଧୁନିକ। ଲମ୍ଵା କଲି ରଖିଛନ୍ତି। ନାକ ଆଗରେ ଗୋଟିଏ ତିଳଚିହ୍ନ।

ଭଦ୍ରଲୋକ ଆଉଟିକେ ଆଗେଇ ଆସି, ଶେଖରର ସାମନା ଚେଆର ଉପରେ ବସି ପଡ୍ତୁ ପଡ୍ତୁ କହିଲେ: ନେଲି ସହିତ ଆପଣଙ୍କର କେତେଦିନର ପରିଚୟ?

: ମାନେ?

: ନେଲି, ମୁଁ ନେଲି କଥା କହୁଛି। ତାହା ସହିତ ଆପଣ କିଛିସମୟ ପୂର୍ବରୁ ଡାନ୍‌ସ କରୁଥିଲେ!

: କିନ୍ତୁ ଆପଣ...ଆପଣଙ୍କୁ ମୁଁ ତ ଚିହ୍ନିପାରିଲି ନାହିଁ।

ଲୋକଟା ହସିଲା। କହିଲା: ମୋ ପରିଚୟ ପାଇଲେ ଆପଣ ସୁଖୀ ହୋଇପାରିବେ ନାହିଁ। ମୋ ନାଁ ଇନ୍ଦ୍ରଜିତ୍ ରାୟ। ଜଣେ ସାମ୍ବାଦିକ! ନେଲିକୁ ମୁଁ ଜାଣେ, ତା' ସହିତ ମୋର ଗୋଟାଏ ଇଣ୍ଟରଭ୍ୟୁ ଥିଲା! ଆଜି, ଏଇ ହୋଟେଲରେ, ଅବଶ୍ୟ ଆଉ ଘଣ୍ଟାକ ପରେ।

: ଭଲ କଥା। ଶେଖର କହିଲା, ଘଣ୍ଟାଏ ପରେ ଆପଣ ନେଲିଠାରୁ ଇଣ୍ଟରଭ୍ୟୁ ନେଇ ଚାଲିଯିବେ। ସତ କହିବାକୁ ଗଲେ ନେଲି ସହିତ ମୋର କୌଣସି ସମ୍ପର୍କ ନାହିଁ। ଏଇଠି ଏଇ ଅଧଘଣ୍ଟା ପୂର୍ବରୁ ପରିଚୟ।

ଇନ୍ଦ୍ରଜିତ ରାୟ କହିଲେ: ସେଇକଥା ଆପଣଙ୍କ ଇଣ୍ଟରଭ୍ୟୁରେ ଆପଣ କହିବେ। ଆପଣ ଯାହା କହିବେ 'ଇଷ୍ଟର୍ଣ୍ଣ ଏକ୍‌ସପ୍ରେସ୍'ରେ ମୁଁ ସେଇଆ ଛାପିବି।

: ମୁଁ କ'ଣ କହିବି ? କାହିଁକି କହିବି ?

ଶେଖର ଯେପରି ବିରକ୍ତ ହୋଇପଡ଼ିଲା। ସେ ଉଠି ଠିଆ ହୋଇପଡ଼ିଲା। ରୁକ୍ଷ କଣ୍ଠରେ କହିଲା; ବର୍ତ୍ତମାନ ମୋର ସମୟ ନାହିଁ ମିଷ୍ଟର ରାୟ। ମୋର କେତେକ ଜରୁରୀ କାମ ଅଛି।

ଶେଖର ତା'ର ଆଟାଚି କେସ୍‌ଟି ଟେବୁଲ୍ ଉପରୁ ଉଠାଇ ଆଗେଇ ଯାଉଥିଲା। ଇନ୍ଦ୍ରଜିତ୍ ରାୟ ପଛେ ପଛେ ଉଠି ଯାଇ କହିଲେ: ଆପଣ ମୋ ଉପରେ ରାଗନ୍ତୁ ନାହିଁ ମିଷ୍ଟର ଶେଖର। ମୁଁ ଆପଣଙ୍କର ମଙ୍ଗଳ ପାଇଁ କହୁଛି। ନେଲି ଗୋଟାଏ ଇଣ୍ଟରନ୍ୟାସନାଲ ସ୍ମଗଲର୍ ଗ୍ୟାଙ୍ଗର ଉପନାୟିକା। ତେଣୁ....

ଇନ୍ଦ୍ରଜିତ୍ ରାୟଙ୍କ କଥା ଶେଷ ହେଲା ନାହିଁ। ଶେଖର ସ୍ତବ୍ଧ ହୋଇ ସେଇଠି ଠିଆ ହୋଇପଡ଼ିଲା। ଅସ୍ପଷ୍ଟ କଣ୍ଠରେ କହିଲା, : ନେଲି ତା'ହେଲେ...

: ହଁ ମିଷ୍ଟର ଶେଖର, ଆପଣ ମୋ କଥା ବିଶ୍ୱାସ କରନ୍ତୁ। ଏଇ କେବିନ୍‌କୁ ଆସନ୍ତୁ। ତା' ସମ୍ବନ୍ଧରେ ବହୁ ଦୁଃସାହସିକ କାହାଣୀ ମୁଁ ଆପଣଙ୍କୁ କହିବି।

ଇନ୍ଦ୍ରଜିତ୍ ରାୟ ଆଗେ ଆଗେ ଏବଂ ଶେଖର ପଛେ ପଛେ ଯାଇ ଗୋଟିଏ କେବିନ୍ ମଧ୍ୟରେ ପ୍ରବେଶ କଲେ। କେବିନ୍ ଦରଜା ଖୋଲି ଭିତରେ ପଶିବା ମାତ୍ରକେ ଗୋଟାଏ ଫ୍ଲାସ୍ ବଲ୍‌ବ ଜଳି ଉଠିଲା। ଶେଖର ସ୍ତବ୍ଧ ହୋଇ ଠିଆ ହୋଇଗଲା। ଯେଉଁ ଭଦ୍ରଲୋକ ଶେଖରର ଫଟୋ ଉଠାଇଲେ, ଇନ୍ଦ୍ରଜିତ୍ ରାୟ ତା' ଆଡ଼କୁ ଅଙ୍ଗୁଳି ଦେଖାଇ କହିଲେ: ଇଏ ଆମର ପ୍ରେସ୍ ଫଟୋଗ୍ରାଫର। ଆପଣଙ୍କ ଇଣ୍ଟରଭ୍ୟୁ ସହିତ ଫଟୋଟିଏ ଛାପିବାକୁ ହେବ। ତେଣୁ ଆପଣଙ୍କର ବ୍ୟସ୍ତ ହେବାର କିଛି ନାହିଁ।

ଫଟୋଗ୍ରାଫର ଜଣକ ମୃଦୁ ହସି, ଶେଖରକୁ ନମସ୍କାର କରି କେବିନ୍‌ରୁ ବାହାରିଗଲେ।

ଇନ୍ଦ୍ରଜିତ ରାୟ ଶେଖରକୁ ବସିବା ପାଇଁ ଚେଆର ଦେଖାଇ କହିଲେ: କ୍ଷମା କରିବେ ଶେଖର, ମୁଁ ଆପଣଙ୍କୁ ଚିହ୍ନି ନାହିଁ, ଆପଣ ପେଶା ସମ୍ବନ୍ଧରେ ମୋତେ କିଛି ଜଣାନାହିଁ। କିନ୍ତୁ କିଛି ସମୟ ପୂର୍ବରୁ ମୁଁ ଯେତେବେଳେ ଏଇ ହୋଟେଲରେ ପ୍ରବେଶ କଲି, ଦେଖିଲି ଆପଣ ନେଲି ସହିତ ବସି କଥାବର୍ତ୍ତା କରୁଛନ୍ତି। ତା'ପରେ ମୁଁ ଲକ୍ଷ୍ୟ କଲି, ଆପଣମାନେ

ଫ୍ଲୋର୍‌କୁ ନାଚିବାକୁ ଗଲେ ଏବଂ ତା'ପରେ ମୁଁ ଦେଖିଲି ନେଲିକୁ ଛାଡ଼ି ଆପଣ ଏକା ଫେରିଆସିଚନ୍ତି। ତେଣୁ ଆପଣଙ୍କ ପ୍ରତି ମୋର ସନ୍ଦେହ ଜନ୍ମିବା ଅତି ସ୍ୱାଭାବିକ।

: ସନ୍ଦେହ? ମାନେ କେଉଁ ପ୍ରକାର ସନ୍ଦେହର କଥା ଆପଣ କହୁଛନ୍ତି?

ଶେଖର ସହଜ କଣ୍ଠରେ ପଚାରିଲା।

: ଆମର ସନ୍ଦେହ ଗୋଟିଏ ପ୍ରକାର ମିଷ୍ଟର ଶେଖର। ପ୍ରଥମେ ମୁଁ ମୋ ସମ୍ବନ୍ଧରେ ଟିକିଏ କହିସାରେ। ମୁଁ ହେଉଛି ଇଷ୍ଟର୍ଣ୍ଣ ଏକ୍ସପ୍ରେସର ଜଣେ ସାମ୍ବାଦିକ। ଆମ କାଗଜରେ କ୍ରାଇମ୍ ସେକ୍‌ସନଟି ମୋର ତତ୍ତ୍ୱାବଧାନରେ ପ୍ରକାଶିତ୍ ହୁଏ। ଏଇ ବିଭାଗରେ ଆମ ଦେଶରେ ଅପରାଧ ଓ ଅପରାଧୀ ସମ୍ବନ୍ଧରେ ବହୁ ତଥ୍ୟ ପ୍ରକାଶିତ କରିଥାଉ। ଏଥିପାଇଁ ଆମର ବିଭିନ୍ନ ସ୍ଥାନରେ ପ୍ରତିନିଧି ଅଛନ୍ତି। କିଛି କିଛି ମର୍ଡର କେସ୍‌ର ତଦନ୍ତ ମଧ୍ୟ ଆମେ କରିଥାଉ ଏବଂ ଆମର ମତାମତ ଆମ କାଗଜ ମାର୍ଫତରେ ପ୍ରକାଶ କରିଥାଉ। ବର୍ତ୍ତମାନ ମୁଁ ଯେଉଁ କେସ୍‌ଟିକୁ ଅନୁସନ୍ଧାନ କରୁଛି, ତାହା ହେଉଛି ଗୋଟିଏ ସ୍ମଗଲିଂ କେସ୍। ଯେଉଁ କେସ୍ ସହିତ ଦେଶ ବିଦେଶରେ ବହୁ ଅପରାଧୀ ଜଡ଼ିତ ଏବଂ ଆମ ଖାତାରେ ଆଜିଠାରୁ ସେଇ ଅପରାଧୀ ତାଲିକାରେ ଆପଣଙ୍କ ନାଁଟି ଉଠିଲା। ଏଥର ବୁଝିପାରିଲେ?

ଶେଖର ଟିକିଏ ଚିନ୍ତିତ ହୋଇପଡ଼ିଥିଲା। କିନ୍ତୁ ତା' ମୁହଁରେ ବିଚଳିତ ଭାବ ଫୁଟି ନଥିଲା। ସେ ପୂର୍ବ ପରି ଶାନ୍ତ ଓ ସହଜ କଣ୍ଠରେ କହିଲା: ବୁଝିଲି ଏବଂ ଆହୁରି ବୁଝିଲି ଆପଣ ଏକ ଭୁଲ୍ ପଥରେ ଆଗେଇଛନ୍ତି। ଯାହାହେଉ, ଏଥର ମୋତେ ଛୁଟି ଦିଅନ୍ତୁ।

:ମୁଁ କହିଛି ଯେ, ଆପଣଙ୍କ ସହିତ ଗୋଟାଏ ଇଣ୍ଟରଭ୍ୟୁ ହେବ।

: ହେଉ, ହବ। ଯାହାଠାରୁ ଆଗ ନେବାର ତା'ଠାରୁ ନେଇ ସାରନ୍ତୁ। ମୋର ଏଇ କାର୍ଡ଼ଟା ରଖନ୍ତୁ, ମୋତେ ଯାଇ ଏଇ ଠିକଣାରେ ଦେଖା କରିବେ। ମୁଁ ଆପଣଙ୍କୁ ଇଣ୍ଟରଭ୍ୟୁ ଦେବି। ଶେଖର ପକେଟରୁ ଖଣ୍ଡିଏ କାର୍ଡ଼ ବାହାର କରି ବଢ଼ାଇଦେଲା।

ଇନ୍ଦ୍ରଜିତ୍ ରାୟ କାର୍ଡ଼ଟି ଉପରେ ଆଖି ବୁଲାଇ ନେଇ କହିଲେ, : ମୁଁ ପରେ ଆପଣଙ୍କ ସହିତ ଏଇ ଠିକଣାରେ ଦେଖା କରିବି। କିନ୍ତୁ ବର୍ତ୍ତମାନ ମୋର କେତୋଟି ପ୍ରଶ୍ନର ଉତ୍ତର ଦେଇଯିବାକୁ ହେବ।

: ପଚାରନ୍ତୁ।

ଶେଖର କଣ୍ଠରେ ଉତ୍ତେଜନା ଫୁଟି ଉଠିଥିଲା।

: ନେଲିକୁ ଆପଣ କେବେଠାରୁ ଚିହ୍ନନ୍ତି?

: ଏଇ ଘଣ୍ଟାକ ଆଗରୁ ତା' ସହିତ ମୋର ପରିଚୟ ହୋଇଥିଲା।

: ଘଣ୍ଟାକ ଭିତରେ ଆପଣମାନଙ୍କ ମଧ୍ୟରେ ଏତେ ଅନ୍ତରଙ୍ଗତା ସୃଷ୍ଟି ହେଲା କିପରି?

: ସେ ଆମର ବ୍ୟକ୍ତିଗତ କଥା।

: ଆପଣ ନେଲିର ଅନ୍ୟ କେତେଜଣ ବନ୍ଧୁଙ୍କୁ ବା ତାର ପରିଚିତ ଲୋକଙ୍କୁ ଚିହ୍ନନ୍ତି ?

: ମୋ ସହିତ ନେଲିର ପରିଚୟ ହେବା ପରଠାରୁ ନେଲି ସହିତ ମୁଁ କାହାରିକୁ ଦେଖିନାହିଁ ।

: ମୋର ସନ୍ଦେହ ହେଉଛି, ନେଲି ସହିତ ଆପଣଙ୍କର ପୂର୍ବରୁ ପରିଚୟ ଥିଲା ।

: ଆପଣ ଯଦି ସନ୍ଦେହ କରୁଛନ୍ତି ତା'ହେଲେ ଧରି ନିଅନ୍ତୁ ଥିଲା ।

: ନେଲି ସହିତ ଆଜି ଆପଣ କ'ଣ କଥାବାର୍ତ୍ତା ହେଲେ ?

: ସେ କଥା ଗୁଡ଼ିକ ମଧ୍ୟ ବ୍ୟକ୍ତିଗତ ।

: କିନ୍ତୁ ମିଷ୍ଟର ଶେଖର ଆପଣ ଜାଣନ୍ତି ନାହିଁ, ଆପଣ ମିଛ କଥା କହି କିପରି ଅପରାଧ କରୁଛନ୍ତି । ନେଲି ସଂପୃକ୍ତ ଥିବା ସେଇ ଇଣ୍ଟରନ୍ୟାସନାଲ ଗ୍ୟାଙ୍ଗଟିକୁ ଧରିବା ପାଇଁ ଭାରତ ସରକାରଙ୍କର ଇଣ୍ଟେଲିଜେନ୍‌ସୀ ବିଭାଗ ସଜାଗ ଦୃଷ୍ଟି ରଖିଛି । ଆପଣ ମୋତେ ଫାଙ୍କି ଦେଇ ଚାଲିଗଲେ ବି ସେମାନଙ୍କୁ ଫାଙ୍କି ଦେଇପାରିବେ ନାହିଁ ।

ଶେଖର ହସିଲା ।

ହସି ହସି କଣ କହିବାକୁ ଯାଉଥିଲା, କିଏ ଜଣେ କେବିନ୍‌ର ଦରଜା ଖୋଲିବାର ଶବ୍ଦ ହେଲା । ସଙ୍ଗେ ସଙ୍ଗେ ଇନ୍ଦ୍ରଜିତ ରାୟ ଉଠି ଠିଆ ହୋଇପଡ଼ି ସେଇଆଡ଼େ ଆଗେଇ ଗଲେ । ଅଳ୍ପ ସମୟ ପରେ ପୁଣି ଫେରିଆସିଲେ ଶେଖର ପାଖକୁ । ସ୍ତବ୍ଧ ହୋଇ କିଛି ସମୟ ଶେଖର ମୁହଁକୁ ଚାହିଁ ରହି କହିଲେ: ହୁଁ, ଆପଣ ତା'ହେଲେ ସତକଥା କହିଲେ ନାହିଁ ।

ଶେଖର ବି ତୀକ୍ଷ୍ଣ ଦୃଷ୍ଟିରେ କିଛି ସମୟ ଇନ୍ଦ୍ରଜିତ ରାୟ ମୁହଁକୁ ଚାହିଁ କହିଲା: ଯେଉଁମାନେ ମଣିଷକୁ ସବୁବେଳେ ଅବିଶ୍ୱାସ କରିଆସିଛନ୍ତି, ସେମାନେ କେବେ କାହାରିକୁ ବିଶ୍ୱାସ କରିବେ ନାହିଁ । ତେଣୁ ଆପଣଙ୍କର ମୋର ଆଉ ବନ୍ଧୁତ୍ୱ ପଟିବ ନାହିଁ । ମୁଁ ଉଠୁଛି । ମୋର ଅନେକ କାମ ଅଛି ।

ଶେଖର ଆଟାଚି କେସ୍‌ଟି ଧରି ଉଠି ହେଉଥିଲା ।

ଇନ୍ଦ୍ରଜିତ ରାୟ ତା ଆଟାଚି କେସ୍‌ଟି ଧରି ପକାଇ କହିଲେ: ଆପଣ ବର୍ତ୍ତମାନ ବସନ୍ତୁ ମିଃ ଶେଖର । ଏଇ କେବିନ୍ ବାହାରେ ସମଗ୍ର ହୋଟେଲ ଭିତରେ ଏଇ ମୁହୂର୍ତ୍ତରେ କ'ଣ ଘଟୁଛି ଆପଣ ଜାଣିନାହାନ୍ତି ।

: ମାନେ ?

: ଇଣ୍ଟେଲିଜେନ୍‌ସି ବ୍ରାଞ୍ଚର ଲୋକେ ଭର୍ତ୍ତି ହୋଇଯାଇଛନ୍ତି । ଯାହାକୁ ସନ୍ଦେହ ହେଉଛି ସର୍ଚ୍ଚ କରୁଛନ୍ତି ।

: କାହିଁକି ?

: ଆପଣଙ୍କ ବାନ୍ଧବୀଟି ଖସି ଯାଇଛି।

: ମାନେ ?

: ଆପଣ ସବୁ ଜାଣି ବି ଏପରି ବୋକା ସାଜନ୍ତୁ ନାହିଁ ମିଷ୍ଟର ଶେଖର। ମୋର ଖାଲି ଇଣ୍ଟରେଷ୍ଟ ହେଉଛି, ଘଟଣାଟା ପୋଲିସ ଆବିଷ୍କାର କରିବା ପୂର୍ବରୁ, ମୁଁ ଇଷ୍ଟର୍ଣ୍ଣ ଏକ୍ସପ୍ରେସରେ ସେଇଟା ଯେପରି ଫ୍ଲାସ୍ କରିପାରେ। ତେଣୁ ଭାବୁଚି ଆପଣଙ୍କ ଆଟାଚିଟା ପୋଲିସ୍ ସର୍ଚ୍ଚ କରିବା ପୂର୍ବରୁ......

ଇନ୍ଦ୍ରଜିତ୍ ରାୟ କଥା ଅସମାପ୍ତ ରଖି ଶେଖର ମୁହଁକୁ ଅନେଇ ରହିଲେ।

ଶେଖରର ସମଗ୍ର ଶରୀରଟା ମୁହୂର୍ତ୍ତକ ପାଇଁ ଶିହରି ଉଠିଲା।

ସେ ବୁଝିପାରିଲା ଇନ୍ଦ୍ରଜିତ୍ ରାୟ ତା'ର ଆଟାଚି କେସ୍‌ଟା ସର୍ଚ୍ଚ କରିବାକୁ ଚାହୁଁଛି। କିନ୍ତୁ ତା'ର କି ଅଧିକାର ଅଛି ଆଟାଚି କେସ୍ ସର୍ଚ୍ଚ କରିବାରେ। ତା'ଛଡ଼ା ଇନ୍ଦ୍ରଜିତ୍ ରାୟ ଯେଉଁ ଭାବରେ କଥାବାର୍ତ୍ତା କରୁଛି, ମନେ ହେଉଛି ତା' ଆଖିରେ ଶେଖର ଯେପରି ଗୋଟାଏ ମସ୍ତବଡ଼ ଅପରାଧୀ। ଇନ୍ଦ୍ରଜିତ୍ ରାୟ ସହିତ ତା'ର ଜଣା ନାହିଁ, ଶୁଣା ନାହିଁ, ଜଣେ ଭଦ୍ରଲୋକ ପ୍ରତି ଏପରି ସନ୍ଦେହ କରିବା କ'ଣ ଉଚିତ୍ ହେଉଛି ? ଶେଖର ବା ତା' ପାଖରେ ନତି ସ୍ୱୀକାର କରିବ କାହିଁକି ?

ଶେଖରର ହାତଟା ଧୀରେ ଧୀରେ ଟେବୁଲ୍ ଉପରେ ଥିବା ଆଟାଚି କେସ୍‌ଟା ଉପରେ ଦୃଢ଼ ହୋଇଆସୁଥିଲା।

ଇନ୍ଦ୍ରଜିତ୍ ରାୟ ତା' ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇ ରହିଥିଲେ।

ନୀରବରେ, ଏକ ଉତ୍ତେଜନା ଭିତରେ ଦୁଇଜଣ ଯାକ ଠିଆ ହୋଇଥିଲେ। କିଛିସମୟ ପରେ ଇନ୍ଦ୍ରଜିତ୍ ରାୟ ମୁହଁ ଖୋଲିଲେ।

: ମିଷ୍ଟର ଶେଖର।

: ଇଏସ୍।

: ମୋତେ ଆପଣ ବିଶ୍ୱାସ କରନ୍ତୁ। ମୁଁ ଆପଣଙ୍କୁ ବିପଦରେ ପକାଇବି ନାହିଁ । ଦରକାର ହେଲେ ରାଜସାକ୍ଷୀ କରି ଠିଆ କରାଇଦେବି।

ଇନ୍ଦ୍ରଜିତ୍ ରାୟର କଥା ଶୁଣି ଶେଖରର ସମଗ୍ର ଶରୀର ରୋମାଞ୍ଚିତ ହୋଇଉଠିଲା। ନାକରୁ ଖରଶ୍ୱାସ ଛୁଟିଥିଲା। ସେ ଆତ୍ମସମ୍ବରଣ କରି କହିଲା: ମୋତେ ତା'ହେଲେ କ'ଣ କରିବାକୁ ହେବ ?

ଇନ୍ଦ୍ରଜିତ ରାୟଙ୍କ ଆଖିରେ ଆଶାର ଦୀପ୍ତି ଫୁଟି ଉଠିଲା। ସେ ଉତ୍ସାହିତ ହୋଇ କହିଲେ: ନେଲି ଆପଣଙ୍କୁ ଯେଉଁ ମୂଲ୍ୟବାନ ପଦାର୍ଥଟି ଦେଇ ଯାଇଛି, ସେଇ ପଦାର୍ଥଟି ମୋତେ ଖାଲି ଥରେ ଦେଖାଇ ଦିଅନ୍ତୁ। ମୁଁ ଆପଣଙ୍କର ଅନିଷ୍ଟ କରିବି ନାହିଁ।

ଧୀରେ ଧୀରେ ଶେଖରର ସର୍ବାଙ୍ଗ କମ୍ପି ଉଠୁଥିଲା । ସେ କୌଣସି ପ୍ରକାର ଆତ୍ମସମ୍ବରଣ କରି ଠିଆ ହୋଇଥିଲା । କିନ୍ତୁ ଯେତେବେଳେ ସେ ଦେଖିଲା ଇନ୍ଦ୍ରଜିତ୍ ରାୟର କମ୍ପିତ ହାତଟା ତାର ଆଟାଚି କେସ୍‌ଟା ଆଡ଼େ ଧୀରେ ଧୀରେ ଲମ୍ବି ଆସୁଛି, ସେତେବେଳେ ସେ ଆଉ ଆତ୍ମସମ୍ବରଣ କରିପାରିଲା ନାହିଁ । ଶେଖରର ବଜ୍ରମୁଷ୍ଟି ଆଘାତରେ ଇନ୍ଦ୍ରଜିତ୍ ରାୟ ତଳେ ପଡ଼ିଗଲେ । କେଇଟି ମୁହୂର୍ତ୍ତ ପାଇଁ ତାଙ୍କର ଚେତା ହଜିଗଲା ।

ଶେଖର ସେଠାରେ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି, କେବିନର ଦରଜା ଖୋଲି, ଆଟାଚି କେସ୍‌ଟି ହାତରେ ଧରି, ସହଜ ସ୍ୱଚ୍ଛନ୍ଦ ଗତିରେ ବାହାରି ଚାଲିଗଲା । ହଲ୍ ଘରର ସାମାନ୍ୟ କୋଳାହଳ ତା' କାନରେ ବାଜୁଥିଲା ।

କିନ୍ତୁ ଶେଖର କେଉଁଆଡ଼େ କାନ ନ ଦେଇ, କେଉଁଆଡ଼େ ନ ଚାହିଁ ହୋଟେଲରୁ ବାହାରି ସିଧା ତା' ଗନ୍ତବ୍ୟ ପଥରେ ଆଗେଇଗଲା ।



ଶେଖରର ଗାଡ଼ିଟା ଯେତେବେଳେ ଯାଇ ଡୋଭର ରୋଡ଼ରେ ପହଞ୍ଚିଲା, ସେ ଦେଖିଲା ତାଙ୍କ ଘର ସାମ୍ନା ମୋଡ଼ରେ ଗୋଟାଏ କଳା ପୋଲିସ୍ ଭ୍ୟାନ ଥୁଆ ହୋଇଛି ।

ଶେଖର ସେଠି ଆଉ ଠିଆହେଲା ନାହିଁ । ଗାଡ଼ି ଚଳାଇ ପୋଲିସ ଭ୍ୟାନ ପାଖ ଦେଇ ସେ ବାହାରି ଚାଲିଆସିଲା । ତା'ର ମନରେ ଭୟ ଜନ୍ମି ଯାଇଥିଲା । ସନ୍ଦେହ ହୋଇଥିଲା ହୁଏତ ପୋଲିସ୍ ଯା ଭିତରେ ତା'ଠିକଣା ପାଇ, ଖୋଜିବାକୁ ଘରଯାଏ ଛୁଟି ଆସିଛି । କିନ୍ତୁ ସେ ବୁଝିପାରୁନଥିଲା ପ୍ରକୃତ ଘଟଣାଟା କ'ଣ । ନେଲି କ'ଣ ସତରେ ତାକୁ ବିପଦରେ ପକାଇ ଅଦୃଶ୍ୟ ହୋଇଗଲା ?

ଶେଖର ଭାବି ପାରୁନଥିଲା ଏହାପରେ ତା'ର କର୍ତ୍ତବ୍ୟ କ'ଣ ? କେବଳ ଗାଡ଼ିର ଷ୍ଟିଅରିଂ ଘୂରେଇ ଶେଖର ରାସ୍ତା ରାସ୍ତା ବୁଲୁଥିଲା ।

ହଠାତ୍ ତା'ର ମନେପଡ଼ିଲା ଇନ୍ଦ୍ରଜିତ୍ ରାୟ କଥା । ଏହା ମଧ୍ୟରେ ସେ ହୁଏତ ଇଷ୍ଟର୍ଣ୍ଣ ଏକ୍ସପ୍ରେସ୍ ଅଫିସକୁ ଫେରିଯାଇଥିବ । ସେ ଲୋକଟାକୁ ଏପରି ଘୁଷି ମାରିବା ଠିକ୍ ହୋଇନାହିଁ । ହୁଏତ କାଲି ସକାଳୁ ଶେଖର ଦେଖିବ ତା'ର ଫଟୋ ସହ ଏକ କାଳ୍ପନିକ ବିବରଣୀ ପ୍ରକାଶ ପାଇଛି ଇଷ୍ଟର୍ଣ୍ଣ ଏକ୍ସପ୍ରେସର ପ୍ରଥମ ପୃଷ୍ଠାରେ । ଦେଶସାରା ଶେଖରକୁ ଏକ ନୂଆ ରୂପରେ କଳ୍ପନା କରିବେ । ସେ ଗୋଟାଏ ଇଣ୍ଟରନ୍ୟାସନାଲ ସ୍ମଗଲର ।

ଶେଖର ଗାଡ଼ିଟା ପ୍ରଚଣ୍ଡ ଭାବରେ ଚିତ୍କାର କରି ଠିଆ ହୋଇଗଲା । ଶେଖର ଯଦି ପ୍ରାଣପଣେ ବ୍ରେକ୍‌ଟାକୁ ଚାପି ଧରି ନଥାନ୍ତା, ଏଇ ମୁହୂର୍ତ୍ତରେ ଗୋଟାଏ ଆକ୍ସିଡେଣ୍ଟ ହୋଇଯାଇଥାନ୍ତା ।

ଶେଖର ଦେଖିଲା ପାର୍କଷ୍ଟ୍ରିଟ୍ ମୋଡ଼ ପର୍ଯ୍ୟନ୍ତ ସେ ଆସିଯାଇଛି। ଏହାପରେ ସେ ଯିବ କେଉଁଠିକି ?

କାଲି ସକାଳୁ ଯଦି ଇଷ୍ଟର୍ଣ୍ଣ ଏକ୍ସପ୍ରେସରେ ପ୍ରକୃତରେ ଇନ୍ଦ୍ରଜିତ୍ ରାୟ ତା' ଫଟୋ ସହ ଏକ କାଳ୍ପନିକ ସମ୍ବାଦ ଫ୍ଲାସ୍ କରେ, ଦେଶର ଅସଂଖ୍ୟ ପାଠକ ପାଠିକାମାନଙ୍କ ପରି ଚିତ୍ରା ବି ସେ ସମ୍ବାଦଟି ପଢ଼ିବ। ପଢ଼ିସାରି ଶେଖର ପ୍ରତି ତା'ର କି ଧାରଣା ହେବ ?

ନା, ବରଂ ଚିତ୍ରା ଖବରକାଗଜ ମାଧ୍ୟମରେ ଏ ସମ୍ବାଦ ପଢ଼ିବା ପୂର୍ବରୁ ସେ ନିଜେ ଯାଇ ଚିତ୍ରା ସହିତ ଦେଖା କରି ସବୁ ଖୋଲି କରି କହି ରଖିବା ଉଚିତ୍। ଚିତ୍ରା ତା'ର ପ୍ରିୟବାନ୍ଧବୀ। ତା' ମନରେ କୌଣସି ସନ୍ଦେହର ମଞ୍ଜି ନ ପୋତିବା ହିଁ ଭଲ।

ଶେଖର ହାତଘଡ଼ିକୁ ଚାହିଁଲା।

ରାତି ନଅଟା ବାଜୁଚି।

ରାତିଟା ସେତେ ବେଶୀ ହୋଇନାହିଁ। ଶେଖର ଗାଡ଼ି ମୁହାଁଇଲା ଅଲିପୁର ଆଡ଼କୁ।

ଚିତ୍ରା ରୁହେ ନିଉ ଅଲିପୁରରେ। ଚିତ୍ରାର ବାପା ଜଣେ ଖ୍ୟାତନାମା ଆଇନଜୀବୀ। ଚିତ୍ରା ତାଙ୍କର ଏକମାତ୍ର ସନ୍ତାନ। ଚିତ୍ରାର ମା ନାହାନ୍ତି। କେତେଜଣ ଚାକର ଚାକରାଣୀଙ୍କ ସହ ଚିତ୍ରା ରହେ ତା' ବାପାଙ୍କ ସହିତ।

ଶେଖର ଗାଡ଼ି ଯାଇ ଠିଆ ହେଲା ନିର୍ଦ୍ଦିଷ୍ଟ ସ୍ଥାନରେ।

ଶେଖର ଗାଡ଼ିରୁ ଓହ୍ଲାଇ ଦେଖିଲା ଚିତ୍ରା ବାରଣ୍ଡାରେ ଠିଆ ହୋଇଛି। ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇଥିଲା ଚିତ୍ରା। ସେଇଠୁ ଥାଇ ପଚାରିଲା: ଏତେ ରାତିରେ ଶେଖର ?

ଶେଖର ଚିତ୍ରା ପ୍ରଶ୍ନର କିଛି ଉତ୍ତର ନ ଦେଇ ସିଧା ଆଗେଇ ଗଲା ଦରଜା ଆଡ଼େ। ଭିତରେ ଚେମ୍ବର ପାର ହେଲା ବେଳକୁ ଚିତ୍ରା ଆସି ଯାଇଥିଲା ସାମ୍ନାକୁ। ଶେଖର ମୁହଁକୁ ଚାହିଁ ଚିତ୍ରା ଆଶ୍ଚର୍ଯ୍ୟ ହୋଇ ପୁଣି ଥରେ ପଚାରିଲା: ତମର ହୋଇଛି କ'ଣ ଶେଖର ?

: ବାପା ଶୋଇଲେଣି ?

ଶେଖରର ପ୍ରଥମ ପ୍ରଶ୍ନ।

: ନା, ସେ ବାହାରକୁ ଯାଇଛନ୍ତି। ନିମନ୍ତ୍ରଣରେ। ଫେରିବାକୁ ଡେରିହେବ।

ଶେଖର ଆଉ ଆଗକୁ ପାଦ ନ ବଢ଼ାଇ ଚେମ୍ବର ଭିତରେ ପଶି ଇଜି ଚେଆର ଉପରେ ଲମ୍ବ ହୋଇ ଶୋଇପଡ଼ିଲା। ଯେପରି ବିରାଟ ଦୁର୍ଘଟଣା ସେ ଘଟାଇ ଆସିଛି।

ଚିତ୍ରା ଫ୍ୟାନଟା ଫୁଲ୍ ସ୍ପିଡ୍‌ରେ ଚଳାଇ ଦେଇ କହିଲା: ଘଟଣା କ'ଣ ଶେଖର ? ତମେ ଏପରି ଅସ୍ୱାଭାବିକ ମନେ ହେଉଛ ଯେ....

: କହିବି, ସବୁ କହିବି ଚିତ୍ରା। କହିବା ପାଇଁ ତ ଏଠାକୁ ଛୁଟି ଆସିଛି। ତମେ ମତେ କପେ ଗରମ କଫି ଦେଇପାରିବ ?

: ନିଶ୍ଚୟ ନିଶ୍ଚୟ।

ଚିତ୍ରା ସଙ୍ଗେ ସଙ୍ଗେ ରୁମ୍‌ରୁ ବାହାରି ଚାଲିଗଲା।

ଶେଖର ସାମ୍‌ନାରେ ଟେବୁଲ୍ ଉପରେ ଟେଲିଫୋନ୍‌ଟା ଦେଖି ତା' ମନରେ ଗୋଟିଏ ନୂଆ ଭାବନା ଜାଗି ଉଠିଲା। ହଁ, ହଁ, ସେ ଥରେ ଇଷ୍ଟର୍ଣ୍ଣ ଏକ୍ସପ୍ରେସରୁ ଟେଲିଫୋନ୍ କରି, ଇନ୍ଦ୍ରଜିତ୍ ରାୟ ସଙ୍ଗରେ କଂପ୍ରମାଇଜ୍ କରି ନେଲେ ଭଲ ହୁଅନ୍ତା।

ଶେଖର ଟେଲିଫୋନ୍ ଡିରେକ୍ଟରୀଟା କ୍ଷିପ୍ରରେ ଖୋଲେଇ ଇଷ୍ଟର୍ଣ୍ଣ ଏକ୍ସପ୍ରେସ୍ ସହିତ ଯୋଗାଯୋଗ କଲା।

ଅପରେଟର ପଚାରିଲା: କାହାକୁ ଖୋଜୁଛନ୍ତି ?

: ମିଷ୍ଟର ଇନ୍ଦ୍ରଜିତ୍ ରାୟ।

ଇନ୍ଦ୍ରଜିତ୍ ରାୟ ? କେଉଁ ସେକ୍ସନରେ କାମ କରନ୍ତି ?

: ଇନ୍ଦ୍ରଜିତ୍ ରାୟ ଜର୍ଣ୍ଣାଲିଷ୍ଟ, ମାନେ କ୍ରାଇମ୍ ସେକ୍ସନର ମୁଖ୍ୟ।

ଅପରେଟର ବୋଧହୁଏ କିଛି ବୁଝିନପାରି, ଚିଫ୍ ନିଉଜ୍ ଏଡିଟରଙ୍କ ସହିତ ଲାଇନ୍ ସଂଯୋଗ କରିଦେଲା।

: ହ୍ୟାଲୋ ?

: ମିଷ୍ଟର ଇନ୍ଦ୍ରଜିତ୍ ରାୟ ?

: ନୋ, ଅଜିତ୍ ଦାସ ସ୍ପିକିଂ।

: ପ୍ଲିଜ୍ ପୁଟ୍ ମି ଇନ୍ଦ୍ରଜିତ୍ ରାୟ।

: ରଂ ନମ୍ବର ।

ଅଜିତ୍ ଦାସ ରିସିଭରଟା କ୍ରେଡେଲ ଉପରେ ରଖିଦେଲେ।

ଶେଖର ହତାଶ ହୋଇ ରିସିଭରଟା କ୍ରେଡେଲ ଉପରେ ରଖୁ ରଖୁ ଦେଖିଲା ଚିତ୍ରା ଫେରିଆସୁଛି।

ଖଣ୍ଡେ ଚେଆର ଟାଣି ଆଣି ଶେଖର ସାମନାକୁ ବସୁ ବସୁ ଚିତ୍ରା ପଚାରିଲା: ଫୋନ୍ କାହାକୁ କରିଥିଲ ?

: ଇଷ୍ଟର୍ଣ୍ଣ ଏକ୍ସପ୍ରେସକୁ।

: ହଠାତ୍ ଖବରକାଗଜରେ କ'ଣ ଦରକାର ପଡ଼ିଲା ?

: ଇମିତି। ଜଣକୁ ସେଠାରେ ଖୋଜୁଥିଲି।

: ହଉ, ଏଥର ଘଟଣାଟା କ'ଣ କହିଲ ?

: ଚିତ୍ରା, ମୁଁ ଗୋଟାଏ ବଡ଼ ଅସୁବିଧାରେ ପଡ଼ିଯାଇଛି। ମୋର ମନେ ହେଉଛି ତମେ ମୋତେ ହୁଏତ ବିଶ୍ୱାସ କରିବ ନାହିଁ। ମୁଁ ଯାହା କହିବି ମୋ କଥା ମାନିବ ନାହିଁ।

: କ'ଣ ହେଲା ତମର ? ତମକୁ ଆଜି ଦେଖି ମୋର ମନେ ହେଉଛି ତମେ ଯେପରି ଆଉ ଏକ ମଣିଷ।

ହଁ: ଚିତ୍ରା। କିନ୍ତୁ ଆଜି ମୋର କାହିଁକି ଏପରି ପରିବର୍ତ୍ତନ ଘଟିଲା କହିପାରିବ ? ଆଜି ଯାହା ଘଟିଗଲା, କାଲି ସକାଳୁ ଯେତେବେଳେ ସବୁ କଥା ତମେ ଜାଣିଯିବ, ମୁଁ ଆଉ ତମ ପାଖରେ ମୁହଁ ଦେଖାଇ ପାରିବି ନାହିଁ।

: କିନ୍ତୁ...

ହଠାତ୍ ଫୋନଟା ବାଜି ଉଠିଲା।

ଚିତ୍ରା ରିସିଭରଟା ଉଠାଇ ନେଇ କାନରେ ଦେଲା: ହ୍ୟାଲୋ ? କିଏ ବାପା ? ହଁ ମୁଁ ଚିତ୍ରା କହୁଛି। ...କିନ୍ତୁ...ନଗଲେ ଚଳିବ ନାହିଁ ? ଆଚ୍ଛା।

ଚିତ୍ରା ଟେଲିଫୋନ ରିସିଭରଟା କ୍ରେଡେଲ ଉପରେ ରଖି ଦେଇ ବିମର୍ଷ କଣ୍ଠରେ କହିଲା: ମୋତେ ଏଇକ୍ଷଣି ବାପାଙ୍କ ପାଖକୁ ଯିବାକୁ ହେବ। ତମେ ବରଂ...

ବାହାରେ ଗାଡ଼ି ଅଟକିବାର ଶବ୍ଦ ହେଲା। ଚିତ୍ରା ଅନେଇ ଦେଖିଲା ଡ୍ରାଇଭର ସାମ୍‌ସୁର ଆଗେଇ ଆସୁଚି।

: ହେଇ ସାମ୍‌ସୁର ଆସିଗଲାଣି। ବାପା ଗାଡ଼ି ବି ପଠେଇ ଦେଇଛନ୍ତି। ଭାବିଥିଲି ତମ ଗାଡ଼ିରେ ଯାଇ ବାଟରେ ତମ କଥା ଶୁଣିବି। କିନ୍ତୁ ଉପାୟ ବି ନାହିଁ।

: ଦିଦି। ସାହେବ ଥୋଡ଼ା ଜଲଦି ବାହାରିବାକୁ କହିଛନ୍ତି। ଆଉ ଡେରି କରନ୍ତୁ ନାହିଁ।

ଚିତ୍ରା ଅନନ୍ୟୋପାୟ ହୋଇ କହିଲା: ତମେ ଟିକେ ବସ ଶେଖର। କଫି ପିଇ ଶାନ୍ତ ହୁଅ। ମୁଁ ଦଶ ପନ୍ଦର ମିନିଟ୍ ଭିତରେ ବାପାଙ୍କୁ ବୁଝାଇ ସୁଝାଇ ଫେରିଆସୁଛି।

ଚିତ୍ରା ଅପେକ୍ଷା ନ କରି ଘରୁ ବାହାରି ଚାଲିଗଲା।

ପରିଚାରିକା କଫି ଦେଇଗଲା।

ଶେଖର ଧୂମାୟିତ କଫି କପ୍‌ଟା ଆଡ଼େ ଚାହିଁ ଚିନ୍ତା କରୁଥିଲା, ଇନ୍ଦ୍ରଜିତ୍ ରାୟଙ୍କ ସହିତ ଆଉ ଥରେ ଭେଟ ହୋଇଥିଲେ ଭଲ ହୋଇଥାଆନ୍ତା। ଫାଉଣ୍ଟେନ୍ ବାର୍‌ର ସେଇ ଘଟଣାକୁ କେନ୍ଦ୍ର କରି ପ୍ରଧାନ ଭୂମିକାରେ ଶେଖର ଅବତୀର୍ଣ୍ଣ ହେବାକୁ ଚାହେଁ ନାହିଁ। କିନ୍ତୁ ଇନ୍ଦ୍ରଜିତ ରାୟ...ଇନ୍ଦ୍ରଜିତ ରାୟ...ଇନ୍ଦ୍ରଜିତ...

ହଠାତ୍ ଶେଖର ସଜାଗ ହୋଇ ଉଠି ଟେଲିଫୋନ୍ ଡିରେକ୍ଟରୀଟା ଆଉ ଥରେ ଉଠାଇ ଆଣିଲା। କ୍ଷିପ୍ର ହସ୍ତରେ ସେ ପୃଷ୍ଠା ଓଲଟାଇ ଗୋଟିଏ ଜାଗାରେ ଅଟକିଲା। ହଁ, ରାୟ ଇନ୍ଦ୍ରଜିତ୍। ପର ପର ତିନୋଟି ରାୟ ଇନ୍ଦ୍ରଜିତ। କିନ୍ତୁ ଏହା ଭିତରୁ ଜର୍ଣ୍ଣାଲିଷ୍ଟ ରାୟଟି କିଏ ?

ମାୟାବିନୀ ରାତ୍ରି

ଶେଖର ଭାବିଲା, ଗୋଟି ଗୋଟି କରି ତିନି ଜଣକୁ ଡାଏଲ୍ କରିବ। ଯିଏ ହେଲେ ତ ଜଣେ ଜର୍ଣ୍ଣାଲିଷ୍ଟ ଇନ୍ଦ୍ରଜିତ୍ ରାୟ ହୋଇଥିବ।

ଶେଖର ଟେଲିଫୋନ୍ ଡିରେକ୍ଟରୀର ପ୍ରଥମ ଇନ୍ଦ୍ରଜିତ୍ ରାୟକୁ ଡାଏଲ୍ କଲା। ଅପର ପାର୍ଶ୍ୱରେ ଟେଲିଫୋନ୍ ରିଙ୍ଗ ହେବାକୁ ଲାଗିଲା। ଶେଖର ଉତ୍କଣ୍ଠିତ ହୋଇ ଅପେକ୍ଷା କରି ରହିଲା ଅପର ପାର୍ଶ୍ୱର କଣ୍ଠସ୍ୱର ଶୁଣିବା ପାଇଁ।

ହଠାତ୍ ଅପର ପାର୍ଶ୍ୱରୁ ଏକ ତୀକ୍ଷ୍ଣ କଣ୍ଠସ୍ୱର ଭାସିଆସିଲା। ହାଲୋ...

ଶେଖର ହଠାତ୍ ଜବାବରେ କ'ଣ କହିବ କିଛି ଭାବି ନପାରି ମୁହୂର୍ତ୍ତେ ନୀରବ ରହି କହିଲା: ମିଷ୍ଟର ରାୟ, ମୁଁ ଅତ୍ୟନ୍ତ ଦୁଃଖିତ। ଆଜି ଆପଣଙ୍କ ସହିତ ଯେଉଁ ବ୍ୟବହାର କଲି ସେଥିପାଇଁ ମୋତେ ଅନୁତାପ କରିବାକୁ ପଡୁଛି। ଆପଣଙ୍କୁ ବରଂ ଦେଖାକରି, ସବୁ କଥା...

: ନା ନା ଦେଖା କରିବା ଆବଶ୍ୟକ ନାହିଁ। ଅପର ପାର୍ଶ୍ୱର କଣ୍ଠସ୍ୱର ଶୁଣାଗଲା। ଦୋଷ ଯେ ଆପଣଙ୍କର ଏକା ସେକଥା ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ। ମାଛଗୁଡ଼ାକ ବି ଟିକିଏ ପଚି ଯାଇଥିଲା। ଅନ୍ତତଃ କର୍ମଚାରୀମାନଙ୍କର ବାଛି ବାଛି ମାଛଗୁଡ଼ାକ ଦେବା ଉଚିତ୍ ଥିଲା। ଛାଡ଼ନ୍ତୁ ଯାହା ତ ହେବାର ହୋଇଗଲାଣି...

ଶେଖର ହଠାତ୍ ଅପର ପାର୍ଶ୍ୱର କଥାବାର୍ତ୍ତାରୁ କିଛି ବୁଝିପାରିଲା ନାହିଁ। ଇନ୍ଦ୍ରଜିତ ରାୟ ମାଛ କଥା କ'ଣ କହୁଛନ୍ତି? ଇଏ ତେବେ କ'ଣ...

ଶେଖର କହିଲା: ଆପଣ କିଏ କହୁଛନ୍ତି?

: ମୁଁ ଇନ୍ଦ୍ରଜିତ ରାୟ। ଫିସମାର୍ଚ୍ଚେଣ୍ଟ।

: ରଂ ନମ୍ବର କହି ଶେଖର ରିସିଭରଟା କ୍ରେଡେଲ ଉପରେ କଚାଡ଼ିଦେଲା। ପୁଣି ସେ ଟେଲିଫୋନ୍ ଡିରେକ୍ଟରୀର ଦ୍ୱିତୀୟ ଇନ୍ଦ୍ରଜିତ ରାୟ ନମ୍ବରରେ ଡାଏଲ୍ କଲା।

ଅପର ପାର୍ଶ୍ୱରେ ରିଙ୍ଗ୍ ହେବାକ୍ଷଣି କିଏ ଜଣେ ରିସିଭର ଉଠାଇ ନେଇ ସଙ୍ଗେସଙ୍ଗେ କହିଲା: ହାଲୋ...

: କିଏ, ମିଷ୍ଟର ରାୟ? ଶେଖର ପଚାରିଲା।

: ନାଁ, ମୁଁ ତରଫଦାର କହୁଛି।

: ଇନ୍ଦ୍ରଜିତ ରାୟଙ୍କୁ ଟିକିଏ ଡାକି ଦେବେ?

: ଇନ୍ଦ୍ରଜିତ ରାୟ? କୋଉ ଇନ୍ଦ୍ରଜିତ ରାୟଙ୍କ କଥା ଆପଣ କହୁଛନ୍ତି।

: ଜର୍ଣ୍ଣାଲିଷ୍ଟ ଇନ୍ଦ୍ରଜିତ୍ ରାୟ, ମାନେ ଯାହାଙ୍କ ନାମରେ ଏଇ ଟେଲିଫୋନ ଅଛି।

: ଓଃ, ବୁଝିଲି। ଆପଣ କିଏ କହୁଛନ୍ତି?

: ମୁଁ, ମାନେ ମୁଁ ତାଙ୍କର ବନ୍ଧୁ କହି ପାରନ୍ତି।

: ଶୁଣନ୍ତୁ ମିଷ୍ଟର, ଅପର ପାର୍ଶ୍ୱରୁ ତରଫ୍‌ଦାର କହୁଥିଲେ। ଯେଉଁ ଇନ୍ଦ୍ରଜିତ୍ ରାୟଙ୍କ ନାମରେ ଟେଲିଫୋନ୍ ଅଛି, ସେ ଭଦ୍ରଲୋକଙ୍କୁ ମୁଁ ମଧ୍ୟ ଚିହ୍ନି ନାହିଁ। କିନ୍ତୁ କାଳକ୍ରମେ ଟେଲିଫୋନ୍‌ଟା ହାତ ବଦଳ ହୋଇ ବର୍ତ୍ତମାନ ମୋ ପାଖରେ ଅଛି। ତେଣୁ କ୍ଷମା କରିବେ ମହାଶୟ...

କଥା ଅସମାପ୍ତ ରଖି ତରଫଦାର ରିସିଭରଟା କ୍ରେଡ଼ଲ ଉପରେ ରଖିଦେଲେ।

ଶେଖର ମନ ବିରକ୍ତିରେ ଭରି ଉଠିଲା। ବ୍ୟର୍ଥତା, ଖାଲି ବ୍ୟର୍ଥତା। ଜୀବନରେ କେବେ ସେ ଏତେ ବିଫଳ ହୋଇନାହିଁ।

ତଥାପି ଶେଖର ଟେଲିଫୋନ୍ ଡିରେକ୍ଟରୀର ତିନି ନମ୍ବର ଇନ୍ଦ୍ରଜିତ୍ ରାୟ ଉପରେ ଦୃଷ୍ଟି ସ୍ଥିର କଲା। ନମ୍ବର ଡାଏଲ୍ କଲା।

ଅପର ପାର୍ଶ୍ୱରେ ଟେଲିଫୋନ୍‌ଟା ରିଙ୍ଗ୍ ହେବାକୁ ଲାଗିଲା। ଆଠ ଦଶଥର ରିଙ୍ଗ ହେବା ପରେ ରିସିଭର ଉଠାଇ ଯିଏ ରିସିଭ୍ କଲା, ସିଏ ଜଣେ ନାରୀ।

: ଆପଣ କିଏ କହୁଛନ୍ତି ?

ଶେଖର ପଚାରିଲା।

: ମୁଁ ପାମେଲା କହୁଛି। ଆପଣ କାହାକୁ ଖୋଜୁଛନ୍ତି ?

: ଇନ୍ଦ୍ରଜିତ୍ ରାୟଙ୍କୁ।

ପାମେଲା ହଠାତ୍ କିଛି ଉତ୍ତର ଦେଇପାରିଲା ନାହିଁ। କେତୋଟି ମୁହୂର୍ତ୍ତ ନୀରବ ରହିବା ପରେ ଶାନ୍ତ କଣ୍ଠରେ କହିଲା: ମୁଁ ଇନ୍ଦ୍ରଜିତ୍ ରାୟଙ୍କ କନ୍ୟା। କିନ୍ତୁ ସେ ତ ନାହାନ୍ତି। ମା'ଙ୍କୁ ଡାକିବି ?

ନା ନା, ମାଙ୍କ ସହିତ ମୋର ପରିଚୟ ନାହିଁ। ବାପା କେତେବେଳେ ଆସିବେ ?

: ବାପା ! ବାପାଙ୍କ ସହିତ ଆପଣଙ୍କର ଆଉ ଦେଖା ହେବାର କିଛି ଉପାୟ ନାହିଁ ଆଜ୍ଞା ! ସେ ଆଜିକୁ ସାତ ଆଠ ମାସ ହେଲା ଇହଧାମ ତ୍ୟାଗ କରି ଚାଲିଯାଇଛନ୍ତି। ପାମେଲାର କଣ୍ଠସ୍ୱର କରୁଣ ଶୁଣାଯାଉଥିଲା।

: କ୍ଷମା କରିବ ପାମେଲା, ଶେଖର ଅନୁତପ୍ତ ସ୍ୱରରେ କହିଲା: ମୁଁ ଜାଣିନଥିଲି। ତମ ମନରେ କଷ୍ଟ ଦେଲି।

ଶେଖର ରିସିଭରଟା ରଖିଦେଇ ଗୁମ୍‌ମାରି ମୁହୂର୍ତ୍ତେ ବସିପଡ଼ିଲା। ଏହାପରେ ଉପାୟ ?

ସାମ୍ପ୍ରତିକ ଇନ୍ଦ୍ରଜିତ୍ ରାୟଙ୍କ ସହିତ ତା'ହେଲେ କ'ଣ ସେ ସଂଯୋଗ ସ୍ଥାପନ କରିପାରିବ ନାହିଁ ? ତିନି ତିନି ଜାଗାକୁ ଫୋନ୍ କରି ସେ ବ୍ୟର୍ଥ ହେଲା। ଶେଷ ଥରରେ ପାମେଲା ମନରେ ସେ କଷ୍ଟ ଦେଲା।

କ'ଣ ନାଁ ଟା ? ପାମେଲା ! ଶେଖର ଦେହରେ ଯେପରି ହଠାତ୍ ଏକ ବିଦ୍ୟୁତ୍

ପ୍ରବାହ ଖେଳିଗଲା। ନାଁଟା ତା' ପାଖରେ ଯେପରି ପରିଚିତ୍ ପରିଚିତ ମନେହେଲା। ନାଁଟା ସେ କେଉଁଠି ଶୁଣିଛି। କେଉଁଠି ? ଶେଖର ମନେ ପକେଇବାକୁ ଚେଷ୍ଟା କଲା।

ମନେପଡ଼ିଛି। ନେଲି ମୁହଁରୁ ସେ ଶୁଣିଥିଲା ପାମେଲା ନାଁ। ରୋଜି, ପାମେଲା ଏବଂ ଆହୁରି ଦୁଇଟି ଝିଅଙ୍କ ନାଁରେ ସେ ଲଟାରୀ ଟିକେଟ ଲେଖିଛି। ତେବେ କ'ଣ....

ଶେଖର ଚଞ୍ଚଳ ହୋଇଉଠିଲା। ଆଉ ଥରେ ସେ ଟେଲିଫୋନ୍ ଡିରେକ୍ଟରୀରୁ ତୃତୀୟ ଇନ୍ଦ୍ରଜିତ୍ ନାଁ ଖୋଜି ଡାଏଲ୍ କଲା। କିଛି ସମୟ ପରେ ପୁଣି ସେଇ ନାରୀ କଣ୍ଠସ୍ୱର ଅପର ପ୍ରାନ୍ତରୁ ଭାସିଆସିଲା, ହ୍ୟାଲୋ।

: କିଏ ପାମେଲା ? ମୁଁ ଶେଖର କହୁଛି।

: ଶେଖର । ଆପଣଙ୍କୁ ମୁଁ ତ ଚିହ୍ନିପାରିଲି ନାହିଁ।

: ନାଁ, ତମେ ମୋତେ ଚିହ୍ନିପାରିବ ନାହିଁ। ମୁଁ କିନ୍ତୁ ତମକୁ ଚିହ୍ନିଛି। ନେଲି ମୁହଁରୁ ତମ କଥା ଶୁଣିଛି।

: ଓଃ, ନେଲିର ଆପଣ ବନ୍ଧୁ ନା କ'ଣ ?

: ହଁ ପାମେଲା। କିନ୍ତୁ ନେଲିକୁ ମୁଁ ଏଇକ୍ଷିଣା କେଉଁଠୁ ପାଇବି ? ତା' ସହିତ ମୋର ଗୋଟାଏ ଜରୁରୀ କାମ ଅଛି।

: ଆପଣ, ଆପଣଙ୍କ ନାଁ ତ ଏହା ଆଗରୁ ନେଲି ମୁହଁରେ ଶୁଣି ନାହିଁ। ଆପଣ ବରଂ ଗୋଟିଏ କାମ କରନ୍ତୁ। ଆପଣଙ୍କ ଫୋନ୍ ନମ୍ବରଟା ମୋତେ ଦିଅନ୍ତୁ। ନେଲିର ଖବର ନେଇ ମୁଁ ଆପଣଙ୍କୁ ଜଣାଇଦେବି।

ଶେଖର ପାମେଲାକୁ ଟେଲିଫୋନ୍ ନମ୍ବରଟା କହିଲା। ସଙ୍ଗେସଙ୍ଗେ ଅପର ପାର୍ଶ୍ୱରୁ ସଂଯୋଗ ଛିନ୍ନ ହୋଇଗଲା। ଶେଖର ମଧ୍ୟ ରିସିଭରଟା ରଖିଦେଇ ଗୋଟାଏ ଦୀର୍ଘଶ୍ୱାସ ପକାଇଲା।

ତା' ହେଲେ ଅନ୍ଧାରରେ ବାଡ଼ି ବୁଲାଇ ବୁଲାଇ ଗୋଟାଏ ଜାଗାରେ ହିଟ୍ କରିଛି। ଦେଖାଯାଉ କ'ଣ ହେଉଛି !

ଶେଷରେ ପକେଟରୁ ରୁମାଲ ବାହାର କରି ମୁହଁରୁ ଝାଳ ପୋଛିଲା। କଫି କପ୍‌ରୁ ଅବଶିଷ୍ଟ ଥଣ୍ଡା କଫିତକ ଏକାଥରେ ଢକ ଢକ କରି ପିଇଦେଇ ସେ ଟିକିଏ ସଜାଡ଼ି ହୋଇ ବସିଲା।

ସଙ୍ଗେସଙ୍ଗେ ଟେଲିଫୋନ୍‌ଟା ବାଜି ଉଠିଲା

: ହ୍ୟାଲୋ ! ଶେଖର କଣ୍ଠରେ ଉଦ୍‌ବେଗ ଫୁଟି ଉଠିଲା।

: କିଏ ଶେଖର ! ମୁଁ ଚିତ୍ରା କହୁଚି। ଏଠାରେ ଆସି ମୁଁ ବଡ଼ ଅଡୁଆରେ ପଡ଼ିଯାଇଛି। ଯାହା ଦେଖୁଛି ମୋର ଫେରୁ ଫେରୁ ଆହୁରି ଘଣ୍ଟାଏ ଡେରି ହେବ। କିନ୍ତୁ ମୋର କିଛି

ଉପାୟ ନାହିଁ ଶେଖର। ତମେ ବରଂ ଘରକୁ ଚାଲିଯାଅ। ବସି ବସି ନିଶ୍ଚୟ ବୋର୍ ଫିଲ୍ କରୁଥିବ।

ଆଚ୍ଛା କହି ଶେଖର କ୍ରେଡେଲ ଉପରେ ରିସିଭରଟା ରଖି ଦେଲା।

ମାତ୍ର କେତୋଟି ସେକେଣ୍ଡ ବ୍ୟବଧାନରେ ଟେଲିଫୋନଟା ପୁଣି ବାଜି ଉଠିଲା।

: ହ୍ୟାଲୋ !

: କିଏ ଶେଖର !

: ହଁ। ତମେ ?

: ମୁଁ ପାମେଲାର ବନ୍ଧୁ। ନେଲି ସମ୍ବନ୍ଧରେ ଆପଣଙ୍କଠାରୁ କିଛି ଜାଣିବାକୁ ଚାହେଁ।

: କିନ୍ତୁ ମୁଁ ନେଲିକୁ ଖୋଜୁଛି।

: ନେଲିକୁ ପାଇବେ। ଆପଣ ଯେ ନେଲିକୁ ଚିହ୍ନନ୍ତି ତା'ର ଏକ ସଂକ୍ଷିପ୍ତ ପ୍ରମାଣ ଦେଇପାରିବେ ?

ପ୍ରଥମେ ଶେଖର କିଛି ବୁଝିପାରିଲା ନାହିଁ। ସେ ନୀରବ ରହି କ'ଣ ଚିନ୍ତା କରିବାକୁ ଲାଗିଲା।

: ହ୍ୟାଲୋ ଶେଖର ! ଆପଣଙ୍କର ନେଲି ସହିତ ପରିଚୟର ସଂକ୍ଷିପ୍ତ ପ୍ରମାଣ କିଛି ନାହିଁ ?

: ଅଛି। ମୁଁ ନେଲିକୁ ପାଞ୍ଚୋଟି ଲଟାରୀ ଟିକେଟ ଦେଇଛି।

: ଥ୍ୟାଙ୍କ୍ସ। ଶୁଣ ଶେଖର, ମୁଁ ନେଲି କହୁଛି। ତମେ ଆଉ ସମୟ ନଷ୍ଟ ନ କରି ଶୀଘ୍ର ବାର ନମ୍ବର ରସେଲ ଷ୍ଟ୍ରିଟ୍‌କୁ ଆସ।

: କିନ୍ତୁ ନେଲି...

: ନା ଶେଖର ତମେ ଚାଲିଆସ। ଆଉ ସମୟ ନଷ୍ଟ କରନାହିଁ। କିନ୍ତୁ ଗୋଟାଏ କଥା ଶେଖର। ତମେ ଯେଉଁଠି ଯେପରି ଅବସ୍ଥାରେ ଅଛ, ସେଇଠୁ ଆସିଲାବେଳେ ତମେ ଅନ୍ୟ ପଥ ଦେଇ ଆସିବ।

: ମାନେ ? ଶେଖର କିଛି ବୁଝି ନ ପାରି ପ୍ରଶ୍ନ କଲା।

: ଶୁଣ ଶେଖର। ମୋର କହିବାର କଥା ହେଉଛି, ତମେ ବର୍ତ୍ତମାନ ଯେଉଁଠି ବସି ରହିଛ, ସେଠାରେ ବାହାରେ ତମକୁ ସେମାନେ ଅପେକ୍ଷା କରି ରହିଛନ୍ତି, ତମ ଗତିବିଧି ଲକ୍ଷ୍ୟ କରୁଛନ୍ତି, ତେଣୁ ତମେ ସେମାନଙ୍କ ଆଖିରେ ଧୂଳି ଦେଇ ଭିନ୍ନପଥରେ ଚାଲିଆସ। ନ ହେଲେ ସବୁ ଗୋଳମାଳ ହୋଇଯିବ। ତମେ ଯଦି ତମ ଗାଡ଼ିରେ ଯାଇଥାଅ, ତା'ହେଲେ ଗାଡ଼ି ଯେଉଁଠି ଥୁଆ ହୋଇଛି, ସେଇଠି ଥାଉ, ତମେ ଟ୍ୟାକ୍‌ସି କରି ମୋ ପାଖକୁ ଚାଲିଆସ, ବାର ନମ୍ବର ରସେଲ ଷ୍ଟ୍ରୀଟ୍। ମନେ ରହିଲା ?

: କିନ୍ତୁ ନେଲି ? ଯାହାଙ୍କ କଥା ତମେ କହୁଛ ସେମାନେ କିଏ ?

ଶେଖର ଅପର ପାର୍ଶ୍ୱରୁ ଆଉକିଛି ଉତ୍ତର ପାଇଲା ନାହିଁ। ସେ ଅନୁଭବ କଲା, ଟେଲିଫୋନ୍ ଯୋଗାଯୋଗ ଛିନ୍ନ ହୋଇଯାଇଛି।

ସେ ଟିକିଏ ଚିନ୍ତା କଲା, ଏ କ୍ଷେତ୍ରରେ ତା'ର କର୍ତ୍ତବ୍ୟ କ'ଣ ? ନେଲି କ'ଣ ସତରେ ଗୋଟାଏ ଇଣ୍ଟରନ୍ୟାସନାଲ ଗ୍ୟାଙ୍ଗର ଉପନାୟିକା ? ଏଥର କିନ୍ତୁ ଶେଖର ମନରେ ଏକ କୌତୂହଳ ଧୀରେ ଧୀରେ ଉଙ୍କି ମାରିଲା। ନେଲି ଇନ୍ଦ୍ରଜିତ୍ ରାୟ, ଫାଉଂଟେନ୍ ବାର୍, ସବୁକଥା ତା'ର ଗୋଟି ଗୋଟି ହୋଇ ମନେପଡ଼ିଲା। ସବୁ ତା' ଆଗରେ ଏକ ରହସ୍ୟର ମାୟାଜାଲ ପରି ପ୍ରତୀୟମାନ ହେଲା। ଆଉ ମନେହେଲା ସେ ଯେପରି ସେହି ରହସ୍ୟର ନାୟକ। ଠିକ୍ ଅଛି, ଶେଖର ସେ ରହସ୍ୟ ଭେଦ କରିବ।

ଶେଖର ଧୀରେ ଧୀରେ ଉଠିଲା। ଆଟାଚି କେସ୍‌ଟା ହାତରେ ଧରିଲା।

ଚିତ୍ରା ଘରର ପଛବାଟ ଦେଇ ସେ ବାହାରିଲା ବାହାରକୁ। ଗୋଟାଏ ଗଳି ରାସ୍ତା ଧରି କିଛି ବାଟ ଆଗେଇ ଯିବା ପରେ ସେ ଯାଇ ସଦର ରାସ୍ତାରେ ଉଠିଲା।

ତା'ପରେ ଗୋଟାଏ ଟ୍ୟାକ୍‌ସିରେ ଉଠି ସେ ଆଗେଇ ଗଲା ବାର୍ ନମ୍ବର ରସେଲ ଷ୍ଟ୍ରୀଟ୍ ଅଭିମୁଖରେ।

■■■

କିନ୍ତୁ ପୁଣି ବିପର୍ଯ୍ୟୟ !

ରସେଲ ଷ୍ଟ୍ରୀଟ୍‌ର ୧୨ ନମ୍ବର ଘର ସାମ୍‌ନାରେ ଗୋଟାଏ କଳା ପୋଲିସ ଭ୍ୟାନ୍ ଥୁଆ ହୋଇଛି। ଗାଡ଼ି ଭିତରେ କିଏ ଅଛନ୍ତି ନ ଅଛନ୍ତି, ସେମାନଙ୍କ ଆଡ଼କୁ ଚାହିଁବାକୁ ସାହସ କରି ପାରିଲା ନାହିଁ ଶେଖର। ଟ୍ୟାକ୍‌ସି ଡ୍ରାଇଭରକୁ ଗାଡ଼ି ନ ଅଟକାଇବାକୁ କହି ଆଗକୁ ବଢ଼ାଇ ନେବାକୁ ନିର୍ଦ୍ଦେଶ ଦେଲା।

ତା' ହେଲେ ?

ଶେଖର ମହାଦ୍ୱନ୍ଦ୍ୱରେ ପଡ଼ିଗଲା। ଆଜି କ'ଣ ତେବେ ସହରଟା ଯାକରେ ସ୍ମଗଲରମାନଙ୍କୁ ଧରିବା ପାଇଁ ଅପରେସନ୍ ଚାଲିଛି ? ନ ହେଲେ ସମ୍ଭାବିତ ସମସ୍ତ ଜାଗାରେ ପୋଲିସ୍‌ଭ୍ୟାନ୍ ମୁତୟନ ରହିଛି କାହିଁକି ?

ଶେଖର ମନେମନେ ଦବିଗଲା। କାଲି ସକାଳୁ ଯଦି ଇଷ୍ଟର୍ଣ୍ଣ ଏକ୍ସପ୍ରେସରେ ତା' ସମ୍ବନ୍ଧରେ ଖବରଟା ବାହାରେ, ତା' ହେଲେ ସେ ଆଉ କେଉଁଠି ମୁହଁ ଦେଖାଇ ପାରିବ ନାହିଁ। ତା'ଛଡ଼ା ପୋଲିସ୍ ବିଭାଗର ହଟହଟା ତ ଅଛି। ତେବେ ବର୍ତ୍ତମାନ କ'ଣ କରିବ ଶେଖର ?

ତା'ର ହଠାତ୍ ମନେ ପଡ଼ିଗଲା ରାଜେନ୍ଦ୍ର କଥା। ତାର ଅତି ଘନିଷ୍ଠ ବନ୍ଧୁ। ରିଜେଂଟ ହୋଟେଲରେ ରୁହେ। ତାରି ପାଖରେ ଯାଇ ଆଜି ରାତିଟା କଟେଇ ଦେଲେ ହେବ। ଘରକୁ ଫେରିଯିବାର ମଧ୍ୟ ଉପାୟ ନାହିଁ। ଘର ପାଖରେ ସେ ପୋଲିସ୍ ଭ୍ୟାନ୍ ଦେଖି ଆସିଛି। ଟ୍ୟାକ୍‌ସି ଡ୍ରାଇଭରକୁ ଶେଖର ଗତି ପରିବର୍ତ୍ତନ କରିବାକୁ କହିଲା। ରିଜେଂଟ ହୋଟେଲରେ ଶେଖର ଯେତେବେଳେ ଓହ୍ଲାଇଲା, ସେତେବେଳକୁ ରାତି ଦଶଟା।

ଦରୱାନଠାରୁ ଶୁଣିଲା, ରାଜେନ୍ଦ୍ର ରୁମ୍‌ରେ ନାହିଁ। ତେବେ ଖୁବ୍ ଶୀଘ୍ର ଫେରିଆସିବ। ସେ ଇଛା କଲେ ରାଜେନ୍ଦ୍ର ରୁମ୍‌ରେ ଯାଇ ଅପେକ୍ଷା କରିପାରେ।

ଆଉ ଉପାୟ ନାହିଁ। ଶେଖର ବାଧ୍ୟହୋଇ ରାଜେନ୍ଦ୍ର ରୁମ ଆଡ଼କୁ ଆଗେଇଗଲା। ରୁମ୍ ଦରଜା ଆଉଜା ହୋଇଥିବାରୁ ଶେଖର ପ୍ରଥମେ ଟିକିଏ ଦୁଆର ମୁହଁରେ ଅଟକିଗଲା। ଫାଙ୍କରେ ଚାହିଁଲା ଭିତରେ ଲାଇଟ୍ ଜଳୁଛି ଏବଂ ଫ୍ୟାନ୍ ଚାଲିବାର ଶବ୍ଦ ଶୁଭୁଛି। ଶେଖର ଦରଜା ଠେଲି ଭିତରକୁ ପଶିବା ମାତ୍ରେ ଦେଖିଲା, ରାଜେନ୍ଦ୍ରର ବିଛଣା ଉପରେ ଗୋଟିଏ ଝିଅ ଶୋଇ ଉପରକୁ ଗୋଡ଼ ଟେକି, ତଳକୁ ମୁହଁ ମାଡ଼ି କ'ଣ ଗୋଟାଏ ପଢୁଛି। ଦରଜା ଖୋଲିବା ଶବ୍ଦରେ ଝିଅଟି ଉଠି ବସିଲା ଏବଂ ସଙ୍ଗେ ସଙ୍ଗେ ପ୍ରଶ୍ନ କଲା, : ଆପଣ ମିଷ୍ଟର ଶର୍ମା ?

ଶେଖର ଝିଅଟିର ମୁହଁକୁ ଚାହିଁଲା। ବେଶ୍ ଆଧୁନିକା, ବୟସ ବି ବେଶୀ ନୁହେଁ, ସୁନ୍ଦରୀ।

ଶେଖର କହିଲା: ସରି। ମୋ ନାଁ ଶେଖର। ଏଇ ରୁମ୍‌ରେ ରାଜେନ୍ଦ୍ର ରୁହେ ତ ?

ଝିଅଟି ଗୋଟିଏ ଚେଆରଆଡ଼େ ଅଙ୍ଗୁଳି ଦେଖାଇ କହିଲା, : ବସନ୍ତୁ ମିଷ୍ଟର ଶେଖର। ରାଜେନ୍ଦ୍ର ଏଇ ଅଧଘଣ୍ଟା ଭିତରେ ଫେରିବ। ମୋ ନାଁ ସୌମିତ୍ରା।

ଶେଖର ଚେଆରରେ ବସି ସୌମିତ୍ରା ଆଡ଼େ ଚାହିଁ ଚିନ୍ତା କରୁଥିଲା, ନାଁଟା ଯେପରି ତା'ର ଚିହ୍ନା ଚିହ୍ନା। କେଉଁଠୁ ସେ ଶୁଣିଛି ନାଁଟା। କିନ୍ତୁ ମୁହଁଟା ଚିହ୍ନିଲା ପରି ମନେ ହେଉ ନାହିଁ ତ।

ସୌମିତ୍ରା ପ୍ରଥମେ ନୀରବତା ଭଙ୍ଗକଲା। ଆପଣ ବୋଧହୁଏ ରାଜେନ୍ଦ୍ରଙ୍କ ବନ୍ଧୁ!

: ହଁ।

: ଆଗରୁ ମୁଁ ତ ଆପଣଙ୍କୁ ଦେଖିନଥିଲି ?

: ହୁଏତ ସୁଯୋଗ ହୋଇନଥିଲା।

ଶେଖର କହିଲା।

: ଯା' ହେଉ ଆଜି ଆପଣଙ୍କ ସହିତ ଏପରି ଅତର୍କିତ ଭାବରେ ପରିଚୟ ହେଲା, ଯେଉଁ ପରିଚୟର ସ୍ୱାଦ ସଂପୂର୍ଣ୍ଣ ଭିନ୍ନ।

ସୌମିତ୍ରା ହସୁ ହସୁ କହିଲା।

: ପରିଚୟର ପୁଣି ସ୍ୱାଦ କ'ଣ ମିସ୍ ସୌମିତ୍ରା ?

ସୌମିତ୍ରା କ'ଣ କହିବାକୁ ଯାଉଥିଲା। କିନ୍ତୁ ସେତିକିବେଳେ ଘର ଭିତରେ ପ୍ରବେଶ କଲା ରାଜେନ୍ଦ୍ର। ରାଜେନ୍ଦ୍ର କିନ୍ତୁ ଶେଖରକୁ ସେତେବେଳେ ମୋଟେ ପ୍ରତ୍ୟାଶା କରି ନଥିଲା। ସେ ଘର ଭିତରେ ପଶିଯାଇ ଥମ୍‌କି ଛିଡ଼ା ହୋଇଗଲା ମୁହୂର୍ତ୍ତେ। ତା'ପରେ ଥରେ ସୌମିତ୍ରା ମୁହଁକୁ ଓ ଥରେ ଶେଖର ମୁହଁକୁ ଚାହିଁ, କିପରି ଏକ ଉଚ୍ଛ୍ୱସିତ କଣ୍ଠରେ

କହି ଉଠିଲା: ହ୍ୟାଲୋ ଶେଖର! ତତେ ଆଜି ଏପରି ଏକ ଅସମୟରେ ମୁଁ ମୋଟେ ଆଶା କରି ନ ଥିଲି। ସୌମିତ୍ରା ବୋଧହୁଏ...

: ନା ନା ରାଜେନ୍ଦ୍ର। ମିଷ୍ଟର ଶେଖରଙ୍କୁ ପଥ ଭୁଲାଇ ମୁଁ ଏଠାକୁ ଘେନି ଆସିନାହିଁ। ନିଜେ ନିଜେ ସେ...

ଶେଖର ରାଜେନ୍ଦ୍ର ସହିତ ହ୍ୟାଣ୍ଡସେକ୍ କରିବା ପାଇଁ ଆଗେଇ ଯାଉଥିଲା, ରାଜେନ୍ଦ୍ର କିନ୍ତୁ ଶେଖରକୁ କୁଣ୍ଢାଇ ପକାଇ କହିଲା, : ଦିନେ ଦୁଇଦିନ ହେବ ତୋ କଥା ମୋର ଘନଘନ ମନେ ପଡୁଥିଲା, ଇଚ୍ଛା ହେଉଥିଲା ତୋ ସହିତ ଦେଖା କରିବା ପାଇଁ। ତେବେ ଅତର୍କିତ ଏଇ ସାକ୍ଷାତର ଗୋଟାଏ ଆମୋଦ ଅଛି। ନାଁରେ ଶେଖର? ତା'ପରେ ଆଉ ସବୁ ଖବର କ'ଣ? ବାଟ ଭୁଲି କେମିତି ଇଆଡ଼େ ପଶି ଆସିଲୁ?

ଶେଖର କହିଲା: ଇମିତି। ଏଇବାଟେ ଯାଉ ଯାଉ ତୋ କଥା ମନେପଡ଼ିଗଲା। ପଶି ଆସିଲି। ଆଉ ତୋର ଖବର କ'ଣ?

: ଭଲ। ମୋଟାମୋଟି ଚାଲିଛି। ବିଗତ ଦିନମାନଙ୍କଠାରୁ ମୁଁ ଆଜି ଅନେକ ଦୂରେଇ ଆସିଲିଣି। ବେଶ୍ ପ୍ରତିଷ୍ଠା, ପ୍ରତିପତ୍ତି ସବୁ ଅର୍ଜନ କରିବାରେ ଲାଗିଛି ଦିନୁ ଦିନ। ମନ୍ଦ ନୁହେଁ। ନୂଆ ଜୀବନଧାରା ସହିତ ଖାପ ଖୁଆଇ ବେଶ୍ ଚାଲି ପାରିଲିଣି ଏବେ।

ଶେଖର ଚାହିଁଲା ସୌମିତ୍ରା ଆଡ଼େ।

ରାଜେନ୍ଦ୍ର ଆଗେଇ ଯାଇ, ସୌମିତ୍ରାର ଗାଲ ଟିପି ଦେଇ କହିଲା: ସୌମିତ୍ରା ମୋର ଏକ ଗାର୍ଲଫ୍ରେଣ୍ଡ୍ କହିପାରୁ। ନା ନା ଖାଲି ଫ୍ରେଣ୍ଡ୍ କହିଲେ ଭୁଲ୍ ହେବ, ସୌମିତ୍ରା ମୋର ଜୀବନର ଗତିପଥ ବଦଳାଇ ଦେଇଛି। ମୋର ଏକା କାହିଁକି, ମୋ ପରି ଅନେକ ଯୁବକ ସୌମିତ୍ରା ପାଖରେ କୃତଜ୍ଞ ରହିବା କଥା।

ଶେଖର ସୌମିତ୍ରା ଆଡ଼େ ଚାହିଁ ଦେଖିଲା, ସୌମିତ୍ରା ମୁହଁରେ କିପରି ଏକ ଗୌରବର ଭାବ ଫୁଟି ଉଠିଛି।

ସେ ହସି ହସି କହିଲା: ଆପଣ ରାଜେନ୍ଦ୍ର କଥା ମୋଟେ ବିଶ୍ୱାସ କରିବେ ନାହିଁ ମିଷ୍ଟର ଶେଖର, ସେ ମୋ ସମ୍ବନ୍ଧରେ ଟିକିଏ ବଢ଼େଇ କରି କହନ୍ତି। ଅବଶ୍ୟ ଆମେ ଯେଉଁମାନେ ସମାଜର ପରିତ୍ୟକ୍ତ, ଘୃଣ୍ୟ ଜୀବ ସବୁ, ଆମେ ଯେଉଁମାନେ ନିଜ ଗୋଡ଼ରେ ଠିଆ ହେବା ପାଇଁ ଆପ୍ରାଣ ଉଦ୍ୟମ କରି ସଫଳତା ଅର୍ଜନ କରିବାକୁ ଯାଉଛୁ, ଆମେ ଗୋଟାଏ ଭିନ୍ନ ଓଏଭ୍‌ର ପ୍ରତ୍ୟାଶୀ। ଆମେ ଏକ ଭିନ୍ନ ଗୋଷ୍ଠୀ ସୃଷ୍ଟି କରିବାକୁ ଚାହୁଁଦେଶ ବିଦେଶରେ। ଅବଶ୍ୟ ସେଥିପାଇଁ ଯେଉଁ କେତେ ଜଣଙ୍କୁ ତ୍ୟାଗ ସ୍ୱୀକାର କରିବାକୁ ହୋଇଛି ସେମାନଙ୍କ ଭିତରୁ ମୁଁ ଜଣେ ବୋଲି ଆପଣ କହିପାରନ୍ତି। ଏହାଛଡ଼ା ଅଧିକ କିଛି ମୋର ଯୋଗ୍ୟତା ନାହିଁ।

ଶେଖର କହିଲା: ମୁଁ ଜାଣି ଖୁସି ହେଲି ମିସ୍ ସୌମିତ୍ରା। ଦେଶର ପରିବର୍ତ୍ତନ ପାଇଁ ଯେଉଁ ତ୍ୟାଗୀମାନେ ଆତ୍ମୋତ୍ସର୍ଗ କରିଥାଆନ୍ତି, ସେମାନେ ମୋର ନମସ୍ୟ। ତେଣୁ ମୁଁ ଆପଣଙ୍କୁ ନମସ୍କାର କରୁଛି।

ଶେଖର ହାତଯୋଡ଼ି ନମସ୍କାର ଜଣାଇଲା।

ସୌମିତ୍ରା ଲାଜେଇ ଗଲା ବୋଧହୁଏ। ସେ ଉଠିପଡ଼ି ପ୍ରତିନମସ୍କାର କରି କହିଲା: ନା ମିଷ୍ଟର ଶେଖର। ମୁଁ ଦେଶ ପାଇଁ ଏତେ ତ୍ୟାଗ କରିନାହିଁ। ଆପଣ ମୋତେ ଭୁଲ୍ ବୁଝନ୍ତୁ ନାହିଁ।

ରାଜେନ୍ଦ୍ର କଥା ମଝିରେ ଛେଦ ପକାଇ କହିଲା: ତା'ପରେ କହ ଶେଖର। ତୁ ଆଜିକାଲି କ'ଣ କରୁଛୁ। କିପରି ଅଛୁ। ତୋର ସମୟ କିପରି କଟୁଛି।

ଶେଖର ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲା: ମୋର ସେହି ଧରାବନ୍ଧା ଜୀବନ୍ ରାଜେନ୍ଦ୍ର। ନୂଆ କିଛି ନାହିଁ। ବାପାଙ୍କର ସେହି ଦାସଦାସୀ ପରିପୂର୍ଣ୍ଣ ବିରାଟ ପ୍ରାସାଦ ମୋତେ ଆଉ ଭଲ ଲାଗୁନାହିଁ। ସେହି ଅକଳନ ସମ୍ପତ୍ତିରେ ମୁଁ ଜଣେ ପହରାବାଲା ହୋଇ ରହିବା ପାଇଁ ଆଉ ଇଚ୍ଛା ନାହିଁ। ମୁଁ ମୁକ୍ତ ଚାହେଁ, ମୁକ୍ତି। ମୋତେ ପଥ ଦେଖାଇ ପାରିବୁ ?

ରାଜେନ୍ଦ୍ର ଶେଖର ପିଠି ଆପୁଡ଼େଇ କହିଲା: ଆଜିକାଲି ଗରିବ, ଅମିର ମଧ୍ୟବିତ୍ତ ସମସ୍ତେ କିପରି ଏକ ସଙ୍କଟ ମଧ୍ୟରେ ପଡ଼ିଛନ୍ତି। କାହାରି ମନରେ ସୁଖ ନାହିଁ, ପ୍ରାଣରେ ଶାନ୍ତି ନାହିଁ, ସମସ୍ତେ ଖୋଜୁଛନ୍ତି ମୁକ୍ତି। ସେହି ମୁକ୍ତିକାମୀ ଯୁବମାନସର ପରିଣତି କ'ଣ ହେଉଛି ଜାଣୁ ଶେଖର ?

ରାଜେନ୍ଦ୍ର ତା' ମନର ଭାବ ବ୍ୟକ୍ତ କରିବାକୁ ଆଉ ସମୟ ପାଇଲା ନାହିଁ। ଭିତରେ ପ୍ରବେଶ କଲେ ଜଣେ ସୌମ୍ୟଦର୍ଶନ ଭଦ୍ରଲୋକ। ସେ ଦୁଇହାତ ପ୍ରସାରିତ କରି ଉଚ୍ଛ୍ୱସିତ କଣ୍ଠରେ କହିଉଠିଲେ, : ସାବାସ ରାଜେନ୍ଦ୍ର। ତମେ ଆଜି ଅସାଧ୍ୟ ସାଧନ କରିଛ। ତମେ ଆଜି...

କିନ୍ତୁ ହଠାତ୍ ଅଟକି ଗଲେ ଭଦ୍ରଲୋକ। ସେ ବୋଧହୁଏ ଶେଖରକୁ ଦେଖି ନ ଥିଲେ।

ରାଜେନ୍ଦ୍ର ଭଦ୍ରଲୋକଙ୍କ ସହିତ କରମର୍ଦ୍ଦନ କରି କହିଲା: ମୋର ବନ୍ଧୁ ଶେଖର, ଆଉ ଇଏ ମିସ୍ ସୌମିତ୍ରା। ଯାହାଙ୍କ କଥା ମୁଁ ଆଜି ଫୋନ୍‌ରେ ଆପଣଙ୍କୁ କହିଥିଲି। ଶେଖରଆଡ଼େ ଚାହିଁ କହିଲେ, ମିଷ୍ଟର ଶର୍ମା ମୋର ବିଜ୍‌ନେସ ପାର୍ଟନର।

ଶେଖର ମିଷ୍ଟର ଶର୍ମାଙ୍କ ସହିତ ହାତ ମିଳାଇଲା। ସୌମିତ୍ରା ମଧ୍ୟ। କିନ୍ତୁ ମିଷ୍ଟର ଶର୍ମାଙ୍କ ମୁହଁରୁ ସେଇ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ଯେପରି ମଉଳି ପଡ଼ିଥିଲା। ସେ ବୋଧହୁଏ ଏପରି ଏକ ପରିବେଶ ପାଇଁ ପ୍ରସ୍ତୁତ ହୋଇ ଆସିନଥିଲେ।

ରାଜେନ୍ଦ୍ର ମିଷ୍ଟର ଶର୍ମାଙ୍କ ମନୋଭାବ ବୁଝିପାରିଲା। ସେ ଶେଖରକୁ ଓ ସୌମିତ୍ରାକୁ ପାଖକୁ ଡାକି କହିଲା: ତମେ ଦୁହେଁ ଯାଇ ଟିକିଏ ପାଖ ଘରେ ଅପେକ୍ଷା କର। ମିଷ୍ଟର ଶର୍ମାଙ୍କ ସହିତ ମୋର ବ୍ୟବସାୟ ସମ୍ବନ୍ଧୀୟ କେତେକ କଥା ଶେଷ କରି ମୁଁ ଆସୁଛି।

ଶେଖର ପାଖ ଘର ଆଡ଼େ ଆଗେଇ ଗଲା। ପଛେ ପଛେ ସୌମିତ୍ରା। ସେମାନେ ଗୋଟିଏ ସୁସଜ୍ଜିତ ଘର ଭିତରେ ପଶିଲେ। ଶେଖର ଗୋଟିଏ ସୋଫା ଉପରେ ବସିଲା। ସୌମିତ୍ରା କିନ୍ତୁ ଏକ ଦର୍ପଣ ସାମନାରେ ଠିଆ ହୋଇ ମୁଖ ବିନ୍ୟାସ କରିବାରେ ଲାଗିଗଲା। ଶେଖର ଏହା ଭିତରେ ମନେପକାଇ ସାରିଥିଲା ଯେ, ସୌମିତ୍ରା ନାଁଟି ତା'ର ପରିଚିତ ମନେ ହେଉଛି ଏଇଥିପାଇଁ, ସେ ଆଜି ସୌମିତ୍ରା ନାଁରେ ଗୋଟାଏ ଲଟାରୀ ଟିକେଟ କାଟି ନେଲିକୁ ଦେଇଥିଲା। କିନ୍ତୁ ଏ କ'ଣ ସେଇ ?

ଶେଖର ମୁହଁ ବୁଲାଇଲା ସୌମିତ୍ରା ଆଡ଼େ। ଯେତେବେଳେ ସୌମିତ୍ରା ମୁଖ ପ୍ରସାଧନ ଶେଷ କରି ତନ୍ମୟ ହୋଇ ଫୁଲ୍ ସାଇଜର ଦର୍ପଣକୁ ଚାହିଁ ରହିଛି।

ଶେଖର ଡାକିଲା: ମିସ ସୌମିତ୍ରା।

ସୌମିତ୍ରା ଖାଲି ଥରେ ବୁଲି ଅନାଇଲା ଶେଖର ଆଡ଼େ।

: ଶୁଣ ।

ଶେଖର ଡାକିଲା।

ସୌମିତ୍ରା ଆଗେଇ ଆସିଲା।

: ତମେ ନେଲିକୁ ଚିହ୍ନ ?

ଶେଖର ପଚାରିଲା।

: ନେଲି ? ଓ ହଁ, ଆପଣଙ୍କର ନେଲି ସହିତ ପରିଚୟ ଅଛି ?

ସୌମିତ୍ରା ମୁହଁରେ କିଛି ଆଗ୍ରହର ଚିହ୍ନ ଫୁଟି ଉଠିଥିଲା।

: ସାମାନ୍ୟ। ତେବେ ନେଲି କ'ଣ ତମର ବାନ୍ଧବୀ ?

ସୌମିତ୍ରା କିଛି ଉତ୍ତର ଦେଲା ନାହିଁ। ଖାଲି ହସିଲା।

ଶେଖର କହିଲା: ଶୁଣ ସୌମିତ୍ରା। ରାଜେନ୍ଦ୍ର ମୋର ବନ୍ଧୁ। ତମେ ତାର ବାନ୍ଧବୀ ଯେତେବେଳେ ସେଇ ଅଧିକାରରେ ତମେ ମଧ୍ୟ ମୋର ବାନ୍ଧବୀ। ତେଣୁ ଆମର ଏଇ ଅଳ୍ପ ପରିଚିତି ଭିତରେ ମଧ୍ୟ କେହି କାହାକୁ ଅବିଶ୍ୱାସ କରିବାର ପ୍ରଶ୍ନ ଉଠୁନାହିଁ। ମୁଁ କିନ୍ତୁ ନେଲି ସମ୍ବନ୍ଧରେ ତମ ପାଖରୁ କିଛି ଜାଣିବାକୁ ଚାହେଁ।

ସୌମିତ୍ରା ପୁଣି ହସିଲା।

କହିଲା: କୌଣସି ନାରୀ ସମ୍ବନ୍ଧରେ ପୁରୁଷ ମନରେ କୌତୂହଳ ଆଦିମ କାଳରୁ ରହିଆସିଛି। କିନ୍ତୁ ଆଜିକାଲିର ନାରୀମାନଙ୍କ ସମ୍ବନ୍ଧରେ ବେଶୀ କୌତୂହଳ ପ୍ରକାଶ ଭଲ

ନୁହେଁ ମିଷ୍ଟର ଶେଖର। ତେଣୁ ନେଲି ସମ୍ବନ୍ଧରେ ଆପଣ ବେଶୀ କୌତୂହଳୀ ହୁଅନ୍ତୁ ନାହିଁ।

ଶେଖର କିଛି ସମୟ ଚୁପ୍ ରହି କହିଲା: ତମେ ଜାଣନାହିଁ ସୌମିତ୍ରା, ନେଲିର ରୂପ ଯୌବନ ଓ ପରମ୍ପରା ସମ୍ବନ୍ଧରେ ମୋର କିଛି କୌତୂହଳ ନାହିଁ। ମୁଁ ଖାଲି ନେଲିର ପେଶା ସମ୍ବନ୍ଧରେ କିଛି ଜାଣିବାକୁ ଚାହେଁ। ତମେ ମୋତେ ଅବିଶ୍ୱାସ କରନାହିଁ ସୌମିତ୍ରା; ମୁଁ ତା'ର କିଛି କ୍ଷତି କରିବି ନାହିଁ। ବରଂ ଦରକାର ପଡ଼ିଲେ ସାହାଯ୍ୟ କରିବି।

ସୌମିତ୍ରା କହିଲା: ପେଶା ଆମ ସମସ୍ତଙ୍କ ଏକ। କିନ୍ତୁ ଆମର ଏହି ପେଶା ସମ୍ବନ୍ଧରେ ମୁଁ ଆପଣଙ୍କୁ କିପରି ଯେ କ'ଣ ବୁଝାଇବି, ବୁଝାଇବା ପାଇଁ ମୋର ମୁହଁରେ ଭାଷା ନାହିଁ। ଦେହ ହେଲା ଆମର ପ୍ରଧାନ ଉପଜୀବ୍ୟ। ଏହି ଦେହକୁ ମୂଳଧନ କରି ଆମେ ସମସ୍ତେ, ମାନେ ମୋ ପରି ଝିଅମାନେ ବିଭିନ୍ନ ପେଶାରେ ଓହ୍ଲାଇ ଯାଇଛନ୍ତି, ତେଣୁ କିଏ କେତେବେଳେ କ'ଣ କରୁଛି ନ କରୁଛି ଜଣକ କଥା ଅନ୍ୟ ଜଣେ କହିବା ଦୁରୂହ ବ୍ୟାପାର। ଏଇ ଧରନ୍ତୁ ମୋ କଥା। କାଲି ପର୍ଯ୍ୟନ୍ତ ମୁଁ ଗୋଟାଏ ଧନ୍ଦାରେ ଲାଗିଥିଲି। ସେ କାମ ଶେଷ ହେଲା। ଆଜି ପୁଣି ମିଃ ଶର୍ମା ଆସିଛନ୍ତି। ତାଙ୍କ ସହିତ ଏକ ଅଲିଖିତ ଚୁକ୍ତି ହେବ। ତା'ପରେ ମୁଁ ଲାଗିଯିବି ଧନ୍ଦାରେ।

: ହୁଁ, କିନ୍ତୁ ସେଇ ଧନ୍ଦା ସମ୍ବନ୍ଧରେ ଗୋଟାଏ ସ୍ପଷ୍ଟ ଧାରଣା ମୁଁ ଜାଣିବାକୁ ଆଗ୍ରହୀ। ତମର ଆପତ୍ତି ନଥିଲେ...

ସୌମିତ୍ରା ପୁଣି ହସିଲା।

କହିଲା: ଆପଣଙ୍କୁ ବୁଝାଇ ପାରିବି ନାହିଁ ମିଷ୍ଟର ଶେଖର; ମୁଁ ଦେଖୁଛି ଏ ଲାଇନ୍‌ରେ ଆପଣ ଶିଶୁ। ତା'ହେଲେ ରାଜେନ୍ଦ୍ର ଆପଣଙ୍କର ବନ୍ଧୁ ହେଲା କିପରି ?

ଶେଖର ସୌମିତ୍ରାର ଇଙ୍ଗିତରୁ ପ୍ରକୃତରେ କିଛି ବୁଝି ପାରୁନଥିଲା। କେବଳ ନୀରବରେ ଅନାଇଥିଲା ତା' ମୁହଁକୁ। ଭାବୁଥିଲା, ସୌମିତ୍ରାକୁ ସେ ପଚାରିବ ଖୋଲାଖୋଲି ଭାବରେ। ସେ ପଚାରିବ, ତମେମାନେ କ'ଣ ଦେହ ବିକ୍ରି କରି ଅର୍ଥ ଉପାର୍ଜନ କର ?

କିନ୍ତୁ ତା'ର ଆଉ ପଚାରିବାର ସୁଯୋଗ ହେଲାନାହିଁ। ରାଜେନ୍ଦ୍ର ଭିତରକୁ ପଶି ଆସି କହିଲା: ସୌମିତ୍ରା ଆର ଘରେ ଯାଇ ମିଷ୍ଟର ଶର୍ମାଙ୍କ ସହିତ କଥାବାର୍ତ୍ତା କର।

ସୌମିତ୍ରା ଯେପରି ଆଦେଶକୁ ଅପେକ୍ଷା କରିଥିଲା। ସେ କ୍ଷିପ୍ର ପାଦରେ ଆଗେଇ ଗଲା ଆର ଘରକୁ।

ରାଜେନ୍ଦ୍ର ଶେଖର ପିଠିରେ ଗୋଟାଏ ଚାପୁଡ଼ା କସିଦେଇ ସ୍ମିତ ହସି କହିଲା: ଶେଖର, କିଛି ବୁଝିପାରୁଛୁ ? ଏ ହେଉଛି ଜୀବନ ଧାରଣର ପଥ। ଆମେ ଯେ କେମିତି ବଞ୍ଚିଛୁ, ବଂଚିବାର ଭଉଁରୀ ଆମକୁ କିପରି ଧୀରେ ଧୀରେ ଗଳା ପର୍ଯ୍ୟନ୍ତ ଗ୍ରାସ କରୁଚି, ତୁ ସେ

କଥା ବୁଝି ପାରିବୁନାହିଁ। ବୁଝିବାକୁ ମନ ବଳାଇବା ମଧ୍ୟ ତୋର ଉଚିତ୍ ନୁହେଁ। ଆଉ ସବୁ ଖବର କ'ଣ ? ତୋ ଲଟାରୀ ଟିକଟ କଟା ଚାଲିଚି ତ ? ତୋ ପ୍ରଦତ୍ତ ଟିକଟରୁ ମୁଁ କିନ୍ତୁ ଗୋଟିଏ ହେଲେ ପ୍ରାଇଜ୍ ପାଇଲି ନାହିଁ।

ଶେଖରର କିନ୍ତୁ ଏସବୁ ଶୁଣିବାରେ ଆଦୌ ମନ ନ ଥିଲା। ସେ ଖାଲି ଚିନ୍ତା କରୁଥିଲା, ନେଲି, ପାମେଲା, ସୌମିତ୍ରା ଆଉ ସେଇଭଳି ଝିଅମାନଙ୍କ କଥା। ରାଜେନ୍ଦ୍ର ପ୍ରଶ୍ନର କିଛି ଉତ୍ତର ନ ଦେଇ ସେ ପଚାରିଲା: ସୌମିତ୍ରା ସହିତ ତୋର ପରିଚୟ ହେଲା କିପରି ?

: କାହିଁକି ?

ରାଜେନ୍ଦ୍ର ହସି ହସି ପଚାରିଲା।

: ଏସବୁ ଝିଅମାନେ, ଏମାନଙ୍କ ସମ୍ବନ୍ଧରେ ମୁଁ ମୋଟେ କିଛି ଚିନ୍ତା କରି ପାରିନାହିଁ।

: ତୁ ପାରିବୁ ନାହିଁ ଶେଖର। ଏମାନଙ୍କ ରାଜ୍ୟ ଏକ ଅନ୍ୟ ନଗର। ଏମାନେ ବଞ୍ଚନ୍ତି ଅନ୍ୟ ଭାବରେ। ଏମାନଙ୍କ ପାଦତଳର ମାଟି ଶକ୍ତ ନୁହେଁ। ତଥାପି ଯେତେଦିନ ଠିଆ ହୋଇ ପାରନ୍ତି, ଏମାନଙ୍କ ପାଦ ତଳେ ଲାଗେନାହିଁ। ଆଉ ଯେଉଁଦିନ ପାଦ ଖସିଯାଏ, ଏମାନେ ଅତଳ ତଳରେ ଲୀନ ହୋଇଯାଆନ୍ତି। ଛାଡ଼େ ସେସବୁ କଥା। ତୋ ଖବର କ'ଣ କହିଲୁ। ରାତି ଏଗାରଟା ବାଜିଲାଣି। ତୋର ଆଉ ଏଠାରେ ରହିବା ଉଚିତ୍ ନୁହେଁ। ଏଥର ଘରକୁ ଚାଲିଯା।

ଶେଖର ଘରକୁ ଯିବା କଥା ଶୁଣି ପୁଣି ଯେପରି ସଂବିତ୍ ଫେରି ପାଇଲା। ସତେ ତ ତା'ର ଏଥର ଘରକୁ ଫେରିବା ଉଚିତ୍। ଯେଉଁ ଆଶା ଧରି ସେ ଆସିଥିଲା, ଆଜି ରାତିଟା ରାଜେନ୍ଦ୍ର ପାଖରେ କଟାଇଦେବ ବୋଲି; ସେ ଆଶା କିନ୍ତୁ ସ୍ୱପ୍ନିଳ ହୋଇ ଉଠିଲାନାହିଁ। ତେଣୁ ଘରକୁ ଫେରିଯିବା ଭଲ। କିନ୍ତୁ ଘରକୁ ଫେରିଗଲେ ଯେ ସେ ବିପଦର ସମ୍ମୁଖୀନ ହୋଇପାରେ। କାଲି ସକାଳୁ ଯେତେବେଳେ ଇଷ୍ଟର୍ଣ୍ଣ ଏକ୍ସପ୍ରେସ୍‌ର ପ୍ରଥମ ପୃଷ୍ଠାରେ ତା' ସମ୍ବନ୍ଧରେ ଫଟୋ ସହ ଏକ ଚମକପ୍ରଦ ବିବରଣୀ ପ୍ରକାଶିତ ହେବ, ସେତେବେଳେ...

ଶେଖର ଏଇସବୁ କଥା ଚିନ୍ତା କରୁଥିବା ବେଳେ, ହଠାତ୍ ସେ ଦେଖିଲା ରାଜେନ୍ଦ୍ର ମଧ୍ୟ କେତେବେଳେ ତା' ପାଖରୁ ଉଠି ଚାଲିଯାଇଛି। ଆଉ ଘରେ ହଠାତ୍ ଉଚ୍ଚ କଣ୍ଠର ସ୍ୱର ଶୁଣି, ଶେଖରର ଧ୍ୟାନ ଭଙ୍ଗ ହେଲା। ବୋଧହୁଏ ମିଷ୍ଟର ଶର୍ମା ଅସନ୍ତୁଷ୍ଟ ହୋଇ କାହାକୁ କ'ଣ କହୁଛନ୍ତି।

ଶେଖର କୌତୂହଳୀ ହୋଇ ଆଗେଇଗଲା ଦରଜା ପାଖକୁ। ହଁ, ମିଷ୍ଟର ଶର୍ମାଙ୍କର କଣ୍ଠସ୍ୱର: ନା ନା, ରାଜେନ୍ଦ୍ର ସହିତ ମୋର ସେପରି ଚୁକ୍ତି ହୋଇନାହିଁ। ଦଶ ହଜାରରେ କଥା ଛିଣ୍ଡିଛି ସତ, କିନ୍ତୁ ଆଡ଼ଭାନ୍‌ସ ଦୁଇ ହଜାର, ବାକି ଆଠ ହଜାର କାମ ଶେଷରେ।

ଶର୍ମା କେବେ କଥାରେ ଖିଲାପ କରେ ନାହିଁ। ଶର୍ମା ସଙ୍ଗରେ କେବେ ତ କାମ କରିନାହଁ, ବୁଝିବ କୁଆଡୁ ସେ କଥା ?

ଏଥର ରାଜେନ୍ଦ୍ରର କଣ୍ଠସ୍ୱର ଶୁଣାଗଲା: ଠିକ୍ ଅଛି ସୌମିତ୍ରା, ତମେ ବ୍ୟସ୍ତ ହେଉଛ କାହିଁକି ? ଟଙ୍କା ତମକୁ ମୁଁ ଦେବି। କିନ୍ତୁ ଟଙ୍କାଠାରୁ ବେଶୀ ଦାୟିତ୍ୱ ହେଉଛି ଆଜିର କାମଟା।

: କାମ ? ଏହାଠାରୁ ଅନେକ ଦାୟିତ୍ୱପୂର୍ଣ୍ଣ କାମ ତୁଲେଇ ନେଇଛି, ଏଇତ ମୋ ପକ୍ଷରେ ସହଜ କଥା। ଦିଅନ୍ତୁ। ରାତି ବେଶୀ ହେଉଛି। ଏହାପରେ ଆଉ ଡେରି କରିବା ଉଚିତ୍ ନୁହେଁ। ସୌମିତ୍ରା କହିଲା।

ଶେଖରର କୌତୂହଳ ଧୀରେ ଧୀରେ ବଢୁଗଲା। ସେ କବାଟ ଫାଙ୍କରେ ଏକ କ୍ଷୁଦ୍ର ଛିଦ୍ର ପଥରେ ଚାହିଁ ଦେଖିଲା, ମିଷ୍ଟର ଶର୍ମା ଗୋଟାଏ ସୋଫା ଉପରେ ବସିଛନ୍ତି, ତାଙ୍କ ସାମ୍ନାକୁ ସୌମିତ୍ରା ଏବଂ ରାଜେନ୍ଦ୍ର। ରାଜେନ୍ଦ୍ର ଆଗେଇଯାଇ ସଦର ଦରଜାଟାର କିଳିଣି ଭିତରୁ ଦେଇଦେଲା। ଆଗେଇ ଆସିଲା ଏଇ ଦରଜା ଆଡ଼କୁ। ଶେଖର ଦୁଆର ପାଖକୁ ଘୁଞ୍ଚି ଆସି ଗୋଟାଏ ଚେଆରରେ ବସିପଡ଼ିଲା। କିନ୍ତୁ ରାଜେନ୍ଦ୍ର ଆସିଲା ନାହିଁ; ଖାଲି ଖଟ୍ କରି ଗୋଟାଏ ଶବ୍ଦ ସେ ଶୁଣିଲା। ବୋଧହୁଏ ଅପର ପାର୍ଶ୍ୱରୁ ରାଜେନ୍ଦ୍ର ଏ ଦରଜାଟା ମଧ୍ୟ ବନ୍ଦ କରିଦେଲା।

ଶେଖର ପୁଣି ଆଗେଇଗଲା, ଦରଜାର ସେଇ କ୍ଷୁଦ୍ର ଛିଦ୍ର ପାଖକୁ।

ରାଜେନ୍ଦ୍ର ହାତ ମିଳେଇ ସୌମିତ୍ରାକୁ କହିଲା: ମୁଁ ତ ଆଗରୁ ସବୁ କଥା ତମକୁ କହିଛି। ଆଉ ଡେରି କରନାହିଁ।

ସଙ୍ଗେ ସଙ୍ଗେ ସୌମିତ୍ରା ଉଠି ଠିଆ ହେଲା। ଦେହରୁ ଶାଢ଼ିଟା ଖୋଲି ଅଣ୍ଟାରେ ଗୁଡ଼େଇ ଦେଲା। ତା'ପରେ ବ୍ଲାଉଜ ଏବଂ ତା'ପରେ ବ୍ରା। ଶେଖର ସୌମିତ୍ରାର ଏପରି ଆଚରଣରେ ତଟସ୍ଥ ହୋଇଗଲା। ଦୁଇଜଣ ପୁରୁଷଙ୍କ ସାମ୍ନାରେ ସୌମିତ୍ରା ଯେ ନିଃସଙ୍କୋଚରେ ଏପରି ଅର୍ଦ୍ଧଉଲଗ୍ନ ହୋଇପାରେ, ସେ କଥା ମୋଟେ ସେ ଚିନ୍ତା କରିପାରୁନଥିଲା।

କିନ୍ତୁ ଶେଖରର ଚିନ୍ତା ଶେଷ ହେବା ପୂର୍ବରୁ ସେ ଦେଖିଲା, ମିଷ୍ଟର ଶର୍ମା ଉଠ ଠିଆହେଲେ। ତାଙ୍କର ଆଟାଚି କେସ୍‌ଟି ଖୋଲି ତା' ଭିତରୁ ଗୋଟିଏ ବ୍ରା ବାହାର କଲେ। ପାଦେ ପାଦେ କରି ଆଗେଇଗଲେ ସୌମିତ୍ରା ପାଖକୁ। ଏବଂ ନିଜ ହାତରେ ବ୍ରା'ଟିକୁ ସେ ସୌମିତ୍ରାର ମାଂସଳ ଛାତି ଉପରେ ପିନ୍ଧାଇ ଦେଇ ପଛଆଡ଼େ ଦୁଇପାଖରେ କ୍ଲିପ୍ ଲଗାଇଦେଲେ। ପୁଣି ସାମ୍ନାକୁ ନିଜ ହାତରେ ସଜାଡ଼ି ମାଂସଳ ସ୍ଥାନମାନଙ୍କରେ ବ୍ରା'ଟି ଠିକ୍ ଭାବରେ ଖାପିଛି କି ନାହିଁ ଦେଖିସାରି ପୁଣି ସୋଫା ଉପରକୁ ଫେରିଗଲେ। ଯେପରି ନିର୍ବିକାର। ନିଃସଙ୍କୋଚ।

ସୌମିତ୍ରା ପୁରୁଣା ବ୍ରା'ଟା ରାଜେନ୍ଦ୍ର ହାତକୁ ବଢ଼ାଇଦେଇ ବ୍ଲାଉଜ୍ ପିନ୍ଧିଲା। ତା'ପରେ ଅଣ୍ଟାରେ ଗୁଡ଼େଇଥିବା ଶାଢ଼ି ଖୋଲି ଦେହ ଢାଙ୍କିଲା ଏବଂ ସ୍ମିତ ହସି କହିଲା: ଆଶା କରୁଛି, ଅତି ସହଜରେ ଆପଣଙ୍କ କାମ ସମାଧାନ କରି ଫେରିଆସିବି।

ମିଃ ଶର୍ମା ପକେଟରୁ କେତେଖଣ୍ଡି ଶହେ ଟଙ୍କିଆ ନୋଟ୍ ବାହାର କରି ସୌମିତ୍ରା ହାତକୁ ବଢ଼ାଇ ନେଲେ ଏବଂ ହାତ ହଲେଇ କହିଲେ, ମୁଁ ତମର ସଫଳତା କାମନା କରୁଛି।

ସୌମିତ୍ରା ଅତି ସହଜ ଓ ସରଳ ଗତିରେ ଦରଜା ଖୋଲି ବାହାରିଗଲା। ମିଷ୍ଟର ଶର୍ମା ଆଟାଚି କେସ୍ ବନ୍ଦ କଲେ।

ରାଜେନ୍ଦ୍ର କହିଲା: କାଲି କେଉଁଠି ଦେଖା ହେବ ?

ମିଷ୍ଟର ଶର୍ମା ଉଠି ଠିଆ ହୋଇ କହିଲେ: ଆଜି ରାତି ବାରଟା ବେଳକୁ ଗୋଟାଏ ଜରୁରୀ ଖବର ମିଳିବାର ଅଛି। ତମ ସହିତ ଦରକାର ହୋଇପାରେ। ବରଂ ତମେ ମୋ ସଙ୍ଗରେ ଆସ। ଖବରଟା ଫୋନ୍‌ରେ ଦେବାଭଳି ନୁହେଁ।

ରାଜେନ୍ଦ୍ର ଦ୍ୱିଧା କରୁଥିଲା। ମିଃ ଶର୍ମା କିନ୍ତୁ ଛାଡ଼ିଲେ ନାହିଁ। ସେ ପୁଣି ସୋଫା ଉପରେ ବସିଲେ ଏବଂ କହିଲେ: ତମେ ପ୍ରସ୍ତୁତ ହୋଇଆସ।



ଶେଖର ତା ଆଟାଚି କେସ୍‌ଟି ଧରି ରିଜେଣ୍ଟ ହୋଟେଲରୁ ବାହାରି ଆସିଲା । ସେ ଇଚ୍ଛା ପ୍ରକାଶ କରିଥିଲେ ରାଜେନ୍ଦ୍ର ହୁଏତ ତା ରୁମ୍‌ର ଚାବିଟା ତାକୁ ଦେଇ ମିଃ ଶର୍ମାଙ୍କ ସଙ୍ଗରେ ବାହାରି ଯାଇଥାଆନ୍ତା, କିନ୍ତୁ ସେ ନିଜ ଆଖି ଆଗରେ ଯେଉଁ ଘଟଣାସବୁ ଦେଖିଲା, ଏହାପରେ ଆଉ ମୁହୂର୍ତ୍ତେ ନୁହେଁ । ହୋଟେଲ ବାହାରକୁ ବାହାରି ପ୍ରଥମେ ସେ ରାସ୍ତାର ଚାରିଆଡ଼କୁ ଚାହିଁଲା । ପୋଲିସ ଭ୍ୟାନ୍ ତା' ପାଇଁ ପ୍ରତୀକ୍ଷା କରିନାହିଁ ତ ?

କିନ୍ତୁ ନା, ରାସ୍ତା ନିଶୂନ୍ । ଗୋଟେ ଅଧେ ପ୍ରାଇଭେଟ୍ କାର୍, ଟ୍ୟାକ୍‌ସି ଯିବାଆସିବା କରୁଛି । ଶେଖର ଦେଖିଲା ଗୋଟିଏ ଖାଲି ରିକ୍‌ସା ଘଣ୍ଟା ଠନ୍ ଠନ୍ କରି ଚାଲି ଯାଉଛି । ଶେଖର ଡାକିଲା ସେଇ ରିକ୍‌ସାକୁ । ରିକ୍‌ସାରେ ବସି, ରିକ୍‌ସାର ହୁଡ୍ ଟେକି ଦେଇ ନିବୁଜ କରି ଦେବାକୁ କହି, ରିକ୍‌ସାବାଲାକୁ କହିଲା, ଚାଲେ, ଆଗେଇ ଚାଲେ ।

ରିକ୍‌ସା ଠନ୍ ଠନ୍ କରି ଆଗକୁ ବଢ଼ିଲା । କିନ୍ତୁ ଏହାପରେ ଶେଖର ଯିବ କୁଆଡ଼େ ? ଘରକୁ ଫେରିବାର ତ ଉପାୟ ନାହିଁ, ନେଲି ଠିକଣାରେ ପୋଲିସ ଭ୍ୟାନ୍ ଥୁଆ ହୋଇଛି, କିନ୍ତୁ ନେଲି କହିଥିଲା, ତା'ର ରିସେଲ ଷ୍ଟ୍ରୀଟ୍ ଯିବା ଏକାନ୍ତ ଆବଶ୍ୟକ । କିନ୍ତୁ ସେ ଯିବ କିପରି ? ଆଉ ଥରେ ନେଲିକୁ ଫୋନ୍ କଲେ ହୁଅନ୍ତା ନାହିଁ ?

ଶେଖର ଆଖି ଆଗରେ ସାମ୍ନାରେ ମୀନାର ହୋଟେଲର ନିଅନ୍ ସାଇନ୍ ବୋର୍ଡ଼ଟା ଭାସି ଉଠିଲା । ତାର ଇଚ୍ଛା ହେଲା, ଆଜି ରାତିଟା ମୀନାରରେ କଟାଇ, କାଲି ପରିସ୍ଥିତି ଲକ୍ଷ୍ୟ କରି, ତାପରେ ବାହାରକୁ ବାହାରିବ । ଖବରକାଗଜରେ ପ୍ରକାଶିତ ସମ୍ବାଦ ଉପରେ କ'ଣ ଆକ୍‌ସନ, ରି ଆକ୍‌ସନ ହେଉଛି, ସବୁ ସେ ସେଇଠି ବସି ଲକ୍ଷ୍ୟ କରିବ ।

ରିକ୍‌ସାରୁ ଓହ୍ଲାଇ, ଅଟାଚି କେସ୍‌ଟି ଧରି ସିଧାସଳଖ ଶେଖର ଉପରକୁ ଉଠିଗଲା। ଦୋତାଲାରେ ମ୍ୟାନେଜରିଆଲ୍ ଟେବୁଲଟି ଶୂନ୍ୟ ପଡ଼ିଥିଲା। ଶେଖର ଏପାଖ ସେପାଖକୁ ଚାହିଁ ଦେଖିଲା, ଗୋଟିଏ ବୟ ହସି ହସି ତା' ଆଡ଼କୁ ଆସି ସଲାମ ବଜାଇଲା।

ଶେଖର ବୟଟିକୁ ଚିହ୍ନି ନପାରି ତା'. ଆଡ଼କୁ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ ପଚାରିଲା: ମ୍ୟାନେଜର ନାହାନ୍ତି ?

ବୟଟି କହିଲା: ନାହାନ୍ତି ହଜୁର୍। ସେ ଘରକୁ ଚାଲିଗଲେଣି। ଆଜି ଆଉ ଫେରିବେ ନାହିଁ।

ଶେଖର ଟିକିଏ କିନ୍ତୁ କିନ୍ତୁ ହୋଇ କହିଲା: ମୋର ଗୋଟାଏ ରୁମ୍ ଦରକାର ଥିଲା ଯେ !

ବୟଟି କହିଲା: ଆପଣ ଆସନ୍ତୁ ସାର୍। ମୁଁ ସବୁ ବନ୍ଦୋବସ୍ତ କରି ଦେଉଛି।

ବୟଟି ଶେଖର ହାତରୁ ଆଟାଚି କେସ୍‌ଟି ନେଇ ଆଗେ ଆଗେ ଯାଉ ଯାଉ କହିଲା: ଆପଣ ମୋତେ ଚିହ୍ନିପାରୁନାହାନ୍ତି ସାର୍।

ଶେଖର ବୟଟି ମୁହଁକୁ ଅନାଇଲା।

: ମୋ ନାଁ ରସିଦ। ମୁଁ ଆଗେ ଫାଉଣ୍ଟେନ ବାର୍‌ରେ ଥିଲି। ଆପଣ ମୋ ନାଁରେ ଗୋଟାଏ ଲଟାରୀ ଟିକଟ କିଣି ଦେଇଥିଲେ। ସେଇ ଟିକଟରେ ପାଞ୍ଚ ହଜାର ଟଙ୍କାର ଗୋଟାଏ ପ୍ରାଇଜ୍ ପାଇଥିଲି ସାର୍।

: ସତେ ? ହୋଇଥିବ। ମୋର କିନ୍ତୁ ମନେ ନାହିଁ। ଆଚ୍ଛା ରସିଦ୍, ଏ ହୋଟେଲରେ କିଏ ସବୁ ରହନ୍ତି ?

: କିଏ ସବୁ ମାନେ ? ରସିଦ୍ ବିସ୍ମୟ ପ୍ରକାଶ କଲା।

: ଏଇମାନେ କି ଧରଣର...

ଶେଖର କଥା ଶେଷ କରିପାରିଲା ନାହିଁ।

ହଠାତ୍ ଗୋଟାଏ ଝିଅ ଛିଟ୍‌କି ଆସି ତା ପାଦ ପାଖରେ ପଡ଼ିଲା। ସାମନା ରୁମ୍‌ରୁ ଝିଅଟାକୁ କେହି ଜଣେ ଦରଜା ବାହାରକୁ ଠେଲି ଦେଇ, ଦରଜା ବନ୍ଦ କରିଦେଲା।

ଶେଖର ଅଟକିଗଲା ଟିକିଏ। ସେ କିଛି ବୁଝିବା ଆଗରୁ ରସିଦ୍ ଶେଖରର ହାତ ଧରି ଟାଣି ଟାଣି ଆଗକୁ ନେଇଯାଇ କହିଲା,: ଆପଣ ଚାଲିଆସନ୍ତୁ ସାର୍, ସେଠି ଠିଆ ହୁଅନ୍ତୁ ନାହିଁ।

ଆଉ କିଛି ବାଟ ଆଗେଇ ଯାଇ ରସିଦ୍ ଗୋଟାଏ ରୁମ୍‌ର ଦୁଆର ଖୋଲିଦେଇ କହିଲା: ଭିତରକୁ ଯାଆନ୍ତୁ। ଆପଣଙ୍କର କିଛି ଅସୁବିଧା ହେବ ନାହିଁ। ମୁଁ ଏ ହୋଟେଲର ହେଡ୍ ବିଅରର।

ଶେଖର ଭିତରୁ ପଶିଲା। ରସିଦ୍ ଘରର ଲାଇଟ୍ ଜଳେଇ ଦେବା ମାତ୍ରେ, ଘରର ଜୌଲୁସ ଦେଖି ଶେଖର ସ୍ତବ୍ଧ ହୋଇଗଲା। ଦାମୀ ଦାମୀ ଆସବାବପତ୍ର, ସମ୍ଭବତଃ ଏଆର କଣ୍ଡିସନ୍‌ଡ।

ରସିଦ୍ କହିଲା: ଆମ ହୋଟେଲରେ ଦୁଇଟି ଭି.ଆଇ.ପି. ରୁମ୍ ଅଛି। ତା ଭିତରୁ ଏଏ ଗୋଟିଏ। ବର୍ତ୍ତମାନଠାରୁ ସକାଳ ଆଠଟା ପର୍ଯ୍ୟନ୍ତ ଏ ହୋଟେଲ ମୋ ଚାର୍ଜରେ, ତେଣୁ ଆପଣ କିଛି ଭାବିବେ ନାହିଁ। ବାଥ୍ ରୁମ୍‌ରେ ସବୁ ପ୍ରକାର ଲୁଗାପଟା ଅଛି। ଆପଣ ଯାଇ ପରିଚ୍ଛନ୍ନ ହୁଅନ୍ତୁ। କ'ଣ ଖାଇବେ ?

ଶେଖର କହିଲା: ନା, ମୁଁ କିଛି ଖାଇବା ପୂର୍ବରୁ ଗୋଟାଏ ଫୋନ୍ କରିବା ମୋର ଏକାନ୍ତ ଜରୁରୀ। ତମର ଏଠି ଫୋନ୍ କୋଉଠି ଅଛି ?

ରସିଦ୍ କହିଲା: ସାର୍, ଭି.ଆଇ.ପି ରୁମ୍‌ରେ ଥାଇ ବି ଫୋନ୍ କରିବାକୁ ଅନ୍ୟତ୍ର ଯିବା କଥା ଚିନ୍ତା କରୁଛନ୍ତି ?

ରସିଦ୍ ଆଗେଇ ଯାଇ ଆଲମିରା ଭିତରୁ ଫୋନ୍‌ଟା କାଢ଼ି ବାହାରେ ଥୋଇ କହିଲା, ମୁଁ ଆପଣଙ୍କ ଫୋନ୍‌ଟା ଡାଇରେକ୍ଟ କରି ଦେଇ ଯାଉଛି। ଆପଣ ଶୀଘ୍ର କାମ ସାରନ୍ତୁ। ମୁଁ ଅଧଘଣ୍ଟା ପରେ ଖାଦ୍ୟ ଧରି ଆସୁଛି।

ଶେଖର କିନ୍ତୁ ରୁମ୍ ଭିତରେ ଗୋଟାଏ ସୋଫା ଉପରେ ବସି ସ୍ତବ୍ଧ ହୋଇଯାଇଥିଲା। ତା'ର ସ୍ମୃତିଶକ୍ତି ଧୀରେଧୀରେ ଲୋପ ହୋଇଯିବକି ଆଉ !

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା।

ଶେଖର ଚମକି ପଡ଼ିଲା। ତା'ପରେ ରିସିଭରଟା ଉଠାଇ କହିଲା: ହ୍ୟାଲୋ ?

: ମୁଁ ରସିଦ୍ କହୁଛି, ଆପଣ ଶୀଘ୍ର କାମଦାମ ଶେଷ କରନ୍ତୁ। ଆଉ ଗୋଟିଏ କଥା ସାର୍, ଆପଣ ରୁମ୍‌ରେ ଥିଲା ବେଳେ ସବୁବେଳେ ଭିତରୁ କବାଟଟା କିଳିଣୀ ଦେଉଥିବେ। ହୋଟେଲ କଥା ଜାଣନ୍ତି ତ, ବାରଭାଇ ଆଖାଡ଼ା, ସେ ରୁମଟାରେ ଅନେକ ଦାମୀ ଆସବାବପତ୍ର ଅଛି ତ ! ସେଥିପାଇଁ...

ରସିଦ କଥା ଶେଷ ନ କରି ରିସିଭରଟା ରଖିଦେଲା। ଶେଖର ସଙ୍ଗେସଙ୍ଗେ ଉଠିଯାଇ, ଭିତରୁ କିଳିଣୀଟା ବନ୍ଦ କରିଦେଇ ଫୋନ୍ ପାଖକୁ ଫେରିଆସିଲା। ଆଗ ସେ କାହାକୁ ଫୋନ୍ କରିବ ? ଚିତ୍ରା ପାଖକୁ ନା ନେଲି ପାଖକୁ ?

ଚିତ୍ରାର ନମ୍ବରଟା ମନେ ଥିଲା।

ସେ ସଙ୍ଗେସଙ୍ଗେ ଡାଏଲ୍ କଲା। ଅପର ପ୍ରାନ୍ତରେ ରିଙ୍ଗ୍ ହେବାରେ ଲାଗିଲା। ଶେଖର ଉଦ୍‌ବିଗ୍ନ ହୋଇ ଅପେକ୍ଷା କରିଥିଲା।

: ହ୍ୟାଲୋ ?

ଏକ ନାରୀ କଣ୍ଠସ୍ୱର।

: ଚିତ୍ରା। ତମେ ଫେରିଲ କେତେବେଳେ ?

: ଏଇ ସଙ୍ଗେ ସଙ୍ଗେ ଫେରୁଛି। କିନ୍ତୁ ତମେ କି ଧରଣର କହିଲ ? ମୋତେ ବିପଦ ମଝିକୁ ଠେଲିଦେଇ ଟଙ୍କାପଇସା ଧରି ଚମ୍ପଟ।

: କିନ୍ତୁ ଚିତ୍ରା ମୁଁ ତ...

: ଚୁପ୍ କର। ତମେ ଯେତେ ସଫେଇ ଦେଲେ ବି ମୁଁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ। ବାପ୍‌ରେ ଶଙ୍କର ଦୟାଲର ଚେହେରା ଦେଖି ମୋର ତ ପିଳେହି ପାଣି ହୋଇଗଲା। ଅବଶ୍ୟ ସେ ଖୁବ୍ ଭଦ୍ରଲୋକ, ମୋ ସହିତ ଯେପରି କିଛି ଖରାପ ବ୍ୟବହାର କରିନାହିଁ। କିନ୍ତୁ ସେ ଯେତେବେଳେ ପାଦେ ପାଦେ କରି ମୋ ପାଖକୁ ଆଗେଇ ଆସିଲା, ମୋର ସର୍ବାଙ୍ଗ ଝାଳେଇ ଉଠିଲା। ତଣ୍ଟି ଅଠା ଅଠା ହୋଇଆସିଲା। ମୁଁ ତଳକୁ ମୁହଁ ମାଡ଼ି ବସିଥିଲି। ସେ ମୋ ଚିବୁକ ହଲେଇ ଦେଇ ମୋ ଦୃଷ୍ଟି ସହିତ ଦୃଷ୍ଟି ମିଳାଇ କହିଲା: ତମେ ଲାଇନ୍‌ରେ ନୂଆ, ନା ? ଖଣ୍ଡିଉଡ଼ା ଦେଇ ଶିଖୁଛ ? ବେଶ୍। ଦୁଇଦିନ ପରେ ସବୁ ଠିକ୍ ହୋଇଯିବ। ମାଲ୍ ବାହାର କର।

ଅପର ପ୍ରାନ୍ତରୁ ଆଉ କିଛି ଶୁଣାଗଲା ନାହିଁ।

କିଛି ସମୟ ନୀରବତା ପରେ ଦୂରରୁ ଶୁଣାଗଲା, ପୋଲିସ୍ ପୋଲିସ୍।

ତା'ପରେ ରିସିଭରଟା କ୍ରେଡେଲ ଉପରେ କଚାଡ଼ି ଦେବାର ଶବ୍ଦ ହେଲା। ଶେଖର ଅବାକ୍, କାହା ସାଙ୍ଗରେ ସେ କଥା କହିଲା ?

ଚିତ୍ରା, ଚିତ୍ରା ଯାଇଥିଲା ଶଙ୍କର ଦୟାଲ ପାଖକୁ। ଶଙ୍କର ଦୟାଲ ତା' ଚିବୁକରେ ହାତ ମାରି କହିଲା: ତମେ ଏ ଲାଇନ୍‌ରେ ନୂଆ ନା ? ଅସମ୍ଭବ, ଚିତ୍ରା କେବେ ଏତେ ତଳକୁ ଖସିପାରେ ନାହିଁ, ତେବେ ସେ କାହା ସହିତ କଥା କହିଲା ? ଚିତ୍ରାର ନମ୍ବର ତ ସେ ଠିକ୍ ଡାଏଲ୍ କରିଥିଲା, ତେବେ କ'ଣ ରଂ ନମ୍ବର ହୋଇଗଲା ?

ଆଉଥରେ ଡାଏଲ୍ କରି ଦେଖିଲେ କେମିତି ହୁଅନ୍ତା ? କିନ୍ତୁ ଅପର ପାର୍ଶ୍ୱରେ ଯେ ପୋଲିସ୍। ରିଂଟା ଯଦି ପୁଣି ସେଇଠି ହୁଏ....

ଶେଖରର ଚିନ୍ତା ଶେଷ ହେଲାନାହିଁ। ଏଥର ତା' ଫୋନ୍‌ଟା ବାଜି ଉଠିଲା। ସେ ପୁଣି ଥରେ ଚମକି ପଡ଼ି ରିସିଭର ଆଡ଼କୁ ହାତ ବଢ଼ାଇନେଇ ପୁଣି ଫେରେଇ ଆଣିଲା। ଏତେ ରାତିରେ, ଏଇ ନମ୍ବରରେ କାହାର ଫୋନ୍ ?

ଶେଖରର ମନେପଡ଼ିଲା ଏଇଟା ହୋଟେଲ ଟେଲିଫୋନ୍ ଏବଂ ରସିଦ ତାକୁ ଡାଇରେକ୍ଟ କରିଦେଇଯାଇଛି। ତେଣୁ ସେ ଝଟ୍‌କରି ରିସିଭରଟା ଉଠାଇବାକୁ ଯାଉଛି, ଦରଜାରେ ବାହାରେ କିଏ ଧକ୍‌କା ମାରିବାର ଶବ୍ଦ ହେଲା। ଶବ୍ଦଟା ଅତ୍ୟନ୍ତ ଅସମ୍ଭାଳ ଜଣାପଡୁଥିଲା।

ଶେଖର ଉଠିଯାଇ ଦରଜା ଖୋଲିଦେଲା ।

ବାହାରୁ ରସିଦ୍ ଝଡ଼ ବେଗରେ ଛୁଟି ଆସି, ଟେଲିଫୋନ୍ ରିସିଭରଟା ଉଠାଇ କିପରି ଏକ ଅଦ୍ଭୁତ ଶବ୍ଦ କରି, ଡ୍ରୟାରରୁ ଗୋଟାଏ ଟେପ୍‌ରେକର୍ଡ଼ର ବାହାର କରି, କ୍ଷିପ୍ର ହସ୍ତରେ ଟେଲଫୋନ୍ ସହିତ ସଂଯୋଗ କରି କହିଲା: ଇଏସ୍, ଗୋ ଅନ୍ ମାଡାମ୍ ।

ତା'ପରେ ଟେପ୍ ରେକର୍ଡ଼ର ଘୂରିବାକୁ ଲାଗିଲା । ରସିଦ ଇଙ୍ଗିତରେ ଶେଖରକୁ ନୀରବ ରହିବା ପାଇଁ କହିଲା । ଶେଖର ଏକ ମୂକସାକ୍ଷୀ ପରି ରସିଦର କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲା ।

ବେଶୀ ସମୟ ନୁହେଁ । ଚାରି ପାଞ୍ଚ ମିନିଟ୍ ପରେ ରସିଦ୍ ଟେଲିଫୋନ୍ ରିସିଭରଟା କ୍ରେଡେଲ ଉପରେ ରଖିଦେଇ ଏବଂ ଟେପ୍ ରେକର୍ଡ଼ରର ସୁଇଚ୍ ଅଫ୍ କରିଦେଇ ହସି ହସି କହିଲା: ଠିକ୍ ବାରଟା ପଇଁତିରିଶ ମିନିଟ୍‌ରେ କୁମାର ବାହାଦୂରଙ୍କର କଲ୍ ଆସେ । ଯେଉଁଦିନ କୁମାର ବାହାଦୂରଙ୍କର କେହି ଲୋକ ନ ଥାନ୍ତି, ସେଦିନ କଲ୍‌ଟା ଟେପ୍ କରି ରଖିବାକୁ ହୁଏ । ଏ ଦାୟିତ୍ୱଟା ମୋର । ସେଥିପାଇଁ ମୋତେ ସେ ପାରିଶ୍ରମିକ ଦିଅନ୍ତି । ଆଜି କିନ୍ତୁ ଭୁଲି ଯାଇଥିଲି ସାର୍ ! ଫୋନ୍‌ଟା ଡାଇରେକ୍ଟ କରିଦେଇ ଆହୁରି ଅସୁବିଧା ହୋଇଯାଇଥିଲା । ଯାହାହେଉ, ଆପଣ ହଠାତ୍ ଉଠେଇ ନ ନେଇ ବଞ୍ଚେଇ ଦେଇଛନ୍ତି ।

: କିନ୍ତୁ ଏଇ କୁମାର ବାହାଦୂର ଜଣକ କିଏ ?

: ସିଏ ସାର୍ । ଜଣେ ଖୁବ୍ ବଡ଼ ବ୍ୟବସାୟୀ । ଏଇ ଯୋଉ ରୁମ୍‌ଟାରେ ଆପଣ ଅଛନ୍ତି, ଏଇ ରୁମ୍‌ଟା ତାଙ୍କର ବାରମାସ ପାଇଁ ରିଜର୍ଭ । ସେ ବର୍ଷରେ ଥରେ ବା ଦୁଇଥର ଆସନ୍ତି । କିନ୍ତୁ ତାଙ୍କର କର୍ମଚାରୀମାନେ ପ୍ରାୟ ଆସନ୍ତି ।

: କୁମାର ବାହାଦୂର ରୁହନ୍ତି କେଉଁଠି ?

: ସିଏ ସାର୍ କୋଉଠି ରହନ୍ତି କହିହେବ ନାହିଁ, ଆଜି ସିଙ୍ଗାପୁର; କାଲି ରେଙ୍ଗୁନ୍, ପଅରଦିନ ବର୍ମା । ସେ ସବୁ ବଡ଼ ଲୋକଙ୍କର ବଡ଼ ବଡ଼ କଥା । ଆପଣ ସାର୍ ରେଡ଼ି ହେଲେ ? ମୁଁ ଖାନା ପଠାଇଦେଉଛି । ଆପଣ ଖାଇପିଇ ଆରାମ୍‌ରେ ଶୋଇପଡ଼ନ୍ତୁ ।

ରସିଦ୍ ଟେପ୍ ରେକର୍ଡ଼ଟା ଡ୍ରୟାର ଭିତରେ ପୂରାଇ ଦେଇ ପୁଣି କ୍ଷିପ୍ର ପଦରେ ଘରୁ ବାହାରି ଚାଲିଗଲା ।

ଧୀରେଧୀରେ ଶେଖରର ମନ କୌତୂହଳରେ ଭରି ଉଠୁଥିଲା ।

ରସିଦ୍ ଚାଲିଯିବା ପରେ, ଘରର ଦରଜାଟା ବନ୍ଦ କରିଦେଇ ଡ୍ରୟାରରୁ ସେ ଟେପ ରେକର୍ଡ଼ରଟି ବାହାର କଲା । କିଛିସମୟ ଏପାଖ ସେପାଖ ଅନାଇ ରହି, ସନ୍ତର୍ପଣରେ ଟେପ୍ ରେକର୍ଡ଼ରର ଚାବିଟି ଖୋଲିଲା ।

ଟେପ୍ ଘୂରିବାକୁ ଲାଗିଲା ଏବଂ ଅଳ୍ପ ସମୟ ପରେ ଶୁଣିବାକୁ ମିଳିଲା: ହାଲୋ,

ହାଲୋ, ସିଙ୍ଗାପୁର ସ୍ପିକିଂ । ବାରଟା ଫ୍ଲାଇଟ୍‌ରେ ବୁଲ୍‌ବୁଲ୍ ଚାଲି ଯାଇଛି । ସେ ଯାଇ ଠିକ୍ ଲୋକ ହାତରେ ଜିନିଷ ପହଞ୍ଚାଇ ଦେବ । ତମେ କାଲି ବାରଟା ଭିତରେ ଆଖ୍‌ତରକୁ ଦେଖା କରିବ, ଆଶା କରୁଛି ବୁଲ୍‌ବୁଲ୍‌ର ଏ ଯାତ୍ରା ସଫଳ ହେବ । ଏଥର ରିସ୍କ୍‌ଟା ଟିକିଏ ବେଶୀ । ଖୁବ୍ ସାବଧାନ ।

ବାସ, କଥା ଶେଷ ହୋଇଗଲା । ଶେଖର ଆଉ କିଛିସମୟ ଟେପ୍‌ଟାକୁ ଚଳେଇଲା । କାଳେ ଯଦି ଆଉ କିଛି ରେକର୍ଡ଼ ହୋଇଥାଏ । କିନ୍ତୁ ନା' ଆଉ କିଛି ସେ ଶୁଣିବାକୁ ପାଇଲା ନାହିଁ ।

ଶେଖର ଏହାପରେ ଟେପ୍ ରେକର୍ଡ଼ରଟାକୁ ଯଥା ସ୍ଥାନରେ ରଖି ଦେଇ ଚିନ୍ତା କଲା, ମହାନଗରୀର ଏଇ ରାତ୍ରି ପ୍ରକୃତରେ ମାୟାବିନୀ । ରାତ୍ରିର ଅନ୍ଧକାରରେ ପ୍ରତି ମୁହୂର୍ତ୍ତରେ କେଉଁଠି ଯେ କ'ଣ ଘଟୁଛି, କାହାରି ପକ୍ଷରେ କଳନା କରିବା ସମ୍ଭବ ନୁହେଁ ।

ତେବେ ଶେଖର ଆଜିଯାଏ କରୁଥିଲା କ'ଣ ? ଖାଲି ବାପାଙ୍କ ଅଗାଧ ସମ୍ପତ୍ତିକୁ ଆବୋରି ରଖି, ଆଳସ୍ୟରେ ସମୟ କଟାଇବା ଛଡ଼ା ସେ ଆଉ କରିଛି କ'ଣ ? କିନ୍ତୁ ଆଜିର ଏହି ମାୟାବିନୀ ରାତ୍ରିର ଅଭିଜ୍ଞତା ଅଦ୍ଭୁତ ! ସେ ତେବେ କ'ଣ ବାଧ୍ୟ ହୋଇ, ପରିସ୍ଥିତିର ଚାପରେ ପଡ଼ି ସମାଜର ଜଣେ ଅଖ୍ୟାତ ଲୋକ ଭାବରେ ପରିଚିତ ହେବ ?

ନା ନା, ରାତ୍ରିର ଅନ୍ଧକାରରେ ଯେଉଁମାନେ ଗୋଟାଏ ସ୍ୱତନ୍ତ୍ର ସାମ୍ରାଜ୍ୟ ବିସ୍ତାର କରି, ବେଧଡ଼କ ଘୂରି ବୁଲୁଛନ୍ତି ଏବଂ ସମାଜକୁ ପଙ୍ଗୁ କରି ନିଜେ ଗିରି ଲଙ୍ଘନ କରୁଛନ୍ତି, ସେମାନଙ୍କର ଏଇ ସ୍ୱର୍ଗରାଜ୍ୟ ସେ ଭାଙ୍ଗିଦେବ । ହଁ, ହଁ ତାର ନିର୍ଦ୍ଦୋଷିତା ପ୍ରମାଣ ପାଇଁ ସେ ନିଶ୍ଚୟ ଆଗେଇ ଯିବ ।

ଶେଖର ଏଥର ଟେଲିଫୋନ୍ ଡିରେକ୍ଟରୀରୁ ତୃତୀୟ ଇନ୍ଦ୍ରଜିତ୍ ରାୟର ନମ୍ବର ବାହାର କରି ଡାଏଲ୍ କଲା । ଅପର ପ୍ରାନ୍ତରୁ ସେଇ ନାରୀକଣ୍ଠର ସ୍ୱର ଶୁଣାଗଲା ।

: ମୁଁ ପାମେଲା କହୁଛି । ଆପଣ ?

: ମୁଁ ଶେଖର । ଶୁଣ ପାମେଲା, ନେଲି ସହିତ ମୋର ଖୁବ୍ ଦରକାର, ତା' ସହିତ ଟିକିଏ ଏଇ ମୁହୂର୍ତ୍ତରେ ଯୋଗସୂତ୍ର ସ୍ଥାପନ କରାଇଦିଅ । ପ୍ଲିଜ୍, ଖୁବ୍ ଜରୁରୀ ।

: ତା' ହେଲେ ଆପଣଙ୍କ ଫୋନ୍ ନମ୍ବରଟା କୁହନ୍ତୁ ।

ଶେଖର ଫୋନ୍‌ରେ ଲେଖା ହୋଇଥିବା ନମ୍ବରଟା ଦେଖି ପାମେଲା କହିଲା ଏବଂ ରିସିଭରଟା ରଖିଦେଇ ଉଠି ଠିଆ ହେଲା । ଆଉ ସେ ସ୍ଥିର ହୋଇ ରହିପାରିଲା ନାହିଁ । ଘରର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଟହଲିବାକୁ ଲାଗିଲା ।

କିଛି ସମୟପରେ ଟେଲିଫୋନ୍‌ଟା ବାଜି ଉଠିଲା ।

ଶେଖର କ୍ଷିପ୍ର ହସ୍ତରେ ରିସିଭରଟା ଉଠାଇ କହିଲା: ହାଲୋ !

: ମୁଁ ନେଲି କହୁଛି। ତମକୁ ମୁଁ ସେତିକିବେଳୁ ଅପେକ୍ଷା କରି ବସିଛି, ତମେ ଫେରିଲ ନାହିଁ? ଅସମ୍ଭବ ଲୋକ ତମେ ତ!

: ମୁଁ ଯାଇଥିଲି ନେଲି ତମ ଘରକୁ, କିନ୍ତୁ ଦେଖିଲି, ତମ ଦୁଆରେ ଗୋଟାଏ ପୋଲିସଭ୍ୟାନ ଥୁଆ ହୋଇଛି। ତେଣୁ ଗାଡ଼ିରୁ ଓହ୍ଲାଇବାକୁ ସାହସ କରିପାରିଲି ନାହିଁ।

: ପୋଲିସ୍‌କୁ ଆପଣଙ୍କର ଡରିବାର କ'ଣ ଅଛି ?

: କିଛି ନାହିଁ ଯେ, ତଥାପି ଫାଉଣ୍ଟେନ ବାରରେ ମୁଁ ଗୋଟାଏ ଅଘଟଣ ଘଟାଇ ଆସିଛି। ଇନ୍ଦ୍ରଜିତ୍ ରାୟକୁ ଗୋଟାଏ ଘୁସି ମାରି ତା' ନାକ ଫଟାଇ ଦେଇ ଆସିଛି।

ଅପର ପ୍ରାନ୍ତରୁ ନେଲି କହିଲା: ଶେଖର ତମେ ଯେମିତି ହେଲେ ଆଜି ମୋ ପାଖକୁ ଆସ। ଆଜି ରାତି ଚାରିଟା ଭିତରେ ତମ ସହିତ ମୋର ଥରେ ଦେଖା ହେବା ଏକାନ୍ତ ଆବଶ୍ୟକ।

: ନା', ନେଲି; ଯିବି ନାହିଁ। ଏତେ ଯଦି ତମର ଆବଶ୍ୟକ ଥାଏ, ତମେ ନିଜେ ଆସିପାର। ମୁଁ 'ମୀନାର'ରେ ରହୁଛି। ରସିଦକୁ କହିଲେ, ସେ ତମକୁ ମୋ ପାଖରେ ପହୁଞ୍ଚାଇ ଦେବ।

: କିନ୍ତୁ ଶେଖର, ତମେ ବୁଝିପାରିବ ନାହିଁ। ମୋର ଘରୁ ବାହାରିବାରେ ଅସୁବିଧା ଅଛି। ପ୍ଲିଜ୍ ଶେଖର। ତମେ ଥରେ ମୋ ଠିକଣାରେ ଆସ। ନହେଲେ ମୋର ସମସ୍ତ ସ୍ୱପ୍ନ ପୋଡ଼ି ପାଉଁଶ ହୋଇଯିବ, ଜୀବନଟା ବ୍ୟର୍ଥ ହୋଇଯିବ। ଶେଖର, ତମ ସହିତ ମୋର ଘଣ୍ଟା କେତୁଟାର ପରିଚୟ, ପରିଚୟ ଗାଢ଼ ହେଲେ, ଜାଣିବ ମୁଁ କେତେ ଅନ୍ତରଙ୍ଗ ତମର। କେତେ ଭଲପାଏ ତମକୁ। ପ୍ଲିଜ୍ ଶେଖର, ତମେ ମୋର ସର୍ବନାଶ କର ନାହିଁ।



ରସିଦ୍ ନିଜେ ଖାନା ଧରି ଆସି ପହଞ୍ଚିଲା।

ଶେଖର ସାମନାରେ ଖାଦ୍ୟ ସରଞ୍ଜାମତକ ସଜାଡ଼ି ରଖିଦେଇ କହିଲା: ଆପଣ ହୁଏତ ଜାଣନ୍ତି ନାହିଁ ସାର, କିନ୍ତୁ ଆପଣଙ୍କର ଦେଇଥିବା ସେହି ଲଟାରୀ ଟିକଟ ଖଣ୍ଡିକ ମୋ ଭାଗ୍ୟ ବଦଳାଇ ଦେଇଛି। ପାଞ୍ଚ ହଜାର ଟଙ୍କା ପାଇ ମୁଁ ସାକିଲାକୁ କିଣି କରି ଆଣି ପାରିଛି। ଆଲ୍ଲାଙ୍କ ମର୍ଜିରୁ ଏଇକ୍ଷିଣା ତ ମୋର ପଇସାର ଖୁବ୍ ଗୋଟା ଅଭାବ ନାହିଁ, କିନ୍ତୁ ସେତେବେଳେ ସେଇ ପାଞ୍ଚ ହଜାର ଟଙ୍କା ପାଇ ନ ଥିଲେ, ସାକିଲା ବାବା, ସାକିଲାକୁ ଅନ୍ୟ ଜଣକୁ ଜୁଟେଇ ଦେଇଥାଆନ୍ତା। କିନ୍ତୁ ଖୋଦାର ମେହେରବାନୀ ଥିଲେ କିଏ ଅନ୍ୟଥା କରିପାରିବ ?

ଶେଖର ଖାଉଥିଲା, ଆଉ ରସିଦ୍‌ର କଥା ଶୁଣିଲା। ରସିଦ୍ ସାକିଲାକୁ ପାଇଁ ଖୁବ୍ ଖୁସି ହୋଇଛି। ତା' ଜୀବନ ଛନ୍ଦମୟ ହୋଇଉଠିଛି।

ସେ ପଚାରିଲା: ସାକିଲା ତୋତେ ତା'ହେଲେ ଖୁବ୍ ଭଲପାଏ, ନା ରସିଦ୍।

ରସିଦ୍ ଟିକିଏ ହସିଲା। କହିଲା: ସେ କଥା ଆଉ କହିବାକୁ ଅଛି ସାର୍। ମୁଁ ସାକିଲାକୁ ଆପଣଙ୍କ କଥା କହିଥିଲି। ପୁଣି କହିବି। ଆପଣଙ୍କୁ ଆଉ କଣ ଦେବି ସାର୍ ?

: ନା, କିଛି ଦରକାର ନାହିଁ। କିନ୍ତୁ ଗୋଟିଏ କଥା ରସିଦ୍! ମୁଁ ଭାବୁଛି, ଖାଇପିଇ ସାରି ମୁଁ ଆଜି ଚାଲିଯିବି। କାଲି ଭୋର୍‌ରୁ ଗୋଟାଏ ଜରୁରୀ କାମ ଅଛି। ଏଠି ରହିଲେ ଶୋଉ ଶୋଉ ଶୋଇପଡ଼ିବି ତ, ସବୁ ଗଣ୍ଡଗୋଳ ହୋଇଯିବ।

ରସିଦ୍ ଚମକି ଉଠିଲା ପରି କହିଲା: ଏତେ ରାତିରେ ଯିବେ ସାର୍! ଆଜିକାଲି କଲିକତାର ରାସ୍ତାଘାଟ ଭଲ ନୁହେଁ। ରାତି ଗୋଟାକ ସହରଟା ସଇତାନ୍‌ମାନଙ୍କ ହାତକୁ ଚାଲିଯାଏ। ବରଂ ଆପଣଙ୍କୁ ମୁଁ ଭୋର୍‌ରୁ ଡାକି ଉଠାଇଦେବି।

ଶେଖର ଆଉ କିଛି ଉତ୍ତର ଦେଲା ନାହିଁ।

ସେ ଖାଉ ଖାଉ ପୁଣି ପଚାରିଲା: ଏଇ ଯୋଉ କୁମାର ବାହାଦୂରଙ୍କ ଘରେ ବସି ମୁଁ ଖାଉଛି, ସେ କୁମାର ବାହାଦୂରଙ୍କୁ ତମେ କେବେ ଦେଖିଛ ?

: ଅନେକଥର ସାର୍। ସେ ଆସିଲେ ମୋ ଛଡ଼ା ଅନ୍ୟ କାହାରି ହାତରେ କିଛି କାମ କରାନ୍ତି ନାହିଁ ?

: ତାଙ୍କର କାରବାର କ'ଣ ?

: ସୁନା, ରୂପା, ମଣି ମାଣିକ। ଅନେକ ରକମର।

ଆହୁରି ରସିଦ୍ ଟିକିଏ ଅଟକି ଯାଇ ହସିଲା ଏବଂ କହିଲା: ହଁ, ଭଲଭଲ ସୁନ୍ଦରୀ ଝିଅମାନଙ୍କୁ ବି ସେଦେଶରୁ ଏଦେଶକୁ ଆଉ ଏଦେଶରୁ ସେଦେଶକୁ ପଠାନ୍ତି। ଆପଣ ସାର୍ କାହାରି ଆଗରେ ଏ କଥା କହିବେ ନାହିଁ। କୁମାର ବାହାଦୂର ଜାଣି ପାରିଲେ, ମୋତେ ଅବିଶ୍ୱାସ କରିବେ।

: ହୁଁ, କୁମାର ବାହାଦୂର ତା' ହେଲେ ଖୁବ୍ ବଡ଼ଲୋକ।

: ହଁ ସାର୍ । ମୋର କିନ୍ତୁ ଗୋଟାଏ ଅନୁରୋଧ, ଆପଣ ସେମାନଙ୍କ ସଙ୍ଗରେ ସାଙ୍ଗ ହୁଅନ୍ତୁ ନାହିଁ। ସେମାନେ ଅପରାଧୀ। ଦିନର ଆଲୁଅରେ ମୁକ୍ତଆକାଶ ତଳେ, ସେମାନେ ସ୍ୱଚ୍ଛନ୍ଦରେ ବୁଲାଚଲା କରିପାରନ୍ତି ନାହିଁ। ଏକ ଅହେତୁକ ଭୟ ସବୁବେଳେ ତାଙ୍କୁ ଭୂତ ଦେଖାଉଥାଏ।

ଶେଖର ଖାଇବା ଶେଷ କରି କହିଲା: କୁମାର ବାହାଦୂରଙ୍କ କର୍ମଚାରୀମାନଙ୍କ ମଧ୍ୟରୁ ତମେ କୋଉମାନଙ୍କୁ ଚିହ୍ନିଚ ?

: ଅନେକ ତ ଆସନ୍ତି ଯାଆନ୍ତି ସାର୍। ସେମାନଙ୍କ ନାମ ଜାଣି କିଛି ଲାଭ ନାହିଁ। ଆଜି ଏ ହୋଟେଲ୍‌ରେ ତାଙ୍କର ଯେଉଁ ନାଁ, କାଲି ସେ ହୋଟେଲରେ ଆଉ ଗୋଟିଏ ନାଁ। ଆପଣ ସେମାନଙ୍କ କଥା ଛାଡ଼ନ୍ତୁ ତ। ରାତି ଅନେକ ହେଲାଣି, ଶୋଇପଡ଼ନ୍ତୁ। କାଲି ପୁଣି ଭୋରରୁ ଉଠିବାକୁ ହେବ ନା !

ରସିଦ୍ ଆଉ କିଛି ନ କହି ଘରୁ ବାହାରିଗଲା।

ଶେଖର ଖାଇବା ପାଖରୁ ଉଠିଯାଇ, ବେସିନ୍‌ରେ ହାତଧୋଇ ଆସି ପୁଣି ସୋଫା ଉପରେ ବସିଲା।

ସେ ମନକୁ ମନ ଚିନ୍ତା କଲା, ଆଜି ଏଇ ମୁହୂର୍ତ୍ତରେ ସେ କ'ଣ ପ୍ରକୃତିସ୍ଥ ଅଛି ? ଆଜି ସନ୍ଧ୍ୟାବେଳଠାରୁ, ଗୋଟିଏ ପରେ ଗୋଟିଏ ଯେଉଁସବୁ ଘଟଣା ଘଟିଲାଣି ତାଙ୍କୁ କେନ୍ଦ୍ର କରି, ସେଇସବୁ ଘଟଣାର ଶେଷ କେଉଁଠି ?

ସେ ଖୋଜୁଥିଲା ଇନ୍ଦ୍ରଜିତ୍ ରାୟଙ୍କୁ। ଆବିଷ୍କାର କଲା ଏକ ଅନ୍ଧକାରର ରାଜ୍ୟ।

ଏହି ରାଜ୍ୟର ଉତ୍‌ଥାନ ବା ପତନ ଉପରେ ଆଜି ତା'ର ଭାଗ୍ୟ, ସାମାଜିକ ସ୍ଥିତି ନିର୍ଭର କରିବାକୁ ଯାଉଛି। କିନ୍ତୁ ସେଇ ଇନ୍ଦ୍ରଜିତ୍ ରାୟଟା ଗଲା କୁଆଡ଼େ? ସେଇ ଗୋଟିକ ଲୋକକୁ ହାତ କରିପାରିଲେ, ତା ଜୀବନରେ କୌଣସି ପରିବର୍ତ୍ତନ ଆଉ କେହି ଆଣି ପାରିବେ ନାହିଁ। ଏଣେ ପୁଣି ନେଲିର ଜୀବନନାଟିକା ଶେଖର ହାତରେ। ନେଲି କହିଛି, ଶେଖର ଆଜି ରାତି ଭିତରେ ତାକୁ ଦେଖା ନ କଲେ ତା ଜୀବନ ସଙ୍କଟାପନ୍ନ ହୋଇଉଠିବ।

ଆଗ କାହା କଥା ସେ ଚିନ୍ତା କରିବ?

ନେଲି କଥା ନା ନିଜ କଥା?

ନା, ଏଠାରେ ଶୋଇଲେ ବି ନିଶ୍ଚିନ୍ତରେ ଶୋଇ ପାରିବନି। ତାକୁ ବାହାରିବାକୁ ହେବ। ହଁ, ସେ ବାହାରି ଯିବ।

ଶେଖର କଲିଂ ବେଲ୍ ବଜାଇଲା। ରସିଦକୁ କହିବ ସେ ଗୋଟିଏ ଗାଡ଼ି ଡାକି ଦେବା ପାଇଁ।

ରସିଦ ଆସିଲା।

ଶେଖର କହିଲା: ମୁଁ ନିଶ୍ଚୟ ଯିବି। ଏବେ ମଝିରେ ମଝିରେ ଆସି ତମ ଏଠି ଖାଇଯିବି। କିନ୍ତୁ ଆଜି ରାତିରେ ନ ଗଲେ, ମୋର ଚଳିବ ନାହିଁ। ମୋତେ ଗୋଟାଏ ଟ୍ୟାକ୍‌ସି ବନ୍ଦୋବସ୍ତ କରିଦିଅ।

ରସିଦର କରିବାର କିଛି ନଥିଲା।

ସେ ଗୋଟିଏ ଟ୍ୟାକ୍ସି ବନ୍ଦୋବସ୍ତ କରିଦେଲା। ଶେଖର ତା ଆଟାଚି କେସ୍‌ଟି ନେଇ ଟ୍ୟାକ୍ସିରେ ଉଠିଲା। ରସିଦର ଟ୍ୟାକ୍ସି ଚାଳକ ସହିତ ଜଣାଶୁଣା ଥିଲା। ଟ୍ୟାକ୍ସି ଛାଡ଼ିଦେବା ପୂର୍ବରୁ ସେ ଚାଳକକୁ କହିଲା: ବାବୁ ମୋ ନିଜ ଲୋକ। ଟିକିଏ ସାବଧାନରେ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଛାଡ଼ିଦେବ।

ଶେଖର ଟ୍ୟାକ୍‌ସି ଚାଳକକୁ ରସେଲ ଷ୍ଟ୍ରୀଟ ଯିବା ପାଇଁ କହିଲା ଟ୍ୟାକ୍‌ସି ଚାଲିଲା। କିନ୍ତୁ କିଛି ବାଟ ଯିବା ପରେ ଟ୍ୟାକ୍‌ସି ଚାଳକ ଲକ୍ଷ୍ୟ କଲା, ତାକୁ ଯେପରି ଆଉ ଗୋଟାଏ ଗାଡ଼ି ଫଲୋ କରୁଛି। ସେ ସତ୍ୟତା ପ୍ରମାଣିତ କରିବା ପାଇଁ ଗୋଟାଏ ସରୁ ରାସ୍ତା ଭିତରକୁ ପଶିଗଲା। କିନ୍ତୁ ଡ୍ରାଇଭର ଦେଖିଲା, ସେଇ ପ୍ରାଇଭେଟ୍ କାରଟା ମଧ୍ୟ ତା ପଛେ ପଛେ ଆସୁଛି।

ଶେଖର ଏସବୁ ଲକ୍ଷ୍ୟ କରି ନଥିଲା। ସେ ଦୁର୍ଭାବନାରେ ବୁଡ଼ି ଯାଇଥିଲା। ସେ ଯେଉଁଠିକି ଯିବ, କଣ କରିବ।

ଟ୍ୟାକ୍‌ସି ଚାଳକର କଣ୍ଠସ୍ୱର ଶୁଣାଗଲା ବାବୁ!

: ହଁ, ରସେଲ ଷ୍ଟ୍ରୀଟ୍ ଚାଲ!

: କିନ୍ତୁ ବାବୁ, ଆମକୁ ଯେ ପଛ ଗାଡ଼ିଟା ଫଲୋ କରୁଛି।

: ଫଲୋ କରୁଛି ମାନେ ? ପୋଲିସ ଭ୍ୟାନ୍ ?

: ନା, ମନେ ହେଉଛି ଗୋଟାଏ ପ୍ରାଇଭେଟ୍ ଗାଡ଼ି। ଆପଣଙ୍କର ପାଖରେ କ'ଣ ସେପରି କିଛି....

ଶେଖର ଡ୍ରାଇଭର ଇଙ୍ଗିତ ବୁଝିପାରି କହିଲା: ମୋ ପାଖରେ ଏଇ ଆଟାଚି କେସ୍‌ଟା ଅଛି। ଆଉ ଏଇ ଆଟାଚି କେସ୍‌ରେ କିଛି ଲଟାରୀ ଟିକେଟ, ଦୁଇ ପ୍ୟାକେଟ୍ ତାସ୍ ଏବଂ ଚାରିଟା ମାଗାଜିନ୍ ଛଡ଼ା ଆଉ କିଛି ନାହିଁ।

ଡ୍ରାଇଭର ଗାଡ଼ି ଚଳେଇଥିଲା।

ପଛରେ ସେଇ ପ୍ରାଇଭେଟ୍ କାରଟା ଚାଲିଥିଲା।

ସେମାନେ ରସେଲ୍ ଷ୍ଟ୍ରୀଟ୍ ମୋଡ଼ରେ ଯାଇ ପହଞ୍ଚିଲେ।

ଶେଖର କହିଲା: ବାର ନମ୍ବର ରସେଲ୍ ଷ୍ଟ୍ରୀଟ୍।

ଡ୍ରାଇଭର ବାର ନମ୍ବର କୋଠା ସାମ୍ନାରେ ଗାଡ଼ି ଠିଆ କଲା। ଶେଖର ଆଗକୁ ପଛକୁ ନଚାହିଁ, ଗାଡ଼ିର ଦରଜା ଖୋଲି ସିଧା ପଶିଗଲା ଭିତରକୁ। ଦରଜା ଆଗରେ ଏକ ସ୍ତିମିତ ଆଲୋକ ଜଳୁଥିଲା।

ଶେଖର କଲିଂବେଲ୍‌ର ବୋତାମ ଟିପିବାର କେଇ ମୁହୂର୍ତ୍ତ ପରେ ଦରଜା ଖୋଲିଗଲା। ଭିତରୁ ଜଣେ ବୃଦ୍ଧଲୋକ ବାହାରି ଆସିଲେ।

: ଆପଣ ଶେଖର ବାବୁ ?

ଶେଖର ମୁଣ୍ଡ ହଲାଇ ସମ୍ମତି ଜଣାଇଲା।

: ଭିତରକୁ ଆସନ୍ତୁ।

ଶେଖର ଭିତକୁ ପଶିବା ମାତ୍ରକେ ବୃଦ୍ଧ ଦରଜା ବନ୍ଦ କଲେ।

ଶେଖର ଶିଡ଼ିରେ କାହାର ପାଦଶବ୍ଦ ଶୁଣିଲା। ଦେଖିଲା, ନେଲି ଦୋତାଲାରୁ ତଳକୁ ଓହ୍ଲାଇ ଆସୁଛି।

ଶେଖର କହିଲା: ତମ ସହିତ ଆଜି କି ଦୁର୍ଯୋଗରେ ଦେଖା ହୋଇଥିଲା କେଜାଣି, ପ୍ରାଣଟା ବାହାରି ନ ଯାଇ ରହିଛି ଯାହା।

ନେଲି ଶେଖର ହାତରୁ ଆଟାଚି କେସଟି କାଢ଼ି ନେଇ କହିଲା: ଉପରକୁ ଆସ। ତମେ ଆଜି ଆସି ପହଞ୍ଚି ନ ଥିଲେ ମୋ ଅବସ୍ଥା ଯେ କ'ଣ ହୋଇଥାଆନ୍ତା ତମେ ଚିନ୍ତା କରିପାରିବ ନାହିଁ।

ଶେଖର ନେଲି ପଛେପଛେ ଉପରକୁ ଯାଇ ଏକ ସୁସଜ୍ଜିତ କୋଠରିରେ ପହଞ୍ଚିଲା।

ନେଲି କହିଲା: ଏଇ ଘରଟି ମୋର। ସଂପୂର୍ଣ୍ଣ ମୋ ନିଜର। ତେଣୁ ଏଠାରେ ଦ୍ୱିଧା କରିବାର କିଛିନାହିଁ।

ଶେଖର ଗୋଟିଏ ସୋଫା ଉପରେ ଆରାମରେ ବସି, ଗୋଡ଼ରୁ ଯୋତାମୋଜା କାଢ଼ି, ନେଲି ମୁହଁକୁ ଏକ ଲୟରେ କିଛି ସମୟ ଅନାଇ ରହି କହିଲା: ଏ ଘରେ କିଏ ରହନ୍ତି ?

: ନା, ମୁଁ ସଂପୂର୍ଣ୍ଣ ଏକା। ମୋର ସେଇ ବୁଢ଼ା ଦରବାନଟି ତଳେ ରୁହେ। କାହିଁକି ବିଶ୍ୱାସ ହେଉନାହିଁ ?

ଶେଖର କହିଲା: ଏଥର ମୋତେ କ'ଣ କରିବାକୁ ହେବ କୁହ। ଦେଖ ନେଲି, ମୁଁ କିଏ, କ'ଣ କରେ ତମେ ମୋତେ ଚିହ୍ନିନାହଁ, ଜାଣିନାହଁ, ତମ ସହିତ ମୋର ପୂର୍ବ ପରିଚୟ କିଛି ନାହିଁ। ତା' ସତ୍ତ୍ୱେ ତମେ ମୋତେ ଆଣି ଏପରି ଏକ ଝାମେଲାରେ ପକାଇ ଦେଇଛ, ଯେଉଁଠୁ ମୋର ଉଠିବାର ବାଟ ନାହିଁ। କାହିଁକି, କାହିଁକି ନେଲି ? ମୋ ପ୍ରତି ତମର ଏ ଅବିଚାର କାହିଁକି ?

ନେଲି କହିଲା: ଅବିଚାର କିଛି ନୁହେଁ ଶେଖର। ମଣିଷ ବୁଡ଼ି ଯାଉଥିବା ବେଳେ କୁଟା ଖଣ୍ଡକୁ ବି ଆଶ୍ରା କରେ। ତେଣୁ ତମ ସହିତ ଯଦି କିଛି ଘଟିଥାଏ; ସେ ଘଟଣାକୁ ତମେ ଏକ କୋ-ଇନ୍‌ସିଡେଣ୍ଟ କହିପାର। ଅନ୍ୟ କିଛି ନୁହେଁ।

: କିନ୍ତୁ ତମେ ଫାଉଣ୍ଟେନ୍ ବାର୍‌ରୁ କୁଆଡ଼େ ଅଦୃଶ୍ୟ ହୋଇଗଲ ? ମୋ ସହିତ ନାଚୁ ନାଚୁ, ହଠାତ୍ ହଲଟା ଅନ୍ଧକାର ହୋଇଗଲା। ତା'ପରେ ପରେ ତମେ ବି ନାହିଁ। ମୋର ମନେ ହେଲା କିଏ ଯେପରି ତମକୁ ସେଠାରୁ ଟାଣି ଅଲଗା କରିନେଇଗଲା।

: ହଁ ତମ ଅନୁମାନ ସତ୍ୟ ଶେଖର। ମୁଁ କ'ଣ କରିବି ମୋର ଅନ୍ୟ କିଛି ବାଟ ନ ଥିଲା। ମୋ କାମ ସେଇଭଳିଆ। ମୁଁ ସେଇଥିପାଇଁ ପ୍ରେରିତ ହୋଇଥିଲି। କିନ୍ତୁ ଘଟଣାଟା ଅନ୍ୟ ରକମ ଘଟିଗଲା। ଯାହାହେଉ, ତମେ ମୋତେ ବଞ୍ଚେଇ ଦେଲ ଶେଖର। ତମ ଛଡ଼ା ମୁଁ ଯଦି ଅନ୍ୟ କାହା ହାବୁଡ଼ରେ ପଡ଼ିଥାଆନ୍ତି, ହୁଏତ ମୋର ଜୀବନ ନେଇ ଟଣାଟଣି ହୋଇଥାନ୍ତା।

ଶେଖର ନେଲି କଥାରୁ କିଛି ବୁଝିପାରୁନଥିଲା। ସେ କେବଳ ବିସ୍ମୟ ବିସ୍ଫାରିତ ଆଖିରେ ଚାହିଁଥିଲା ନେଲି ମୁହଁକୁ।

ନେଲି କହିଲା: ଶେଖର, ସତ କହିବାକୁ ଗଲେ ମୁଁ ଫାଉଣ୍ଟେନ ବାର୍‌କୁ ଯାଇଥିଲି ଗୋଟାଏ ଉଦ୍ଦେଶ୍ୟରେ। କିଛି ମାଲ ଡେଲିଭରି ଦେବାପାଇଁ। ସେଠାରେ ଯାଇ ଜାଣିଲି ମାଲ ଡେଲିଭରି ନେବା ପାଇଁ ଯାହାର ଆସିବାର କଥା, ତା'ର ଆସିବାକୁ ଡେରି ଅଛି ଏବଂ ଆଉ ଦଳେ ଲୋକ ମୋ ଆଗମନର ଉଦ୍ଦେଶ୍ୟ ବୁଝି ପାରିଛନ୍ତି। ସେମାନେ ମୋଠାରୁ ସେଇ ଦାମୀ ପଦାର୍ଥତକ ଅପହରଣ କରିବା ପାଇଁ ପ୍ରସ୍ତୁତ ହେଉଛନ୍ତି। ଯେମିତି ହେଲେ ମୋତେ ଆତ୍ମରକ୍ଷା କରିବାକୁ ହେବ। କୁହ ଶେଖର, ତମେ ହୋଇଥିଲେ ଏ କ୍ଷେତ୍ରରେ କ'ଣ କରିଥାଆନ୍ତ ? ମୁଁ ଅନ୍ୟ ଉପାୟ ନ ଦେଖି ତମର ଶରଣାପନ୍ନ ହେଲି।



: ମୋର ଶରଣାପନ୍ନ ହେଲ ମାନେ ?

ଶେଖର ମୁହଁରେ ବିସ୍ମୟ ଭାବ ଫୁଟି ଉଠିଲା ।

ନେଲି ହସି ହସି କହିଲା: ତମେ ସିନା କିଛି ଜାଣିପାରିନାହଁ ଶେଖର, କିନ୍ତୁ ତୁମେ ମୋର ଯେଉଁ ଉପକାର କରିଛ, ସେ ଋଣ ମୁଁ ସାରାଜୀବନ ଶୁଝି ପାରିବି ନାହିଁ । ଛାଡ଼ ସେ କଥା । କିନ୍ତୁ ମୋ ପାଇଁ ତୁମକୁ ଅସୁବିଧାରେ ପଡ଼ିବାକୁ ହେବ, ଏ କଥା ମୁଁ ମୋଟେ ଚିନ୍ତା କରିପାରିନଥିଲି । ଯା'ହେଉ ତମର ଦୁଶ୍ଚିନ୍ତା, ମୋର ଦୁର୍ଭାବନା ବର୍ତ୍ତମାନ ସବୁ ଶେଷ ହୋଇଛି ।

: ତମେ କହୁଛ ଶେଷ ହୋଇଛି, କିନ୍ତୁ ମୁଁ ଭାବୁଛି ମୋ ଜୀବନର ଦୁଶ୍ଚିନ୍ତା ଆଉ ଦୁର୍ଭାବନା ଆରମ୍ଭ ହେଲା ମାତ୍ର । ଯା'ହେଉ, ତମେ ଇନ୍ଦ୍ରଜିତ୍ ରାୟକୁ ଚିହ୍ନିଛ ?

: ଇନ୍ଦ୍ରଜିତ ରାୟ ?

ନେଲି ପାଟିରେ ଅଙ୍ଗୁଳି କାମୁଡ଼ି କିଛିସମୟ ଚିନ୍ତା କଲା ପରେ କହିଲା: କାହିଁ ସେପରି ନାମ ତ ମୋର ମନେପଡୁନାହିଁ ?

: ଇନ୍ଦ୍ରଜିତ୍ ରାୟ କିନ୍ତୁ କହିଲା, ସେ ତୁମକୁ ଚିହ୍ନେ । ତମ ସହିତ ତା'ର ବନ୍ଧୁତ୍ୱ ଅଛି ଏବଂ ତମଠାରୁ ଇଣ୍ଟରଭିଉ ନେବା ପାଇଁ ତା' ସହିତ ସମୟ ଫିକ୍ସ ହୋଇଥିଲା ।

: ନା, ତା'ହେଲେ ଲୋକଟା ତମକୁ ମିଛ କଥା କହିଛି । ମୋ ସହିତ କାହାରି କିଛି ଟାଇମ୍ ଫିକ୍ସ ହୋଇନଥିଲା । ଯାହା ସହିତ ହୋଇଥିଲା, ସେ ଠିକ୍ ସମୟରେ ଆସି ପାରିଲା ନାହିଁ ।

: କିନ୍ତୁ ନେଲି, ଇନ୍ଦ୍ରଜିତ ରାୟ ମୋର ସର୍ବନାଶ କରିଛି । ମୋର ଫଟୋ ନେଇଛି, ମୁଁ ଇଣ୍ଟରନ୍ୟାସନାଲ ସ୍ମଗଲର ଦଳର ଜଣେ ମୁଖ୍ୟ ବୋଲି ତା'ର ଧାରଣା ହୋଇଛି ।

କାଲି ସକାଳୁ ଇଷ୍ଟର୍ଣ୍ଣ ଏକ୍ସପ୍ରେସରେ ଫଟୋ ସହ ମୋର ବିବରଣୀ ପ୍ରକାଶ ପାଇବ । ତା'ପରେ ମୋର ପରିଣତି କ'ଣ ହେବ ଜାଣ ନେଲି ? ତମରିମାନଙ୍କ ଭଳିଆ ମୁଁ ଅନ୍ଧକାରରେ ଆତ୍ମଗୋପନ କରିବି। ଆଉ ପୋଲିସ୍‌ଭ୍ୟାନ୍ ଦେଖିଲେ ଲୁଚି ଲୁଚି ବାଟ ଭାଙ୍ଗି ଅନ୍ୟ ଆଡ଼େ ବଙ୍କେଇ ଯିବି। କାହିଁକି, କାହିଁକି ଏପରି ହେଲା ନେଲି ?

ନେଲି ଶେଖରର ବିଚଳିତ ଭାବ ଲକ୍ଷ୍ୟ କଲା।

ସାନ୍ତ୍ୱନା ଦେବା ପାଇଁ କହିଲା: ଶେଖର, ତମ ସମ୍ବନ୍ଧରେ ମୁଁ କିଛି ଜାଣିନାହିଁ, ତମ ସହିତ ମୋର ଇତି ପୂର୍ବରୁ କିଛି ପରିଚୟ ନ ଥିଲା। କିନ୍ତୁ ଫାଉଣ୍ଟେନ ବାରରେ ତମ ସହିତ ମାତ୍ର କେତୋଟି ମିନିଟ୍ ପାଇଁ ମିଶି ମୁଁ ଜାଣିପାରିଥିଲି, ତମେ ଗୋଟିଏ ସରଳ ଶିଶୁ। ଦୁନିଆଁ ସମ୍ବନ୍ଧରେ ତମକୁ କିଛି ଜଣାନାହିଁ।

: ତମେ ସେଇଠୁ ସଙ୍ଗେ ସଙ୍ଗେ ମୋର ସରଳତାର ସୁଯୋଗ ନେଲ ?

ଶେଖର ଉତ୍‌କ୍ଷିପ୍ତ କଣ୍ଠରେ କହିଲା।

ନେଲି ହସିଲା।

କହିଲା: ମୁଁ ତମ ସରଳତାର ସୁଯୋଗ ନେଇଛି ସତ, ମାତ୍ର ଦେଶର ଓ ଦଶର ଯେଉଁ ଉପକାର କରିଛ, ସେ କଥା ଆଉ କେତେ ଘଣ୍ଟା ପରେ ତମେ ବୁଝିପାରିବ।

: ମାନେ ?

: ତମେ ଜାଣନି ଶେଖର; ଆମ ଦେଶର ଅଧିକାଂଶ ଲୋକ ଗୋଟିଏ ଗୋଟିଏ ସଇତାନ। ସେମାନଙ୍କର ଦୁଇଟି ରୂପ। ଗୋଟିଏ ଦିନର ଆଲୋକରେ, ଆଉ ଗୋଟିଏ ରାତ୍ରିର ଅନ୍ଧକାରରେ। ଦିନର ଆଲୋକରେ ସେମାନେ ସମାଜସେବୀ, ପରୋପକାରୀ, ଦେଶହିତୈଷୀ ଏବଂ ଆହୁରି ବହୁ ବିଶେଷଣର ଭାଗୀଦାର। କିନ୍ତୁ ରାତ୍ରିର ଅନ୍ଧକାରରେ ସେମାନେ ନରକର କୀଟ। ଏପରି କୌଣସି ଦୁଷ୍କର୍ମ ନାହିଁ, ଯାହା କରିବାକୁ ସେମାନେ କୁଣ୍ଠବୋଧ କରିବେ ।

ତମେ ଶୁଣ ଶେଖର, ମୁଁ ଯାହା କହୁଛି ମନଦେଇ ଶୁଣ। ଆମ ପରି, ତମ ପରି ଦେଶର ଅଗଣିତ ନିରୀହ ଯୁବକ ଯୁବତୀମାନେ ଅଭାବର ତାଡ଼ନାରେ ସେମାନଙ୍କର ଶିକାର ହୁଅନ୍ତି। ଆଉ ଆମରିମାନଙ୍କୁ ସେମାନେ କୁଣ୍ଢେଇ ପରି ନଚାଇ, ସେମାନଙ୍କର କାମନା ଚରିତାର୍ଥ କରନ୍ତି।

ଆମେ ହେଉ, ସ୍ମଗଲର, ଆମେ ହେଉ ଡ୍ରଗ ସେଲର; ବେଳେବେଳେ ଆମର ରୂପ ଓ ଯୌବନକୁ ବିକ୍ରୟ କରି ଆମେ କାର୍ଯ୍ୟ ହାସଲ କରୁ। କିନ୍ତୁ ଆମେ ଯେଉଁ ତିମିରେ ସେଇ ତିମିରେ। ପେଟୁଆ ତଥାକଥିତ ସମାଜସେବୀମାନେ ଆମ ପେଟରେ ଗୋଇଠା ମାରି ସାତତାଲା କୋଠା ତୋଳନ୍ତି, ଥ୍ରୀଷ୍ଟାର, ଫାଇଭ୍ ଷ୍ଟାର ହୋଟେଲର ମାଲିକ ହୁଅନ୍ତି।

ଆମେ ସେଠାରେ ସୁରା ବିତରଣ କରୁ, ସାକୀ ସାଜୁ ଆଉ ଦାମୀ ଦାମୀ ଧାତୁ ପଦାର୍ଥ ସବୁ ଅତି ସାବଧାନରେ ଏପରିକି ବ୍ରା ଭିତରେ ଲୁଚେଇ ମହାଜନ ପାଖରେ ପହଞ୍ଚାଇ ଦେଉ। ଆମର ପାରିଶ୍ରମିକ ଯାହା ମିଳେ, ତା'ଅପେକ୍ଷା ମୃତ୍ୟୁର ଭୟ ଥାଏ ବହୁଗୁଣରେ। ଏଇଆ ତ ଆମ ଜୀବନ। ଏଇଆ ତ ଆମ ସମାଜ ବ୍ୟବସ୍ଥା। ଆମ୍ଭେମାନେ ଗୋଟାଏ ସ୍ତରର ଜୀବ, ଯେଉଁମାନଙ୍କ ଜୀବନରେ କିଛି ଗ୍ୟାରେଣ୍ଟି ନାହିଁ। ପୋକ ମାଛି ଭଳି ଯେଉଁଠି ସେଠି ଆମେ ପଡ଼ି ମରୁ।

କୁହ ଶେଖର, ସମାଜର କାହିଁକି ଏ ପାତରଅନ୍ତର ନୀତି। ଆମେ ଝିଅ ହୋଇ ଜନ୍ମିଛୁ, ଆମ ମନରେ କ'ଣ କାମନା ନାହିଁ? ଆମେ କ'ଣ ଗୋଟିଏ ସୁଖର ସଂସାର ରଚନାର ସ୍ୱପ୍ନ ଦେଖୁନାହୁଁ ? କିନ୍ତୁ ସେ ସୁଯୋଗ ଆମକୁ ଦିଆଯାଏ ନାହିଁ, ଜୋର୍ କରି ଏହି ପେଟୁଆ ତଥାକଥିତ ବୁଦ୍ଧିଜୀବୀମାନେ ଆମକୁ ସେ ସୁଯୋଗ ଦିଅନ୍ତି ନାହିଁ। ତା' ହେଲେ ସେମାନେ ପଙ୍ଗୁ ହୋଇଯିବେ, ସେମାନଙ୍କର କାରବାର ମାନ୍ଦା ହୋଇଯିବ। ତେଣୁ ସେମାନେ ଆମକୁ ମଦ ପିଆଇ, ଆମର ସଂଜ୍ଞା ଅପହରଣ କରି, ସହସ୍ର ଶଯ୍ୟାର ନାୟିକା କରି ଛାଡ଼ି ଦିଅନ୍ତି। ଫଳରେ ବାରମ୍ବାର ଆମେ ସେଇମାନଙ୍କ ପାଖକୁ ଯାଇ ମୁଣ୍ଡିଆ ମାରିବାକୁ ହୁଏ। ସେମାନଙ୍କର କରୁଣା ପ୍ରାର୍ଥନା କରିବାକୁ ହୁଏ।

ଶେଖର, ତମେ ପ୍ରକୃତରେ ଆମର ଜୀବନ ଇତିହାସ ଜାଣିନାହଁ। ମୋ'ପରି ହଜାର ହଜାର ଝିଅ ପଙ୍କକୁ ଚନ୍ଦନ ମନେ କରି ମୁଣ୍ଡରେ ଲଗାଇ ବଞ୍ଚିରହିଛନ୍ତି। ସେମାନେ ଭଲ ହେବାର କିଛି ସୁବିଧା ପାଉନାହାନ୍ତି। ସେମାନଙ୍କୁ ପଙ୍କରୁ ଉଦ୍ଧାର କରିବା ପାଇଁ କେହି ଆଗେଇ ଆସୁନାହାନ୍ତି। ଆଉ ଆଜି ଆମର ଏହି ନକଲି ସଭ୍ୟସମାଜ, ଯେଉଁମାନେ ହିଁ ସମାଜକୁ ନର୍କ ଆଡ଼କୁ ଟାଣିନେଇ ଯାଉଛନ୍ତି। ଦେଶର ଆଇନଜୀବୀ, ଡାକ୍ତର, ଅଧ୍ୟାପକ ସମସ୍ତେ ଆଜି ଏଇ କଳା ପଥକୁ ଓହ୍ଲେଇ ଆସିଲେଣି। ଆଉ କେତେବର୍ଷ ପରେ ସମାଜର ପରିଣତି ଯେ କ'ଣ ହେବ, ଆଜି ତମେ ଚିନ୍ତା କରିପାରିବ ନାହିଁ ଶେଖର।

ଏଇ ମୋରି କଥା ଧରାଯାଉ। ମୋର ଜନ୍ମ ଅଭିଜାତ ପରିବାରରେ। ମୋ ବାପା ମା' ଖୁବ୍ ସମ୍ଭ୍ରାନ୍ତ ବଂଶର। ଧନ ପ୍ରତିପତ୍ତି ସବୁ ଥିଲା ସେମାନଙ୍କର। ମୋତେ ଯେତେବେଳେ ଦଶ ଏଗାର ବର୍ଷ, ସେତେବେଳେ ମୁଁ ଅନୁଭବ କଲି ବାପା ଓ ମା'ଙ୍କ ମଧ୍ୟରେ ମନ କଷାକଷି ଚାଲିଛି। ପ୍ରଥମେ ପ୍ରଥମେ ମୁଁ କିଛି ବୁଝିପାରିନଥିଲି। କିନ୍ତୁ ଧୀରେଧୀରେ ଜାଣିପାରିଲି ବାପା ଓ ମା' ଦୁହେଁ ଯେପରି ଅଲଗା ପଥରେ ଓହ୍ଲେଇ ଯାଉଥାନ୍ତି।

ମୋତେ ଯେଉଁ ଆଂଲୋଇଣ୍ଡିଆନ୍ ଝିଅଟା ପଢ଼ାଇବାକୁ ଆସୁଥିଲା, ସେଇ ଝିଅଟି ବାପାଙ୍କୁ ଅସତ୍ ପଥରେ ଟାଣି ନେଇଛି। ପ୍ରଥମେ ପ୍ରଥମେ ମା' ବିରକ୍ତ ହେଉଥିଲେ।

ଦିନେ ସେ ଝିଅ ଗାଲରେ ଦୁଇଟି ଚାପୁଡ଼ା ବସାଇ ଦେଇ ଘରକୁ ଆସିବା ବାରଣ କରିଦେଲେ।

ଝିଅଟି ତ ଆସିଲା ନାହିଁ। ତା'ର ଫଳ ହେଲା ବିଷମୟ। ବାପା ମଝିରେ ମଝିରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଆନ୍ତି। କେବେ ମାସେ, କେବେ ପନ୍ଦରଦିନ ପରେ ଯେବେ ଫେରନ୍ତି, ଶୂନ୍ୟ ହସ୍ତରେ। ଧୀରେଧୀରେ ବାପାଙ୍କର ଚାକିରି ଚାଲିଗଲା। ଆମର ସମସ୍ତ ସଂପତ୍ତି ବିକ୍ରି ହୋଇଗଲା। ମା'ଙ୍କର ଗହଣା ମଧ୍ୟ ଅଦୃଶ୍ୟ ହେବାକୁ ଲାଗିଲା।

ମା' ଥରେ ବାପାଙ୍କୁ ଗଳାରେ ଧକ୍କା ଦେଇ ଘରୁ ବାହାର କରିଦେଲେ। ତା'ପରେ ବାପାଙ୍କ ସହିତ ମୋର ଆଉ ଦେଖା ହୋଇନାହିଁ। କିନ୍ତୁ ଆମକୁ ସହାନୁଭୂତି ଜଣାଇ ଆମ ପରିବାରରେ ଯିଏ ଜଣେ ଆସି, ଆମର ହିତାକାଂକ୍ଷୀ ରୂପରେ ଦେଖାଦେଲେ, ସେ ବାପାଙ୍କର ଜଣେ ବନ୍ଧୁ।

ସ୍ରୋତ ମୁଖର ଅସହାୟ ମଣିଷ, କୁଟା ଖଣ୍ଡିକୁ ଆଶ୍ରା କରିଲା ପରି ମା' ତାଙ୍କୁ ଜାବୁଡ଼ି ଧରିଲେ। ମୋର ସେତେବେଳକୁ ବୟସ କେତେ ହେବ? ଚଉଦ ପନ୍ଦର।

ଭଦ୍ରଲୋକ ପ୍ରାୟ ଆମ ଘରକୁ ଆସନ୍ତି ଯାଆନ୍ତି। ମା'ଙ୍କୁ କିଛି କିଛି ଟଙ୍କା ପଇସା ଦେଇ ଯାଆନ୍ତି। ବେଳେ ବେଳେ ମାର୍କେଟକୁ ନେଇ ଆମର କିଛି କିଛି ପ୍ରୟୋଜନୀୟ ଜିନିଷପତ୍ର କିଣି ଦିଅନ୍ତି। ଦିନେ ଦିନେ ସିନେମା ଦେଖାଇବାକୁ ମଧ୍ୟ ନେଇ ଯାଆନ୍ତି।

ଇମିତି ପାଞ୍ଚ ଛଅ ମାସ ବିତିଗଲା। ଆମର ଲୋକଟି ଉପରେ ଆସ୍ଥା ଓ ବିଶ୍ୱାସ ଜନ୍ମିଗଲା। ମା' କିନ୍ତୁ ସବୁବେଳେ ଦୁଶ୍ଚିନ୍ତାଗ୍ରସ୍ତ ହୋଇ ସମୟ କଟାଉଥାନ୍ତି। ମୋ ଭଳି ଗୋଟିଏ ବୟସ୍କା ଝିଅକୁ ନେଇ ଚଳିବା, ସବୁ ଦିଗରେ ତାଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଥାଏ।

ଦିନେ ସେଇ ଲୋକଟି ଆସି ମା'ଙ୍କୁ ପ୍ରସ୍ତାବ ଦେଲା ଯେ, ମୋ ପାଇଁ ସେ ଗୋଟିଏ ଚାକିରି ବନ୍ଦୋବସ୍ତ କରିଛି। ଗୋଟିଏ ଖ୍ୟାତିସମ୍ପନ୍ନ କମ୍ପାନୀରେ ରିସେପ୍‌ସନିଷ୍ଟ ପୋଷ୍ଟଟିଏ ଖାଲି ଅଛି। ସେଇ ପୋଷ୍ଟ ପାଇଁ ସେ ମାଲିକ ପାଖରେ ମୋ ନାଁ ସୁପାରିଶ କରିଛନ୍ତି। ମା' ଯଦି ରାଜି ଥାନ୍ତି, ତେବେ କାମଟା ହୋଇଯିବ। ଦରମା ପ୍ରଥମେ ସେ ପାଞ୍ଚଶହ ଟଙ୍କା ଦେବେ। ତା'ପରେ ଧୀରେ ଧୀରେ ବଢ଼ାଇବେ।

ମା'ର ବା ମୋର ଏଥିରେ ଆପତ୍ତି କିଛି ନଥିଲା।

ପରଦିନ ସକାଳ ଦଶଟାରେ ମୁଁ ଯାଇ କାମରେ ଜଏନ୍ କଲି। ଦିନଯାକ ମୋଟେ କିଛି କାମ ନ ଥାଏ। ଦିନକ ଭିତରେ କିଏ ଜଣେ ଅଧେ ଆସନ୍ତି, ମୁଁ ସେମାନଙ୍କ ସାଥିରେ ଟେଲିଫୋନ୍‌ରେ ମାଲିକଙ୍କ ସହିତ ଯୋଗାଯୋଗ ସ୍ଥାପନ କରାଇ ଦିଏ। ମୋର କାମ ଶେଷ।

ଏହିପରି ଦୁଇ ତିନି ମାସ କଟିଗଲା।

ଦିନେ ହଠାତ୍ ମାଲିକ ମୋତେ ତାଙ୍କ ଚେମ୍ବରକୁ ଡାକି ପଠାଇଲେ। ଶୀତତାପ ନିୟନ୍ତ୍ରିତ ଚେମ୍ବରରେ ତାଙ୍କ ସହିତ ଆଉ ଜଣେ ଭଦ୍ରଲୋକ ବସିଥିଲେ। ମାଲିକ ମୋତେ ସାମ୍ନା ଚେଆର ଉପରେ ବସିବାକୁ କହିଲେ। ମୁଁ ବସିଲି। ଆଉ ଲୋକଟି ମୋ ଦେହ ମୁହଁକୁ କିପରି ଲୋଭିଲା ଆଖିରେ ଅନାଇ ଥିଲା। ମୋତେ ଭଲ ଲାଗୁ ନଥିଲା। ମୁଁ ନିରୁପାୟ ହୋଇ ବସିରହିଲି।

ମାଲିକ ଗୋଟାଏ ଫାଇଲ୍ ଖୋଲେଇ ପଢୁଥିଲେ। ସେହିପରି ଫାଇଲ୍ ଉପରେ ଆଖି ରଖି ମୋତେ ଉଦ୍ଦେଶ୍ୟ କରି କହିଲେ: କାଲି ୯ଟା ଫ୍ଲାଇଟ୍‌ରେ ତମକୁ ଏଇ ଭଦ୍ରଲୋକଙ୍କ ସହିତ ଦିଲ୍ଲୀ ଯିବାକୁ ହେବ। ସେ ତୁମ ହାତରେ ଗୋଟାଏ ଜିନିଷ ପଠାଇବେ। ପରଦିନ ସେ ତୁମକୁ ପ୍ଲେନରେ ଉଠାଇଦେବେ, ତମେ ସେ ଜିନିଷଟା ଅତି ସାବଧାନ ସହକାରେ ଆଣି ମୋତେ ଅଫିସରେ ଦେବ।

ମାଲିକଙ୍କର ଏପରି ଅପ୍ରତ୍ୟାଶିତ ପ୍ରସ୍ତାବରେ ମୁଁ ଟିକିଏ ବିଚଳିତ ହୋଇପଡ଼ିଥିଲି।

ମୁଁ କିଛି କହିବା ପୂର୍ବରୁ, ମାଲିକ ସେହିପରି ଶାନ୍ତ ଓ ଅବିଚଳିତ କଣ୍ଠରେ କହିଲେ: ତମେ ଏଥର ଯାଇପାର। କାଲି ଆଠଟା ବେଳକୁ ପ୍ରସ୍ତୁତ ହୋଇଥିବ। ଗାଡ଼ି ଯାଇ ତୁମକୁ ନେଇ ଆସିବ।

ମୁଁ କୌଣସି ପ୍ରତିବାଦ କରିପାରିଲି ନାହିଁ। ଧୀର ପଦକ୍ଷେପରେ ମାଲିକଙ୍କ ଚେମ୍ବରରୁ ବାହାରି ଯାଇ ମୋ ଜାଗାରେ ବସିଲି।

ଘରକୁ ଫେରି ମା'ଙ୍କୁ ସବୁ କଥା କହିଲି। ମା' ମୋ କଥା ଶୁଣିଲେ। କିଛି ଉତ୍ତର ଦେଲେ ନାହିଁ।

ଆରଦିନ ଠିକ୍ ଆଠଟା ବେଳେ ଆମ ଘର ଦୁଆରେ ଯାଇ ଗାଡ଼ି ଲାଗିଲା। ମୁଁ ପ୍ରସ୍ତୁତ ହୋଇଥିଲି। ଜୀବନରେ ନୂଆ ଅନୁଭୂତିର କଥା ଚିନ୍ତା କରି ରୋମାଞ୍ଚିତ ମଧ୍ୟ ହେଉଥିଲି।

ପ୍ଲେନରେ ମୋ ପାଖକୁ ଲାଗି ସେ ଭଦ୍ରଲୋକ ଜଣକ ବସିଲେ।

ମୋ ଜୀବନରେ ପ୍ଲେନ୍ ଚଢ଼ିବାର ସେଇ ପ୍ରଥମ ଅନୁଭୂତି।

ପ୍ଲେନ ଆକାଶକୁ ଉଠିଯାଇ ଗତିପଥରେ ଆଗେଇବା ପରେ ପରେ ଭଦ୍ରଲୋକ ମୋ ଆଡ଼କୁ ଚାହିଁ ବସିଲେ। ମୋ ଅଣ୍ଟାରୁ ବେଲ୍ଟ ଖୋଲି ଦେଇ କହିଲେ: ତମ ନାଁ ନେଲି ନା?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି।

: ମୋ ନାଁ। ଶ୍ରୀବାସ୍ତବ।

ମୁଁ ନୀରବ ରହିଲି । ଧୀରେଧୀରେ ଆମ ପ୍ଲେନଟା ଧଳା ଧଳା ମେଘଖଣ୍ଡମାନ ଅତିକ୍ରମ କରି ଉପରକୁ ଉଠୁଥିଲା । ମୋତେ ଭାରି ଭଲ ଲାଗୁଥିଲା । ମନେ ହେଉଥିଲା ହାତ ବଢ଼ାଇ ମେଘଖଣ୍ଡମାନଙ୍କୁ ତୋଳି ଆଣିବି ।

ଶ୍ରୀବାସ୍ତବ କିନ୍ତୁ ମୋର ଧ୍ୟାନ ଭଙ୍ଗ କରି କହିଲା: ନେଳି, ତମେ ଯା ପୂର୍ବରୁ ଆଉ କେବେ ଏ କାମ କରିଛ ?

: କୋଉ କାମ ?

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

: ଏଇ ପ୍ଲେନରେ ଚଢ଼ି, ଦୂର ଜାଗାକୁ ଯାଇ...

: ନା, ଏଇତ ପ୍ରଥମ ଥର ପାଇଁ ମାଲିକ ମୋତେ ପଠାଉଛନ୍ତି ।

: ତମକୁ ଡର ଭୟ କିଛି ଲାଗୁ ନାହିଁ ?

: କାହିଁକି ?

: ଯେଉଁ କାମ ତମେ କରିବାକୁ ଯାଉଛ, ଜାଣ ସେ କେତେ ଦାୟିତ୍ୱପୂର୍ଣ୍ଣ କାମ ?

ମୋତେ ଶ୍ରୀବାସ୍ତବର ଏପରି କଥା ମୋଟେ ଭଲ ଲାଗୁ ନ ଥିଲା । ମୁଁ କଥାରେ ପୂର୍ଣ୍ଣଚ୍ଛେଦ ଟାଣିବା ପାଇଁ କହିଲି: ଦାୟିତ୍ୱ ପାଳନ କରିବା ତ ମୋର ଧର୍ମ ।

ସେଦିନ ଶ୍ରୀବାସ୍ତବ ମୋ ମୁହଁକୁ ଚାହିଁ କେବଳ ଅଳ୍ପ ଅଳ୍ପ ହସିଥିଲା ।



ସେଦିନ ଶ୍ରୀବାସ୍ତବ ମୋତେ ନେଇ ଦିଲ୍ଲୀରେ ପ୍ରଥମ ଶ୍ରେଣୀର ଏଆର କଣ୍ଡିସନ୍‌ଡ ହୋଟେଲରେ ରଖିଥିଲା।

ମୋ ମନ ନେବା ପାଇଁ ସବୁ ପ୍ରକାର ବନ୍ଦୋବସ୍ତ କରିଥିଲା।

ଦିନକ ଜାଗାରେ ମୋତେ ସେଥର ଚାରିଦିନ ରହିବାକୁ ହୋଇଥିଲା।

ସେ ମାଲିକଙ୍କୁ ଫୋନ୍ କରି କହିଥିଲା ଯେ, କାର୍ଯ୍ୟ ହାସଲ ହୋଇନାହିଁ। କାର୍ଯ୍ୟ ହାସଲ ପାଇଁ ଆହୁରି ସମୟ ଲାଗିବ। ତେଣୁ ନେଲି ଏଠାରେ ଆଉ କିଛିଦିନ ରହିବା ଉଚିତ୍।

ମାଲିକ କ'ଣ କହିଥିଲେ କେଜାଣି, ଶ୍ରୀବାସ୍ତବ କିନ୍ତୁ ମୋର ସ୍ୱାଛନ୍ଦ୍ୟ ପାଇଁ ସବୁ ପ୍ରକାର ବ୍ୟବସ୍ଥା କରିଦେଇଥିଲା।

ଦିନେ ରାତିରେ ସେ ମୋତେ ସରବତ୍ ପିଆଇବା ବାହାନାରେ ମାଦକ ଦ୍ରବ୍ୟ ପିଆଇ ଦେଲା। ମୋ ଦେହମନ ସମସ୍ତ କିପରି ଏକ ଅପୂର୍ବ ଶିହରଣରେ ଶିହରିତ ହୋଇଉଠିଲା।

ହୋଟେଲରେ ସେଦିନ ଉତ୍ସବ ଥିଲା।

ସେଇ ଉତ୍ସବ ମୁଖରିତ ରାତିରେ ମୁଁ ସେଦିନ ଶ୍ରୀବାସ୍ତବ ସହିତ ମୁଖରିତ ହୋଇଉଠିଲି। ଜୀବନ ଯେ ଖାଲି ଯନ୍ତ୍ରଣା ନୁହେଁ, ଉପଭୋଗର ଗୋଟାଏ ସୁଯୋଗ ଅଛି ସେଦିନ ମୁଁ ଅନୁଭବ କରିଥିଲି। ଶ୍ରୀବାସ୍ତବ ମୋର ଅତି ଆପଣାର ମନେହୋଇଥିଲା। ମୁଁ ତା ଗଳା ବେଷ୍ଟନ କରି ତାକୁ ଚୁମ୍ବନ କରିଥିଲି। ଶ୍ରୀବାସ୍ତବ ମୋତେ ଉତ୍ତେଜିତ କରି ସେଇଦିନ ରାତିରେ ମୋର ସର୍ବସ୍ୱ ଲୁଣ୍ଠନ କରିଥିଲା।

ପରଦିନ ଯେତେବେଳେ ମୁଁ ପ୍ରକୃତିସ୍ଥ ହେଲି, ସେତେବେଳକୁ ମୋର ଆଉ କିଛି ବାକି ନ ଥିଲା। ମୁଁ ଅନୁତାପ କଲି। ଶ୍ରୀବାସ୍ତବ ମୋତେ ବୁଝାଇଲା, ଜୀବନକୁ ସରସ ସୁନ୍ଦର କରିବା ପାଇଁ ସୁଯୋଗ କେତେଜଣ ପାଆନ୍ତି ? ତମେ ଚିନ୍ତା କରନାହିଁ ନେଲି।

ଦିନ ଆସିବ, ଯେତେବେଳେ ତମେ ଅନୁତାପର ବିଷୟ ସବୁ ଭୁଲିଯାଇ ମୁଖରିତ ହୋଇଉଠିବ। ମୋ ହାତ ଧରି ଓହ୍ଲାଇ ଆସ, ମୁଁ ତୁମକୁ ସ୍ୱର୍ଗର ପଥ ଦେଖାଇ ଦେବି।

ସତକୁ ସତ ଶ୍ରୀବାସ୍ତବ ମୋତେ ସ୍ୱର୍ଗର ପଥ ଦେଖାଇ ଦେଇଥିଲା । ଦିଲ୍ଲୀରେ ଚାରିଦିନ ରହିବା ପରେ, ମୁଁ ଯେତେବେଳେ ଫେରିଲି, ଶ୍ରୀବାସ୍ତବ ମୋ ହାତରେ ଗୋଟିଏ ସୁନ୍ଦର ଜାପାନୀ ଖେଳଣା ଦେଇଥିଲା। କହିଥିଲା: ଏଇ ଖେଳଣାଟି ନେଇ ତମ ମାଲିକଙ୍କୁ ଦେଇଦେବ। ମୁଁ ଏଇ ଖେଳଣାର ଅର୍ଥ ସେଥର କିଛି ବୁଝିପାରି ନ ଥିଲି। ନିରାପଦରେ ନେଇ ମାଲିକଙ୍କ ହାତରେ ସମର୍ପଣ କରିଥିଲି। ମାଲିକ ମୋତେ ଧନ୍ୟବାଦ ଦେଇଥିଲେ। ମୋ କାର୍ଯ୍ୟର ସିଦ୍ଧି ପାଇଁ ମୋତେ ଏକ ହଜାର ଟଙ୍କା ପୁରସ୍କାର ଦେଇଥିଲେ।

ପରେ ମୁଁ ଜାଣିପାରିଲି ଯେ, ସେଇ ଖେଳଣା ଭିତରେ ବହୁ ମୂଲ୍ୟବାନ ପଦାର୍ଥ ଶ୍ରୀବାସ୍ତବ ମୋ ମାଲିକ ପାଖକୁ ପଠାଇଛନ୍ତି।

ସେଦିନ ମୁଁ କିଛି ବୁଝିପାରିନଥିଲି। ମୋ ସାମାନ୍ୟ ଶ୍ରମର ମୂଲ୍ୟ ଯେ ଏତେ ହୋଇପାରେ ସେ କଥା ଚିନ୍ତା କରି ମୁଁ ବିସ୍ମିତ ହୋଇଥିଲି।

ତିନିଦିନ ପରେ ପୁଣି ଥରେ ମୋତେ ମାଲିକଙ୍କ ଚେମ୍ବରକୁ ଡାକ ପଡ଼ିଲା। ସେଦିନ କିନ୍ତୁ ମାଲିକ ଏକା ଥିଲେ ଏବଂ ଆଖି ବୁଜି କ'ଣ ଚିନ୍ତା କରୁଥିଲେ। ମୋର ପାଦ ଶବ୍ଦ ଶୁଣି ଶାନ୍ତ ସ୍ୱରରେ ମୋତେ ବସିବାକୁ କହିଲେ। ମୁଁ କିନ୍ତୁ ଠିଆ ହୋଇ ରହିଲି। ସେ ସେହିପରି ଆଖି ବୁଜି ଆହୁରି କିଛିସମୟ ନୀରବ ରହି ଆଖି ଖୋଲିଲେ। ଡ୍ରୟାର ଟାଣି ଗୋଟାଏ ପ୍ଲେନ୍ ଟିକେଟ ବାହାର କରି ମୋ ହାତକୁ ବଢ଼ାଇ ଦେଇ କହିଲେ: ତମ ପ୍ଲେନ୍ ଆଠଟା ପନ୍ଦରରେ। ସାତଟାବେଳେ ଗାଡ଼ି ଯାଇ ପହଞ୍ଚିବ। ଡ୍ରାଇଭର ତମକୁ ଏରୋଡ୍ରମରେ ଛାଡ଼ି ଆସିବ। ଏଥର କିନ୍ତୁ ବମ୍ବେ। ନୂଆ ଜାଗାହେଲେ ବି ଚିନ୍ତାର କିଛି କାରଣ ନାହିଁ। ତମେ ସାନ୍ତାକ୍ରୁଜରେ ଓହ୍ଲାଇ ବାହାରେ ଆସି ଦେଖିବ ତମ ପାଇଁ ଜଣେ ଖର୍ବାକୃତି ଲୋକ ଅପେକ୍ଷା କରିଥିବ। ସେ ମୁଣ୍ଡରେ ଗୋଟିଏ ଲାଲ ଟୋପି ପିନ୍ଧିଥିବ। ତମେ ତାକୁ ଦେଖିବା ମାତ୍ରେ ଡାହାଣ ହାତଟା ଉପରକୁ ଟେକି ଦୁଇଟି ଅଙ୍ଗୁଳି ଦେଖାଇବ। ସେଇ ଖର୍ବାକୃତି ଲୋକଟି ତା' ମୁଣ୍ଡର ଲାଲ ଟୋପିଟି ଉଠାଇ ପୁଣି ମୁଣ୍ଡରେ ଲଗାଇବ ଏବଂ ସଙ୍ଗେ ସଙ୍ଗେ ସେ ଚାଲିବାକୁ ଆରମ୍ଭ କରିବ। ତମେ ତାରି ପଥ ଅନୁସରଣ କରିବ।

ତା'ପରେ ସେ ତୁମକୁ ଗୋଟିଏ ଚକୋଲେଟ୍ ରଙ୍ଗର ଫିଆଟ କାର୍‌ରେ ବସାଇ ନେଇଯିବ ସି ବିଚ୍ ହୋଟେଲକୁ। ତମେ ସେଠାରେ ୭ ନମ୍ବର ରୁମ୍‌ରେ ତିନିଥର ନକ୍ କରିବ। ଦରଜା ଭିତରକୁ ଖୋଲିଯିବ। ତମେ ଘର ଭିତରେ ପଶି ଦେଖିବ ଘର ଅନ୍ଧକାର। କିଛି ସମୟ ପରେ ଲାଇଟ୍ ଜଳିବ। ଦେଖିବ ସାମନା ଟେବୁଲରେ ଜଣେ ଭଦ୍ରମହିଳା ବସିଛନ୍ତି। ତମେ ତମ ଆଖିରୁ ଗଗ୍‌ଲସଟି ଖୋଲି ତାଙ୍କ ହାତକୁ ବଢ଼ାଇ ଦେବ।

-

ମାୟାବିନୀ ରାତ୍ରି

: ଗଗ୍ଲସଟି ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

: ହଁ ଗଗ୍ଲସ, କହି ମାଲିକ ମୋ ହାତକୁ ଗୋଟାଏ କଳା ଚଷମା ବଢ଼ାଇ ଦେଇ କହିଲେ, ତମେ ପ୍ଲେନରେ ଉଠିବା ପୂର୍ବରୁ ଏଇଟିରକୁ ଆଖିରେ ଲଗାଇ ରଖିବ, ବମ୍ବେରେ ପହଞ୍ଚି ସେହି ଭଦ୍ରମହିଳାଙ୍କୁ ସମର୍ପଣ କରିବା ଯାଏ ।

ମୁଁ କମ୍ପିତ ହସ୍ତରେ ମାଲିକଙ୍କ ହାତରୁ କଳା ଚଷମାଟି ନେଇ ନୀରବରେ ଠିଆ ହୋଇ ରହିଲି ।

କିଛି ସମୟ ନୀରବତା ପରେ ସେ କହିଲେ: ମୁଁ ଯାହାସବୁ କହିଲି ମନ ରହିଲା ତ ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ସେ ପୁଣି କହିଲେ: ସେଇ ଯେଉଁ ଭଦ୍ରମହିଳା ତମ ହାତରୁ ଚଷମା ନେବେ, ତା'ପରେ ତମେ କଣ କରିବ ସେ ତୁମକୁ କହିବେ । ତାଙ୍କ କଥା ଅନୁସାରେ ତମେ କାମ କରିବ ।

ମୁଁ ଆଉଥରେ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ସେ ମୋତେ କହିଲେ: ତମେ ଏଥର ଯାଇପାର ।

ମୁଁ କଳା ଚଷମାଟି ହାତରେ ଧରି ମାଲିକଙ୍କ ଘରୁ ବାହାରି ଆସିଲି ।

ଯଥା ସମୟରେ ଗାଡ଼ି ନେଇ ମୋତେ ଏୟାରପୋର୍ଟରେ ଛାଡ଼ି ଦେଇଆସିଲା ଏବଂ ମୁଁ ପ୍ଲେନରେ ଉଠିବା ଆଗରୁ ଗଗ୍ଲସଟି ଆଖିରେ ଲଗାଇଲି । ଶାନ୍ତକ୍ରୁଜ ଏୟାରପୋର୍ଟରେ ଯେତେବେଳେ ପ୍ଲେନରୁ ଓହ୍ଲାଇଲି ସେତେବେଳେ ମୋ ଦେହମନରେ କିପରି ଏକ ଉତ୍ତେଜନା ସୃଷ୍ଟି ହୋଇଯାଇଥିଲା । ମୋ ଆଖି ଯୋଡ଼ିକ ଅନୁସନ୍ଧାନ କରିବାରେ ଲାଗିଥିଲା ଲାଲଟୋପି ପରିହିତ ସେଇ ଖର୍ବାକୃତି ଲୋକଟିକୁ । ଯଥା ସମୟରେ ମୁଁ ତାକୁ ପାଇଲି ଏବଂ ସି ବିଚ୍ ହୋଟେଲରେ ସେ ମୋତେ ନେଇ ଛାଡ଼ିଦେଲା । ବାଟରେ ପଦଟିଏ ବି କଥା ତା' ସାଙ୍ଗରେ ହୋଇନାହିଁ । ସେ କି ଉତ୍ତେଜନା ! ମୋର ମନେ ହେଉଥିଲା, ମୁଁ ଯେପରି ଏକ ରହସ୍ୟ ଉପନ୍ୟାସର ନାୟିକା ।

କିନ୍ତୁ ଯେତେବେଳେ ସି ବିଚ୍ ହୋଟେଲର ସେଇ ୭ ନମ୍ବର ରୁମର ଦରଜାରେ ଯାଇ ତିନିଥର ନକ୍ କଲି, ସେତେବେଳେ ମୋ ସର୍ବାଙ୍ଗରୁ ଝାଳ ବୋହି ପଡୁଥିଲା କାରଣ ନୀରବତା ଭିତରେ ଦୀର୍ଘ ସମୟ କେବଳ ପରବର୍ତ୍ତୀ ଉତ୍ତେଜନାକର ଘଟଣା ପାଇଁ ମୋତେ ପ୍ରସ୍ତୁତ ହେବାକୁ ପଡୁଥିଲା ।

୭ ନମ୍ବର ରୁମର ନିବିଡ଼ ଅନ୍ଧକାର ଭିତରେ ଠିଆ ହୋଇ ମୋର ମନେ ହେଉଥିଲା ମୋର ଯେପରି ଶ୍ୱାସରୁଦ୍ଧ ହୋଇ ଆସୁଛି । ମୁଁ ବିବ୍ରତ ହୋଇପଡ଼ିଥିଲି । ମନେହେଉଥିଲା ଏଇ ମୁହୂର୍ତ୍ତରେ ମୁଁ ହୁଏତ ପଡ଼ିଯିବି ।

କିନ୍ତୁ ପର ମୁହୂର୍ତ୍ତରେ ଘରର ଲାଇଟ୍ ଜଳିଉଠିଲା । ମୁଁ ଦେଖିଲି ଜଣେ ଭଦ୍ରମହିଳା ସୋଫା ଉପରେ ବସି ଅଳସ ଚାହାଣିରେ ମୋ ଆଡ଼େ ଚାହିଁ ହସୁଛନ୍ତି । ସଙ୍ଗେ ସଙ୍ଗେ ଗଗ୍ଲସଟି

ଆଖିରୁ ଖୋଲି ତାଙ୍କ ହାତକୁ ବଢ଼ାଇଦେଲି। ସେ କ୍ଷିପ୍ର ହସ୍ତରେ ସେଇଟି ମୋ' ହାତରୁ ନେଇ ନିଜ ଆଖିରେ ଲଗାଇଲେ। ମୋତେ ସେ ତାଙ୍କ ଭ୍ୟାନିଟି ବ୍ୟାଗରୁ ଗୋଟାଏ ପ୍ଲେନ୍ ଟିକେଟ ବାହାର କରିଦେଇ କହିଲେ: କାଲି ସକାଳ ସାତଟା ପଇଁତିରିଶ ମିନିଟ୍‌ରେ ସାନ୍ତାକ୍ରୁଜରୁ ତମର ପ୍ଲେନ୍ ଛାଡ଼ିବ। ପାଖ ୮ ନମ୍ବର ରୁମ୍‌ରେ ତମ ପାଇଁ ରହିବାର ବ୍ୟବସ୍ଥା ହୋଇଛି।

ସେ ଭଦ୍ରମହିଳା ଏଇ ଦୁଇପଦ କଥା କହି ସେଠାରୁ ଅଦୃଶ୍ୟ ହୋଇ ଚାଲିଗଲେ। ମୁଁ କେତୋଟି ମିନିଟ୍ ସ୍ତବ୍ଧ ହୋଇ ଠିଆ ହୋଇ ରହିଲି। ତା'ପରେ ଧୀରେ ଧୀରେ ପ୍ରବେଶ କଲି ଯାଇ ୮ ନମ୍ବର ରୁମ୍‌ରେ। ମୋତେ ନୀରବତା ଭିତରେ ଦୀର୍ଘ କେତେ ଘଣ୍ଟା କେବଳ ଉତ୍ତେଜନା ଭିତରେ କଟାଇବାକୁ ପଡ଼ିଲା।

ପରଦିନ ମୁଁ ଫେରିଆସିଲି। ମାଲିକ ମୋତେ ଚେମ୍ବରକୁ ଡାକି ଧନ୍ୟବାଦ ଦେଲେ ଏବଂ ପୁଣି ଏକ ହଜାର ଟଙ୍କା ପୁରସ୍କାର ଦେଲେ। ପରେ ମୁଁ ଜାଣିଲି ଯେ ସେଇ ଗଗ୍‌ଲସର ଫ୍ରେମ୍ ଭିତରେ ହୀରା ଥିଲା ଏବଂ ମୁଁ ନିରାପଦରେ ଯଥା ସ୍ଥାନରେ ପହଞ୍ଚାଇ ପାରିଥିବାରୁ ମାଲିକ ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି। ଧୀରେ ଧୀରେ ମୁଁ ଜାଣି ପାରିଲି ଯେ ମୋ ମାଲିକ ଜଣେ ସ୍ମଗଲର।

ମୁଁ ସବୁ ଜାଣିଲି। ସବୁ ବୁଝିଲି। ସେତେବେଳେ ମୋ ମନ ଭିତରୁ ସତ ଓ ମହତ୍ ଭାବନା କୁଆଡ଼େ ଉଭେଇ ଯାଇଥିଲା। ମୁଁ ଧୀରେ ଧୀରେ ଅନ୍ୟ ଲାଇନ୍‌ର ଚିନ୍ତା କରିବାକୁ ଲାଗିଲି। ମୋର ଯୌବନ, ମୋର ଜୀବନକୁ ମୁଁ ମୁଖରିତ କରିବା ପାଇଁ କେବଳ ଟଙ୍କା ଉପାର୍ଜନର ନୂଆ ନୂଆ ରାସ୍ତା ଖୋଜିବାକୁ ଲାଗିଲି।

ତା'ପରେ ଆରମ୍ଭ ହୋଇଗଲା ମୋ ଜୀବନର ଆଡ଼ଭେଞ୍ଚର। ମୋତେ ନିଶା ଲାଗିଲା। ମୁଁ ହିପନୋଟାଇଜ୍ ହେଲାପରି, ରେଙ୍ଗୁନ୍, ସିଙ୍ଗାପୁର, ବର୍ମା, ନେପାଳ ଚାରିଆଡ଼େ ଘୂରି ବୁଲିଲି। ଆଉ ଉପାର୍ଜନ କରି ଚାଲିଲି ପ୍ରଚୁର ଅର୍ଥ। ମାଲିକ ପରେ ମାଲିକ ବଦଳାଇ ମୁଁ ଆହୁରି ଉର୍ଦ୍ଧ୍ୱକୁ ଉଠିବାକୁ ଲାଗିଲି।

ମୋରି ପରି ଶତ ଶତ ସହସ୍ର ସହସ୍ର ଝିଅ ଅଛନ୍ତି ଏଇ ଦେଶରେ। ଅନ୍ଧକାରର ସ୍ୱର୍ଗ ରାଜ୍ୟରେ ସେମାନଙ୍କର କାରବାର। କେହି କ'ଣ ସେମାନଙ୍କୁ ଉଦ୍ଧାର କରିବା ପାଇଁ କେବେ ଆଗେଇ ଆସିଛି ?

କେତେ ଝିଅ ଏଇସବୁ କାର୍ଯ୍ୟ କରି ଗୁଳି ଖାଇ ମରିଛନ୍ତି; ଛୁରୀମାଡ଼ରେ ମରିଛନ୍ତି। ପୋଲିସର ନିର୍ଯାତନା ସହିଛନ୍ତି। ଅନିଚ୍ଛା ସତ୍ତ୍ୱେ ଦଳର ଲୋକମାନଙ୍କ ମର୍ଜି ଜଗି ଚଳିବାକୁ ହୋଇଛି। କିନ୍ତୁ କ'ଣ ହୋଇଛି ସେମାନଙ୍କର ଶେଷ ପରିଣତି ?

ବହୁତ ଦିନ ପର ମୋର ଆଜି ଆତ୍ମଚେତନା ଫେରି ଆସିଛି। ସେଥିପାଇଁ ମୁଁ ତମରି ଶରଣାପନ୍ନ ହୋଇ ଦେଶକୁ ଗୋଟାଏ ମହାବିପଦରୁ ରକ୍ଷା କରିବାକୁ ଚେଷ୍ଟା କରିଛି। ସେଥିପାଇଁ ତୁମେ ମୋତେ ଶାସ୍ତି ଦେଇପାର। ମୁଁ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି।

ମାୟାବିନୀ ରାତ୍ରି

ଶେଖର ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା: ସତରେ ତମର ଜୀବନ କାହାଣୀ ବଡ଼ କରୁଣ। ଏଇ ଆମର ସୁନ୍ଦର ଭାରତଭୂମିରେ ଏପରି ଯେ ଗୋପନ ଚକ୍ରମାନ ଗଠନ ହୋଇ ଚୋରା କାରବାର ଚାଲିଛି, ମୁଁ ଆଜି ରାତିରେ ତା'ର ସୂଚନା ପାଇଲି। ଆଉ ତମର ବାସ୍ତବ ଅଭିଜ୍ଞତା ମୋତେ ଆହୁରି ଚିନ୍ତାକୁଳ କରି ପକାଇଲା। କିନ୍ତୁ ମୁଁ ତମର କି ଉପକାର କଲି ବୁଝିପାରିଲି ନାହିଁ।

ନେଲି ହସିଲା।

କହିଲା: ତମେ ଯେଉଁ ଇନ୍ଦ୍ରଜିତ୍ ରାୟ କଥା କହୁଛ, ମୁଁ ତାକୁ ଚିହ୍ନେ। ସେ ଗୋଟାଏ ବିଦେଶୀ ଏମ୍ବାସୀର ଦଲାଲ। ସେ ଖବରକାଗଜର ରିପୋର୍ଟର ମଧ୍ୟ ହୋଇପାରିଥାଏ। କାରଣ ଆଜିକାଲି ଆମ ଦେଶର ସମସ୍ତ ବୁଦ୍ଧିଜୀବୀମାନଙ୍କୁ ବିଦେଶୀମାନେ ପ୍ରଚୁର ଟଙ୍କାପଇସା ଦେଇ ନିଜର ଗୁପ୍ତଚର କାମରେ ନିୟୋଜିତ କରିଛନ୍ତି। ଭାରତବର୍ଷର ସମସ୍ତ ଗୋପନ ତଥ୍ୟ ସେମାନେ ଏଇ ବୁଦ୍ଧିଜୀବୀମାନଙ୍କ ଜରିଆରେ ପାଇ ପାରୁଛନ୍ତି। ଏପରିକି ଆମ ଦେଶର ଦାୟିତ୍ୱପୂର୍ଣ୍ଣ ଅଫିସରମାନେ ସେମାନଙ୍କୁ ତଥ୍ୟ ଯୋଗାଇ ଦେଉଛନ୍ତି।

ସେଇଭଳି ଗୋଟାଏ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମୋ ଜରିଆରେ ଆଜି ହସ୍ତାନ୍ତରିତ ହେବାକୁ ଯାଉଥିଲା; ଏବଂ ଇନ୍ଦ୍ରଜିତ୍ ରାୟ ସେହି ତଥ୍ୟ ସଂଗ୍ରହ କରିବା ପାଇଁ ଫାଉଣ୍ଟେନ ବାରକୁ ଆସିଥିଲେ। ସେ ତଥ୍ୟ କ'ଣ ଜାଣ? ଆମର ନୂତନ ଆବିଷ୍କୃତ ଇଉରାନିଅମ ଖଣିର ସବିଶେଷ ବିବରଣୀ। ଏଇ ତଥ୍ୟ ହସ୍ତାନ୍ତରିତ ହୋଇଯିବାମାନେ ଆମ ଦେଶ ପକ୍ଷରେ ଏକ ପ୍ରଚଣ୍ଡ ବଜ୍ରପାତ।

ନେଲି କିଛି ସମୟ ନୀରବ ରହିଲା।

: ତା'ପରେ?

: ତା'ପରେ ଆଉ କ'ଣ। ସେଇ ତଥ୍ୟଟି ଏପରି ଭାବରେ ସାମାନ୍ୟ କେଇ ହଜାର ଟଙ୍କା ପାଇଁ ହସ୍ତାନ୍ତରିତ କରିବା ମୁଁ ଉଚିତ ମଣିଲି ନାହିଁ। ଶେଷମୁହୂର୍ତ୍ତରେ ସିଦ୍ଧାନ୍ତ କଲି ଯେ, ନା ଜୀବନ ଯାଉ ପଛକେ, ମୁଁ ଦେଶକୁ ବଞ୍ଚାଇବି।

: ସେଇଠୁ?

ଶେଖର ପଚାରିଲା।

: ସେଇଠୁ ମୁଁ ତମର ଆଶ୍ରୟ ନେଲି।

: ମୋ ଆଶ୍ରୟ ନେଲ ମାନେ?

: ସେ ତଥ୍ୟଟି ମୁଁ ତମରି ଆଟାଚି କେସ୍‌ରେ ତମର ଅଲକ୍ଷ୍ୟରେ ରଖିଦେଇଥିଲି।

: ମୋ ଆଟାଚି କେସ୍‌ରେ?

ଶେଖର ଆଶ୍ଚର୍ଯ୍ୟ ହୋଇ ପଚାରିଲା ଏବଂ ସଙ୍ଗେ ସଙ୍ଗେ ସେ ଆଟାଚି କେସ୍‌ଟି ଟାଣି ଆଣି ଖୋଲି ପକାଇଲା।

ନା, ତା ଆଟାଚ୍ କେସ୍‌ରେ ତ କିଛି ନାହିଁ। ସେଇ କେତେଖଣ୍ଡ ଲଟାରୀ ଟିକେଟ୍, ଦୁଇ ପ୍ୟାକେଟ୍ ତାସ୍ ଏବଂ ଏଣୁ ତେଣୁ କିଛି କାଗଜପତ୍ର।

ନେଲି ଶେଖରର ସରଳତାରେ ମୁଗ୍ଧ ହୋଇ ଯାଇ କହିଲା: ତମ ଭଳି ଲୋକ ଯଦି କିଛି ପରିମାଣରେ ଆମ ଦେଶରେ ନ ଥାନ୍ତେ, ତେବେ ଦେଶଟା ପାପରେ ବୁଡ଼ି ଯାଆନ୍ତା।

ନେଲି ଶେଖର ଆଟାଚି କେସ୍‌ରୁ ଗୋଟାଏ ଲଟାରୀ ଟିକଟ ବହି ବାହାର କରି କହିଲା: ଦେଖ, ଏଇ ଲଟାରୀ ଟିକଟର ପଛ ପଟେ ସମସ୍ତ ତଥ୍ୟ ଲିପିବଦ୍ଧ ହୋଇଛି।

ଶେଖର ନେଲି ମୁହଁରୁ କଥା ସରିବା ମାତ୍ରେ ତାକୁ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲା। ତା'ପରେ କହିଲା: କିନ୍ତୁ କେତେବେଳେ ତମେ...

: ହଁ, ତମେ ଯେତେବେଳେ ଅମନଯୋଗୀ ହୋଇ ଲଟାରୀ ଟିକଟ ଉପରେ ମୋ ନାଁ ଲେଖୁଥିଲ, ସେତିକିବେଳେ ତମ ଅଲକ୍ଷ୍ୟରେ ମୁଁ ତମ ଆଟାଚିରେ ଏଇଟା ରଖି ଦେଇଥିଲି। ତମେ ଜାଣିପାରିନଥିଲ। ତା'ପରେ....

ନେଲିର କଥା ଶେଷ ହେଲା ନାହିଁ।

ବାହାରେ କଲିଂବେଲ୍‌ଟାର ଶବ୍ଦ ଶୁଣାଗଲା।

ନେଲି ଚଞ୍ଚଳ ଉଠି ଠିଆ ହୋଇପଡ଼ି କହିଲା: ବୋଧହୁଏ ପୋଲିସ୍ ଆଇ.ଜି.। ମୁଁ ତାଙ୍କୁ ପୂର୍ବରୁ ଫୋନ୍ କରି ସବୁ କଥା କହି ଦେଇଥିଲି ଏବଂ ରାତିରେ ସ୍ମଗଲରମାନଙ୍କୁ ଧରିବା ପାଇଁ ସେ ଗୋଟିଏ ଅପରେସନ୍ ସ୍କ୍ୱାଡ୍ ପଠାଇଥିଲେ।

ନେଲିର କଥା ଶେଷ ହେବା ପୂର୍ବରୁ, ପୋଲିସ୍ ଆଇ.ଜି. ଏବଂ ଅନ୍ୟାନ୍ୟ ପୋଲିସ ଅଫିସରମାନଙ୍କ ପାଦଶବ୍ଦ ଶିଡ଼ିରେ ଶୁଣାଯାଉଥିଲା।

ନେଲି ଘରର ଦରଜା ଖୋଲି ଦେବାମାତ୍ରେ ସକାଳର କଅଁଳ ସୂର୍ଯ୍ୟକିରଣ ଘରଯାକ ବିଚ୍ଛୁରିତ ହୋଇପଡ଼ିଲା। ଶେଖର ମଧ୍ୟ ଉଠି ଠିଆ ହୋଇପଡ଼ିଲା। ପୋଲିସ ଆଇ.ଜି. ଏବଂ ଅଫିସରମାନେ ନେଲି ସହିତ କରମର୍ଦ୍ଦନ କଲେ। ଶେଖର ସହିତ ମଧ୍ୟ।

ଜଣେ ପୋଲିସ ଅଫିସର କହିଲେ: ମିଷ୍ଟର ଶେଖର, ଗତ୍‌କାଲି ରାତିରେ ଆମର ଯେଉଁ ଅପରେସନ ଅଭିଯାନ ହୋଇଥିଲା, ତା' ଭିତର ଆପଣଙ୍କର ମଧ୍ୟ ଗୋଟିଏ ଦାୟିତ୍ୱପୂର୍ଣ୍ଣ ଭୂମିକା ଥିଲା। ତେଣୁ ଆପଣଙ୍କ ପାଖରେ ବି ଆମେ କୃତଜ୍ଞ।

: କିପରି ?

ଶେଖର ପଚାରିଲା।

: କାରଣ ଆପଣ କାଲି ଫାଉଣ୍ଟେନ ବାର୍‌ରୁ ବାହାରି ଯୁଆଡ଼େ ଯୁଆଡ଼େ ଯାଇଛନ୍ତି,

ଆମ ଲୋକ ଆପଣଙ୍କ ପଛେ ପଛେ ଫଲୋ କରିଛନ୍ତି। କାରଣ ଆପଣଙ୍କ ପାଖରେ ରହିଯାଇଛି ଆମର ମୂଲ୍ୟବାନ ସମ୍ପଦ। ତେଣୁ କାଳେ ଆପଣଙ୍କ ଉପରେ କିଛି ବିପଦ ପଡ଼ିପାରେ, ସେଥିପାଇଁ ଆମେ ବ୍ୟବସ୍ଥା କରିଥିଲୁ।

ଶେଖର ଏଥର ମନେମନେ ବୁଝି ପାରିଲା ଯେ, ତା'ପଛେ ପଛେ ଯେଉଁ କାରଟା ଫଲୋ କରୁଥିଲା, ସେଇଟା ଥିଲା ପୋଲିସ କାର୍।

ଶେଖର କହିଲା: ତା'ହେଲେ ଆପଣ ଏତେ ଦାୟିତ୍ୱ ନେଲେ କାହିଁକି ? ମୋତେ ତ ଅଟକେଇ ମୋଠାରୁ ବହୁ ପୂର୍ବରୁ ଏଇ ଆଟାଚିଟା ନେଇ ପାରିଥାଆନ୍ତେ।

ଆଇ.ଜି. ହସିଲେ।

କହିଲେ: ତମେ ପିଲାଲୋକ ଶେଖର ! ତମେ ଆମ ଲାଇନର ଧାରା କିଛି ଜାଣିନାହଁ। ତମକୁ ଯଦି ଆମେ କାଲି ଅଟକାଇ, ତମଠାରୁ ଏଇ ଆଟାଚିଟି କାଢ଼ି ନେଇ ଥାଆନ୍ତୁ, ତା'ହେଲେ ଏଇ ତଥାକଥିତ ରଥୀ ମହାରଥୀମାନଙ୍କୁ ଆମେ ଏତେ ସହଜରେ ଧରିପାରିନଥାନ୍ତୁ।

ଆଇ.ଜି. ସେଦିନର ଖବରକାଗଜ ଖଣ୍ଡକ ଶେଖର ହାତକୁ ବଢ଼ାଇଦେଲେ।

ଶେଖର ଦେଖିଲା, କାଗଜଟା ଇଷ୍ଟର୍ଣ୍ଣ ଏକ୍ସପ୍ରେସ୍ !

ପ୍ରଥମେ ତା'ର ସମଗ୍ର ଶରୀର କମ୍ପି ଉଠିଲା। ତା'ପରେ ସେ ପ୍ରଥମ ପୃଷ୍ଠାରେ ଦେଖିଲା, କାଲି ରାତିରେ ପୋଲିସ ବିଭାଗର ଅପରେସନ ସକ୍‌ସେସ୍ ହୋଇଛି। ନିଜକୁ ସମାଜସେବୀ ବୋଲାଉଥିବା ବହୁ ସ୍ମଗଲର ଧରାପଡ଼ିଛନ୍ତି। ପ୍ରାୟ ଅଠାନବେ କୋଟି ଟଙ୍କାର ଚୋରାମାଲ ଉଦ୍ଧାର ହୋଇଛି।

ଶେଖର ଦେଖିଲା, ସେଇ କାଗଜର ପ୍ରଥମ ପୃଷ୍ଠାରେ ସେଇମାନଙ୍କର ଫଟୋ ମଧ୍ୟ ବାହାରିଛି। ଇନ୍ଦ୍ରଜିତ୍ ରାୟ. ରାଜେନ୍ଦ୍ର, ସୌମିତ୍ରା, ଚିତ୍ରା ଏବଂ....

ଚିତ୍ରାର ଫଟୋ ପାଖରେ ସେ ଅଟକି ଯାଇ ଦେଖିଲା, ଆଉ କଲମରେ ଚିତ୍ରାର ବାପାଙ୍କର ଫଟୋ ମଧ୍ୟ ବାହାରିଛି ଏବଂ ତା' ତଳେ ଲେଖା ହୋଇଛି ସ୍ମଗଲର ସାମ୍ରାଜ୍ୟ ସମ୍ରାଟ୍- କୁମାର ବାହାଦୂର !

ଶେଖର ତେଣିକି ଆଉ କିଛି ପଢ଼ିପାରିଲାନାହିଁ। ସେ ଖବରକାଗଜଟି ଆଇ.ଜିଙ୍କ ହାତକୁ ବଢ଼ାଇଦେଇ ତା' ଆଟାଚି କେସ୍‌ଟି ଧରି ଉଠିଲା ଏବଂ ଧୀରେ, ସନ୍ତର୍ପଣରେ ନେଲି ଘରୁ ବାହାରି ଧୀର ପଦକ୍ଷେପରେ ତଳକୁ ଓହ୍ଲାଇ ଗଲା।

ବାହାରେ ନୂତନ ଦିନର ସୂର୍ଯ୍ୟ କିରଣ ବିଚ୍ଛୁରିତ ହୋଇପଡ଼ିଥିଲା।






ତା'ପରେ ହଠାତ୍ ଘର ଅନ୍ଧକାର ହୋଇଗଲା । ମୁଁ ଚମକି ଉଠିଲି । କିନ୍ତୁ ଯେତେବେଳେ ଘରେ ପୁଣି ଆଲୋକ ଜଳି ଉଠିଲା, ସେତେବେଳେ ଅଙ୍କଲ ସେଠାରେ ନ ଥିଲେ । ଦୁଆର ଠେଲି ପଶି ଆସୁଥିଲା ଜୟନ୍ତ । ଯାହା ସହିତ ମୁଁ ଟ୍ରେନିଂ ପିରିଅଡ଼ରେ ନାନା ଜାଗାରେ ଘୂରି ବୁଲିଥିଲି ।

ସେ ମୋ ଖୋସାର ଗୋଲାପ ଫୁଲଟି ଆଡ଼େ କିଛି ସମୟ ଅନାଇ ରହି କହିଲା : ତମେ ପରୀକ୍ଷାରେ ଉତୀର୍ଣ୍ଣ ହୋଇଛ ରଜନୀଗନ୍ଧା । ଆନନ୍ଦର କଥା ।

ମୁଁ ଲକ୍ଷ୍ୟ କଲି, ଜୟନ୍ତ କିପରି ଗମ୍ଭୀର ହୋଇଯାଇଛି । ସେ ଯେପରି ମୋର ଏଇ ସଫଳତାରେ ଖୁସି ନୁହେଁ ।

ଜୟନ୍ତ କହିଲା : ଆଜି ରାତିରେ ତୁମକୁ କାମରେ ବାହାରିବାକୁ ହେବ । କିଛି ସମୟ ପରେ କାମର ନିର୍ଦ୍ଦେଶ ତମେ ପାଇବ । କିନ୍ତୁ ଖୁବ୍ ସାବଧାନ ରଜନୀଗନ୍ଧା । କାମଟା ଭୀଷଣ ରିସ୍କ୍ । ତା'ଛଡ଼ା ଲୋକଟା...

ତା' ନାଁ ରଜନୀଗନ୍ଧା।

ରାତିରେ ସେ ଫୁଟେ ଏବଂ ସକାଳେ ମଉଳେ।

ରଜନୀଗନ୍ଧା ପରି ତା' ଦେହର ମହକ, ରଜନୀଗନ୍ଧା ପରି ତା' ମୁହଁର ହସ, ରଜନୀଗନ୍ଧା ପରି ତା'ର ଦେହର ରଙ୍ଗ। ପ୍ରଥମ ଦିନର ସାକ୍ଷାତରେ ସତ୍ୟବ୍ରତଙ୍କର ମନେ ହୋଇଥିଲା, ନାଁଟି ତା'ର ସାର୍ଥକ ହୋଇଚି।

କିନ୍ତୁ ସେଦିନ ତାଙ୍କ ମନରେ କେବଳ ଗୋଟିଏ ପ୍ରଶ୍ନ ଥିଲା- ଏପରି ଭଦ୍ର, ବିନୟୀ ଏବଂ ସୁଶ୍ରୀ ଏକ ତରୁଣୀ ରାତ୍ରିର ଅନ୍ଧକାରକୁ ଓହ୍ଲେଇ ଆସିଲା କିପରି ?

ରଜନୀଗନ୍ଧା ପାଇଁ ତାଙ୍କ ମନରେ ଦରଦ ଭରିଯାଇଥିଲା। ହୁଏତ ନିଜେ ସେ ଆସି ତାଙ୍କ ସହିତ ଦେଖା ନ କରିଥିଲେ ସେ ଆଦୌ ସେଠାକୁ ଯାଇନଥାନ୍ତେ। ତା'ର ବାସସ୍ଥାନର ନାମ ଶୁଣି ସେ ହୁଏତ ଭୃକୁଞ୍ଚନ କରି ନୀରବ ହୋଇ ଯାଇଥାଆନ୍ତେ। କିନ୍ତୁ ରଜନୀଗନ୍ଧାର ଅଶ୍ରୁସିକ୍ତ କଣ୍ଠ, ତା'ର ବିନୟ, ନମ୍ରନିବେଦନ ତାଙ୍କ ମନର ସମସ୍ତ କଠୋରତା ଭଙ୍ଗ କରିଦେଲା। ରଜନୀଗନ୍ଧା ସହିତ ସେ ଯିବାକୁ ରାଜି ହେଲେ ତା'ର ବାସସ୍ଥାନ ସୋନାଗାଛିକୁ, କଲିକତାର ଏକ ବିଖ୍ୟାତ ଗଣିକାପଲ୍ଲୀକୁ।

ରଜନୀଗନ୍ଧା ତା'ର ପୂର୍ବ ପରିଚୟ ତାଙ୍କୁ କହିଲା ନାହିଁ। ବର୍ତ୍ତମାନର ପରିଚୟହିଁ ତା'ର ଅସଲ ପରିଚୟ। ସୋନାଗାଛିର ଏକ ଦ୍ୱିତଳ ସୁସଜ୍ଜିତ ଗୃହରେ ସେ ରହେ। ନାଚ ଗୀତ ସବୁ ସେ ଜାଣିଛି। କିନ୍ତୁ ସୋନାଗାଛିର ଅନ୍ୟାନ୍ୟ ଗଣିକାମାନଙ୍କ ପରି ସେ ଏତେ ଶସ୍ତା ନୁହେଁ। ଯଦିଓ ରଜନୀଗନ୍ଧା ସବୁ ଗଣିକାମାନଙ୍କ ପରି ରାତିରେ ସୁବାସ ବିତରଣ କରେ, କିନ୍ତୁ ଅନ୍ୟମାନଙ୍କ ପରି ତାକୁ ଗ୍ରାହକମାନଙ୍କ ପାଇଁ ପ୍ରତୀକ୍ଷା କରିବାକୁ ହୁଏ ନାହିଁ। ତା'ର ବନ୍ଧା ଗ୍ରାହକ ଅଛନ୍ତି ଅଳ୍ପ କେତେଜଣ। ସେମାନେ ଖୁବ୍ ଧନୀ ଏବଂ ସମାଜରେ

ସେମାନଙ୍କ ଖ୍ୟାତି ଅଛି। ସେଇମାନଙ୍କ ସାହାଯ୍ୟରେ ରଜନୀଗନ୍ଧାର ଦିନ ଚଳିଯାଏ। ରବିବାରଟି କିନ୍ତୁ ତା'ର ଛୁଟି।

ରଜନୀଗନ୍ଧାର ଏହାଛଡ଼ା ଆଉ ଗୋଟିଏ ଘର ଅଛି। ସେଇଟି ଭଦ୍ରପଲ୍ଲୀରେ। ଛୋଟ ଗୋଟିଏ ଏକତାଲା ଘର। ସେଠାରେ ତା'ର ମା' ରୁହନ୍ତି। ଆଉ ରୁହେ ରଜନୀଗନ୍ଧାର ପୁତ୍ର ଗୌତମ। ଗୌତମକୁ ତେରବର୍ଷ। ସେ ପଢ଼େ ଗୋଟିଏ ସମ୍ଭ୍ରାନ୍ତ ସ୍କୁଲରେ। ହଷ୍ଟେଲରେ ରୁହେ। ପ୍ରତି ରବିବାର ଦିନ ଘରକୁ ଆସେ। ରଜନୀଗନ୍ଧା ପ୍ରତି ରବିବାର ଦିନଟି ଘରେ କଟାଏ, ଗୌତମ ସହିତ ହସି ଖେଳି, ସିନେମା ଦେଖି।

କିନ୍ତୁ ହଠାତ୍ ଯେପରି ବଜ୍ରପାତ ହୋଇଛି ରଜନୀଗନ୍ଧା ମୁଣ୍ଡରେ। ଗତ ରବିବାର ସମଗ୍ର ଦିନଟି ଅପେକ୍ଷା କରି ମଧ୍ୟ ଗୌତମ ଆସିଲାନାହିଁ। ଉତ୍କଣ୍ଠା ଓ ଉଦ୍‌ବେଗ ମଧ୍ୟରେ ରଜନୀଗନ୍ଧା ଅନୁସନ୍ଧାନ କରି ଜାଣି ପାରିଲା ଯେ, ଗୌତମ ହଷ୍ଟେଲ ସୁପରିଟେଣ୍ଡେଣ୍ଟଙ୍କଠାରୁ ଅନୁମତି ନେଇ ରବିବାର ସକାଳ ଆଠଟାରେ ହଷ୍ଟେଲ ଛାଡ଼ିଛି। କିନ୍ତୁ ସେ ଘରେ ପହଞ୍ଚିନାହିଁ। ଗଲା କେଉଁଆଡ଼େ? ତା'ପରେ ସୋମ, ମଙ୍ଗଳ ଓ ବୁଧ ତିନିଦିନ ଅତିବାହିତ ହୋଇଯାଇଛି, କିନ୍ତୁ ଗୌତମ ଆଉ ଲେଉଟି ନାହିଁ। ସ୍କୁଲକୁ ବି।

ରଜନୀଗନ୍ଧା କାନ୍ଦି ପକାଇଲା।

ଏକମାତ୍ର ସନ୍ତାନ ତା'ର ଗୌତମ। ସେଇ ତା'ର ଆଶା ଭରସା। ସେଇ ତା'ର ହସ କାନ୍ଦ। ସେଇ ତା'ର ସୁଖ ଦୁଃଖ। ଗୌତମ ପାଇଁ ସେ ନରକକୁ ଓହ୍ଲାଇ ପାରିଛି, କିନ୍ତୁ ଗୌତମକୁ ସେ ହରାଇ ବଞ୍ଚିପାରିବ ନାହିଁ।

ଗୌତମ ତେବେ ଗଲା କୁଆଡ଼େ?

ରଜନୀଗନ୍ଧା ନିରୁଦ୍ଦେଶର ଗୋଟିଏ କ୍ଷୀଣ ସୂତ୍ର ପାଇଛି। ସୂତ୍ରଟି ହେଉଛି, ଦୁଇଦିନ ତଳେ ସନ୍ଧ୍ୟା ଛଅଟା ବେଳେ ତା' ଟେଲିଫୋନ୍‌ଟା ବାଜି ଉଠିଲା। ରଜନୀଗନ୍ଧା ରିସିଭର ଉଠାଇ କାନରେ ଦେଲା।

ଅପର ପ୍ରାନ୍ତରୁ ଶୁଭିଲା: ମା ମା, ମୁଁ ଗୌତମ କହୁଛି। ମୋତେ ଏମାନେ ଛାଡ଼ୁନାହାନ୍ତି। ବନ୍ଦୀ କରି ରଖିଛନ୍ତି।

ରଜନୀଗନ୍ଧା ବ୍ୟସ୍ତ ବିବ୍ରତ ହୋଇ କହିଲା: ତୁ କେଉଁଠି ଅଛୁ ବାବୁ? ତତେ କିଏ ବନ୍ଦୀ କରି ରଖିଛନ୍ତି?

: ମୁଁ କିଛି ଜାଣିପାରୁନାହିଁ ମା। ମୋତେ ସେମାନେ ଗୋଟାଏ ଘରେ ରଖିଛନ୍ତି।

: ତୁ ଖାଉଛୁ ବାବୁ? ତୋ ଦେହ ଭଲ ଅଛି ତ?

: ହଁ ଖାଇବାକୁ, ଶୋଇବାକୁ, ରେଡ଼ିଓ ଶୁଣିବାକୁ ଦେଉଛନ୍ତି। କିନ୍ତୁ ଘରୁ ବାହାରିବାକୁ ଦେଉନାହାନ୍ତି। ମୁଁ କ'ଣ କରିବି ମା!

: କିଏ ସେମାନେ ବାବୁ? ତୁ କ'ଣ କାହାରିକୁ ଚିହ୍ନି ନାହୁଁ?

: ନା ମା, ଜଣେ ଜଣେ ଆସୁଚନ୍ତି, ମୋତେ ଧମକ ଦେଉଚନ୍ତି, ଆଉ ଜଣେ ଆସି ଆଦର କରୁଚି, ଆଉଁଶି ଦେଉଚି, ତମ କଥା ପଚାରୁଚି, କିନ୍ତୁ କେହି ମୋତେ ଛାଡ଼ି ଦେଉନାହାନ୍ତି। ମୁଁ ଯିବି ମା।

ତା'ପରେ ଅପର ପ୍ରାନ୍ତରୁ ଟେଲିଫୋନ୍ ଲାଇନଟା କଟି ଯାଇଥିଲା।

ରଜନୀଗନ୍ଧା ଗୌତମକୁ ଉଦ୍ଧାର କରିବାର କିଛି ଉପାୟ ଖୋଜି ପାଉନଥିଲା। ତା'ପର ଦିନ ସନ୍ଧ୍ୟା ଛ'ଟା ବେଳେ ତା ଫୋନ୍‌ଟା ବାଜି ଉଠିଥିଲା ଏବଂ ପୁଣି ସେ ଗୌତମର ଅସହାୟ କଣ୍ଠସ୍ୱର ଶୁଣିଥିଲା।

ଏହାପରେ ସତ୍ୟବ୍ରତ ରଜନୀଗନ୍ଧାକୁ ପଚାରିଲେ: କିଏ ସେହି ଲୋକ ହୋଇପାରେ, ଯିଏ ଗୌତମକୁ ବନ୍ଦୀ କରି ରଖି ଏପରି ଶାସ୍ତି ଦେଉଛି?

ରଜନୀଗନ୍ଧା କହିପାରିଲା ନାହିଁ। ତା' ଅତୀତର ଜୀବନ ବହୁ କଳଙ୍କିତ। ସବୁ ସେ ତାଙ୍କୁ ଶୁଣାଇବାର ପ୍ରତିଶ୍ରୁତି ଦେଲା। କିନ୍ତୁ ବର୍ତ୍ତମାନ ନୁହେଁ। ଘଡ଼ିରେ ସାଢ଼େ ପାଞ୍ଚଟା ବାଜିଲାଣି। ରଜନୀଗନ୍ଧାର ବିଶ୍ୱାସ ଯେ ଆଜି ଛଅଟାବେଳେ ବି ତା'ଫୋନ୍ ବାଜି ଉଠିବ ଏବଂ ସେ ଶୁଣିବାକୁ ପାଇବ ଗୌତମର କଣ୍ଠସ୍ୱର। ତେବେ ସେ ଏତିକିରେ ଆଶ୍ୱସ୍ତ ଯେ ଗୌତମ ବଞ୍ଚିଚି ଏବଂ ଆପ୍ରାଣ ଚେଷ୍ଟା କଲେ ସେ ଗୌତମକୁ ଉଦ୍ଧାର କରିପାରିବ।

ସତ୍ୟବ୍ରତ ଶେଷ ପର୍ଯ୍ୟନ୍ତ ରଜନୀଗନ୍ଧା ପ୍ରସ୍ତାବରେ ରାଜି ହେଲେ। ସେ ତା'ସହିତ ତା'ଘରକୁ ଯିବେ ଏବଂ ଟେଲିଫୋନ୍‌ରେ ନିଜେ ଗୌତମ କଣ୍ଠସ୍ୱର ଶୁଣିବେ।

ସତ୍ୟବ୍ରତ ପ୍ରସ୍ତୁତ ହୋଇ ରଜନୀଗନ୍ଧା ସହିତ ବାହାରିପଡ଼ିଲେ। ଗୋଟିଏ ଟ୍ୟାକ୍‌ସିରେ ବସି ସେମାନେ ପହଞ୍ଚିଲେ ରଜନୀଗନ୍ଧାର ସୋନାଗାଛି ଘରେ। ସେତେବେଳକୁ ଛଅଟା ବାଜିବାକୁ ପାଞ୍ଚ ମିନିଟ୍ ବାକି ଥିଲା।

ରଜନୀଗନ୍ଧା ଗାଡ଼ିରୁ ଓହ୍ଲାଇ ସତ୍ୟବ୍ରତଙ୍କ ହାତଟା ଧରି ଏକ ପ୍ରକାର ଟାଣି ଟାଣି ଉପରକୁ ନେଇଗଲା। ରଜନୀଗନ୍ଧା ତାଙ୍କୁ ନେଇ ଯେଉଁ ଘରେ ବସାଇ ଦେଲା, ସେ ଘରର ପବିତ୍ର ପରିବେଶ ସତ୍ୟବ୍ରତଙ୍କୁ ମୁଗ୍‌ଧ କରିଦେଲା। ସାନ୍ଧ୍ୟ ଧୂପର ଗନ୍ଧ ଏବଂ ରଜନୀଗନ୍ଧା ଫୁଲର ମହକ, ଘରର ପରିଚ୍ଛନ୍ନତା, କାନ୍ଥରେ ମନୀଷୀମାନଙ୍କର ଛବି, ଦେଖି ମନେ ହେଉଥିଲା ସେ ଯେପରି ଏକ ସମ୍ଭ୍ରାନ୍ତ ଲୋକର ଡ୍ରଇଂ ରୁମ୍‌ରେ ବସିଛନ୍ତି।

ସେ ମୁହଁ ଖୋଲି କିଛି କଥା କହିବା ଆଗରୁ ସତକୁସତ ଟେଲିଫୋନ୍‌ଟା ବାଜି ଉଠିଲା। ସଙ୍ଗେ ସଙ୍ଗେ ରିସିଭରଟା ଉଠାଇ ନେଲା ରଜନୀଗନ୍ଧା। ଶଙ୍କିତ କଣ୍ଠରେ କହିଲା: ହ୍ୟାଲୋ?

ଅପର ପ୍ରାନ୍ତରୁ କିଏ କ'ଣ କହିଲା କେଜାଣି, ବିମର୍ଷ ମନରେ ସେ କେବଳ କହିଲା, ଆଚ୍ଛା। ତା'ପରେ ରିସିଭରଟା ଯଥାସ୍ଥାନରେ ରଖି ଦେଲା।

ସତ୍ୟବ୍ରତ ପଚାରିଲେ: ଫୋନ୍ କାହାର ?

ସେ ତାଙ୍କୁ କିଛି ଉତ୍ତର ଦେବା ଆଗରୁ ଟେଲିଫୋନ୍‌ଟା ବାଜି ଉଠିଲା ।

ଏଥର କିନ୍ତୁ କ୍ଷିପ୍ର ହସ୍ତରେ ରିସିଭରଟା ଉଠାଇ ନେଲାନାହିଁ ରଜନୀଗନ୍ଧା । ଇଙ୍ଗିତରେ ସତ୍ୟବ୍ରତଙ୍କୁ ଉଠାଇବାକୁ କହିଲା ।

ସେ ରିସିଭର ଉଠାଇବା ସଙ୍ଗେ ସଙ୍ଗେ ଅପର ପ୍ରାନ୍ତରୁ ଶୁଣିଲେ, ଗୋଟିଏ କିଶୋରର କଣ୍ଠସ୍ୱର । ସେ ଉଚ୍ଛ୍ୱସିତ ହୋଇ କହୁଛି: ମା ମା, ସେମାନେ କହିଛନ୍ତି ମୋତେ ଛାଡ଼ିଦେବେ । ଶୁଣ ମା, କାଲି ମୋତେ ଏମାନେ ଜଣକ ସହିତ ଦେଖା କରାଇଲେ । ମୋତେ କହିଲେ, ୟାଙ୍କୁ ପ୍ରଣାମ କର ।

ମୁଁ ପ୍ରଣାମ କଲି । ସେ ମୋତେ ଆଦର କଲେ । ଭଲମନ୍ଦ କଥା ପଚାରିଲେ । ସେ କହିଲେ, ସେ ତମକୁ ଚିହ୍ନନ୍ତି ମା ! ମୁଁ ତାଙ୍କୁ ସବୁ କଥା କହିଲି । ସେ ରାଜି ହୋଇଛନ୍ତି ମୋତେ ଛାଡ଼ିଦେବେ । କିନ୍ତୁ ଜାଣ ମା ! ସେ କହୁଛନ୍ତି ତୁମେ ଯଦି ମୋତେ ନେବାକୁ ଆସିବ, ତା'ହେଲେ ସେ ମୋତେ ତମ ସଙ୍ଗରେ ପଠାଇ ଦେବେ । ତମେ ଆସିବଟି ମା ?

ଏଥର ଗୌତମକୁ ଜବାବ ଦେବା କଥା । ସତ୍ୟବ୍ରତ ରିସିଭରର ମାଉଥ୍‌ପିସ୍‌ରେ ହାତଦେଇ ରଜନୀଗନ୍ଧା ଆଡ଼କୁ ବଢ଼ାଇ ଦେଇ କହିଲେ: କୁହ ହଁ ମୁଁ ଆଣିବାକୁ ଯିବି । କିନ୍ତୁ କେଉଁଠାକୁ ?

ରଜନୀଗନ୍ଧା ସେଇଆ କହିଲା ।

ଗୌତମ ଅପର ପ୍ରାନ୍ତରୁ କ'ଣ କହିଲା କେଜାଣି ହଠାତ୍ ଲାଇନ୍‌ଟା କଟିଯିବାରୁ ରଜନୀଗନ୍ଧା ବିମର୍ଷ ମନରେ ରିସିଭରଟା ରଖିଦେଲା ।

ସତ୍ୟବ୍ରତ ପଚାରିଲେ: କିଏ ସେମାନେ ? ଯେଉଁମାନେ ଗୌତମକୁ ବନ୍ଦୀ କରି ରଖିଛନ୍ତି ।

: ମୁଁ ଜାଣିନାହିଁ । ବ୍ୟଥିତ କଣ୍ଠରେ ରଜନୀଗନ୍ଧା କହିଲା । ଆପଣ ମୋତେ ବିଶ୍ୱାସ କରନ୍ତୁ, ମୁଁ କିଛି ଜାଣିନାହିଁ । କିଏ ସେମାନେ, କାହିଁକି ସେମାନେ ଗୌତମକୁ ମୋଠାରୁ ଛଡ଼ାଇ ନେଇଛନ୍ତି, କ'ଣ ସେମାନଙ୍କର ଉଦ୍ଦେଶ୍ୟ ମୁଁ ମୋଟେ ଜାଣିନାହିଁ ।

: ହୁଁ, ଦେଖାଗଲାଣି ତମେ ମୋତେ ସମସ୍ୟାରେ ପକାଇଲ । ମୋର ମନେ ହେଉଛି, ଯେଉଁମାନେ ଗୌତମକୁ ବନ୍ଦୀ କରି ରଖିଛନ୍ତି, ସେମାନଙ୍କର ଲକ୍ଷ୍ୟ ଗୌତମ ନୁହେଁ, ତମେ ।

: ମୁଁ ?

: ହଁ ତମେ । ସେମାନଙ୍କର ଉଦ୍ଦେଶ୍ୟ ସାଧନ ପାଇଁ ତମକୁ ହିଁ ସେମାନେ ଅମୋଘ

ଅସ୍ତ୍ର ରୂପେ ବ୍ୟବହାର କରିବାକୁ ଚାହାନ୍ତି। ଯାହାହେଉ, ତମେ ସେଥିପାଇଁ ଚିନ୍ତା କରନାହିଁ। କିନ୍ତୁ କଥା ହେଉଛି, ବର୍ତ୍ତମାନ ତୁମେ ମୋତେ ଆଉ ଅନ୍ଧକାରରେ ରଖିଲେ ଚଳିବ ନାହିଁ।

ରଜନୀଗନ୍ଧା ନଇଁପଡ଼ି ସତ୍ୟବ୍ରତଙ୍କ ପାଦ ଧୂଳି ନେବାକୁ ଚାହୁଁଥିଲା। ସେ ତାକୁ ବିରତ କଲେ। କହିଲେ: ଏଥର ମୋତେ ତୁମର ଅତୀତ ଦିନର କଥା ସବୁ କହିବାକୁ ହେବ। ତୁମେ କିଏ, ତମର ପରିଚୟ କ'ଣ, ଗୌତମର ବାପା କିଏ ? ଅତୀତରେ ତମେ ଜୀବନ ଧାରଣ ପାଇଁ କ'ଣ କ'ଣ କରିଛ। ଇତ୍ୟାଦି ଇତ୍ୟାଦି। ହୁଏତ ତମର ଅତୀତ ଇତିହାସ ବର୍ତ୍ତମାନର ଜୀବନ ଧାରଣର ମାନଠାରୁ ଆହୁରି ନିମ୍ନ ହେବ, ହୁଏତ ତେମ ସେସବୁ କହିବା ପାଇଁ ବ୍ୟଥା ପାଇବ। ତଥାପି ମୋର ଉପାୟ ନାହିଁ। ତେବେ ତମେ ଏତିକି ବିଶ୍ୱାସ୍ କରିପାର ଯେ ମୋ ଛଡ଼ା ଏ କଥା ଦ୍ୱିତୀୟ ଲୋକ କେହି ଜାଣିପାରିବ ନାହିଁ।

ରଜନୀଗନ୍ଧା ଆଖିରେ ଲୁହ ଜମି ଆସିଥିଲା। ମୁହଁରେ କଳାମେଘ ଘୋଟି ଆସିଥିଲା। କରୁଣ କଣ୍ଠରେ ସେ କହିଲା: ମୋ ଜୀବନରେ ମାନ, ସମ୍ମାନ, ଅହମିକା କିଛି ନାହିଁ। କିଛି ମୁଁ ଚାହେଁ ନାହିଁ। ମୁଁ କେବଳ ଚାହେଁ ମୋର ଗୌତମକୁ। ତା'ପାଇଁ ମୁଁ ସବୁ କରିପାରେ। ମୋତେ ଆପଣ ଖାଲି କଥା ଦିଅନ୍ତୁ, ଗୌତମକୁ ଉଦ୍ଧାର କରି ଆଣି ମୋତେ ଦେବେ। ବଦଳରେ ଆପଣ ଯାହା ଚାହିଁବେ ମୁଁ ଦେବାକୁ ପ୍ରସ୍ତୁତ। ଏପରି କି ଜୀବନ ମଧ୍ୟ।

: ତମେ ବ୍ୟସ୍ତ ହୁଅନାହିଁ ରଜନୀଗନ୍ଧା। ମୁଁ କଥା ଦେଉଛି, ମୁଁ ତମ କେସ୍ ହାତକୁ ନେଲି। ପ୍ରାଣ ପଣେ ଚେଷ୍ଟା କରିବି। ମୋର ବିଶ୍ୱାସ ମୁଁ ସଫଳ ହେବି। କିନ୍ତୁ ତମେ ଆଉ ଡେରି କରନାହିଁ। ଏଥର ଆରମ୍ଭ କର। ତମର ଅତୀତ ଦିନର କଥା ନ ଶୁଣିଲେ ମୁଁ କିଛି କରିପାରିବି ନାହିଁ।

ରଜନୀଗନ୍ଧା ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ମୋ ସାମ୍ନାରେ ସୋଫା ଉପରେ ବସିଲା। ଆଖି ବନ୍ଦ କରି କିଛି ସମୟ ଚିନ୍ତା କଲା। ତା'ପରେ ଧୀରେ ଧୀରେ କହିଲା-

: ମୁଁ ଯେତେଦୂର ଜାଣେ ମୋର ବୟସ ବର୍ତ୍ତମାନ ତେତିଶ ବର୍ଷ। ମୋର ଜନ୍ମଦାତା ଓ ଜନ୍ମଦାତ୍ରୀ କାହାରିକୁ ଦେଖିଛି ବୋଲି ମନେ ପଡ଼େନାହିଁ ତେବେ ମୋତେ ଯେତେବେଳେ ୧୦/୧୧ ବର୍ଷ, ସେତେବେଳେ ମୁଁ ଯାହାକୁ ମା' ବୋଲି ଡାକୁଥିଲି, ଯାହା ପାଖରେ ବଡ଼ ମଣିଷ ହୋଇଥିଲି, ପରେ ଜାଣିଲି ସେ ମୋର ଜନ୍ମଦାତ୍ରୀ ମା' ନୁହେଁ। ସେ ମା'ର ମୋ ପରି କନ୍ୟା ପାଞ୍ଚ ଛଅଟି ଅଛନ୍ତି। ଏବଂ ଆମକୁ ଲାଳନ ପାଳନ କରି ବଡ଼ କରିବାରେ ଦିନ ରାତି କଟାଇ ଦେଉଛନ୍ତି।

ଆମେ ତାଙ୍କର ଯେଉଁ ପାଞ୍ଚ ଛଅଟି ଝିଅ ଥିଲୁ, ଆମମାନଙ୍କ ପାଇଁ ସେ ଗୃହଶିକ୍ଷକ

ନିଯୁକ୍ତ କରିଥିଲେ। ନୃତ୍ୟ ଗୀତ ଶିଖିବା ପାଇଁ ମଧ୍ୟ ଓସ୍ତାଦ୍ ରଖିଥିଲେ। ଆମେ ବି ହସି ଖେଳି, ନାଚି ଗାଇ ଆନନ୍ଦରେ ସମୟ କଟାଇ ଦେଉଥିଲୁ।

ଆମେ ଧୀରେଧୀରେ ବଡ଼ ହେଲୁ। ମୋତେ ଯେତେବେଳେ ୧୩/୧୪ବର୍ଷ ସେତେବେଳେ ମୁଁ ଜାଣିଲି ଯେ, ଯାହାକୁ ଆମେ ନିଜର ମା' ବୋଲି ଆଜିଯାଏ ଜାଣି ଆସିଛୁ, ସେ ପ୍ରକୃତରେ ଆମର ପାଳିକା। ଆମକୁ ଲାଳନ ପାଳନ କରିବା ପାଇଁ ସେ କୌଣସି ଏକ ଲୋକଠାରୁ ଦରମା ପାଏ।

ଆହୁରି ବର୍ଷକ ପରେ ଜାଣିଲି ଯେ, ଆମେ ଯେଉଁ ୫/୬ଟି ଝିଅ ଏକାଠି ଏକା ମା'ର ଭଉଣୀ ପରି ରହିଛୁ, ଆମେ କେହି କାହାର ଭଉଣୀ ନୋହୁଁ। ବିଭିନ୍ନ ସ୍ଥାନରୁ ଆମେ ସଂଗୃହୀତ ହୋଇ ଆସି ଏଠାରେ ଲାଳିତ ପାଳିତ ହେଉଛୁ। କିନ୍ତୁ କାହିଁକି ?

ସେ ରହସ୍ୟ ବି ଦିନେ ମୋ ଆଖି ଆଗରେ ଉଦ୍‌ଘାଟିତ ହେଲା। ଆମ ସାଙ୍ଗରେ ଲାଳିତ ପାଳିତ ହେଉଥିବା ରମା ଦିଦି, ଯିଏ ଆମ ସମସ୍ତଙ୍କଠାରୁ ବଡ଼ ଥିଲା, ଦିନେ ସକାଳୁ ଉଠି ଦେଖିଲୁ ସେ ନାହିଁ। ମା'କୁ ପଚାରିଲୁ, ମା' କହିଲା ସେ ଯାଇଛି ଅମୃତସର, ଗୋଟାଏ ଫଙ୍କ୍‌ସନରେ ନାଚିବା ପାଇଁ, ୫/୬ଦିନ ପରେ ଫେରିଆସିବ। ହଁ, ମୁଁ ଭୁଲି ଯାଇଛି, ଆମେ ସବୁ ଛୋଟ ବଡ଼ ଫଙ୍କ୍‌ସନ୍‌ମାନଙ୍କରେ ନାଚ ଗୀତ ଗାଇବା ପାଇଁ ମଝିରେ ମଝିରେ ଯାଉଥିଲୁ।

ସତକୁସତ ଏକ ସପ୍ତାହ ପରେ ରମା ଦିଦି ଫେରିଆସିଥିଲା। କିନ୍ତୁ ତା' ଦେହମନରେ ଅଶେଷ ପରିବର୍ତ୍ତନ। ମନେ ହେଉଥିଲା ରମା ଦିଦି ଯେପରି ପୂରା ବଦଳି ଯାଇଛି।

ତା' ପରଠାରୁ ରମା ଦିଦି ମଝିରେ ମଝିରେ କୁଆଡ଼େ ଯାଏ। ଦିନେ ଦି'ଦିନ ରହି ପୁଣି ଫେରିଆସେ। ଆମେ ପଚାରିଲେ ଖାଲି ମୁରୁକି ମୁରୁକି ହସେ। କହେ, ତମେ ପିଲାମାନେ ଏଇଖିଣା କ'ଣ ବୁଝିବ? ବଡ଼ ହେଲେ ବଳେ ବୁଝିପାରିବ ଯେ।

ଆଉ କିଛିଦିନ ପରେ ଜାଣିଲି ରମା ଦିଦି କେଉଁଠି ଗୋଟାଏ ବଡ଼ ଜାଗାରେ ଚାକିରି ପାଇଛି । ସେ ପୁରା ବଦଳି ଯାଇଛି। ତା' ବେଶଭୂଷା, ଚାଲିଚଳନ ସବୁଥିରେ ଗୋଟାଏ ବିରାଟ ପରିବର୍ତ୍ତନ। ଚାକିରିଟା ତା'ର ରାତିରେ, ଦିନ ଚାରିଟା ବେଳଠାରୁ ରମା ଦିଦି ପ୍ରସାଧନ ଟେବୁଲରେ ବସେ। ଉଠେ ଯାଇ ପାଞ୍ଚଟା ସାଢ଼େ ପାଞ୍ଚଟାରେ। ସଞ୍ଜ ଛ'ଟା ବେଳକୁ ଗୋଟାଏ ଗାଡ଼ି ଆସି ରମା ଦିଦିକୁ ନେଇଯାଏ, ପୁଣି ଛାଡ଼ିଯାଏ ଭୋର୍ ଛଅଟା ବେଳକୁ। କେବେ କେବେ ରମା ଦିଦିର ବାହାରେ ଡିଉଟି ପଡ଼େ, ସେ ତିନି ଚାରିଦିନ ଆଉ ଆସେନାହିଁ। ଯେତେବେଳେ ଫେରେ, ସେତେବେଳେ କେତେ ନୂଆ ନୂଆ ଶାଢ଼ି ବ୍ଲାଉଜ୍, ନାନାପ୍ରକାର ସୌଖୀନ ପଦାର୍ଥ ଧରି ଫେରେ। ଆମମାନଙ୍କ ପାଇଁ ବି କିଛି ଜିନିଷପତ୍ର ଆଣେ।

ରାତ୍ରିର ରଜନୀଗନ୍ଧା

ଆଉ ବର୍ଷକ ପରେ ରମା ଦିଦି ପରି ପ୍ରମୀଳା ଦିଦି ବି ଚାକିରି ପାଇଲା । ପ୍ରମୀଳା ଦିଦି ଚାକିରି ପାଇବା ବେଳକୁ ଶୁଣିଲି ରମା ଦିଦି କାହାକୁ ବାହାହେଇ ବାହାରକୁ ଚାଲିଯାଇଛି । ପ୍ରମୀଳା ଦିଦି ବି ରମା ଦିଦି ପରି ରାତିରେ ଚାକିରି ପାଇଲା । ସେତେବେଳକୁ ମୋର ବୟସ ଷୋଳବର୍ଷ । ଆମେ ସବୁ କିନ୍ତୁ ନଜରବନ୍ଦୀ ପରି ଘରେ ଥାଉ । ବାହାରକୁ କୁଆଡ଼େ ବାହାରିଲେ ବା କୌଣସି ଫଙ୍କସନ୍ ଇତ୍ୟାଦିରେ ଯୋଗଦେବାକୁ ଗଲେ ମା' ଆମ ସଙ୍ଗରେ ଯାଆନ୍ତି । ତେଣୁ ବାହାର ଦୁନିଆ ସହିତ ଆମର କିଛି ସଂପର୍କ ନଥାଏ । ବାହାର ଦୁନିଆର ଖବରାଖବର ବି ଆମର ସେହି ରୁଦ୍ଧପ୍ରକୋଷ୍ଠରେ ପ୍ରବେଶ କରିପାରେ ନାହିଁ । ପ୍ରମୀଳା ଦିଦି ବି ଟିକିଏ ଅନ୍ୟ ପ୍ରକୃତିର ଝିଅ । ରମା ଦିଦି ପରି ସେ ଏତେ ଗମ୍ଭୀର ନ ଥିଲା । ତେଣୁ ପ୍ରମୀଳା ଦିଦି ସାଙ୍ଗରେ ବେଳେ ବେଳେ ତା' ଚାକିରି ସମ୍ବନ୍ଧରେ କଥାବାର୍ତ୍ତା କରେ ।

ସେ କୁହେ: ଭଲ ଚାକିରି । ଖୁବ୍ ସୁନ୍ଦର । ଖାଲି ସଜବାଜ ହୋଇ, ଆରାମ କରି ବସିବାକୁ ହୁଏ । ଲୋକଗୁଡ଼ାକ କିନ୍ତୁ ସେତେ ଭଲ ନୁହନ୍ତି । ଜଣେ ଜଣେ ଇମିତି ଭୋକିଲା ଆଖିରେ ଚାହାନ୍ତି ଯେ ଦେହରୁ ଝାଳ ବୋହିପଡ଼େ । ଆଉ ଜଣେ ଜଣେ ଦେହରେ, ଗାଲରେ ହାତ ମାରି ଦିଅନ୍ତି । ବେଳେ ବେଳେ ବି ଅଶ୍ଳୀଳ ଇଙ୍ଗିତ କରନ୍ତି । ସେଗୁଡ଼ା ସହି ନେବା ପାଇଁ ହୁଏ ।

ପ୍ରମୀଳା ଦିଦି ମୋ ଠାରୁ ବର୍ଷେ କି ଦୁଇବର୍ଷ ବଡ଼ । ମୋରି ପରି ସେ ବି ସଂସାର ଅନଭିଜ୍ଞ । ନୂଆ ଅଭିଜ୍ଞତା ତା' ମନରେ ଯେ ଭାବାନ୍ତର ସୃଷ୍ଟି କରିପାରିଚି, ମୁଁ ବେଶ୍ ବୁଝିପାରିଥିଲି ।

କିନ୍ତୁ ଦିନ ପରେ ଦିନ ଲକ୍ଷ୍ୟ କଲି ପ୍ରମୀଳା ଦିଦି ବି କିପରି ଗମ୍ଭୀର ହୋଇଯାଉଚି । ତା' ଦେହମନରେ ପରିବର୍ତ୍ତନ ଲକ୍ଷ୍ୟ କଲି । ସେ ବି ଡ୍ରେସିଂ ଟେବୁଲ ସାମନାରେ ବସି ଘଣ୍ଟା ଘଣ୍ଟା ଧରି ସଜ ହେଉଚି । ମୋ ସଙ୍ଗରେ କଥା କହିବାର ଆଉ ବିଶେଷ ଆଗ୍ରହ ନାହିଁ । ଖାଲି ଘରୁ ବାହାରି ଯିବା ପାଇଁ ଉଦ୍‌ଗ୍ରୀବ ହୋଇ ଗାଡ଼ିକୁ ଅନାଇ ରହୁଛି ।

ଦିନେ ସେ ସଜବାଜ ହୋଇ ଡ୍ରେସିଂ ଟେବୁଲ ଉପରେ ବସି କାହାର ଗୋଟାଏ ଫଟୋ ଦେଖୁଥିଲା । ମୁଁ ହଠାତ୍ ଘର ଭିତରକୁ ପଶିଯିବାରୁ ସେ ଫଟୋଟାକୁ ଲୁଚାଇବାକୁ ଯାଇପାରିଲା ନାହିଁ । ମୁଁ ଆଗେଇଗଲି ତା'ପାଖକୁ । ଫଟୋଟା ତା ହାତରୁ ଟାଣି ଆଣି ଦେଖିଲି । ଗୋଟିଏ ପୁରୁଷର ଫଟୋ । ଖୁବ୍ ସୁନ୍ଦର ଚେହେରା । ହସୁଚି ଯେ, ମନେ ହେଉଚି ଯେପରି ମୋରି ଆଡ଼କୁ ଚାହିଁ ହସୁଚି । ଭଲ ଲାଗିଲା । ପଚାରିଲି, କାହାର ?

ପ୍ରମୀଳା ଦିଦି ଅଳ୍ପ ଅଳ୍ପ ହସି କହିଲା, କହିଲୁ କାହାର ?

ମୁଁ କହିଲି, ତୋ ବରର ।

ସେ କପଟ କ୍ରୋଧରେ ମୋ ପିଠିରେ ଗୋଟାଏ ଦୁମା ବସାଇ ଫଟୋଟା ମୋ

ହାତରୁ ଛଡ଼ାଇନେଲା। ଆଉ କିଛି କହିବା ଆଗରୁ ବାହାରେ ଗାଡ଼ିର ହର୍ଣ୍ଣ ଶୁଣି ସେ ଏକ ପ୍ରକାର ଘରୁ ଛୁଟି ପଳାଇଲା। ମୁଁ ତା'ରି ଯିବା ପଥକୁ ଅନାଇ ରହିଲି। ମୋ ମନରେ ସେଦିନ କିପରି ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା। ମୁଁ ନୀରବରେ ପ୍ରମୀଳା ଦିଦିର ପଥକୁ ଚାହିଁ ଠିଆ ହୋଇଥିଲି।

କାହା ହାତର ସ୍ପର୍ଶରେ ମୁଁ ଚମକି ଉଠିଲି। ମା' ମୋ ପାଖରେ ଠିଆହୋଇ ମୁଣ୍ଡରେ ହାତ ବୁଲାଉଚି।

: କ'ଣ ମା' ?

ପଚାରିଲି।

: ତୁ ଆଜି ମୋ ସାଙ୍ଗରେ ବାହାରକୁ ଯିବୁ, ସଜ ହୋଇ ଆ।

ମା' କହିଲା।

: କୁଆଡ଼େ ?

ମୁଁ ପଚାରିଲି।

ମା' ଖାଲି ହସିଲା। କହିଲା: ଚାଲେ। ଆଜି ମୋର ଜଣେ ବନ୍ଧୁଙ୍କ ଘରକୁ ଯିବି। ତୁ ଟିକିଏ ଭଲ କରି ସଜବାଜ ହୋଇଯିବୁ।

ମା' ଚାଲିଗଲା।

ମୁଁ କିଛି ବୁଝି ପାରିଲିନାହିଁ। ହଠାତ୍ ଆଜି ମା' ମୋତେ ସାଙ୍ଗରେ ନେଇ ବନ୍ଧୁ ଘରକୁ ବୁଲି ବାହାରୁଚି କାହିଁକି ? ମୋର କିପରି ମନେହେଲା, ବୋଧହୁଏ ପ୍ରମୀଳା ଦିଦି ପରେ ଏଥର ମୋ ପାଳି। ଆଉ ଯେଉଁମାନେ ଅଛନ୍ତି ସେମାନେ ତ ମୋଠାରୁ ଛୋଟ।

ମୁଁ ମନେମନେ ଅନେକ ଦିନରୁ ଚିନ୍ତା କରୁଥିଲି, ମୋର ବି ଚାକିରି ଗୋଟାଏ କିଛି ହୋଇଗଲେ ଭଲ ହୁଅନ୍ତା। କେତେଦିନ ଆଉ ଘରେ ବସି ରହି ଏପରି ନନ୍ଦିନୀ ଜୀବନଯାପନ କରିବି ?

ମୁଁ ବି ଡ୍ରେସିଂ ଟେବୁଲରେ ବସି ଖୁବ୍ ସଜବାଜ ହେଲି। ଏପରି ପ୍ରସାଧନ ଆଗରୁ କେବେ ମୁଁ କରି ନଥିଲି।

ମା' ଆସିଲା।

ତା' ସହିତ ମୁଁ ବାହାରିଗଲି ରାସ୍ତାକୁ। ବଡ଼ରାସ୍ତା ମୋଡ଼ରେ ଗୋଟାଏ ଗାଡ଼ି ଅପେକ୍ଷା କରିଥିଲା। ମା' ମୋତେ ନେଇ ସେଇ ଗାଡ଼ିର ପଛ ପାଖର ଦରଜା ଖୋଲି ଭିତରେ ବସା ଦେଲା। ସେ ନିଜେ ଯାଇ ବସିଲା ସାମନାରେ।

ଷ୍ଟିଅରିଂ ହୁଇଲ୍ ଧରି ଯେଉଁ ଭଦ୍ରଲୋକ ସାମନାରେ ବସିଥିଲେ, ପଛରୁ ଦେଖି ମନେହେଲା ସେ ଜଣେ ସମ୍ଭ୍ରାନ୍ତ ଲୋକ। ସେ ଖୁବ୍ ଦାମୀ କୋଟ ପିନ୍ଧିଥିଲେ ଏବଂ ଏକ

ସୁନ୍ଦର ମୃଦୁ ଗନ୍ଧ ତାଙ୍କ ଦେହରୁ ବାହାରୁ ଥିଲା। ମା' ତାଙ୍କ ପାଖରେ ବସିବା ମାତ୍ରକେ ଗାଡ଼ି ଚାଲିବାକୁ ଆରମ୍ଭ କଲା।

ବାଟରେ ଆଉ କିଛି କଥାବାର୍ତ୍ତା ନାହିଁ। ମୋ ମନରେ ଆଶା ଓ ଆଶଙ୍କାର ଏକ ଦ୍ୱନ୍ଦ ଚାଲିଥିଲା। ପରବର୍ତ୍ତୀ ଘଟଣା ପାଇଁ ବୋଧହୁଏ ମୁଁ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥିଲି।

ପ୍ରାୟ ଅଧଘଣ୍ଟା ପରେ ଗାଡ଼ି ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚିଲା।

ଗୋଟାଏ ସୁନ୍ଦର କୋଠା ସାମନାରେ ଗାଡ଼ି ଠିଆ ହେଲା। ଭଦ୍ରଲୋକ ଗାଡ଼ି ଛାଡ଼ିଦେଇ ଆଗେ ଓହ୍ଲେଇ ଗଲେ। ତା'ପରେ ମା' ଓହ୍ଲେଇ ମୋତେ ଓହ୍ଲେଇବାକୁ କହିଲା।

ମୁଁ ଧୀରେ ଧୀରେ ମା' ପଛରେ ଶଙ୍କିତ ପଦରେ ଆଗେଇଥିଲି। କାଚ ଦୁଆର ଠେଲି ଘର ଭିତରେ ପଶିଲାମାତ୍ରେ ମୋର ମନେହେଲା ମୁଁ ଇନ୍ଦ୍ର ଭୁବନରେ ପହଞ୍ଚିଛି। ମା' ମୁହଁକୁ ଚାହିଁଲି। ସେ ଇଙ୍ଗିତରେ ତାକୁ ଅନୁସରଣ କରିବା ପାଇଁ କହିଲା। ଆହୁରି ଗୋଟାଏ ଦୁଇଟା ଘର ଅତିକ୍ରମ କରି ଯିବା ପରେ ଆମେ ଯାଇ ଗୋଟାଏ ବିରାଟ ହଲ୍ ଘର ଭିତରେ ପହଞ୍ଚିଲୁ। ସେ ଘରର ଯୌଲୁସ କେତେ! ଆଜି ବି ସେ ଘର କଥା ମନେପଡ଼ିଲେ ଦେହ ଶିହରି ଉଠେ।

ଘର ଭିତରେ ଗୋଟିଏ ବିରାଟ ଟେବୁଲ। ରାଜସିକ କାଇଦାରେ ସଜ୍ଜିତ। ସିଂହାସନ ପରି ଗୋଟିଏ ଚେଆର ଉପରେ ବସିଛନ୍ତି ଜଣେ ମଧ୍ୟବୟସ୍କ ଭଦ୍ରଲୋକ । ଆଖିରେ କଳା ଚଷମା।

ମା' କହିଲା ପ୍ରଣାମ କରିବା ପାଇଁ।

ମୁଁ ନଇଁପଡ଼ି ଭୂମିଷ୍ଠ ପ୍ରଣାମ କଲି।

ଭଦ୍ରଲୋକ ଇଙ୍ଗିତରେ ମୋତେ ଓ ମା'କୁ ସାମନା ଚେଆରରେ ବସିବାକୁ କହିଲେ। ଆମେ ବସିଲୁ। ମୋର ମନେ ହେଲା, ଏଇ ଭଦ୍ରଲୋକ ଆମକୁ ଗାଡ଼ିରେ ବସାଇ ଆମ ଘରୁ ଆଣିଥିଲେ। କାରଣ ଗାଡ଼ିରେ ପାଇଥିବା ମଧୁର ସୁଗନ୍ଧ ମୁଁ ପୁଣି ସେଠାରେ ଅନୁଭବ କଲି।

ମା' ମୋତେ କହିଲା: ଯେଉଁ କଥାଟା ମୁଁ ଆଜିଯାଏ ତୋତେ କହିନାହିଁ ରଜନୀ, ସେଇ କଥାଟି ଆଜି ମୁଁ ତୋତେ ଏଇଠି କହୁଚି। ତୁ ବଡ଼ ହୋଇଚୁ, ସଂସାରର ହାନିଲାଭ ବୁଝିବାର ଶକ୍ତି ତୋର ହୋଇଛି। କିନ୍ତୁ ତୁ ନିଶ୍ଚୟ ଜାଣିନାହୁଁ, ମୁଁ ତୋର ଜନ୍ମିତ ମା' ନୁହେଁ। ତୋତେ ମୁଁ ରାସ୍ତାରୁ ଗୋଟେଇ ପାଇଥିଲି ଏବଂ ନିଜର ଝିଅ ପରି ଲାଳନପାଳନ କରି ଆସିଚି। ତୋ ପରି ଅନେକ ଅସହାୟ ଝିଅଙ୍କୁ ମୁଁ କୋଳରେ କାଖରେ ଚାକି ମଣିଷ କରିଛି, କରୁଛି ଏବଂ ବଞ୍ଚିଥିବା ଯାଏ କରିବି। କିନ୍ତୁ ଯା ମୂଳରେ କାହାର ପ୍ରେରଣା ଅଛି ଜାଣୁ ?

ମା' କଥା ବନ୍ଦ କରି ମୋ ମୁହଁକୁ ଚାହିଁଲା। ସେତେବେଳକୁ ମୋ ଦେହ ଝାଳେଇ ଉଠିଥିଲା।

ମା' ସାମନାର ସେହି ଭଦ୍ରଲୋକଙ୍କ ଆଡ଼କୁ ହାତ ବଢ଼ାଇ କହିଲା: ଏ ହେଉଛନ୍ତି ସେହି ମହାନୁଭବ, ଯାହାଙ୍କର ଅକ୍ଳାନ୍ତ ପରିଶ୍ରମ ଓ ଅକଥନୀୟ ଅର୍ଥଶ୍ରାଦ୍ଧ ଫଳରେ ତମେମାନେ ଏ ସଂସାରରେ ଭଦ୍ର ଭାବରେ ବଡ଼ ହୋଇ ପାରିଚ। ଏ ହେଉଛନ୍ତି ତମର ଅଙ୍କଲ୍। ଏଥର ମୋ ଦାୟିତ୍ୱ ଶେଷ ହୋଇଛି। ଅନ୍ୟ ଅସହାୟ ଶିଶୁମାନଙ୍କ ଲାଳନପାଳନର ଭାର ମୁଁ ବହନ କରିବି। ଅଙ୍କଲ୍ ତୋର ଭଲମନ୍ଦ ବୁଝିବେ।

ମୁଁ କେବଳ ସ୍ତବ୍ଧ ହୋଇ ମା' କଥା ଶୁଣୁଥିଲି। ମୋ ମୁଣ୍ଡରେ ଏସବୁର ଅର୍ଥ କିଛି ପଶୁନଥିଲା।

ଏଥର ଅଙ୍କଲ୍ ପାଟି ଫିଟାଇଲେ। ଶାନ୍ତ ସ୍ୱରରେ ପଚାରିଲେ: ତୋ ନାଁ କ'ଣ ଝିଅ ?

ମୁଁ ଉତ୍ତର ଦେବାକୁ ଚେଷ୍ଟା କରି ବି ଦେଇପାରିନଥିଲି। ମୋ ତଣ୍ଟି ଅଠା ହୋଇଯାଇଥିଲା।

ମା' କହିଲା, ତା' ନା ରଜନୀ।

ଅଙ୍କଲ କଳା ଚଷମା ପିନ୍ଧିଥିଲେ। ତାଙ୍କ ମୁହଁକୁ ଚାହିଁବାରେ ସାହସ ମୋର ନଥିଲା। କିନ୍ତୁ ଅଙ୍କଲଙ୍କ କଣ୍ଠସ୍ୱର ମୁଁ ପୁଣି ଶୁଣିଲି: ରଜନୀ! ରଜନୀ ମାନେ ରାତ୍ରି, ରାତ୍ରୀମାନେ ଅନ୍ଧକାର। ନା ନା, ଏ ନା ଚଳିବ ନାହିଁ। ତୋ ନା ଆଜିଠାରୁ ହେଲା ରଜନୀଗନ୍ଧା। କ'ଣ ପସନ୍ଦ ?

ଅଙ୍କଲ ମୋତେ ପ୍ରଶ୍ନ କରିଥିଲେ। ମୋ ମୁହଁକୁ ଚାହିଁ ବସିଥିଲେ। ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଥିଲି।

ଆଉ କିଛି ସମୟ ନୀରବରେ କଟିଯିବା ପରେ ଅଙ୍କଲ ମା'କୁ ଉଦ୍ଦେଶ୍ୟ କରି କହିଲେ: ରଜନୀଗନ୍ଧା ଆଜି ଥାଉ ମୋ ପାଖରେ, ମୋ ସହିତ ତା'ର ଘନିଷ୍ଠ ପରିଚୟ ହେଉ। ତମେ ବି ରୁହ ଆଜି। କାଲି ସକାଳୁ ଦୁହେଁ ଚାଲିଯିବ।

ଅଙ୍କଲ ଉଠି ଚାଲିଗଲେ। ମୋ ଦେହରୁ ଗମ୍‌ଗମ୍ ହୋଇ ଝାଳ ବହିଗଲା। ମା' ମୋତେ କହିଲା: ସୁଖରେ ରହିବୁ ଏଠି। କେତେ ଅନାଥିନୀ ଅଙ୍କଲଙ୍କ ଦୟାରୁ କୂଳରେ ଲାଗିଛନ୍ତି। ତୋ'ରି ଆଗରେ ରମା, ପ୍ରମୀଳା ମୁକ୍ତି ପାଇଗଲେ। ତୋ ଆଗରୁ କେତେ ଝିଅ ଅଙ୍କଲଙ୍କ ଦୟାରୁ ସୁଖରେ ଘର-ସଂସାର କରି ରହିଛନ୍ତି। ଦୁନିଆରେ ମଣିଷ ପରି ବଞ୍ଚି ରହିବାକୁ ହେଲେ ବହୁ ସାଧ୍ୟ ସାଧନାର ପ୍ରୟୋଜନ। ତତେ ଷୋଳ ସତର ବର୍ଷଯାଏ ଯିଏ ଆହାର ଦେଇ ବଞ୍ଚାଇ ରଖିଚି, ସେ ତୋର କେବେ ଅମଙ୍ଗଳ ଚିନ୍ତା କରିବ ନାହିଁ।

ମା' ଉଠିଲା। ମୁଁ ବି ତା' ପଛେ ପଛେ ଉଠିଲି। ଏଥର ଆମେ ଯାଇ ଯେଉଁ ଘରେ ପହଞ୍ଚିଲୁ ସେ ଘରେ ଅନେକ ଝିଅପୁଅ। ଗୀତ ନାଚର ଆସର ଜମିଛି। ଆମକୁ ଗୋଟିଏ ସୁନ୍ଦରୀ ଝିଅ ଆସି ପାଛୋଟି ନେଲା। ମା' ତା ମାର୍ଫତରେ ମୋତେ ଛାଡ଼ିଦେଇ ଅନ୍ୟ କେଉଁଆଡ଼େ ବାହାରିଗଲା।

ଝିଅଟି ମୋ ମୁହଁକୁ ଅନେକ ସମୟ ଯାଏ ଚାହିଁ ରହି ମୋତେ ପଚାରିଲା, : ତମ ନାଁ ?

ମୁଁ କମ୍ପିତ କଣ୍ଠରେ କହିଲି: ରଜନୀ, ପୁଣି କିଛି ସମୟ ଛାଡ଼ି କହିଲି ଗନ୍ଧା।

ଝିଅଟି ମୋ ହାତ ଧରି ଭିତରକୁ ଟାଣି ନେଉ ନେଉ କହିଲା : ରଜନୀଗନ୍ଧା, ସୁନ୍ଦର ନାଁଟିଏ। ରଜନୀଗନ୍ଧା ଫୁଲ ମୋର ଭାରି ପ୍ରିୟ। ତମେ ବି ମୋର ପ୍ରିୟବାନ୍ଧବୀ ହେଲ।

ମୁଁ ସେଠାକାର କୋଳାହଳ ଭିତରେ ସେଇ ଝିଅଟିର ହାତ ଧରି ଆଗେଇଥିଲି। କୁଆଡ଼େ ଯାଉଚି, କାହିଁକି ଯାଉଚି ମୋତେ କିଛି ଜଣାନଥିଲା।

ସେଇ ଘରଟା ଭିତରେ ଛୋଟ ବଡ଼ ଅନେକ ବୟସର ଝିଅ ପୁଅ କୋଳାହଳ କରୁଥିଲେ। କିଏ ଗାଉଥିଲା, କିଏ ନାଚୁଥିଲା। କିଏ କାହା ସହିତ ଗଳ୍ପ କରୁଥିଲା।

ମୋତେ ସେ ଝିଅଟି ସଂଗରେ ନେଇ ଆଉ ଗୋଟିଏ ଘର ଭିତରେ ପଶିଲା।

ସେ କହୁଥିଲା। ମୋତେ ବସିବାକୁ କହିଲା। କିନ୍ତୁ ମୁଁ କାଠ ପାଲଟି ଯାଇଥିଲି। ଶେଷରେ ସେ ମୋ ହାତ ଧରି ଟାଣି ବସାଇଲା।

ମୁଁ ବସିଲି।

ସେ ହସି ହସି କହିଲା: ତମେ ଭୟ କରୁଛ ରଜନୀଗନ୍ଧା। ପ୍ରଥମେ ପ୍ରଥମେ ଏମିତି ଜଡ଼ତା ସମସ୍ତଙ୍କର ଆସେ। କିଛିଦିନ ପରେ ଜଡ଼ତା କଟିଯାଏ। ଭୟ ବି ଭାଙ୍ଗିଯାଏ। ତମ ପରି ମୁଁ ବି ଦିନେ ଏଠିକୁ ଆସିଥିଲି। ଅଙ୍କଲଙ୍କ ସହିତ ପ୍ରଥମ ସାକ୍ଷାତରେ ମୁଁ ତ ମୂର୍ଚ୍ଛା ହୋଇ ଯାଇଥିଲି। କିନ୍ତୁ ଆଜି ବୁଝୁଚି ଜୀବନ କ'ଣ। ଜୀବନ ପାଇଁ ଉପଭୋଗର ପଥ ଏଠାରେ କେତେ ପ୍ରଶସ୍ତ। ଖାଲି ତ ଜୀବନ ବଞ୍ଚାଇବା ପାଇଁ ନ ଖାଇ ନ ପିଇ ଆଦର୍ଶକୁ ଜଗି ରହିଲେ ଚଳିବ ନାହିଁ। ସୁନ୍ଦର ଜୀବନ ଆଗେ, ଆଦର୍ଶ ପରେ।

ସେତେବେଳେ ଜୀବନଦର୍ଶନ ସମ୍ବନ୍ଧରେ ମୋର କିଛି ଜ୍ଞାନ ନ ଥିଲା। ତେଣୁ ଆଦର୍ଶ ଅନାଦର୍ଶର ଅର୍ଥ ମୋ ପାଖରେ ନିରର୍ଥକ ଥିଲା। ମୁଁ କେବଳ ଏତିକି ଜାଣି ଆଶ୍ୱସ୍ତ ହୋଇଥିଲି, ଯେ ଏ ଝିଅଟି ବି ମୋରି ପରି ପ୍ରଥମେ ଏଠାକୁ ଆସିଥିଲା। ସେ ତ ବେଶ୍ ହସଖୁସି ଅଛି। ମୁଁ ଡରିବି କାହିଁକି ?

ତଥାପି ମୋ ଦେହମନରୁ ଜଡ଼ତା କଟି ନ ଥିଲା। ମୁଁ କେବଳ ଜଳଜଳ କରି ତା' ମୁହଁକୁ ଚାହୁଁଥିଲି ଏବଂ କାଳଗରୁଡ଼ ପରି ତା' କଥା ଶୁଣି ଯାଉଥିଲି।

ସେ ମୋତେ କହିଲା: ତୁମକୁ ଭୋକ ଲାଗିବଣି ରଜନୀଗନ୍ଧା! ତମେ କିଛି ଖାଅ। ଟିକିଏ ସୁସ୍ଥ ହୁଅ। ତା'ପରେ ମୁଁ ଆମ କ୍ଲବର ସବୁ ଲୋକଙ୍କ ସହିତ ପରିଚୟ କରାଇଦେବି। ତମେ ପ୍ରତି ଶନିବାର ଦିନ ଏଠାକୁ ଆସିବ। ଶନିବାର ଦିନ ଆମେ ସମସ୍ତେ ଏଠାକୁ ଆସୁ, ଏକତ୍ର ହେଉ। ହସି ଖେଳି ରାତି କଟାଇ ଦେଉ। ତା'ପରେ ପରଦିନ ଯେ ଯୁଆଡ଼େ ନିଜ ନିଜ କାମରେ ବାହାରିଯାଉ।

ଧୀରେ ଧୀରେ ମୁଁ ପ୍ରକୃତିସ୍ଥ ହୋଇଆସୁଥିଲି। ଝିଅଟିର କଥା ମୋତେ ଆକର୍ଷଣ କରିବାରେ ଲାଗିଲା। ଝିଅଟି ମୋଠାରୁ କେତେ ବଡ଼ ହେବ ଆଉ! ଖୁବ୍ ଜୋର୍ ଚାରି ପାଞ୍ଚବର୍ଷ!!

ପ୍ରଥମେ ମୁହଁ ଖୋଲି ପଚାରିଲି: ଦିଦି, ଏଠି ସବୁ କ'ଣ ହୁଏ ? ସେ ଘରେ ଯେ ଏତେ ପୁଅ ଝିଅ ଦେଖି ଆସିଲି, ସେମାନେ ସବୁ କାହିଁକି ଆସିଛନ୍ତି ?

ସେ ହସିଲା, କହିଲା: ଗୋଟାଏ କଥା ମନେରଖ ରଜନୀଗନ୍ଧା ! ଏଠି ଦିଦି, ଭାଇ ସମ୍ପର୍କ ରଖି କଥାବାର୍ତ୍ତା ନାହିଁ, ଏଠି ସମସ୍ତେ ସମସ୍ତଙ୍କ ନାଁ ଧରି ଡାକନ୍ତି। ମୋ ନାଁ ମେନକା। ମୁଁ ଯେପରି ତମ ନାଁ ଧରି ଡାକିବି ତମେ ବି ସେମିତି ମୋ ନାଁ ଧରି ଡାକିବ। ଏହା ଦ୍ୱାରା ଛୋଟ ବଡ଼ର ଭେଦଭାବ ଦୂର ହୁଏ। ତା'ଛଡ଼ା ତମକୁ ତ ଆଗରୁ କହିଚି, ତମେ ମୁଁ, ସେମାନେ, ଆମେ ସମସ୍ତେ ଅଙ୍କଲଙ୍କର ଅନ୍ନରେ ଲାଳିତପାଳିତ। ବଡ଼ ହୋଇ ସମସ୍ତେ କିଛି ନା କିଛି କାମରେ ନିଯୁକ୍ତ ହୋଇଛନ୍ତି। ସପ୍ତାହରେ ଥରେ ଆମେ ସମସ୍ତେ ଏକାଠି ମିଳିତ ହେଉ।

: ତା'ହେଲେ କିଛିଦିନ ପରେ ମୁଁ ବି କ'ଣ କାମ ପାଇବି ମେନକା ଦିଦି ?

: ନିଶ୍ଚୟ, ନିଶ୍ଚୟ। କାମ ତମେ ବି ପାଇବ। ଅଙ୍କଲ ତମେ କରିପାରିଲା ଭଳି କାମ ତମକୁ ଯୋଗେଇ ଦେବେ। ତା' ଆଗରୁ ତମକୁ କାମ ଶିଖିବାକୁ ହେବ। ଅଙ୍କଲଙ୍କର ଗୋଟାଏ ଟ୍ରେନିଂ ସ୍କୁଲ ଅଛି। ପ୍ରତିଦିନ ରାତିରେ ଆସି ସେହି ସ୍କୁଲରେ ଟ୍ରେନିଂ ନେବାକୁ ହେବ। ଟ୍ରେନିଂରେ ପାସ୍ କଲେ ତା'ପରେ କାମରେ ନିଯୁକ୍ତି ପାଇବ।

ମେନକା କଥା ମୁଁ ସଂପୂର୍ଣ୍ଣ ବୁଝି ପାରୁନଥିଲେ ବି ଆଗକୁ ଆହୁରି ଆହୁରି ଜାଣିବା ପାଇଁ ମୋ ମନରେ ଆଗ୍ରହ ବଢ଼ି ଯାଉଥିଲା।

ମୁଁ ପଚାରିଲି: ଟ୍ରେନିଂ କ'ଣ ?

ସେ କହିଲା: ସେଠାରେ କାମ ଶିଖାଯାଏ।

: କି କାମ ?

: ସେ ନାନା ରକମର କାମ। ଆଉ କିଛିଦିନ ପରେ ତମେ ଯେତେବେଳେ ଟ୍ରେନିଂ

ସ୍କୁଲକୁ ଯିବା, ବଳେ ବୁଝିପାରିବ ଯେ! ହେଇ ଖାଇବାକୁ ଆସିଗଲାଣି। ଏଥର ଖାଇନିଅ। ତା'ପରେ ମୁଁ ତମକୁ ସମସ୍ତଙ୍କ ସହିତ ପରିଚୟ କରାଇଦେବି।

: ନା ଦିଦି। ମୁଁ ବରଂ...

: ପୁଣି ଦିଦି। କହିଲି ପରା ମୋ ନାଁ ଧରି ଡାକିବ। ଆଜିଠାରୁ ମନେ କର ମୁଁ ତମର ଗୋଟିଏ ସାଙ୍ଗ।

ଖାଇବା ପଦାର୍ଥ ଟେବୁଲ୍ ଉପରେ ରଖି ପଟଡ଼ି ଚପକନପିନ୍ଧା ଲୋକଟା ଘରୁ ବାହାରିଗଲା। ମେନକା ଟ୍ରେ ଉପରୁ ପ୍ଲେଟ୍ ଉଠାଇ ଆଣି ମୋ ସାମ୍ନାରେ ଥୋଇଲା। ନାନାପ୍ରକାର ଲୋଭନୀୟ ଖାଦ୍ୟପଦାର୍ଥ ଦେଖି ମୋ ପେଟର ଭୋକ ଆହୁରି ବଢ଼ିଗଲା।

ମେନକା ଓ ମୁଁ ଦୁହେଁ ବସି ଖାଇଲୁ। କେଉଁ ଖାଦ୍ୟ କିପରି ଖାଇବାକୁ ହୁଏ, କାହା ପରେ କିଏ ଖିଆ ଯାଏ, ମେନକା ମୋତେ ଗୋଟି ଗୋଟି କରି ଶିଖାଇଦେଲା। ମୁଁ ଏପରି ସୁସ୍ୱାଦୁ ଖାଦ୍ୟ ଏହା ପୂର୍ବରୁ କେବେ ଖାଇ ନ ଥିଲି।

ଖିଆପିଆ ଶେଷ କରି ମେନକା କହିଲା: ଚାଲ ଏଥର, ସମସ୍ତଙ୍କ ସହିତ ତମର ପରିଚୟ କରାଇ ଦେବି।

ମୁଁ ଆପତ୍ତି କଲି। କହିଲି: ମୋତେ ସେମାନଙ୍କ ସାମ୍ନାକୁ ଯିବାକୁ ଲାଜ ମାଡୁଚି, ତା'ଛଡ଼ା ଡର ବି ଲାଗୁଚି।

ମେନକା ହୋ ହୋ ହୋଇ ହସି ଉଠିଲା। କହିଲା: ଲାଜ ଛଡ଼େଇବା ପାଇଁ ତ ମୁଁ ଡାକୁଚି ତୁମକୁ। ତା'ଛଡ଼ା ସମସ୍ତଙ୍କ ସହିତ ପରିଚୟ ନ ହେଲେ ତମେ ଜୀବନରେ ସ୍ୱାଦ ଚାଖି ପାରିବ ନାହିଁ। ଆସ ଆସ, ଉଠ ଉଠ। ସେ ମୋ ହାତ ଧରି ଏକ ପ୍ରକାର ଟାଣି ଟାଣି ଘରୁ ବାହାରକୁ ନେଇଗଲା।

କି ଝିଅ ପୁଅରେ ବାବା ସେମାନେ! କିଛି ଭିନେ କାରଣ ନାହିଁ। କାହାରି ଲାଜ ସରମ ନାହିଁ, ଝିଅ ପୁଅମାନେ ଧରାଧରି ହୋଇ ନାଚୁଛନ୍ତି। ମୁହଁ ଯୋଡ଼ା ଯୋଡ଼ି ହୋଇ ହସାହସି ହେଉଛନ୍ତି, ପ୍ରଥମେ ମୁଁ ସହି ପାରିଲି ନାହିଁ।

ଖାଲି ସେତିକି ନୁହେଁ, ଏଡ଼େ ଦୁଷ୍ଟ ସେ ପୁଅ ଝିଅମାନେ। ମେନକା ମୋତେ ସେମାନଙ୍କ ସହିତ ପରିଚୟ କରାଇ ଦେଲାବେଳେ କିଏ ଯେ କେତେ ପ୍ରକାର ଭଙ୍ଗୀ କଲେ, କିଏ ଯେ କେତେ ପ୍ରକାର କଥା କହିଲେ, ସେ ସବୁ ମୁଁ ସେଦିନ ଆଖି ବୁଜି ଶୁଣି ଯାଇଥିଲି। ମନେ ମନେ ଠିକ୍ କରିଥିଲି, ନା, ଆଉ ଏଠାକୁ ଆସିବି ନାହିଁ। ମୁଁ ଭଲ ଅଛି। ଜୀବନର ସ୍ୱାଦ ଚାଖିବା ମୋର ଦରକାର ନାହିଁ।

କିନ୍ତୁ ପରବର୍ତ୍ତୀ ଶନିବାର ମୋତେ ଆସିବାକୁ ହୋଇଥିଲା। ସେଦିନ ଅଙ୍କଲ ଯାଇନଥିଲେ। ମୋତେ ଆଣିବାକୁ ଗାଡ଼ି ନେଇ ମେନକା ଯାଇଥିଲା। ମୋତେ

ସେ ବୁଝାଇ ସୁଝାଇ ସଙ୍ଗରେ ଧରି ଆଣିଥିଲା। ବାଟରେ ନାନା ଉପଦେଶ ଦେଇଥିଲା, ସୁସ୍ଥ ଭାବରେ ବଞ୍ଚି ରହିବାକୁ ହେଲେ ଅଙ୍କଲଙ୍କ ନିର୍ଦ୍ଦେଶ ମାନି ଚଳିବାକୁ ହେବ।

ମୁଁ ଆସିଥିଲି। ସେଦିନ ଜଡ଼ତା ଏତେଟା ନ ଥିଲା। ମେନକା ମୋ ସଙ୍ଗେସଙ୍ଗେ ରହିଥିଲା। ଆଉ ଦି' ତିନୋଟି ଝିଅଙ୍କ ସହିତ ପରିଚୟ ହୋଇଥିଲା। ସେଦିନ ଆସରରେ ମୋତେ ଗୀତ ଗାଇବାକୁ ହୋଇଥିଲା। ଗୀତ ଶେଷରେ କରତାଳି ଧ୍ୱନିରେ ମୋତେ ସମସ୍ତେ ସମ୍ବର୍ଧନା ଜଣାଇଥିଲେ।

ଦୁଇ ତିନୋଟି ଶନିବାର ପରେ ମୁଁ ଅନୁଭବ କଲି, ସପ୍ତାହର ଅନ୍ୟ ବାର ଗୁଡ଼ାକ ମୋ ପାଖରେ ଯେପରି ଯନ୍ତ୍ରଣାଦାୟକ ମନେ ହେଉଛି। ମୁଁ ଶନିବାରର ପ୍ରତୀକ୍ଷାରେ ଦିନ ଗଣୁଛି ଏବଂ ଶେଷରେ ଦେଖିଲି ଶନିବାର ଦିନ ସକାଳୁ ମୁଁ ଘଣ୍ଟା ଗଣୁଛି। କେତେବେଳେ ଛଅଟା ବାଜିବ, କେତେବେଳେ ଗାଡ଼ିର ହର୍ଣ୍ଣ ଶୁଣିବି!!

ଆରେ ସତେ ତ! ଜୀବନର ଯେ ଗୋଟାଏ ସ୍ୱତନ୍ତ୍ର ସ୍ୱାଦ ଅଛି, ମେନକା ସେଦିନ ଠିକ୍ କହିଥିଲା।

ଧୀରେଧୀରେ ସେଠାରେ ମୋର ବନ୍ଧୁବାନ୍ଧବ ବଢ଼ିଲେ। ଜଡ଼ତା କଟିଲା। ସମସ୍ତଙ୍କ ପରି ମୁଁ ଆନନ୍ଦସ୍ରୋତରେ ନିଜକୁ ସହଜରେ ଭସାଇ ଦେଇପାରିଲି।

ତା'ପରେ ମୋର ଆରମ୍ଭ ହେଲା ଟ୍ରେନିଂ।

ସେ ଆଉ ଏକ ଜଗତ। ବିଭିନ୍ନ ଦିନ ମାନଙ୍କରେ ବିଭିନ୍ନ ଲୋକମାନଙ୍କ ସହିତ ମୋତେ ଛୁଟିବାକୁ ହେଲା। ଖାଲି ଗୋଟାଏ ସହର ନୁହେଁ, ଭାରତବର୍ଷର ବିଭିନ୍ନ ସହର ସହିତ ମୋତେ ପରିଚୟ କରାଇଲେ ଅଙ୍କଲଙ୍କ ବିଶ୍ୱସ୍ତ କର୍ମଚାରୀମାନେ। କେବେ ଟ୍ରେନ୍‌ରେ, କେବେ ପ୍ଲେନ୍‌ରେ, କେବେ ମଟର ବୋଟ୍‌ରେ ମୁଁ ଚଢ଼ି ବୁଲିଲି। ମୋ ଆଖି ଆଗରେ ଏକ ବିରାଟ ଦୁନିଆ ଭାସି ଉଠିଲା। ପ୍ରାଣ ମନରେ ଉତ୍ତେଜନା ବଢ଼ିଗଲା। ମୁଁ ଯେ ଦିନ ପରେ ଦିନ ଆତ୍ମନିର୍ଭରଶୀଳ ହୋଇ ଉଠୁଚି, ମୋର ଯେ ଗୋଟାଏ ସ୍ୱତନ୍ତ୍ର ସତ୍ତା ଅଛି, କ୍ରମଶଃ ମୁଁ ତାହା ଅନୁଭବ କଲି।

କିନ୍ତୁ ଅଙ୍କଲ ଗଲେ କୁଆଡ଼େ? ସେଇ ଯେ ପ୍ରଥମଥର ତାଙ୍କ ସହିତ ମୋର ଦେଖା ହୋଇଥିଲା, ଆଉ ତା'ପରେ ତାଙ୍କ ସହିତ ମୋର ଦେଖା ହୋଇନାହିଁ। ମୁଁ କେବଳ ସମସ୍ତଙ୍କ ମୁହଁରୁ ଅଙ୍କଲଙ୍କର ନାଁ ଶୁଣୁଛି। ଅଙ୍କଲଙ୍କ ନିର୍ଦ୍ଦେଶ ପାଳନ କରୁଛି କିନ୍ତୁ ଅଙ୍କଲଙ୍କର ଛାୟା ବି ସ୍ପର୍ଶ କରୁନାହିଁ।

ହଠାତ୍ ଦିନେ ମୋତେ ଡକରା ଆସିଲା।

ମା' କହିଲା ଏଥର ତୋର ଶିକ୍ଷା ଶେଷ ହୋଇଛି। ତୋତେ କାମରେ ଯୋଗ

ଦେବାକୁ ହେବ। କିନ୍ତୁ ଗୋଟିଏ କଥା ସବୁବେଳେ ମନେ ରଖିବୁ, ଅଙ୍କଲଙ୍କ ନିର୍ଦ୍ଦେଶ ସବୁବେଳେ ମାନି ଚଳିବୁ। ଖବରଦାର ମା। ତା' ନ ହେଲେ ତୋର ସର୍ବନାଶ ହୋଇଯିବ।

ମୁଁ ମା'ର ପାଦଧୂଳି ନେଇ ସେଦିନ କର୍ମଜୀବନରେ ଅବତୀର୍ଣ୍ଣ ହେବାପାଇଁ ବାହାରିପଡ଼ିଲି। ସେଦିନ ସେଇ ନିଭୃତ କକ୍ଷରେ ଅଙ୍କଲଙ୍କ ସହିତ ମୋର ଦ୍ୱିତୀୟବାର ସାକ୍ଷାତ ହେଲା। ସେହିପରି ସେ ଗମ୍ଭୀର। ଆଖିରେ କଳା ଚଷମା, ହାତରେ ଗୋଟିଏ ଗୋଲାପ ଫୁଲ ଧରି ଘୂରାଉଥିଲେ।

ମୁଁ ଘର ଭିତରେ ପ୍ରବେଶ କରିବା ମାତ୍ରକେ ଦରଜା ବନ୍ଦ ହୋଇଗଲା। ଧୀର ପାଦ ଚାଳି ଅତି ସନ୍ତର୍ପଣରେ ମୁଁ ଯାଇ ଅଙ୍କଲଙ୍କ ସାମନାରେ ଠିଆହେଲି।

ସେ ମୋ ହାତକୁ ଗୋଲାପ ଫୁଲଟି ବଢ଼ାଇ ଦେଇ କହିଲେ: ତୋର ପରୀକ୍ଷା ଶେଷ ହୋଇଛି। ତୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଇଛୁ। ଏଇ ଗୋଲାପଟି ତୋର ସାର୍ଟିଫିକେଟ।

ମୁଁ ଅଙ୍କଲଙ୍କ ହାତରୁ ଫୁଲଟି ନେଇ ମୁଣ୍ଡରେ ଲଗାଇଲି। ପରବର୍ତ୍ତୀ ନର୍ଦ୍ଦେଶ ପାଇଁ ଅପେକ୍ଷା କରି ରହିଲି।

: ତୋ ନାଁ ରଜନୀଗନ୍ଧା। ରଜନୀଗନ୍ଧା ପରି ତୋତେ ମଧୁର ଓ ସୁନ୍ଦର ହେବାକୁ ହେବ। ଆଜିଠାରୁ ତୁ ଅଙ୍କଲ ଦୈତ୍ୟାୟନଙ୍କର ସହକର୍ମୀ। କାର୍ଯ୍ୟର ନିର୍ଦ୍ଦେଶ କିଛି ସମୟ ପରେ ତୁ ପାଇବୁ। ଗୋଟିଏ କଥା ମନେ ରଖିବୁ ରଜନୀଗନ୍ଧା, ଅଙ୍କଲ ଦୈତ୍ୟାୟନଙ୍କର ପାଖରେ କାମ କରିବା କଠିନ ତପସ୍ୟା କରିବା ସଙ୍ଗରେ ସମାନ। କିନ୍ତୁ ମୁଁ ମୋ ସହକର୍ମୀମାନଙ୍କୁ ଯୋଗୀ ଋଷୀମାନଙ୍କର ପରି କେବଳ ଶୁଖିଲା ସାଧନା କରିବାକୁ ଛାଡ଼ିଦିଏ ନାହିଁ। ଜୀବନର ସ୍ୱାଦ ଅନୁଭବ କରିବାର ସୁଯୋଗ ଦିଏ। କିନ୍ତୁ କାମ ବେଳେ ସମସ୍ତଙ୍କୁ ସାଧକର ଭୂମିକା ଗ୍ରହଣ କରିବାକୁ ପଡ଼ିଥାଏ। ଏଠି ନିର୍ଦ୍ଦେଶ ପାଳନ ଆଉ ସତତା ରକ୍ଷା ଏଇ ଦୁଇଟିକୁ ବେଦବାକ୍ୟ ପରି ମାନି ଚଳିବାକୁ ହୁଏତ। ଆଶା କରୁଛି ତୁ ତାହା ପାରିବୁ।

ତା'ପରେ ହଠାତ୍ ଘର ଅନ୍ଧକାର ହୋଇଗଲା। ମୁଁ ଚମକି ଉଠିଲି। କିନ୍ତୁ ଯେତେବେଳେ ଘରେ ପୁଣି ଆଲୋକ ଜଳି ଉଠିଲା, ସେତେବେଳେ ଅଙ୍କଲ ସେଠାରେ ନ ଥିଲେ। ଦୁଆର ଠେଲି ପଶି ଆସୁଥିଲା ଜୟନ୍ତ। ଯାହା ସହିତ ମୁଁ ଟ୍ରେନିଂ ପିରିଅଡ଼ରେ ନାନା ଜାଗାରେ ଘୂରି ବୁଲିଥିଲି।

ସେ ମୋ ଖୋସାରେ ଗୋଲାପ ଫୁଲଟି ଆଡ଼େ କିଛି ସମୟ ଅନାଇ ରହି କହିଲା: ତମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ ରଜନୀଗନ୍ଧା। ଆନନ୍ଦର କଥା।

ମୁଁ ଲକ୍ଷ୍ୟ କଲି ଜୟନ୍ତ କିପରି ଗମ୍ଭୀର ହୋଇଯାଇଛି। ସେ ଯେପରି ମୋର ଏଇ ସଫଳତାରେ ଖୁସି ନୁହେଁ।

ରାତ୍ରିର ରଜନୀଗନ୍ଧା

ଜୟନ୍ତ କହିଲା: ଆଜି ରାତିରେ ତୁମକୁ କାମରେ ବାହାରିବାକୁ ହେବ। କିନ୍ତୁ ସମୟ ପରେ କାମର ନିର୍ଦ୍ଦେଶ ତମେ ପାଇବ। କିନ୍ତୁ ଖୁବ୍ ସାବଧାନ ରଜନୀଗନ୍ଧା। କାମଟା ଭୀଷଣ ରିସ୍କ୍। ତା'ଛଡ଼ା ଲୋକଟା....

ଜୟନ୍ତର କଥା ଶେଷ ହେଲାନାହିଁ। ଘର ଭିତରେ ଗୋଟାଏ କୋଣରେ ଲାଲ ଆଲୋକ ଦପ୍ ଦପ୍ ହୋଇ ଜଳିଲା ଓ ଲିଭିଲା।

ଜୟନ୍ତ କହିଲା: ଚାଲ ରଜନୀଗନ୍ଧା। ତୁମକୁ ଡାକ ପଡ଼ିଲାଣି। କାମର ଦାୟିତ୍ୱ ବୁଝି ନେବାକୁ ହେବ।

ଜୟନ୍ତ ପଛେ ପଛେ ମୁଁ ଯାଇ ଆଉଗୋଟିଏ କୋଠରି ପାଖରେ ପହଞ୍ଚିଲି। ଜୟନ୍ତ ଭିତରକୁ ଯିବା ପାଇଁ ମୋତେ ଆଙ୍ଗୁଳି ଦେଖାଇଲା। ମୁଁ ଦରଜା ଠେଲି ଭିତରେ ପଶିଲି। ଦରଜା ବନ୍ଦ ହୋଇଗଲା। ଜୟନ୍ତ ରହିଗଲା ବାହାରେ

ଭିତରେ ଗୋଟାଏ ଚେଆର ଉପରେ ବସିଥିଲେ ଜଣେ ବୟସ୍କ ମହିଳା। ସେ ମୋତେ ଡାକି ସାମନା ଚେଆର ଉପରେ ବସିବାକୁ କହିଲେ। ମୁଁ ବସିଲି।

ଭଦ୍ରମହିଳା ମୋ ହାତକୁ ପ୍ରଥମେ ଗୋଟିଏ ଲଫାପା ବଢ଼ାଇ ଦେଲେ। କହିଲେ: ଖୋଲ।

ମୁଁ ଖୋଲିଲି। ଖଣ୍ଡିଏ ଫଟୋଗ୍ରାଫ। ଗୋଟିଏ ସୁନ୍ଦର ଯୁବକର।

ସେ କହିଲେ: ରାଜକୁମାର ଅମର ସିଂହ। ସେ ତମକୁ କାଲି ଦିଲ୍ଲୀରେ ଅଶୋକ ହୋଟେଲରେ ପ୍ରତୀକ୍ଷା କରିଥିବେ।

ମୁଁ ସେହି ଭଦ୍ରମହିଳାଙ୍କ ମୁହଁକୁ ଅନାଇଲି।

ସେ ପୁଣି ମୋ ହାତକୁ ଗୋଟିଏ ଲମ୍ବା ଖାମ୍ ବଢ଼ାଇ ଦେଲେ।

କହିଲେ: ଏହା ଭିତରେ ତମର ପ୍ଲେନ୍ ଟିକେଟ ଅଛି। ତମେ ପାଲାମ୍‌ରେ ପ୍ଲେନରୁ ଓହ୍ଲାଇ ଦେଖିବ ତମ ପାଇଁ ମେରୁନ୍ ରଙ୍ଗର ଗୋଟିଏ ଆମ୍ବାସାଡାର ପ୍ରତୀକ୍ଷା କରିଛି। ନମ୍ବରଟା ସେଇ ଖାମ ଉପରେ ଲେଖା ଅଛି। ତମେ ସିଧା ଯାଇ ସେଇ ଗାଡ଼ିରେ ଉଠିବ। ଗାଡ଼ି ନେଇ ତମକୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବ।

ମୁଁ ପ୍ଲେନ୍ ଟିକେଟି ହାତରେ ଧରି ପରବର୍ତ୍ତୀ ନିର୍ଦ୍ଦେଶ ପାଇଁ ପ୍ରତୀକ୍ଷା କରିଥିଲି।

ସେ ପୁଣି କହିଲେ: ରାଜକୁମାର ଉପହାର ଏଇ ଆଟାଚି ଭିତରେ ଅଛି। ତମେ ଏଇଟିକୁ ନେଇ ରାଜକୁମାରଙ୍କୁ ଦେବ। ତାଙ୍କ ପାଖରେ ପହଞ୍ଚିଲା ପରେ ତାଙ୍କ ନିର୍ଦ୍ଦେଶ ପାଳନ କରି ଚଳିବା ତମର ଏକାନ୍ତ କର୍ତ୍ତବ୍ୟ ବୋଲି ମନେ କରିବ। ତା'ପରଦିନ ଇଭନିଂ ଫ୍ଲାଇଟ୍‌ରେ ତମର ଫେରି ଆସିବାର ସମସ୍ତ ବ୍ୟବସ୍ଥା ହୋଇଛି। ରାଜକୁମାର ଅମର ସିଂହ ତମ ହାତରେ ଅଙ୍କଲଙ୍କ ପାଇଁ କିଛି ପଠାଇ ପାରନ୍ତି। ଯାହା ପଠାଇବେ, ସେଗୁଡ଼ିକ

ଅତ୍ୟନ୍ତ ସାବଧାନତା ସହକାରେ ଆଣି ଏଠାରେ ପହଞ୍ଚାଇବ। ଆଉ ଏଇ ଖାମଟା ଧର। ଏହି ଜଉମୁଦ ଖାମ ଭିତରେ ଅମର ସିଂହଙ୍କ ନାମରେ ଚିଠି ଅଛି ଏବଂ ଅଟାଚି କେସ୍‌ରେ ଚାବି ଅଛି। ଯାଅ ବାହାରି ପଡ଼। ମୁଁ ତମର ସଫଳତା କାମନା କରୁଛି।

ଭଦ୍ରମହିଳା ଏହାପରେ ଚେଆରରୁ ଉଠି ଚାଲିଗଲେ। ମୁଁ ସ୍ତବ୍ଧ ହୋଇ କିଛି ସମୟ ଠିଆ ହୋଇ ରହିଲି। ଆନନ୍ଦ ଓ ଆଶଙ୍କାରେ ମୋର ସର୍ବାଙ୍ଗ ଶିହରି ଉଠିଥିଲା।

ମୋତେ ରାଜକୁମାର ଅମର ସିଂହଙ୍କ ମୁକାବିଲା କରିବାକୁ ପଡ଼ିବ। ମୋ ଜୀବନର ପ୍ରଥମ ପରୀକ୍ଷା। ମେନକା ମୋତେ କହିଥିଲା, କିପରି ଭାବରେ ଆମ ଝିଅମାନଙ୍କୁ ଅତ୍ୟନ୍ତ ସତର୍କତା ସହକାରେ କାମ ହାସଲ କରିବାକୁ ହୁଏ। ବିଶେଷ ଭାବରେ ଯେତେବେଳେ ପୁରୁଷମାନଙ୍କ ସହିତ କୌଣସିକାର୍ଯ୍ୟ କରିବାକୁ ହୁଏ, ସେତେବେଳେ ପୁରୁଷମାନଙ୍କର ଲାଳସାର ଶିକାର ହେବାକୁ ପଡ଼ିଥାଏ। କିନ୍ତୁ ଆମ ପରି ଝିଅମାନଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ପୁରୁଷମାନଙ୍କର ଲାଳସା ଅଗ୍ନିରୁ ନିଜକୁ ବଞ୍ଚାଇବା। ତା'ପରେ କାର୍ଯ୍ୟ ହାସଲ। ଅନେକ କ୍ଷେତ୍ରରେ ତାହା ସମ୍ଭବ ହୁଏନାହିଁ। ତଥାପି ଚେଷ୍ଟା କରି ଯିବାକୁ ହୋଇଥାଏ।

ମୁଁ ଧ୍ୟାନମଗ୍ନ ହୋଇଯାଇଥିଲି। ଜୟନ୍ତ ହାତର ସ୍ପର୍ଶ ପାଇ ଚେଇଁ ଉଠିଲି।

ଜୟନ୍ତ କହିଲା: ଚିନ୍ତା କରନାହିଁ। ଅଙ୍କଲଙ୍କ ନର୍ଦ୍ଦେଶ ପାଳନ କରିବାକୁ ହେବ। ନିଜେ ନିଜକୁ ରକ୍ଷା କରିବାର ଚେଷ୍ଟା କଲେ କେହି ତମର ସର୍ବନାଶ କରିପାରିବ ନାହିଁ।

ତା'ପରେ ମୁଁ ଦିଲ୍ଲୀ ଯାଇ ରାଜକୁମାର ଅମର ସିଂହଙ୍କ ସହିତ ଭେଟ କଲି। ସେ ମୋ ହାତରୁ ଆଟାଚି କେସ୍‌ଟି ଓ ଜଉମୁଦ ଖାମଟି ନେଇ କହିଲେ: ୧୭ ନମ୍ବର ରୁମ୍‌ରେ ଅପେକ୍ଷା କରିବ।

ସେଇ ହୋଟେଲର୧୭ ନମ୍ବର ରୁମ୍‌ରେ ମୋ ରହିବାର ବ୍ୟବସ୍ଥା ହୋଇଥିଲା। ରାଜକୁମାର ଅମର ସିଂଙ୍କର ପରବର୍ତ୍ତୀ ନିର୍ଦ୍ଦେଶ ପାଇଁ ମୁଁ ଅପେକ୍ଷା କରିଥିଲି।

କିନ୍ତୁ ନିର୍ଦ୍ଦେଶ କିଛି ଆସିଲା ନାହିଁ। ଆସିଲା ଗୋଟାଏ ଫୋନ୍, ରାଜକୁମାର ଅମର ସିଂହ ସେକ୍ରେଟାରୀଙ୍କଠାରୁ। ସେ ମୋତେ କହିଲେ, ଆଜି ଇଭନିଂ ଫ୍ଲାଇଟରେ ତମକୁ ଫେରି ଯିବାକୁ ହେବ। ପ୍ରସ୍ତୁତ ହୁଅ।

ମୁଁ ଅପେକ୍ଷା କରି ବସି ରହିଲି। ପ୍ଲେନ୍ ଛାଡ଼ିବାର ଘଣ୍ଟାକ ପୂର୍ବରୁ ମୋ ରୁମ୍‌ରେ ଯିଏ ପ୍ରବେଶ କଲେ ସେଇ ବୋଧେ ଅମରସିଂଙ୍କ ସେକ୍ରେଟାରୀ। ସେ ମୋ ହାତକୁ ସେହିପରି ଗୋଟିଏ ଆଟାଚି କେସ୍ ଓ ଜଉମୁଦ ଖାମ୍‌ଟିଏ ବଢ଼ାଇଦେଇ କହିଲେ: ଅଙ୍କଲ ଦୈତ୍ୟାୟନଙ୍କୁ ଦେବ। କହିବ ରାଜକୁମାର ପଠାଇଛନ୍ତି। ତମେ ଯେଉଁ ଗାଡ଼ିରେ ଆସିଥିଲ, ତଳେ ସେଇ ଗାଡ଼ି ଅପେକ୍ଷା କରିଚି। ସେ ତମକୁ ଏୟାର୍ ପୋର୍ଟରେ ଛାଡ଼ିଦେଇ ଆସିବ।

ସେ ଯାତ୍ରାରେ ମୁଁ ସଫଳତା ଅର୍ଜନ କରି ଫେରିଆସିଥିଲି। ସେହିପରି ଅନେକଥର ମୋତେ ଭାରତର ବିଭିନ୍ନ ପ୍ରାନ୍ତକୁ ଯିବାକୁ ହୋଇଥିଲା। କେତେବେଳେ ଏକା, କେତେବେଳେ ସହକର୍ମୀମାନଙ୍କ ସହ।

କିନ୍ତୁ ଏଇସବୁ ଉତ୍ତେଜନାକର କାର୍ଯ୍ୟ ଭିତରେ ଜୟନ୍ତ ସହ ମୋର ଆନ୍ତରିକତା ବଢ଼ି ଉଠୁଥିଲା। ଜୟନ୍ତର ସତର୍କ ଆଖି ଦୁଇଟା ସଦାବେଳେ ମୋତେ ଅନୁସରଣ କରି ଚାଲିଥିଲା।

ଏପରି ଏକ ସମୟ ଆସିଲା, ଯେତେବେଳେ ଜୟନ୍ତ ଆଉ ମୋ ଭିତରେ ଗୋଟାଏ ବୁଝାମଣା ହେଲା ଯେ ଆମେ ଦୁହେଁ ଦୁହିଁଙ୍କୁ ବିବାହ କରି ସଂସାର ଗଢ଼ିବୁ। କିନ୍ତୁ ଆମର ଏଇ ସିଦ୍ଧାନ୍ତ ଆମର କାର୍ଯ୍ୟବିରୋଧୀ। ଯଦିଓ ଆମେ ଜାଣିଥିଲୁ ଅଙ୍କଲ ଦୈତ୍ୟାୟନଙ୍କ ନିକଟରେ କାର୍ଯ୍ୟ କରୁଥିବା ଯାଏ ଆମର ଏ ଆଶା ସଫଳ ହେବନାହିଁ, ତଥାପି ଆମେ ଏହିପରି ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିଲୁ।

ଦଳରେ ଆମ ଦୁଇଜଣଙ୍କର କାର୍ଯ୍ୟକଳାପରେ ଅଙ୍କଲ୍ ଖୁବ୍ ସନ୍ତୁଷ୍ଟ ଥିଲେ। ସେଥିପାଇଁ ସମସ୍ତପ୍ରକାର କଠିନ କାର୍ଯ୍ୟ ଆମ ଦୁହିଁଙ୍କ ଉପରେ ସେ ନ୍ୟସ୍ତ କରୁଥିଲେ।

ଆମେ ଦୁଇଜଣ ଯେତେବେଳେ କୌଣସି କାର୍ଯ୍ୟଭାର ଗ୍ରହଣ କରୁଥିଲୁ, ସେତେବେଳେ ଆମର ଉତ୍ସାହ ଶହେଗୁଣ ବଢ଼ିଯାଉଥିଲା। ତେଣୁ କାର୍ଯ୍ୟରେ ସଫଳତା ଆମେ ଅତି ସହଜରେ ଅର୍ଜନ କରିପାରୁଥିଲୁ।

ଇମିତି ଦିନ ଗଡ଼ି ଯାଉଥିଲା।

ଆମ ଦୁହିଁଙ୍କର ଆନ୍ତରିକତା ବି ଦୃଢ଼ରୁ ଦୃଢ଼ତର ହୋଇଉଠୁଥିଲା। ଜୟନ୍ତର ସଂସାରରେ ଥିଲେ ତା'ର ଏକମାତ୍ର ମା'। ସେ ତାଙ୍କ ସହିତ ମୋର ପରିଚୟ କରାଇଥିଲା ଏବଂ ଜୟନ୍ତର ମା' ମୋତେ ଆଶୀର୍ବାଦ କରିଥିଲେ।

ଦିନେ ଅଙ୍କଲ ଦୈତ୍ୟାୟନ ଆମ ଦୁହିଁଙ୍କୁ ତାଙ୍କର ନିରୋଳା ଘର ଭିତରକୁ ଡାକିଲେ। ଆମ ସାମନାରେ ଗୋଟିଏ ବ୍ଲୁ ପ୍ରିଣ୍ଟ ମେଲେଇ ଧରି କହିଲେ: ଏକ ବିରାଟ ଐଶ୍ୱର୍ଯ୍ୟର ସନ୍ଧାନ ମିଳିଛି। କିନ୍ତୁ ଅତି କଠିନ କାର୍ଯ୍ୟ। ଏ କାର୍ଯ୍ୟ ହାସଲ କରିବା ପାଇଁ ଖୁବ୍ ବୁଦ୍ଧିମତ୍ତା ଓ ଚତୁରତାର ପ୍ରୟୋଜନ। ମୁଁ ଆଶା କରୁଛି, ତମ୍ ଦୁଇ ଜଣଙ୍କ ଛଡ଼ା ଅନ୍ୟ କେହି ଏଥିରେ ସଫଳତା ଅର୍ଜନ କରିପାରିବେ ନାହିଁ।

ଜୟନ୍ତ ଓ ମୁଁ ବ୍ଲୁ ପ୍ରିଣ୍ଟ ଆଡ଼େ ନିବିଷ୍ଟ ଚିତ୍ତରେ ଚାହିଁ ରହିବା ଛଡ଼ା ସେଥିରୁ କିଛି ବୁଝିପାରିଲୁ ନାହିଁ।

ଅଙ୍କଲ ଦୈତ୍ୟାୟନ କହିଲେ: ଏଇ ବ୍ଲୁ ପ୍ରିଣ୍ଟରୁ ତମେ ହୁଏତ କିଛି ବୁଝିପାରୁନାହିଁ। ବୁଝି ପାରିଲା ଭଳି ଏତେ ସହଜ ବ୍ଲୁପ୍ରିଣ୍ଟ୍ ଏଇଟି ନୁହେଁ। ଶୁଣ, ଏ

କାର୍ଯ୍ୟଟି ଅତି କଠିନ। କିନ୍ତୁ ହାସଲ କରି ପାରିଲେ ତମ ଦୁହିଁଙ୍କୁ ମୁଁ ପ୍ରଚୁର ଅର୍ଥ ଦେଇ ମୁକ୍ତ କରିଦେବି। ମୋ ତରଫରୁ ତମ ଦୁହିଁଙ୍କ ପାଇଁ କୌଣସି ବାଧ୍ୟବାଧ୍ୟକତା ରହିବନାହିଁ।

ଅଙ୍କ ଦୈତ୍ୟାୟନଙ୍କ ମୁହଁର ମୁକ୍ତିର ବାଣୀ ଶୁଣି ଆମେ ପୁଣି ଥରେ ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲୁ। ପ୍ରାଣ ଭିତରେ କିପରି ଏକ ଉଲ୍ଲସିତ ଶିହରଣ ଖେଳିଗଲା।

ଜୟନ୍ତ ବ୍ଲୁ ପ୍ରିଣ୍ଟଟା ଟେବୁଲ ଉପରୁ ଉଠାଇନେଇ ଅତ୍ୟନ୍ତ ଧ୍ୟାନ ସହକାରେ ନିରୀକ୍ଷଣ କଲା।

ଅଙ୍କଲ ତା' ହାତରୁ କାଗଜ ଖଣ୍ଡିକ ଟାଣି ନେଇ ଟେବୁଲ୍ ଉପରେ ମେଲେଇ ଧରି କହିଲେ: ବ୍ଲୁପ୍ରିଣ୍ଟର ଆଉଟ୍ ଲାଇନ୍ ଦେଖି ବୁଝିପାରୁଛ ଏହା ନିଶ୍ଚୟ ଗୋଟିଏ ଦୁର୍ଗର ଚିତ୍ର। ଏଇ ଦୁର୍ଗଟି ଏକଦା ଆମ ଭାରତବର୍ଷରେ ଅତ୍ୟନ୍ତ ବିଖ୍ୟାତ ଥିଲା। ଦୁର୍ଗ ଭିତରେ ଏଇ ଯେଉଁ କେନ୍ଦ୍ରବିନ୍ଦୁଟି ଦେଖୁଚ, ଆମର ଲକ୍ଷ୍ୟ ବସ୍ତୁ ସେଇଠି ଅଛି। ସେଇଠି, ମାନେ ବହୁ ଗଭୀରରେ। ବର୍ତ୍ତମାନ ଏହି ଦୁର୍ଗଟି ଏକ ଭଗ୍ନସ୍ତୂପରେ ପରିଣତ ହୋଇଛି। ସେହି ଭଗ୍ନସ୍ତୂପ ଭିତରେ ତମେ ପଶି ତଳକୁ ଓହ୍ଲେଇ ଯିବାର ଏକ ଶିଡ଼ି ପାଇବ। ସେଇ ଶିଡ଼ି କିପରି ଅବସ୍ଥାରେ ଥିବ ମୋତେ ଜଣାନାହିଁ। କିନ୍ତୁ ଶିଡ଼ି ଯେଉଁଠି ଶେଷ ହୋଇଛି ସେଇଠି ଗଭୀର ଜଳରାଶି ଆରମ୍ଭ ହୋଇଛି। ସେହି ଜଳ ରାଶିର ଅତଳ ତଳେ ରହିଛି ଆମର ଲକ୍ଷ୍ୟ ବସ୍ତୁ। ବର୍ତ୍ତମାନ କଥା ହେଉଛି, ସେହି ଜଳରାଶି ଭେଦ କରି ସେହି କୁବେର ସମ୍ପତ୍ତି ଉଦ୍ଧାର କରିବା କାଠିକର ପାଠ। କିନ୍ତୁ ମୋର ଆତ୍ମବିଶ୍ୱାସ ଅଛି, ତମେ ଚେଷ୍ଟା କଲେ ସେହି କୁବେର ସମ୍ପତ୍ତି ଉଦ୍ଧାର କରି ପାରିବ। ଏଇ ବ୍ଲୁପ୍ରିଣ୍ଟ ନିଅ ଏବଂ ଆଜିଠାରୁ କାମରେ ଲାଗିପଡ଼। ତମର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ ପାଇଁ ମୁଁ ତୁମକୁ ପଚିଶ ହଜାର ଟଙ୍କା ଦେଉଛି। ଏଥିପାଇଁ ଖର୍ଚ୍ଚ ଅନେକ ହୋଇପାରେ, ତମେ ଭୟ କରିବ ନାହିଁ। ଯାଅ, ମୁଁ ତମ ଦୁହିଁଙ୍କର ଶୁଭ କାମନା କରୁଚି।

ଏହାପରେ ଆଉ ସେଠାରେ ବସିବା କଥା ନୁହେଁ। ମୁଁ ଓ ଜୟନ୍ତ ବ୍ଲୁ ପ୍ରିଣ୍ଟଟା ଧରି ଘରୁ ବାହାରି ଆସିଲୁ। ଉତ୍ତେଜନାରେ ସେତେବେଳେ ମୋ ଦେହ ଥରୁଥାଏ। ବିଶେଷକରି ଅଙ୍କଲ ଦୈତ୍ୟାୟନଙ୍କଠାରୁ ଆମର ମୁକ୍ତିସମ୍ବାଦ ଶୁଣି।

ଜୟନ୍ତ ଘରୁ ବାହାରି ଆସି ମୋତେ କହିଲା: ତମର କ'ଣ ମନେହେଉଛି ରଜନୀଗନ୍ଧା ?

ମୋର ସେତେବେଳେ ନାଚି ଯିବାକୁ ମନ ହେଉଥିଲା। ମୁଁ ଜୟନ୍ତକୁ ଦୁଇହାତରେ ଜାବୁଡ଼ି ଧରି ନାଚି ଉଠିଲି ମଧ୍ୟ। ମୁହଁରେ ମୋର ଭାଷା ନଥିଲା।

ଜୟନ୍ତ କିନ୍ତୁ ଖୁବ୍ ଗୋଟାଏ ଖୁସି ହୋଇପାରୁନଥିଲା। ସେ ମୋ ମୁହଁରେ ହସ

ଅମ୍ଳାନ ରଖିବା ପାଇଁ ନିଜେ ବି ହସିଲା। କହିଲା: କାର୍ଯ୍ୟ ବଡ଼ କଠିନ। ଯାହାହେଉ ଆମକୁ ଥରେ ଚେଷ୍ଟା କରି ମୁକ୍ତିର ପଥ ଖୋଜିବାକୁ ହେବ।

ଦୁଇଦିନ ଧରି ଆମର ପ୍ରସ୍ତୁତି ପର୍ବ ଚାଲିଲା। ଅଙ୍କଲ ବ୍ଲୁ ପ୍ରିଣ୍ଟରେ ଥିବା ଦୁର୍ଗର ଅବସ୍ଥାନ ସମ୍ବନ୍ଧରେ ସବୁ କଥା ବୁଝାଇ ଦେଲେ। ଆହୁରି ମଧ୍ୟ ସତର୍କ କରାଇଦେଲେ ଯେ ଏହି ବହୁ ମୂଲ୍ୟ ଭଣ୍ଡାର ଉଦ୍ଧାର ପାଇଁ ତମ ସହିତ କୌଣସି ପ୍ରତିଦ୍ୱନ୍ଦୀର ବି ଭେଟ ହୋଇପାରେ। ତେଣୁ ଖୁବ୍ ସାବଧାନ।

ଆମେ ଦୁଇଦିନ ପରେ ଇଷ୍ଟନାମ ସ୍ମରଣ କରି ଘରୁ ବାହାରିଗଲୁ। ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ଦେଖିଲୁ ଯେ ସେଇ ଦୁର୍ଗ ଭଗ୍ନସ୍ତୂପରେ ପରିଣତ ହୋଇଥିଲେ ସୁଦ୍ଧା କିଛି କିଛି ସ୍ଥାନ ଏ ପର୍ଯ୍ୟନ୍ତ ଉନ୍ମୁକ୍ତ ଅଛି। ଆମେ କେନ୍ଦ୍ରବିନ୍ଦୁରେ ପହଞ୍ଚି ଦେଖିଲୁ ଶିଡ଼ି ଗୋଟାଏ ତଳକୁ ଓହ୍ଲେଇ ଯିବା ପାଇଁ ଅଛି, କିନ୍ତୁ ତଳକୁ ଓହ୍ଲାଇଲା ଭଳି ଅବସ୍ଥା ନାହିଁ। ସେଠାରେ ଗଛବୃଛ ଏକ କ୍ଷୁଦ୍ର ଜଙ୍ଗଲରେ ପରିଣତ ହୋଇଛି।

ଆମେ ସଙ୍ଗରେ ନେଇଥିବା ଲୋକମାନଙ୍କ ଦ୍ୱାରା ଜଙ୍ଗଲ ସଫା କରି ଭିତରକୁ ଓହ୍ଲେଇବାର ପାହାଚ ଗୋଟି ଗୋଟି କରି ଆବିଷ୍କାର କଲୁ। କିନ୍ତୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଦେଖିଲୁ ଗୋଟାଏ ବିରାଟ ବାମ୍ଫି। ପ୍ରକୃତରେ ତା'ର ଅତଳ ଗହ୍ୱର। ଆମେ ଦଉଡ଼ିରେ ପଥର ବାନ୍ଧି ତଳକୁ ପକାଇ ତାର ଗଭୀରତା କଳନା କରିପାରିଲୁ ନାହିଁ। ତେଣୁ ତା' ଭିତରୁ ରତ୍ନଭଣ୍ଡାର ଆବିଷ୍କାର କରିବା ପ୍ରକୃତରେ ଆମେ ପକ୍ଷରେ କାଠିକର ପାଠ ହୋଇଉଠିଲା।

ସେଇଠି ସେଇ ବାମ୍ଫି ମୁଣ୍ଡରେ ବସି ବସି ଆମର ଆହୁରି ଦୁଇଟି ଦିନ କଟିଗଲା। ସମସ୍ତ ବୁଦ୍ଧି ବୃତ୍ତି ଆମର ଶେଷ ହୋଇଗଲା। କନ୍ତୁ ସେଇ ବାମ୍ଫିର ଗଭୀରତା ଆମେ କଳନା କରିପାରିଲୁ ନାହିଁ କିମ୍ବା ତା' ଭିତରକୁ ପ୍ରବେଶ କରିବାର ପନ୍ଥା ଆବିଷ୍କାର କରିପାରିଲୁନାହିଁ।

ଶେଷରେ ଆମେ ସ୍ଥିର କଲୁ ଦୁଇଜଣ ଅଭିଜ୍ଞ ବୁଡ଼ାଳି ଆଣି ଭିତରକୁ ପଠାଇବୁ। ଆଣିଲୁ ମଧ୍ୟ। ଅକ୍ସିଜେନ୍ ମୁଖା ପିନ୍ଧି ସେମାନେ ଭିତରକୁ ପଶିଲେ, ଅଣ୍ଟାରେ ସେମାନଙ୍କର ଦଉଡ଼ି ବନ୍ଧା ହେଲା। ସେମାନଙ୍କୁ କୁହା ହେଲା, ଯଦି କୌଣସି ବିପଦ ଆପଦର ସମ୍ଭାବନା ଆସେ, ତା'ହେଲେ ଦଉଡ଼ିରେ ସଙ୍କେତ ଦେଲେ ଆମେ ଉପରକୁ ଟାଣି ଆଣିବୁ।

ସେମାନେ ସେଇ ବୃହତକାୟ ବାମ୍ଫି ଭିତରକୁ ଓହ୍ଲାଇଗଲେ। ଧୀରେଧୀରେ ଗଭୀର ଜଳରାଶି ଭିତରକୁ ପ୍ରବେଶ କଲେ। ଆମେ ସାତଆଠଜଣ ଲୋକ ଦୁଇଟି ଦଉଡ଼ି ଧରି ଉଦଗ୍ରୀବ ହୋଇ ଅପେକ୍ଷା କରି ରହିଲୁ। ଆମ ହାତର ଦଉଡ଼ି ଭିତରକୁ ଖସି ଖସି ଯାଉଥିଲା। ଏକ ସମୟରେ ଦଉଡ଼ି ଖସିବା ବନ୍ଦ ହେଲା। ଭାବିଲୁ ଏଥର ହୁଏତ ବୁଡ଼ାଳିମାନେ ଅତଳ

ତଳେ ଯାଇ ପହଞ୍ଚିଛନ୍ତି। ମାତ୍ର ପାଞ୍ଚ ସାତ ମିନିଟ୍ ସ୍ଥିରତା ପରେ ପୁଣି ଦଉଡ଼ି ତଳକୁ ଖସିବାକୁ ଲାଗିଲା। ଏଥର ଏତେ ଦ୍ରୁତ ଗତିରେ ଯେ, ଆମେ ସେ ଦଉଡ଼ି ଧରି ରଖିବା ଅସମ୍ଭବ ହୋଇଉଠିଲା। କେତୋଟି ମିନିଟ୍ ଭିତରେ ଆମ ହାତରେ ଗଚ୍ଛିତ ଥିବା ଦଉଡ଼ିସବୁ ଶେଷ ହୋଇଗଲା। ଅମେ ଦଉଡ଼ିର ଶେଷ ଭାଗତକ ଧରି ରଖିପାରିଲୁ ନାହିଁ। ଦଉଡ଼ି ଆମର ହାତଛଡ଼ା ହୋଇଗଲା। ଆମେ ଅବାକ୍ ହୋଇ ବିସ୍ଫାରିତ ନୟନରେ ସେଇ ବାମ୍ଫିକୁ ଅନାଇ ରହିଲୁ।

ଆହୁରି କେତେ ଘଣ୍ଟା ଅତିବାହିତ ହୋଇଗଲା। ଆମେ ଅସହାୟ, ଆମେ ଆତଙ୍କଗ୍ରସ୍ତଙ୍କ ପରି ପାଣି ଭିତରକୁ ଚାହିଁ ରହିଥିଲୁ। କ'ଣ ହେଲା? ଘଣ୍ଟା ପରେ ଘଣ୍ଟା ବିତିବାରେ ଲାଗିଲା। କିନ୍ତୁ କୁଆଡ଼େ ଗଲେ ସେଇ ବୁଡ଼ାଳି ଦୁଇଜଣ?

ସେଦିନ ଆମେ କ୍ଳାନ୍ତ ଆଖିରେ ସେଇଠି ଅନାଇ ରହିଲୁ।

ରାତି ପାହିଲା। ସକାଳର ସୂର୍ଯ୍ୟାଲୋକରେ ଦେଖିଲୁ, ପାଣିଗୁଡ଼ା ଯେପରି ଲାଲ ହୋଇଯାଇଛି, କ'ଣ ଗୁଡ଼ାଏ ଭାସୁଚି ପାଣି ଉପରେ। ଆମେ ବାଉଁଶ ସାହାଯ୍ୟରେ ସେଗୁଡ଼ାକ ଉଠାଇ ଦେଖିଲୁ, ଆମେ ତଳକୁ ପଠାଇଥିବା ବୁଡ଼ାଳିମାନଙ୍କର ପୋଷାକପତ୍ର ଓ ଅକ୍‌ସିଜେନ ମୁଖା।

ଆମ ଆଶା ଆଶଙ୍କାରେ ପରିଣତ ହେଲା । ଆହୁରି ଦୁଇଦିନ ସେଠାରେ ଅପେକ୍ଷା କରିଲା ପରେ ସେଇ ବୁଡ଼ାଳି ଦୁଇଜଣଙ୍କର ମୃତଦେହ ଉଦ୍ଧାର କଲୁ। ଯେଉଁ କର୍ମୀମାନଙ୍କୁ ଆମେ କାର୍ଯ୍ୟରେ ନିଯୁକ୍ତ କରିଥିଲୁ, ସେମାନେ ଭୟରେ ଧୀରେଧୀରେ ଆମକୁ ଛାଡ଼ି ପଳାଇଲେ। ଏହା ଏକ ଅଲୌକିକ ଘଟଣା ବୋଲି ସେମାନେ ବର୍ଣ୍ଣନା କଲେ ଏବଂ ଆମେ ମଧ୍ୟ ଏ କାର୍ଯ୍ୟରେ ଆଉ ଅଧିକ ଅଗ୍ରସର ନ ହେବା ପାଇଁ ଆମକୁ ଉପଦେଶ ଦେଇ ସେମାନେ ଚାଲିଗଲେ। ଆମେ ରହିଗଲୁ ଦୁଇଜଣ, ଜୟନ୍ତ ଆଉ ମୁଁ।

ଆମର ମୁକ୍ତିର ଆଶା ମ୍ରିଳେଇଗଲା। କାର୍ଯ୍ୟ କରିବାର ଉତ୍ସାହ ଶିଥିଳ ହୋଇପଡ଼ିଲା। ଦୁଶ୍ଚିନ୍ତା, ଦୁର୍ଭାବନାରେ ଆମ ଦିନ କଟିବାକୁ ଲାଗିଲା। ଜୟନ୍ତ କହିଲା, ନିଜେ ସେ ବାମ୍ଫ ଭିତରକୁ ଓହ୍ଲାଇ ପ୍ରକୃତରେ ଘଟଣା କ'ଣ ଅନୁସନ୍ଧାନ କରିବ।

ମୁଁ ତାକୁ ବାଧାଦେଲି। କହିଲି: ମୁକ୍ତି ଆମକୁ ନ ମିଳୁ ପଛେ ଜୀବନଟା ଥାଉ।

ଜୟନ୍ତ କହିଲା: ଅଙ୍କଲଙ୍କ ପାଖରେ ଯାଇ ଆଉ ମୁହଁ ଦେଖାଇ ହେବନାହିଁ ଯେ!

ମୁଁ ସାନ୍ତ୍ୱନା ଦେଲି। କହିଲି: ଚେଷ୍ଟା କରିବା। ବାମ୍ଫି ଭିତରକୁ ପଶିବା ପାଇଁ ବୈଜ୍ଞାନିକ ପଦ୍ଧତିରେ କୌଣସି ଉପାୟ ଥାଇପାରେ କି ନାହିଁ ଦେଖିବା। ନ ହେଲେ ଶେଷରେ ଯାଇ ଅଙ୍କଲଙ୍କ ପାଖରେ ଶରଣ ପଶିବା। ତା'ଛଡ଼ା ଆଉ ଉପାୟ କ'ଣ?

ଆହୁରି ଆଠ ଦଶ ଦିନ ବିତିଗଲା। ଆମେ କୌଣସି ଉପାୟ ଉଦ୍ଭାବନ କରିପାରିଲୁନାହିଁ। ଶେଷରେ ଅଙ୍କଲଙ୍କ ପାଖରେ ଯାଇ ନତି ସ୍ୱୀକାର କରିବାକୁ ପଡ଼ିଲା।

କିନ୍ତୁ ଅଙ୍କଲ ଦୈତ୍ୟାୟନ ହୋ ହୋ ହୋଇ ହସି ଉଠି କହିଲେ : ଜୟନ୍ତ, ମୁଁ ଶିଶୁ ନୁହେଁ। ମୋ ଆଖିରେ ଧୂଳି ଦେଇ କାମିନୀ ଆଉ କାଞ୍ଚନ ଦୁଇଟିଯାକ ଧରି ତୁମେ ପଳାଇ ଯାଇପାରିବ ନାହିଁ। କାମିନୀରେ ମୋର ପ୍ରୟୋଜନ ନାହିଁ। କାଞ୍ଚନତକ ମୋ ପାଖରେ ସମର୍ପି ଦେଇ, ତୁମେ କାମିନୀକୁ ଧରି ଚାଲିଯାଅ। ମୁଁ ତ ତୁମକୁ ସେଇ ସୁଯୋଗ ଦେଇଥିଲି। ତମେ ହୁଏତ ଭାବୁଥିବ ମୁଁ କିଛି ଜାଣି ନାହିଁ। କିନ୍ତୁ ଜୟନ୍ତ, ମୁଁ ଏହା ମଧ୍ୟ ଜାଣେ ଯେ ତମର ସନ୍ତାନ ଆଜି ରଜନୀଗନ୍ଧାର ଗର୍ଭରେ।

ମୁଁ ଚମକି ଉଠିଲି, ସତେ ତ ! କିନ୍ତୁ ଅଙ୍କଲ ଏହା ଜାଣିଲେ କିପରି ?

ଜୟନ୍ତ ବିନୀତ ସ୍ୱରରେ କହିଲା: ଆପଣ ବିଶ୍ୱାସ କରନ୍ତୁ ବସ୍ ମୁଁ ବ୍ୟର୍ଥ ହୋଇଛି। ସେଠାରୁ ରତ୍ନଭଣ୍ଡାର ଆବିଷ୍କାର କରିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ।

ଅଙ୍କଲ ଚିତ୍କାର କରି ଉଠିଲେ: ମିଥ୍ୟାବାଦୀ, କୁକ୍କୁର, ଆଜି ତୋର ନିସ୍ତାର ନାହିଁ।

ଅଙ୍କଲ ବୋଧହୁଏ ସଙ୍ଗେ ସଙ୍ଗେ ରିଭଲଭରର ଟ୍ରିଗାର ଟିପିଲେ ଏବଂ ଦୁଆର ଏପାଖରୁ ମୁଁ ଜୟନ୍ତର ଆର୍ତ୍ତଚିତ୍କାର ଶୁଣିଲି। ଆଉ ମୁହୂର୍ତ୍ତେ ନୁହେଁ, ମୁଁ ଅଣନିଃଶ୍ୱାସୀ ହୋଇ ଛୁଟି ବାହାରି ପଳାଇଆସିଲି ସେଠାରୁ। ରାସ୍ତାରେ ଟ୍ୟାକ୍ସିରେ ଉଠି ସିଧା ଆସି ପହଞ୍ଚିଲି ଜୟନ୍ତ ଘରେ। ଜୟନ୍ତ ମା'ଙ୍କର ଗୋଡ଼ ତଳେ ମୁଣ୍ଡ ମାଡ଼ି କହିଲି ସବୁ ଘଟଣା। ଜୟନ୍ତ ଆଉ ନାହିଁ, କିନ୍ତୁ ଜୟନ୍ତର ପ୍ରତିନିଧି ମୋ ଗର୍ଭରେ।

ଜୟନ୍ତର ମା' ଖୁବ୍ ଧୈର୍ଯ୍ୟବତୀ ମହିଳା। ସେ କାନ୍ଦିଲେ ନାହିଁ। ମୁହଁ ତାଙ୍କର କଠୋର ହୋଇଉଠିଲା। ଯେପରି ପ୍ରତିହିଂସାର ଅଗ୍ନି ତାଙ୍କ ଆଖିରେ ଜଳି ଉଠିଲା। ସେ ମୋତେ ତଳୁ ଉଠାଇ କୋଳରେ ଜାକି ଧରିଲେ। କହିଲେ: କିଛି ଚିନ୍ତା କରନାହିଁ ମା'। କିନ୍ତୁ ଏହି ମୁହୂର୍ତ୍ତରେ ଆମକୁ ଏ ସହର ଛାଡ଼ି ଚାଲିଯିବାକୁ ହେବ। ନ ହେଲେ ଜୟନ୍ତର ପ୍ରତିନିଧିକୁ ମୁଁ ବଞ୍ଚାଇ ପାରିବି ନାହିଁ।

କଥା ଯାହା, କାମ ସେଇଆ। ସଙ୍ଗେସଙ୍ଗେ ସେ ପ୍ରସ୍ତୁତ ହୋଇପଡ଼ିଲେ। ସାମାନ୍ୟ ସଞ୍ଚିତ ଅର୍ଥ ଯାହା ତାଙ୍କ ପାଖରେ ଥିଲା, ସେ ସେତକ ଧରି ମୋତେ ଗୋଟିଏ ବନ୍ଦ ଘୋଡ଼ାଗାଡ଼ିରେ ବସାଇ ଘେନି ଆସିଲେ। ତା'ପରେ କଲିକତା।

ସେଇଦିନୁ ଆମେ କଲିକତାରେ ଅଛୁ। ଗୌତମ ସେଇ ଜୟନ୍ତର ସନ୍ତାନ ଏବଂ ଜୟନ୍ତର ମା' ଆଜି ମୋର ମା'। ଆମେ ଭଦ୍ର ଭାବରେ ବଞ୍ଚିବା ପାଇଁ ଅନେକ ବର୍ଷ ସାଧନା କରିଥିଲୁ। ଜୟନ୍ତର ମା' ଦାସୀବୃତ୍ତି ପର୍ଯ୍ୟନ୍ତ କରିଥିଲେ। କିନ୍ତୁ ପାରିଲୁ ନାହିଁ। ଅବଶ୍ୟ ଗୌତମ ଏସବୁ କିଛି ଜାଣିନାହିଁ। ଗୌତମ ଜାଣେ ତା ପିତା ଜୟନ୍ତ

ଉଡ଼ାଜାହାଜ ଦୁର୍ଘଟଣାରେ ମୃତ୍ୟୁବରଣ କରିଛି । ମୁଁ ଗୋଟାଏ ମିଶନାରୀ ପ୍ରତିଷ୍ଠାନରେ ଚାକିରି କରୁଛି ।

ମୋର ସେଇ ଗୌତମ ଆଜି ନାହିଁ । ହାତଛଡ଼ା ହୋଇଛି । ଆପଣ କୁହନ୍ତୁ, ମୋର ଏତେ ସାଧ୍ୟ ସାଧନାର ଫଳ, ନିଜକୁ ବିକ୍ରୟ କରି ଯାହାର ଭବିଷ୍ୟତ ମୁଁ ଗଠନ କରିବା ପାଇଁ ଦୃଢ଼ସଂକଳ୍ପ, ସେ ଯଦି...

ରଜନୀଗନ୍ଧା ଆଉ କହିପାରିଲା ନାହିଁ । ସେ ସତ୍ୟବ୍ରତଙ୍କର ଗୋଡ଼ ଧରି ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲା ।

ରଜନୀଗନ୍ଧାକୁ ସାନ୍ତ୍ୱନା ଦେବାକୁ ତାଙ୍କର ଭାଷା ନ ଥିଲା । ତଥାପି ସେ ତାକୁ ତଳୁ ଉଠାଇଲେ । ସୋଫାରେ ବସାଇଲେ । କହିଲେ: ତୁମେ ତୁନି ହୁଅ ରଜନୀଗନ୍ଧା । ଗୌତମ ତମ ଜୀବନର ଅମୂଲ୍ୟ ସମ୍ପଦ । ତାକୁ ମୁଁ ଉଦ୍ଧାର କରିବାକୁ ଚେଷ୍ଟା କରିବି । ସେଥିପାଇଁ କିଛି ପ୍ରସ୍ତୁତି ପର୍ବ ଆବଶ୍ୟକ । ଆଶା କରୁଛି, ଗୌତମକୁ ମୁଁ ତମ କୋଳକୁ ଫେରାଇ ଆଣିପାରିବି । ତମେ ଟିକିଏ ଧୈର୍ଯ୍ୟ ଧର ରଜନୀଗନ୍ଧା, ସାହସ ବାନ୍ଧି ମୋ ପାଖରେ ଠିଆ ହୁଅ । ଆଉ ସବୁ ଦାୟିତ୍ୱ ମୋର ।

ରଜନୀଗନ୍ଧାର ଆଖିର ଲୁହ ବନ୍ଦ କରିବା ପାଇଁ ତାଙ୍କୁ ଅନେକ ସମୟ ଲାଗିଥିଲା । ତା'ପରେ ଧୀରେ ଧୀରେ ସେ ପଚାରିଲେ ! ଆଚ୍ଛା ରଜନୀଗନ୍ଧା, ଏ ଘଟଣା ତ ତେର ଚଉଦବର୍ଷ ଆଗର । ତୁମେ ତ ଜୟନ୍ତର ମା'ଙ୍କୁ ସଙ୍ଗରେ ଧରି କଲିକତା ଚାଲି ଆସିଲା । ତା'ପରେ ଅଙ୍କଲ ଦୈତ୍ୟାୟନଙ୍କ ସମ୍ବନ୍ଧରେ କିଛି ଖବର ପାଇ ନାହିଁ ?

: ନା, ଆମେ ବର୍ଷେ ଗୋଟିଏ ଏକପ୍ରକାର ଅଜ୍ଞାତବାସ କରି ରହିଥିଲୁ । ଗୌତମର ଜନ୍ମ ପରେ ମୁଁ ଜାଣି ସୂର୍ଯ୍ୟ ଆଲୋକ ଦେଖିଲି । ମା' ମୋତେ ଚବିଶ ଘଣ୍ଟା ଜଗିକା ହୋଇ ରହିଥିଲେ । ତାଙ୍କ ପାଖରେ ଯାହା ଟଙ୍କାପଇସା ଥିଲା, ଗୌତମ ଜନ୍ମ ହେବାର କିଛିଦିନ ପରେ ସବୁ ନିଃଶେଷ ହୋଇଗଲା । ଆମେ ଅସହାୟ ହୋଇପଡ଼ିଲୁ । ମୋର ଇଚ୍ଛା ହେଉଥିଲା ମୁଁ ବାହାରକୁ ବାହାରେ ଏବଂ କୌଣସି ହୋଟେଲ ଫୋଟେଲରେ ଗୀତ ଗାଇ ବା ନାଚି କିଛି ପଇସା ଉପାୟ କରେ । କିନ୍ତୁ ମା' ମୋତେ ବାଧା ଦେଉଥିଲେ । ସେ କେବଳ ଭୟ କରୁଥିଲେ ଅଙ୍କଲ ଦୈତ୍ୟାୟନକୁ । ତା'ର ଚରମାନେ ସର୍ବତ୍ର ଥାଆନ୍ତି । ବିଶେଷ କରି ବଡ଼ବଡ଼ ହୋଟେଲମାନଙ୍କରେ ସେମାନଙ୍କର ଆଡ୍ଡା ।

ଦିନେ ଖବରକାଗଜରେ ଅଙ୍କଲ ଦୈତ୍ୟାୟନଙ୍କ ସମ୍ବାଦ ବାହାରିଲା । ପୋଲିସ୍ ତାଙ୍କୁ ଧରିଛି ଓ ତା'ର ଦଳ ଧରା ହୋଇଛନ୍ତି । ଆମେ ଟିକିଏ ଶାନ୍ତିରେ ନିଶ୍ୱାସ ମାରିଲୁ । କିଛିଦିନ ପରେ ଖବରକାଗଜରେ ପୁଣି ବାହାରିଲା ଅଙ୍କଲ ଦୈତ୍ୟାୟନଙ୍କୁ ଜେଲ୍ ହୋଇଛି । ଆମେ ନିଶ୍ଚିତ ହେଲୁ ।

ଏଥର ମୁଁ ଚାକିରି ଅନ୍ୱେଷଣରେ ପଦାକୁ ବାହାରିଲି। କାମ ବି ପାଇଲି ଏକ ସମ୍ଭ୍ରାନ୍ତ ହୋଟେଲରେ। କିନ୍ତୁ ମୋ ରୂପ ମୋର କାଳ ହେଲା। ହୋଟେଲର ମ୍ୟାନେଜରଙ୍କର ନଜରରେ ମୁଁ ପଡ଼ିଲି। ନିଜକୁ ବଞ୍ଚାଇବା ପାଇଁ ମୋତେ ସେଠାରୁ ବିଦାୟ ହୋଇ ଆସିବାକୁ ହେଲା।

ତା'ପରେ କିପରି ମୁଁ ଏ ପଥକୁ ଓହ୍ଲାଇ ଆସିଲି ସେ କଥା ଆପଣଙ୍କର ନ ଶୁଣିବା ଭଲ। ତେବେ ଏତିକି ମୋ ମନରେ ଦୃଢ଼ ପ୍ରତିଜ୍ଞା ଥିଲା ଯେ ଗୌତମକୁ ମୁଁ ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବି। କିନ୍ତୁ ସେଇ ଗୌତମ ଆଜି...

ରଜନୀଗନ୍ଧାର କଥା ଅସମାପ୍ତ ରହିଗଲା। ଆଖି ତା'ର ପୁଣି ଓଦା ହୋଇଆସିଲା।

ସତ୍ୟବ୍ରତ କହିଲେ: ତା'ପରେ ତମେ ଅଙ୍କଲ ଦ୍ୱୈତ୍ୟାୟନଙ୍କର କିଛି ଖବର ପାଇନାହଁ ?

: ନା।

: ତମ ଜୀବନ କାଳ ଭିତରେ ତା' ଦଳର କୌଣସି ଲୋକମାନଙ୍କ ସହିତ ତମର ଭେଟ ହୋଇନାହିଁ ?

: ନା।

: ହୁଁ, ଆଚ୍ଛା ରଜନୀଗନ୍ଧା, ସେଦିନ ଅଙ୍କଲ ଦ୍ୱୈତ୍ୟାୟନ ଜୟନ୍ତକୁ ଯେଉଁ ବ୍ଲୁ ପ୍ରିଣ୍ଟ୍‌ଟି ଦେଇଥିଲେ, ସେଇ ବ୍ଲୁ ପ୍ରିଣ୍ଟକୁ ଜୟନ୍ତ କ'ଣ ତାକୁ ଫେରାଇ ଦେଇଥିଲା ?

ରଜନୀଗନ୍ଧା ହଠାତ୍ ସେଇ ବ୍ଲୁ ପ୍ରିଣ୍ଟ୍‌ଟିର ନାଁ ଶୁଣି କିପରି ଗମ୍ଭୀର ହୋଇଗଲା। ତା'ପରେ ଧୀରେ ଧୀରେ କହିଲା: ନା, ଜୟନ୍ତ ସେଇଟି ଫେରାଇନଥିଲା। ଜୟନ୍ତ ପାଖରେ ସେଇ ବ୍ଲୁ ପ୍ରିଣ୍ଟ୍‌ଟି ନ ଥିଲା। ତେଣୁ ଫେରେଇବା କଥା ତା' ପକ୍ଷରେ ସମ୍ଭବ ହୋଇନାହିଁ।

: ତା'ହେଲେ ? ବ୍ଲୁପ୍ରିଣ୍ଟ୍‌ଟି କୁଆଡ଼େ ଗଲା ?

: ମୋ ପାଖରେ ଥିଲା। ରଜନୀଗନ୍ଧା ଶାନ୍ତ ସ୍ୱରରେ କହିଲା।

: ଆଜି ବି ଅଛି ?

: ହଁ।

କିଛିକ୍ଷଣର ନୀରବତା ପରେ ସତ୍ୟବ୍ରତ ଉଠି ଠିଆ ହେଲେ। କହିଲେ: ଆଜି ତା'ହେଲେ ମୁଁ ଆସୁଛି ରଜନୀଗନ୍ଧା।

: ଆପଣ ଚାଲିଯିବେ ? ଆଉ ମୋ ଗୌତମ ?

: କହିଲି ତ, ତା' ଚିନ୍ତା ମୋର।

: ପୁଣି ଯଦି କିଛି ଫୋନ୍ ଆସେ ?

: ଫୋନ୍ ଆସେ ନୁହେଁ। ଆସିବ। କାଲି ସନ୍ଧ୍ୟା ଛ'ଟାରେ ପୁଣି ତମର ଟେଲିଫୋନ୍‌ଟା ବାଜି ଉଠିବ ଏବଂ ତମେ ଗୌତମର କଣ୍ଠସ୍ୱର ଶୁଣିବାକୁ ପାଇବ। ଏଥର ବି ଗୌତମ କହିବ; ତୁମକୁ ଯାଇ ସେଠାରୁ ଉଦ୍ଧାର କରି ଆଣିବାକୁ।

: ତା'ହେଲେ ମୁଁ କ'ଣ କରିବି ?

: ସେ ଚିନ୍ତା ମୋର। ତମେ ଆପାତତଃ ନିଶ୍ଚିନ୍ତ ରୁହ। ମୁଁ ପୁଣି କାଲି ଫୋନ୍ ଆସିବା ପୂର୍ବରୁ ତମ ଏଠାକୁ ଆସିବି ଏବଂ କ'ଣ କରିବାକୁ ହେବ କହିବି।

: ଯଦି ଆପଣଙ୍କ ଆସିବା ପୂର୍ବରୁ ଗୌତମ ଫୋନ୍ କରେ ?

: ତାକୁ କହିବ, ସେମାନଙ୍କୁ ପଚାରେ ମୁଁ କେଉଁଠିକି ଗଲେ ତୋର ଦେଖା ପାଇବି। ସେ ଯଦି କୌଣସି ନିର୍ଦ୍ଦିଷ୍ଟ ଠିକଣା କୁହେ, ତେବେ ତମେ ଟିପି ରଖିଥିବ। ନ ହେଲେ ସଙ୍ଗେ ସଙ୍ଗେ ଫୋନ୍ କରି ମୋତେ ଜଣାଇବ, ତା'ପରେ ଯାହା କରିବାର କଥା ମୁଁ କରିବି।

ସତ୍ୟବ୍ରତ ଘରୁ ବାହାରି ଆସୁଥିଲେ। ରଜନୀଗନ୍ଧା ତାଙ୍କ ପଥ ଓଗାଳିଲା। ସେ ହୁଏତ ତାଙ୍କ ସାନ୍ତ୍ୱନାରେ ଆଶ୍ୱସ୍ତ ହୋଇପାରୁନଥିଲା। ମୁହଁ ଖୋଲି ବି କିଛି କହିପାରୁନଥିଲା। ଖାଲି ଆଖିରୁ ତା'ର ଲୁହ ଝରି ପଡୁଥିଲା।

ପୁଣି ଥରେ ସେ କହିଲେ: ମୋତେ ବିଶ୍ୱାସ କର ରଜନୀଗନ୍ଧା, ଗୌତମକୁ ମୁଁ ନିଶ୍ଚୟ ଉଦ୍ଧାର କରି ଆଣି ତମକୁ ଦେବି। ତମେ ଖାଲି ଟିକିଏ ସାବଧାନରେ ଚଳୁଥାଅ।

ସତ୍ୟବ୍ରତ ସେଦିନ ଚାଲିଆସିଲେ।

ରଜନୀଗନ୍ଧା ଜୀବନର କାରୁଣ୍ୟ ତାଙ୍କୁ ଅଭିଭୂତ କରି ପକାଇଥିଲା। ଏପରି ଏକ ଜଟିଳ କେସ୍‌ର ସହଜ ସମାଧାନ୍ର ପଥ ତାଙ୍କ ଆଖି ଆଗରେ ଦିଶୁନଥିଲା। କିଏ ସେମାନେ ? କ'ଣ ସେମାନଙ୍କର ସ୍ୱାର୍ଥ ? ରଜନୀଗନ୍ଧା ପରି ଏକ ନିଃସହାୟା ନାରୀର ଏକମାତ୍ର ସନ୍ତାନକୁ ନେଇ ବନ୍ଦୀ କରି ରଖିବା। ତଥାପି ଗୋଟାଏ କିଛି ପଥ ଖୋଜି ବାହାର କରିବାକୁ ହେବ। ଘଟଣାର ଗତି ସଙ୍ଗେ ସଙ୍ଗେ ପଥ ଆପେ ଆପେ ଫୁଟି ବାହାରିବ।

x x x

ଆରଦିନ ପୁଣି ସତ୍ୟବ୍ରତ ଛୁଟିଲେ ରଜନୀଗନ୍ଧା ଘରକୁ। ଘଡ଼ିରେ ସେତେବେଳକୁ ଛଅଟା ବାଜିବାକୁ ପନ୍ଦର ମିନିଟ୍ ବାକି ଥିଲା। ରଜନୀଗନ୍ଧା ଅସ୍ଥିର ହୋଇ ପଦଚାରଣା କରୁଥିଲା। ସତ୍ୟବ୍ରତଙ୍କୁ ଦେଖିବାମାତ୍ରକେ ସେ ଯେପରି ପ୍ରାଣ ଫେରି ପାଇଲା। ଏତ ଦୀର୍ଘଶ୍ୱାସ ତ୍ୟାଗ କରି ଖାଲି ଏତିକି କହିଲା: ଆପଣ ସତରେ ଆସିଲେ ?

: ତମେ କ'ଣ ଭାବିଥିଲ ମୁଁ ତମକୁ ଠକାଇ ଚାଲିଗଲି ?

ରଜନୀଗନ୍ଧା ନୀରବରେ ଠିଆ ହୋଇଥିଲା।

ସତ୍ୟବ୍ରତ ପଚାରିଲେ: ଆଉ ଖବର କ'ଣ? ତେଣୁ ଟେଲିଫୋନ୍ ଇତ୍ୟାଦି କିଛି ଆସିଥିଲା?

: ନା।

: ଆଉ କେହି ଅଚିହ୍ନା ଲୋକ ତମ ସନ୍ଧାନରେ ଆସିଥିଲେ?

: ନା।

: ବେଶ୍ ଭଲ କଥା। ଛଅଟା ବାଜିବାକୁ ଆଉ ଅଳ୍ପ ସମୟ ରହିଲା। ହୁଏତ ଠିକ୍ ଛଅଟା ବେଳେ ଗୌତମର ଫୋନ୍ ଆସିବ। ଗୌତମ ସବୁଦିନ ପରି ହୁଏତ କହିବ, ''ତମେ ଆସି ମୋତେ ନେଇଯାଅ ମା'। ସେମାନେ କହୁଛନ୍ତି ତମେ ନ ଆସିଲେ ମୋତେ ଛାଡ଼ିବେ ନାହିଁ।'' ଉତ୍ତରରେ ତମେ କ'ଣ କହିବ?

: କ'ଣ କହିବି?

ରଜନୀଗନ୍ଧାର କିପରି ଅସହାୟ କଣ୍ଠସ୍ୱର।

: ତମେ କହିବ-ସେମାନଙ୍କୁ କହ ମୋ ସହିତ୍ କଥା କହିବେ। ଠିକ୍ ଠିକ୍ ଠିକଣା ନ ଦେଲେ ମୁଁ ତତେ ଯାଇ କୋଉଠୁ ଉଦ୍ଧାର କରିଆଣିବି?

: ହଉ, ସେଇଆ ମୁଁ....

ରଜନୀଗନ୍ଧାର କଥା ଶେଷ ହେଲାନାହିଁ। ଫୋନ୍‌ଟା ଝଣ ଝଣ ହୋଇ ବାଜି ଉଠିଲା। କ୍ଷିପ୍ର ହସ୍ତରେ ରଜନୀଗନ୍ଧା ରିସିଭରଟା ଉଠାଇ ନେଲା।

: ହ୍ୟାଲୋ?

: କିଏ? ଗୌତମ। କେମିତି ଅଛୁ ବାବୁ? ଆଜି ଖାଇଛୁ ତ? କ'ଣ ଖାଉଛୁ? ଭଲ ନିଦ ହେଉଛି ତ?....

: ହଁ, ମୁଁ ତ ରାଜି ଅଛି। ସେମାନଙ୍କୁ କହ ମୋ ସହିତ କଥା କହିବେ। କେଉଁଠି କେତେବେଳେ ମୁଁ ଯାଇ ତୋତେ ଘେନି ଆସିବି, ସବୁ ନ ଜାଣିଲେ ମୁଁ ତତେ ପାଇବି କୋଉଠୁ?

...............

: ନାରେ ବାବୁ, ମୁଁ ମୋଟେ ଖାଇ ପାରୁନାହିଁ, ଶୋଇପାରୁନାହିଁ, ବସି ପାରୁନାହିଁ। ତୁ କହ ତାଙ୍କୁ, ମୋ ସହିତ ଟିକିଏ କଥା କହିବାକୁ କହ।

..............

: ତା'ପରେ? ହଁ, ହଁ, ଓହୋ, ଏତେ ମଶା ସେଠି? କିଏ? ସେ ଆସୁଛନ୍ତି? ମୋ ସହିତ କଥା କହିବେ? ତା'ହେଲେ ଦିଏ ତାଙ୍କୁ।

ରଜନୀଗନ୍ଧା ଫୋନ୍‌ଟା ଧରି ଅସହାୟଙ୍କ ପରି ସତ୍ୟବ୍ରତଙ୍କ ଆଡ଼କୁ ଅନାଇ ରହିଲା। ସେ ହାତ ଠାରି କହିଲେ, ଅପର ପ୍ରାନ୍ତର ଲୋକ ସହିତ କଥା କହିବା ପାଇଁ।

କେତୋଟି ମୁହୂର୍ତ୍ତର ନୀରବତା ପରେ ରଜନୀଗନ୍ଧା ଜବାବ ଦେଲା: ହଁ ମୁଁ ରଜନୀଗନ୍ଧା କହୁଛି, ଗୌତମର ମା'। ଆପଣ, ଆପଣ ମୋତେ ଦୟା କରନ୍ତୁ, ଗୌତମକୁ ମୋର ଛାଡ଼ି ଦିଅନ୍ତୁ। ବଦଳରେ

..............

ହଠାତ୍ ରଜନୀଗନ୍ଧା ଚିତ୍କାର କରି ଉଠିଲା: କିଏ ? ଅଙ୍କଲ ଦୈତ୍ୟାୟନ୍ ? ଆପଣ, ଆପଣ ମୋର ଗୌତମକୁ ବନ୍ଦୀ କରି....

ରଜନୀଗନ୍ଧା ଆଉ କିଛି କହିପାରିଲା ନାହିଁ। ରିସିଭରଟା ତା' ହାତରୁ ଖସିପଡ଼ିଲା। ସେ ଚେତା ହରାଇ ସୋଫା ଉପରେ ଢଳି ପଡ଼ିଥିଲା।

ହଠାତ୍ ସତ୍ୟବ୍ରତ ରିସିଭରଟା ଉଠାଇ କାନରେ ଦେଲେ ।

ଅପର ପ୍ରାନ୍ତରୁ ମୃଦୁ ଅଟ୍ଟହାସ ସହିତ ଏକ ଗମ୍ଭୀର କଣ୍ଠସ୍ୱର ଶୁଣାଗଲା: ହଁ ହଁ ରଜୀନଗନ୍ଧା, ମୁଁ ସେଇ ଅଙ୍କଲ ଦୈତ୍ୟାୟନ। ଦୀର୍ଘ କେତେଦିନ ପରେ ମୁଁ ତୋତେ ଖୋଜି ଖୋଜି ପାଇଛି। ଏଥର ହାତମୁଠାରୁ ତୁ ଆଉ ଖସି ଯାଇପାରିବୁ ନାହିଁ। କ'ଣ ଶୁଣୁଛୁ ରଜନୀଗନ୍ଧା ? ସେଦିନ ପରି ଆଜି ବି ମୋର ସର୍ତ୍ତ ଗୋଟିଏ। ମୋ ନିର୍ଦ୍ଦେଶ ମାନ୍ ଆଉ ଆନନ୍ଦରେ ରହ। କ'ଣ ଶୁଣି ପାରୁନୁ ?

ହାଃ ହାଃ ହାଃ ହାଃ

ଦିନେନାଦିନେ ମୋର ନିର୍ଦ୍ଦେଶ ମାନିବାକୁ ହେବ ରଜନୀଗନ୍ଧା। ତୁ ଆସିବୁ, ନିଶ୍ଚୟ ମୋ ପାଖକୁ ଛୁଟି ଆସିବୁ।

ସେଇ ଗମ୍ଭୀର କଣ୍ଠସ୍ୱରରୁ ଏହାପରେ ଅଟ୍ଟହାସ ଶୁଣାଯାଉଥିଲା। ଧୀରେ ଧୀରେ ସତ୍ୟବ୍ରତ ରିସିଭରଟା ରଖିଦେଲେ।

ରଜନୀଗନ୍ଧା ମୁହଁରେ ଏକ ବିରାଟ ଆତଙ୍କର ଛାୟା ଦେଖି ତାଙ୍କର ମନେ ହୋଇଥିଲା ରଜନୀଗନ୍ଧା ହାର୍ଟଫେଲ କରିନାହିଁ ତ ?

ନା, ରଜନୀଗନ୍ଧା ବଞ୍ଚିଛି।

ଆଉ ଅଙ୍କଲ ଦୈତ୍ୟାୟନ ? ପୁଣି ତା'ର ଆବିର୍ଭାବ କାହିଁକି ? ରଜନୀଗନ୍ଧା ଠାରୁ ସେ କ'ଣ ଚାହେଁ ? ପୁଣି ଦଳ ଗଠନର ପ୍ରୟାସ ନା ସେଇ ବ୍ଲୁ ପ୍ରିଣ୍ଟଟି ହସ୍ତଗତ କରିବାର ଉଦ୍ଦେଶ୍ୟ ?

ସେଦିନ ସତ୍ୟବ୍ରତ ଫେରିଆସିଲେ, ବହୁ କଷ୍ଟରେ। ରଜନୀଗନ୍ଧା ତାଙ୍କ ଗୋଡ଼ ଧରି ଶୋଇ ଯାଇଥିଲା। ସେ ତାଙ୍କୁ ଛାଡ଼ିବ ନାହିଁ। ଗୋଟାଏ ନିଶ୍ଚିତ ପ୍ରତିଶ୍ରୁତି ସେ ଚାହେଁ।

ଗୌତମକୁ ତାକୁ ଫେରେଇ ଦେବାକୁ ହେବ। ସତ୍ୟବ୍ରତ ପ୍ରତିଶ୍ରୁତି ଦେଲେ ବି ରଜନୀଗନ୍ଧା କିପରି ଅବିଶ୍ୱାସ୍ୟ ଦୃଷ୍ଟିରେ ଚାହିଁଥିଲା। ତା'ମନଟା ଏପରି ଦୁର୍ବଳ ହୋଇପଡ଼ିଥିଲା ଯେ, ତା'ର ମନେ ହେଉଥିଲା ସେ ଆଶ୍ରୟହୀନ, ସେ ସର୍ବସ୍ୱାନ୍ତ।

ସତ୍ୟବ୍ରତ ରଜନୀଗନ୍ଧାକୁ ବୁଝେଇ ସୁଝେଇ ବହୁ କଷ୍ଟରେ ଘରକୁ ଫେରିଲେ। କିନ୍ତୁ ଫେରିଲେ କ'ଣ ହେବ। ସେ ଯେପରି ଏକ ମହାଦୁଶ୍ଚିନ୍ତାରେ ଆଚ୍ଛନ୍ନ ହୋଇପଡ଼ିଲେ। ରଜନୀଗନ୍ଧାର ମାତୃହୃଦୟର ବେଦନା ତାଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିଲା। ସେ ବି ଦୃଢ଼ ଚିତ୍ତରେ ବିଶ୍ୱାସ ରଖିଥିଲେ ଗୌତମକୁ ସେ ଫେରାଇ ଆଣିବେ। ରଜନୀଗନ୍ଧା ହାତରେ ଗୌତମକୁ ସମର୍ପଣ କରି ମାତୃହୃଦୟର ଆନନ୍ଦ ଉଚ୍ଛ୍ୱାସ ମୁଗ୍ଧ ହୋଇ ନିରୀକ୍ଷଣ କରିବେ।

ଆଜିପର୍ଯ୍ୟନ୍ତ ବହୁ ଚରିତ୍ର ତାଙ୍କ ଯାତ୍ରାପଥରେ ଆବିର୍ଭାବ ହୋଇଛନ୍ତି। କିନ୍ତୁ ରଜନୀଗନ୍ଧାର ଚରିତ୍ର ପରି ଏତେ ପ୍ରାଣସ୍ପର୍ଶୀ, ଏତେ ହୃଦୟଦାହୀ ଚରିତ୍ର ସହିତ କେବେ ତାଙ୍କର ଭେଟ ହୋଇନଥିଲା। ମାତୃତ୍ୱ ଯେ କେଡ଼େ ମହାନ୍ ଏବଂ ସନ୍ତାନ ପାଇଁ ମା' ଯେ କେତେ ତ୍ୟାଗ କରିପାରେ, ରଜନୀଗନ୍ଧା ତାଙ୍କ ଆଖି ଆଗରେ ଏକ ଜ୍ୱଳନ୍ତ ଉଦାହରଣ।

ଗୌତମ ରଜନୀଗନ୍ଧାର ଏକମାତ୍ର ଆଧାର।

ସତ୍ୟବ୍ରତ କଥା ଦେଇଛନ୍ତି ସେ ଗୌତମକୁ ଆଣି ରଜନୀଗନ୍ଧା ହାତରେ ଅର୍ପଣ କରିବେ।

କିନ୍ତୁ କିପରି ?

ସୂତ୍ର କାହିଁ ?

ଏପରି ଭାବିଲେ ତ ଚଳିବ ନାହିଁ। ସୂତ୍ର ଖୋଜି ବାହାର କରିବାକୁ ହିଁ ହେବ।

ଅବଶ୍ୟ ଘଟଣାଟା ଚଉଦ ପନ୍ଦର ବର୍ଷ ତଳର। ସେତେବେଳେ ଅଙ୍କଲ ଦୈତ୍ୟାୟନ ଅନ୍ଧାରୀ ମୂଲୁକରେ ରାଜତ୍ୱ କରୁଥିଲା। ତା'ପରେ ହଠାତ୍ ସେ ଆତ୍ମଗୋପନ କରିଥିଲା ନାଁ ଧରାପଡ଼ି ଜେଲ୍ ବରଣ କରିଥିଲା, ସେ ଖବର ଖୋଜି ବାହାର କରିବାକୁ ହେବ। ଆହୁରି ଜାଣିବାକୁ ହେବ ସେତେବେଳର ଅଙ୍କଲ ଦୈତ୍ୟାୟନ ଓ ବର୍ତ୍ତମାନର ଅଙ୍କଲ ଦୈତ୍ୟାୟନର ଶକ୍ତି ସାମର୍ଥ୍ୟ କଥା। ସେତେବେଳର ସେହି ବିଶାଳ ରାଜତ୍ୱର ଅଧୀଶ୍ୱର ବର୍ତ୍ତମାନର ରାଜ୍ୟ ସିଂହାସନରେ ସମାସୀନ କି ନୁହେଁ। ତା'ଛଡ଼ା ପ୍ରଥମ କଥା ଖୋଜି ବାହାର କରିବାକୁ ହେବ କିଏ ଏହି ଅଙ୍କଲ ଦୈତ୍ୟାୟନ ? ଜନସମାଜରେ ତା'ର ପରିଚୟ କ'ଣ ?

ରଜନୀଗନ୍ଧା ହୁଏତ ସେ ପ୍ରଶ୍ନର ଉତ୍ତର ଦେଇ ପାରିବ ନାହିଁ। ଅବଶ୍ୟ ସେ କହିଥିଲା, ସେ ଯେତେବେଳେ ଅଙ୍କଲ ଦୈତ୍ୟାୟନ ଜେଲ୍ ବରଣ କରିବା ସମ୍ବାଦ ଜାଣିଲା ସେତେବେଳେ ସେ ଟିକିଏ ନିଶ୍ଚିତ ହେଲା। କିନ୍ତୁ ସେହି ସମ୍ବାଦର ସୂତ୍ରଟା କ'ଣ ?

ଅବଶ୍ୟ ସମାଜରେ ଅଙ୍କଲ ଦୈତ୍ୟାୟନର ଅନ୍ୟ ଗୋଟିଏ ପରିଚୟ ଥିବ। ଯେଉଁ ପରିଚୟ କଥା ରଜନୀଗନ୍ଧା ଜାଣିବା ସମ୍ଭବ ନୁହେଁ। ଅନ୍ଧାରୀ ମୁଲକର ଅଙ୍କଲ ଦୈତ୍ୟାୟନ ଆଲୋକ ରାଜ୍ୟରେ ନିଶ୍ଚୟ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ହୋଇଥିବ। ରାଜନୈତିକ ମହଲରେ ହୁଏତ ତା'ର ଖୁବ୍ ଖାତିର ଥିବ। ଅଥବା ସେ ହୁଏତ ଜଣେ ମହାନ୍ ସମାଜସେବୀ, ଦାନୀ କର୍ଣ୍ଣ ହୋଇପାରିଥାଆନ୍ତି, ଅଥବା ଜଣେ କେହି ସିଦ୍ଧ ପୁରୁଷ...

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିବାରୁ ସତ୍ୟବ୍ରତଙ୍କ ଚିନ୍ତାସ୍ରୋତ ବାଧାପ୍ରାପ୍ତ ହେଲା। ସେ ରିସିଭର ଉଠାଇଲେ।

: ହ୍ୟାଲୋ ! ସତ୍ୟବ୍ରତ ମହାପାତ୍ର କହୁଛି।

ଅପର ପ୍ରାନ୍ତରୁ କାହାରି କଣ୍ଠସ୍ୱର ଶୁଣାଗଲା ନାହିଁ।

ସତ୍ୟବ୍ରତ ଆହୁରି ଥରେ ଦୁଇଥର ହାଲୋ, ହାଲୋ କହି ବିରକ୍ତ ହୋଇ ରିସିଭରଟା ରଖିଦେବାକୁ ଯାଉଥିଲେ। କିନ୍ତୁ ପର ମୁହୂର୍ତ୍ତରେ ଗୋଟିଏ ନାରୀକଣ୍ଠ ଶୁଣିଲେ।

: ମୁଁ ରଜନୀଗନ୍ଧା କହୁଛି।

: କ'ଣ କହୁଛ ?

: କିଛିସମୟ ପୂର୍ବରୁ ମୁଁ ଗୋଟାଏ ଫୋନ୍ ପାଇଥିଲି। କିଏ କରିଥିଲା, ତା' ନାଁ କହିଲା ନାହିଁ। କିନ୍ତୁ ସେ ଯେ ଅଙ୍କଲ ଦୈତ୍ୟାୟନର ଲୋକ ସେକଥା ମୁଁ ବୁଝିପାରିଥିଲି।

: ସେ କ'ଣ କହିଲା ?

: କହିଲା ଗୌତମ ଭଲ ଅଛି। ଗୌତମର କିଛି ଅନିଷ୍ଟ ହେବାକୁ ମୁଁ ଦେବିନାହିଁ। ତୁ ନିଶ୍ଚିନ୍ତ ରହ।

: ଆଉ କ'ଣ କହିଲା ?

: ନା, ଆଉ ସେପରି କିଛି କହିଲା ନାହିଁ।

: ତମେ ତାକୁ ଗୌତମର ଠିକଣା ପଚାରିଲ ନାହିଁ ?

: ପଚାରିଥିଲି। ସେ କହିଲା ନାହିଁ। ଶେଷରେ ମୋତେ ଆଉ ଥରେ କହିଲା, ଗୌତମ ପାଇଁ ଚିନ୍ତା କରନାହିଁ। ମୁଁ ତା'ର ଅନିଷ୍ଟ କରିବାକୁ ଦେବିନାହିଁ। ତା'ପରେ ସେ ରିସିଭରଟା ରଖିଦେଲା।

: ହୁଁ।

ସତ୍ୟବ୍ରତ କେତୋଟି ମୁହୂର୍ତ୍ତରେ ନୀରବ ରହି କହିଲେ: ତା'ହେଲେ ତମେ କ'ଣ ଭାବୁଛ ? ଯିଏ ତମ ପାଖକୁ ଫୋନ୍ କରିଥିଲା ସେ ଲୋକଟି କିଏ ହୋଇପାରେ ?

: ମୁଁ: ସେ ଲୋକଟି ସମ୍ବନ୍ଧରେ କିଛି ଭାବି ପାରୁନାହିଁ। ଅଙ୍କଲ ଦୈତ୍ୟାୟନଙ୍କ ଲୋକ ହୋଇ ମୋତେ ଯେ ଅଭୟ ଦେବ, ଏହା ମୁଁ ମୋଟେ ଚିନ୍ତା କରିପାରୁନାହିଁ। ତା'ଛଡ଼ା ଯେଉଁ ଲୋକମାନେ ମୋତେ ଚିହ୍ନିଥିଲେ ବା ଯେଉଁମାନଙ୍କ ସହିତ ମିଳିମିଶି ମୁଁ କାମ କରୁଥିଲି, ସେମାନେ ଯେ କିଏ କେଉଁଠି ଅଛନ୍ତି ମୋତେ ଜଣାନାହିଁ। ବାର ଚଉଦବର୍ଷ ତଳର ଘଟଣା,ଆଉ କିଛି ମନେ ନାହିଁ।

:ଯିଏ ତମକୁ ଟେଲିଫୋନ୍ କରିଥିଲା, ହୁଏତ ସେଇ ତମର ଅତୀତର ସହକର୍ମୀ ଭିତରୁ କେହି ହୋଇପାରେ

ସତ୍ୟବ୍ରତ କହିଲେ।

: ହୁଏତ ହୋଇପାରେ। କିନ୍ତୁ ମୁଁ ଏଇକ୍ଷିଣୀ କ'ଣ କରିବି ? ଗୌତମ କଥା ଆପଣ କିଛି ଭାବିଲେ ?

: ମୁଁ ଭାବୁଛି ରଜନୀଗନ୍ଧା। ତମେ ମୋଟେ ବ୍ୟସ୍ତ ହୁଅନାହିଁ। ଆଚ୍ଛା ମୋର କେତୋଟି ପ୍ରଶ୍ନର ଉତ୍ତର ଦିଅ ତ। ଅବଶ୍ୟ ଫୋନ୍‌ରେ ଏସବୁ ପଚାରିବାର ନୁହଁ, ତଥାପି ଏତେ ଶୀଘ୍ର ତମ ଫୋନରେ କାନ ଡେରିବା ବ୍ୟବସ୍ଥା ହୋଇନଥିବ। ହଁ ତମେ ମୋତେ ଯେ ସେଦିନ କହିଲ, ଅଙ୍କଲ ଦୈତ୍ୟାୟନ ଜେଲକୁ ଯିବା ସମ୍ବାଦ ପାଇ ତମେ ଟିକିଏ ଆଶ୍ୱସ୍ତ ହେଲ। ସେଇ ସମ୍ବାଦଟା ପାଇଲ କେଉଁଠୁ ?

ମୁହୂର୍ତ୍ତକର ନୀରବତା ପରେ ରଜନୀଗନ୍ଧା କହିଲା: ସମ୍ବାଦଟା କେଉଁ ସୂତ୍ରରୁ ପାଇଲି ଆଜି ଠିକ୍ ମନେ ପଡୁନାହିଁ। ତେବେ ସମ୍ବାଦପତ୍ରରେ ବୋଧହୁଏ ପ୍ରକାଶ ପାଇଥିଲା।

: ସେଥିରେ କ'ଣ ଅଙ୍କଲ ଦୈତ୍ୟାୟନଙ୍କ ନାମ ପ୍ରକାଶିତ ହୋଇଥିଲା। ସତ୍ୟବ୍ରତ ପଚାରିଲେ।

: ନା, ତାଙ୍କ ଦଳ ନାଁ ବାହାରିଥିଲା ଏବଂ ଦଳପତିଙ୍କୁ ଜେଲ୍ ହେବା ସମ୍ବାଦ

ବାହାରିଥିଲା। ମୋର ଠିକ୍ ମନେପଡୁନାହିଁ। ପ୍ରଥମେ ମା' ମୋତେ ଏ ସମ୍ବାଦଟା ଦେଇଥିଲେ। ସମ୍ବାଦ ସୂତ୍ରଟା ମୁଁ ପରେ ଆପଣଙ୍କୁ କହିବି।

: ଆଚ୍ଛା, ତମେ ଯେ ଏଇ ଚଉଦଟିବର୍ଷ ଦଳଠାରୁ ବିଚ୍ଛିନ୍ନ ହୋଇ ରହିଥିଲ, ଏଇ ଚଉଦବର୍ଷ ଭିତରେ, ଦଳର କୌଣସି ସହକର୍ମୀଙ୍କ ସହିତ ତମର କେଉଁଠି ହେଲେ ସାକ୍ଷାତ ହୋଇନାହିଁ ?

: ନା, ତେବେ ମୋତେ କିଏ କେଉଁଠି ଦେଖିଥିବ କହିପାରୁନାହିଁ। ମୁଁ କିନ୍ତୁ କାହାରିକୁ ଭେଟିନାହିଁ।

: ହୁଁ, ବୁଝିଲି। ତା'ହେଲେ ତମକୁ ଆଜି ଯିଏ ଫୋନ୍ କରି ଗୌତମର ନିରାପତ୍ତା ସମ୍ବନ୍ଧରେ ସାନ୍ତ୍ୱନା ଦେଲା, ତମେ ତାକୁ ଚିହ୍ନି ପାରିଲ ନାହିଁ ?

: ନା।

: ଆଉ ଗୋଟାଏ ପ୍ରଶ୍ନ। ଅଙ୍କଲ ଦୈତ୍ୟାୟନ ତମ ଫୋନ୍ ନମ୍ବର ଜାଣିଲା କିପ୍ରି ? ତମେ ଯେଉଁ ଫୋନ୍‌ରୁ କଥା କହୁଛ, ସେ ଫୋନ୍‌ଟା କ'ଣ ତମ ନାଁରେ ଅଛି ?

: ନା ନା, ଫୋନ୍‌ଟା ମୋ ନାଁରେ ନାହିଁ। ଫୋନ୍‌ଟା ଅଛି ସଜନୀ ବାବୁଙ୍କ ନାଁରେ। ସେ ମୋର ଜଣେ ପୃଷ୍ଠପୋଷକ।

: ହୁଁ ବୁଝିଲି। ସଜନୀ ବାବୁ। ତାଙ୍କ ପୂରା ନାଁଟା କ'ଣ ?

: ସଜନୀକାନ୍ତ ଗୁପ୍ତ। ସେ ଜଣେ ବଡ଼ ବ୍ୟବସାୟୀ।

: ଆଚ୍ଛା, ମୁଁ ଆଜି ରହୁଛି। ଆଉ କେତୋଟି ବିଷୟରେ ତମ ସହିତ ଟିକିଏ ଆଲୋଚନା ଥିଲା। ଫୋନ୍ ମାଧ୍ୟମରେ ସେ କଥା ହେବାକୁ ମୁଁ ଚାହୁଁ ନାହିଁ। କାଲି ସନ୍ଧ୍ୟା ଛ'ଟାଯାଏ ତମେ ଅପେକ୍ଷା କର। ଦେଖ ଗୌତମ ତମ ସହିତ ଫୋନ୍‌ରେ କଥା କହୁଛି କି ନାହିଁ। ଗୌତମର ହିତାକାଂକ୍ଷୀ ସେହି ଭଦ୍ରଲୋକ ପୁଣି ତୁମକୁ ଖୋଜୁଛନ୍ତି କି ନାହିଁ। ତା'ପରେ...

: ନା ନା, ସେ ଭଦ୍ରଲୋକ ନୁହଁନ୍ତି। ଗୌତମ ସମ୍ବନ୍ଧରେ ଯିଏ ମୋତେ ଫୋନ୍ କରିଥିଲେ, ସେ ଜଣେ ମହିଳା।

: ମହିଳା ?

ସତ୍ୟବ୍ରତଙ୍କ ସ୍ୱରଟା କିପରି ଅସ୍ୱାଭାବିକ ଶୁଣାଗଲା।

: ହଁ ମହିଳା, ରଜନୀଗନ୍ଧା କହିଲା।

: ହଉ, କାଲି ତମେ ସନ୍ଧ୍ୟା ସାତଟା ବେଳକୁ ଆସ ମୁଁ ରହୁଛି।

ସତ୍ୟବ୍ରତ ଅପର ପ୍ରାନ୍ତରୁ କାନ୍ଦଣା ସ୍ୱର ଶୁଣିଲେ। କମ୍ପିତ କଣ୍ଠରେ ରଜନୀଗନ୍ଧା କହୁଥିବାର ଶୁଣିଲେ: ମୋ ଗୌତମର କ'ଣ ହେବ ! ତାକୁ ମୁଁ ଫେରି ପାଇବି ତ ?

ସତ୍ୟବ୍ରତ ଆଉ କିଛି ଉତ୍ତର ଦେଲେ ନାହିଁ।

ରିସିଭରଟା କ୍ରେଡେଲ ଉପରେ ରଖିଦେଲେ।

ତାଙ୍କ କାନରେ ଯେପରି ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା: ସେ ଜଣେ ମହିଳା। ଗୌତମର ନିରାପତ୍ତା ସମ୍ବନ୍ଧରେ ଯିଏ ରଜନୀ ଗନ୍ଧାକୁ ଫୋନ୍ କରି ଜଣାଇଥିଲା, ସେ ଜଣେ ମହିଳା। କାହିଁକି କେଜାଣି ସତ୍ୟବ୍ରତଙ୍କୁ ସମ୍ବାଦଟା କିପରି ଅସ୍ୱାଭାବିକ ମନେ ହେଉଥିଲା।

ଅଙ୍କଲ ଦୈତ୍ୟାୟନ ତା'ହେଲେ କ'ଣ ଚାହେଁ ? ସେ ବମ୍ବେ ସହରରୁ ଆସି କଲିକତା ସହରରେ ଯେତେବେଳେ ରଜନୀଗନ୍ଧାକୁ ଖୋଜି ବାହାର କରିଛି, ନିଶ୍ଚୟ ସେ ତା'ର ଇତିବୃତ୍ତି ଜାଣି ନେଇଛି। ସେ ଜାଣିଛି ରଜନୀଗନ୍ଧା ଗୋଟାଏ ଉଚ୍ଚ ଦରର ଗଣିକା। ତା' ଠାରୁ ଅଙ୍କଲ ଦୈତ୍ୟାୟନ କ'ଣ ଆଶା କରୁଛି? ସେ କ'ଣ ଚାହୁଁଛି ରଜନୀଗନ୍ଧା ପୁଣି ତା' ଦଳରେ ଯୋଗ ଦେଉ? ସେ କ'ଣ ଚାହୁଁଛି ରଜନୀଗନ୍ଧା ପୁଣି ଦୈତ୍ୟାୟନର ହୁକୁମ ତାମିଲ୍ କରୁ? ନାଁ ସେ ଚାହୁଁଛି ସେଇ ବ୍ଲୁ ପ୍ରିଣ୍ଟ୍‌ଟି, ଯେଉଁଟି ରଜନୀଗନ୍ଧା ପାଖରେ ରହିଯାଇଛି ? ଯଦି ବା ତାହାହିଁ ହୋଇଥାଏ, ତା'ହେଲେ ବ୍ଲୁ ପ୍ରିଣ୍ଟ୍‌ଟା ଫେରି ପାଇଲେ ଦୈତ୍ୟାୟନ ହୁଏତ ଗୌତମକୁ ମୁକ୍ତି ଦେଇଦେବ। ଯଦି ବା ତା'ର ଅନ୍ୟ ଉଦ୍ଦେଶ୍ୟ ଥାଏ? ଅତୀତରେ ସେ ଯେପରି ଅତି କମ୍ ବୟସର ଝିଅମାନଙ୍କୁ ସଂଗ୍ରହ କରି ନିଜର ବ୍ୟବସାୟରେ ସହଯୋଗ କରିବା ପାଇଁ ଗଢ଼ି ତୋଳୁଥିଲା, ସେହିପରି ଯଦି ପୁଅମାନଙ୍କୁ ସଂଗ୍ରହ କରୁଥାଏ? ଅଙ୍କଲ ଦୈତ୍ୟାୟନ ଯଦି ଗୋଟାଏ ଗୁଳିରେ ଦୁଇଟି ପକ୍ଷୀ ଶିକାର କରିବାର ଫନ୍ଦି ମନେମନେ ଆଣ୍ଟିଥାଏ!!

ନା, ନା, ସତ୍ୟବ୍ରତ ତା'ର ସେ ମନସ୍କାମ ପୂରଣ କରିବାକୁ ଦେବେ ନାହିଁ। କଲିକତା ସହରରୁ ସେ ଅଙ୍କଲ ଦୈତ୍ୟାୟନର ଆଖଡ଼ା ଘର ଖୋଜି ବାହାର କରିବେ ଏବଂ ଗୌତମକୁ ସେ ଉଦ୍ଧାର କରିବେ। ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ।

ସତ୍ୟବ୍ରତଙ୍କ ଡାହାଣ ହାତଟା ମୁଷ୍ଟିବଦ୍ଧ ହୋଇଉଠିଥିଲା।

ରାତି ପାହି ସକାଳ ହେଲା। ଦିନ ଗଡ଼ିଲା। ସନ୍ଧ୍ୟା ଘନେଇ ଆସିଲା। ତଥାପି ସତ୍ୟବ୍ରତ କୌଣସି ସ୍ଥିର ନିଶ୍ଚୟରେ ପହଞ୍ଚି ପାରିଲେ ନାହିଁ। ସୂତ୍ରଟା କ'ଣ, କେଉଁ ସୂତ୍ର ଧରି ସେ ଅଗ୍ରସର ହେବେ। ରଜନୀଗନ୍ଧାର ଆକୁଳ ନିବେଦନ ସତ୍ୟବ୍ରତଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା, ସେଇଥିପାଇଁ ଆଜି ଦିନ/ଦିନଟା ଯାକ ସେ ବସି ବସି ସୂତ୍ର ଖୋଜୁଥିଲେ। ଭାବନା-ଚିନ୍ତା ଭିତରେ ବୁଡ଼ି ରହି ଅଙ୍କଲ ଦୈତ୍ୟାୟନର ଆଖଡ଼ା ଘର ଆବିଷ୍କାରର ପଥ ଖୋଜୁଥିଲେ।

ମନେମନେ ଯେ କେତୋଟି ସୂତ୍ର ଆବିଷ୍କାର କରି ନାହାନ୍ତି ତାହା ନୁହେଁ, ତେବେ ରଜନୀଗନ୍ଧା ସହିତ ଆଉ କେତୋଟି ବିଷୟରେ ଆଲୋଚନା ପରେ ସେ କାର୍ଯ୍ୟରେ ଅଗ୍ରସର ହେବେ। ରଜନୀଗନ୍ଧା ସାତଟା ବେଳକୁ ଆସିବ, ସେଇଥିପାଇଁ ସେ ଅପେକ୍ଷା କରିଛନ୍ତି।

ସତ୍ୟବ୍ରତ ଘଡ଼ି ଦେଖିଲେ। ସାଢ଼େ ଛଅଟା ବାଜିଲାଣି, ଆଉ ଅଧଘଣ୍ଟା ପରେ ରଜନୀଗନ୍ଧା ଆସିଯିବ। ତା'ପରେ ସେ ତାଙ୍କର କର୍ମପନ୍ଥା ନିର୍ଣ୍ଣୟ କରିବେ। ସେ ଟିପା କାଗଜଟି ବାହାର କଲେ। ତହିଁରେ ଆଗାମୀ କର୍ମଧାରାର ଏକ ତାଲିକା ପ୍ରସ୍ତୁତ କରିଥିଲେ।

୧। ଅଙ୍କଲ ଦ୍ୱୈତ୍ୟାୟନ କିଏ ?

୨ । ସେ ତା'ର ଦଳବଳ ଧରି କଲିକତାରେ ଆବିର୍ଭାବ ହୋଇଛି, ନା ଦୁଇ ଚାରିଜଣ ସାଙ୍ଗ ସାଥୀ ଧରି ପହଞ୍ଚିଛି।

୩ । ସେ ରଜନୀଗନ୍ଧାଠାରୁ କ'ଣ ଚାହେଁ? କେବଳ ବ୍ଲୁ ପ୍ରିଣ୍ଟ୍‌ଟା, ନା ସହଯୋଗ।

୪ । ଗୌତମକୁ ଅନ୍ଧାରରେ ରଖିବା ଅର୍ଥ ରଜନୀଗନ୍ଧାକୁ ଟାଣି ଟାଣି ନେବା, ନା ଗୌତମକୁ ମଧ୍ୟ ଦଳରେ ଭିଡ଼େଇବା ?

୫ । ରଜନୀଗନ୍ଧାର ପୃଷ୍ଠପୋଷକ ଅର୍ଥାତ୍ ଯେଉଁ ୨/୩ ଜଣ ଧନୀଲୋକ ତାକୁ ପୋଷୁଛନ୍ତି, ସେମାନଙ୍କ ଦ୍ୱାରା ରଜନୀଗନ୍ଧାର କୌଣସି ଅନିଷ୍ଟ ସାଧନ ହେଉଛି କି ?

୬ । ଜୟନ୍ତର ମା, ଯାହାଙ୍କୁ ରଜନୀଗନ୍ଧା ମା ବୋଲି ଡାକୁଛି, ତାଙ୍କ ସହିତ ମଧ୍ୟ ଥରେ ଭେଟ କରିବାକୁ ହେବ। କିଏ ଜାଣେ ସେ ହୁଏତ ଅନେକ କଥା ଜାଣିଥିବେ ଯାହା ତଦନ୍ତରେ ଯଥେଷ୍ଟ ସହାୟତା କରିବ।

୭ । ରଜନୀଗନ୍ଧା କି୍ଏ ? ସେ ଯାହା କହୁଛି ସେଇଆ କଣ ତା'ର ପ୍ରକୃତ ପରିଚୟ ?

ଆଠ ନମ୍ବର ଉପରେ ଆଖି ପଡ଼ିବା ମାତ୍ରକେ କେହି କଲିଂବେଲ୍ ଟିପିବାର ସେ ଶୁଣିଲେ। ତାଙ୍କର ମନେ ହେଲା ରଜନୀଗନ୍ଧା ଆସିଯାଇଛି ବୋଧହୁଏ। ସଙ୍ଗେ ସଙ୍ଗେ ସେ ଉଠି ଦରଜା ଆଡ଼କୁ ଆଗେଇଲେ ଏବଂ ଦେଖିଲେ ତାଙ୍କର ଅନୁମାନ ସତ୍ୟ।

ରଜନୀଗନ୍ଧା ଭିତରକୁ ପଶି ଆସିଲା।

ସତ୍ୟବ୍ରତ ତା ମୁହଁକୁ କିଛି ସମୟ ଅନାଇ ରହି କହିଲେ: ଆଜି ଗୌତମ ଫୋନ୍ କରିନାହିଁ ବୋଧହୁଏ।

: ନା, ତେବେ ଅଙ୍କଲ ଦ୍ୱୈତ୍ୟାୟନ କରିଥିଲେ।

: ହୁଁ, ସତ୍ୟବ୍ରତ ଗମ୍ଭୀର ହୋଇ କହିଲେ, ବସ। ନିଜେ ସେ ଚେଆର ଉପରେ ବସିଲେ। ମୁହୂର୍ତ୍ତେ ନୀରବ ରହି କହିଲେ, ଅଙ୍କଲ୍ ଦ୍ୱୈତ୍ୟାୟନ ତା'ହେଲେ ତମକୁ ଯିବା ପାଇଁ ନିମନ୍ତ୍ରଣ କରିଛନ୍ତି।

ରଜନୀଗନ୍ଧା ମୁହଁ ଟେକି କହିଲା: ହଁ।

: କୋଉଠି ସେ ତମକୁ ଦେଖା କରିବା ପାଇଁ କହିଛନ୍ତି ?

: ବେଲଭେଡ଼ିଆରେ। ନିଜେ ସେ ଆସିବେ ନାହିଁ। ମୁଁ ଯାଇ ଗୋଟାଏ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହୋଇଥିବି। ଗୋଟାଏ କଳାରଙ୍ଗର ଆମ୍ବାସାଡାର ଆସି ମୋ ସାମନାରେ ଠିଆହେବ। ସେଥିରେ ଜଣେ ଡ୍ରାଇଭର ଓ ଗୋଟିଏ ମହିଳା ବସିଥିବେ। ମୁଁ ଡ୍ରାଇଭର ମୁହଁକୁ ଚାହିଁବା ମାତ୍ରକେ ସେ ତିନିଥର ମୁଣ୍ଡ ହଲାଇବ। ତା'ପରେ ମୁଁ ପଛ ପାଖର ଦରଜା ଖୋଲି ଭିତରେ ବସିବି। ଗାଡ଼ି ମୋତେ ଠିକଣା ଜାଗାକୁ ନେଇଯିବ।

: ଆଉ କ'ଣ କହିଲା ?

: କହିଲା, ଏ କଥା ଯେପରି ଅନ୍ୟ କେହି ନ ଜାଣେ। ଜାଣିଲେ ଗୌତମର ଅନିଷ୍ଟ ହେବ। ସେ ଚାହେଁନା ଗୌତମର କ୍ଷତି କରିବା ପାଇଁ। କିନ୍ତୁ ମୁଁ ଯଦି ତା' କଥା ନ ଶୁଣେ, ନିର୍ଦ୍ଦେଶ ମାନି ନ ଚଳେ ତେବେ ସେ ଗୌତମକୁ ମୋତେ ଆଉ ଫେରେଇ ଦେବ ନାହିଁ।

: ହୁଁ, ବୁଝିଲି। ଆଉ କ'ଣ କହୁଥିଲା ? ତୁମକୁ ସେ କାହିଁକି ଡାକୁଛି, ତୁମ ଦ୍ୱାରା ସେ ତା'ର କି ଉଦ୍ଦେଶ୍ୟ ସାଧନ କରିବାକୁ ଚାହୁଁଛି, ସେ ସମ୍ବନ୍ଧରେ କିଛି ସୂଚନା ପାଇଲ ?

: ନା।

: ବ୍ଲୁ ପ୍ରିଣ୍ଟ୍ କଥା କିଛି ପଚାରୁଥିଲା ?

: ନା, ତେବେ ମୋତେ ସେ ଅଭୟ ଦେଇ କହିଥିଲା ଯେ ମୋର ଭୟ କରିବାର କିଛି ନାହିଁ। ସେ ମୋର ଅନିଷ୍ଟ କରିବ ନାହିଁ। ତେବେ ମୋ ଦ୍ୱାରା କେତୋଟି କାର୍ଯ୍ୟ ହାସଲ କରି ସାରିଲେ, ମୋତେ ସେ ଛାଡ଼ିଦେବ।

ସତ୍ୟବ୍ରତ ନୀରବରେ କିଛି ସମୟ ବସି ରହିଲେ। ରଜାିନଗନ୍ଧା ଆଡ଼େ ଚାହିଁ ଦେଖିଲେ ସେ କିପରି ଆତଙ୍କଗ୍ରସ୍ତ ପରି ବସି ରହିଛି।

: ହଁ, ଭଲ ହେଲା। କେବେ ସେ ତମକୁ ଯିବାକୁ କହିଛି ? ସତ୍ୟବ୍ରତ ପଚାରିଲେ।

: ଦିନ ତାରିଖ କିଛି କହିନାହିଁ। କହିଛି, ମୋ ଫୋନ୍ ପାଇବା ମାତ୍ରକେ ତମେ ଖଣ୍ଡିଏ ଟ୍ୟାକ୍ସି କରି ବେଲଭେଡ଼ିଆର ସେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ଠିଆହେବ।

: ତା ହେଲେ ଯେକୌଣସି ଦିନ ଯେ କୌଣସି ମୁହୂର୍ତ୍ତରେ ସେ ଫୋନ୍ କରିପାରେ।

: ହଁ ଆପଣ କ'ଣ କହୁଛନ୍ତି ? ମୁଁ କ'ଣ ସେଠାକୁ ଯିବି ?

: ନିଶ୍ଚୟ। ନ ଗଲେ ଗୌତମକୁ ଉଦ୍ଧାର କରିବ କିପରି ?

: ଗୌତମକୁ ଉଦ୍ଧାର କରିବାକୁ ଯାଇ ମୁଁ ନିଜେ ଯଦି ବନ୍ଦୀ ହୁଏ ? ଆଉ ଯଦି ସାରା ଜୀବନ ପାଇଁ ମୁକ୍ତିର ପଥ ଖୋଜି ନ ପାଏ ? ତେବେ ମୋ ଗୌତମର କଣ ହେବ ?

ସତ୍ୟବ୍ରତ ହସିଲେ। କହିଲେ: ତମେ ବହୁତ ଅଧିକ ଚିନ୍ତା କରି ଯାଉଛ ରଜନୀଗନ୍ଧା। ବିପଦ ବେଳେ କାତର ହେଲେ ଚଳେ ନାହିଁ। ଧୈର୍ଯ୍ୟ ସହକାରେ ସବୁ ପରିସ୍ଥିତିର ମୁକାବିଲା କରିବାକୁ ହୋଇଥାଏ। ତମେ ଶକ୍ତ ହୁଅ। ଯେପରି ହେଉ ଆମକୁ ସେମାନଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିବାକୁ ହେବ। ସେଇ ସୁଯୋଗ ଆପେ ଆପେ ଆସୁଛି। ଆମେ ତାକୁ ଗୋଡ଼ରେ ଆଡ଼େଇ ଦେଲେ ଚଳିବ?

: ତା'ହେଲେ ମୁଁ କ'ଣ କରିବି?

: ତମେ ଯିବ। ଦୈତ୍ୟାୟନର ଫୋନ୍ ପାଇବା ମାତ୍ରକେ ତମେ ଖଣ୍ଡିଏ ଟ୍ୟାକ୍ସି କରି ସେହି ନିର୍ଦ୍ଦିଷ୍ଟ ସ୍ଥାନକୁ ଚାଲିଯିବ।

: ଯିବି ଯେ, ଆଉ ଯଦି ସେହି ବିଶାଳ ଗହ୍ୱରରୁ ବାହାର ଆସି ନପାରେ?

: ସେ ଚିନ୍ତା ମୋର ରଜନୀଗନ୍ଧା। ତା'ପରେ କ'ଣ କରିବାକୁ ହେବ, ସେ କଥା ମୁଁ ଚିନ୍ତା କରିବି।

: ଧରନ୍ତୁ ଅଙ୍କଲ ଦୈତ୍ୟାୟନ୍‌ର ଫୋନ୍ ମୁଁ ରାତି ବାରଟାରେ ପାଇଲି। ମୁଁ କ'ଣ ସଙ୍ଗେ ସଙ୍ଗେ ବାହାରି ଯିବି?

: ହଁ, ବାହାରିଯିବ। ତେବେ ଗୋଟାଏ କଥା ମନେ ରଖ। ସେ ତୁମକୁ କେବେ ଗଭୀର ରାତିରେ ଫୋନ୍ କରିବ ନାହିଁ। ସେ ଏତେ ବୋକା ନୁହେଁ ଯେ, ରାତି ଅଧରେ ତୁମକୁ ଡାକି ପୁଲିସ୍ ଆଖିର ଶିକାର ହେବ। ସମ୍ଭବତଃ ତମେ ସେଇ ସନ୍ଧ୍ୟା ଛ'ଟା ଫୋନ୍‌ରେ ସମ୍ବାଦ ପାଇବ। ହୁଏତ କାଲି ବି ପାଇପାର।

: ତା' ହେଲେ ମୁଁ କ'ଣ କରିବି? ଆପଣ ସମ୍ବାଦଟା ପାଇବେ କିପରି ମୁଁ ଘରୁ ବାହାରିବା ଆଗରୁ ଆପଣଙ୍କୁ କ'ଣ ଫୋନ୍ କରି ଜଣେଇ ଦେଇଯିବି?

: ନା, ସେ ଦୁର୍ବୁଦ୍ଧି କରିବ ନାହିଁ।

: ତା'ହେଲେ ଆପଣ ଜାଣିବେ କିପରି?

: ମୁଁ ଠିକ୍ ଜାଣିପାରିବି। ମୋ ପାଇଁ ତମର ଚିନ୍ତା କରିବାର କିଛି ନାହିଁ। କିନ୍ତୁ ତମେ ମନେମନେ ପ୍ରସ୍ତୁତ ହୁଅ। ତମେ ଦୈତ୍ୟାୟନ ସହିତ ଦେଖା କର। ସେ କ'ଣ କହୁଛି ମନ ଦେଇ ଶୁଣ। ତା'ପରେ ତମ ସହିତ ମୁଁ ଯୋଗାଯୋଗ କରି, ପରବର୍ତ୍ତୀ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିବି।

ରଜନୀଗନ୍ଧା କିଛି ସମୟ ନୀରବରେ ବସି ରହି କହିଲା: କିନ୍ତୁ ଅଙ୍କଲ୍ ଦୈତ୍ୟାୟନ ଭୀଷଣ ସାଂଘାତିକ ଲୋକ। ଏପରି କୌଣସି କାମ ନାହିଁ ଯାହା ଇଚ୍ଛା କଲେ ସେ କରିପାରିବ ନାହିଁ। ତା' ମୁଠା ଭିତରେ ପଶିବାକୁ ମୋତେ ଡର ମାଡୁଛି। ସେ ଇଚ୍ଛା କଲେ ସେଇଦିନ ମୋତେ ବାହାରକୁ ପଠାଇ ଦେଇପାରେ। ହୁଏତ ଜୀବନସାରା ମୁଁ ଆଉ ଗୌତମର ଦେଖା ପାଇବି ନାହିଁ।

ରାତ୍ରିର ରଜନୀଗନ୍ଧା

ସତ୍ୟବ୍ରତ ଟିକିଏ ସଜାଡ଼ି ହୋଇ ବସିଲେ।

ରଜନୀଗନ୍ଧାର ଆଖି ସହିତ ଆଖି ମିଶାଇ କହିଲେ: ତୁମେ ମନପ୍ରାଣରେ ଭୀଷଣ ଦୁର୍ବଳ ହୋଇପଡ଼ିଛ ରଜନୀଗନ୍ଧା। ତୁମକୁ ଶକ୍ତ ହେବାକୁ ହେବ। ଶତ୍ରୁ ସହିତ ସଂଗ୍ରାମ କରିବାକୁ ହେବ। ଏଠାରେ ତମର ଶତ୍ରୁ ଖୁବ୍ ଶକ୍ତିଶାଳୀ। ତା' ସହିତ ସମ୍ମୁଖ ସମରରେ ଜିଣିବା ସମ୍ଭବ ହେବନାହିଁ। ତେଣୁ କୌଶଳ ଅବଲମ୍ବନ କରି ଜିତିବାକୁ ହେବ। ତମେ ମନକୁ ଶକ୍ତ କର। ନିଜେ ପ୍ରସ୍ତୁତ ହୁଅ।

: ଆପଣଙ୍କ କଥା ମୁଁ ମାନୁଚି, କିନ୍ତୁ ସେଠାରେ ଯାଇ ଆପଣଙ୍କ ସହିତ ଯୋଗାଯୋଗ କରିବାର ଯଦି କୌଣସି ସୁଯୋଗ ନ ପାଏ?

: ସେ ଦାୟିତ୍ୱ ମୋର। ଯୋଗାଯୋଗର ପଥ ମୁଁ ଖୋଜି ବାହାର କରିବି। ହଁ ଆଉ କେତେଟା କଥା ତମଠାରୁ ମୋର ଜାଣିବାର ଥିଲା। ସେ ଯେଉଁ ବ୍ଲୁ ପ୍ରିଣ୍ଟ୍‌ଟା, ଯେଉଁଟା ପାଇଁ ଜୟନ୍ତକୁ ମୃତ୍ୟୁବରଣ କରିବାକୁ ପଡ଼ିଥିଲା, ସେଇଟା କେଉଁଠି ଅଛି?

ରଜନୀଗନ୍ଧା ଟିକେ ଚିନ୍ତା କଲା, କହିଲା: ସେଇଟା ଅଛି। ସେଇଟା ମୋ ପାଖରେ ନିରାପଦରେ ଅଛି। ତେବେ ମୋ ମତରେ ସେଇଟା କିଛି ଅର୍ଥଙ୍କରୀ ନୁହେଁ। ସେହି ବ୍ଲୁ ପ୍ରିଣ୍ଟ୍ ସାହାଯ୍ୟରେ ଧନଭଣ୍ଡାର ଉଦ୍ଧାର କରିବା ଆଶା ବ୍ୟର୍ଥ। ମୁଁ ଭାବୁଛି ସେଇଟା ଗୋଟାଏ ଭୁଲ୍ ବ୍ଲୁ ପ୍ରିଣ୍ଟ୍।

:କିନ୍ତୁ ଦୈତ୍ୟାୟନ ଯଦି ତମ ପାଖରୁ ସେଇଟାକୁ ଚାହେଁ?

: ତା'ହେଲେ କ'ଣ କରିବି?

ରଜନୀଗନ୍ଧା ଓଲଟି ପ୍ରଶ୍ନ କଲା।

: ତମେ? ତମେ ପ୍ରଥମେ ଅସ୍ୱୀକାର କରିବ। କହିବ ସେଇଟା ଜୟନ୍ତ ପାଖରେ ଥିଲା। ମୁଁ ଜାଣିନାହିଁ। ସେ ବ୍ଲୁ ପ୍ରିଣ୍ଟ୍‌ଟା ଯଦି ଗୌତମର ମୁକ୍ତିପଣ ହୁଏ, ସେତେବେଳେ ଦେଖାଯିବ। ଅବଶ୍ୟ ଦୈତ୍ୟାୟନ ଏ ସହରରେ କାହିଁକି ଆସି ପହଞ୍ଚିଛି, ବର୍ତ୍ତମାନ ଜାଣି ହେଉନାହିଁ। ତା'ର ଉଦ୍ଦେଶ୍ୟ ତମକୁ ନେଇ ଏଠାରୁ ଅନ୍ତର୍ଦ୍ଧାନ ହେବା କି ଏ ସହରରେ ଆସ୍ଥାନ ଜମେଇବା, ସେ କଥା ଧୀରେ ଧୀରେ ଜଣାପଡ଼ିଯିବ। ତମେ ଘରକୁ ଯାଇ ପ୍ରସ୍ତୁତ ହୁଅ। ସୁଯୋଗ ହରେଇଲେ ଆଉ ହୁଏତ ଆସିବ ନାହିଁ। ସତ୍ୟବ୍ରତ କହି ନୀରବ ହେଲେ।

ନୀରବତା ଭିତରେ କେତୋଟି ମୁହୂର୍ତ୍ତ କଟିଗଲା।

ରଜନୀଗନ୍ଧା କହିଲା: ଆଚ୍ଛା, ମୁଁ ଯଦି ସେଠାରେ ଯାଇ ଗୌତମକୁ ନ ଦେଖେ, ଗୌତମ ସମ୍ବନ୍ଧରେ କୌଣସି ଖବର ନ ପାଏ, ତା'ହେଲେ କ'ଣ କରିବି?

: ତୁମର କରିବାର କିଛି ନାହିଁ। ତମେ ଦୈତ୍ୟାୟନ କଥା ଶୁଣିବ। ସେ କ'ଣ କହେ, କ'ଣ ଚାହେଁ। ତା'ପରେ ତମେ ଗୌତମ କଥା ପଚାରିବ। ମୁଁ ତମ ପଛେ ପଛେ ଥିବି।

: ମୋ ପଛେ ପଛେ ଆପଣ ଥିବେ ମାନେ ?

: ମୁଁ ଚେଷ୍ଟା କରିବି ତମ ପଛେ ପଛେ ରହିବାକୁ। ସବୁ କଥା ତମର ଜାଣିବା ଉଚିତ ନୁହେଁ। ମୁଁ ତୁମକୁ ଭରସା ଦେଉଛି ଯେତେବେଳେ, ତମେ ମୋତେ ବିଶ୍ୱାସ କରିପାର।

: ବିଶ୍ୱାସ ଖାଲି ନୁହେଁ, ଆପଣ ତ ମୋର ଏକମାତ୍ର ଆଶା ଭରସା। ମୋତେ କିନ୍ତୁ ଭାରି ଡର ମାଡୁଛି। କେଜାଣି କାହିଁକି ମୋ ଭିତରଟା ରହି ରହି କମ୍ପି ଉଠୁଚି। ଏପରି ତ କେବେ ମୋର ହେଉ ନ ଥିଲା। ଏତେ ଝଡ଼ଝଞ୍ଜା ଭିତର ଦେଇ ମୁଁ ଗତି କରିଛି। କିନ୍ତୁ ଆଜି...

: ତମେ ଚୁପ୍ କର ରଜନୀଗନ୍ଧା। ମୁଁ ଆହୁରି ଥରେ କହୁଛି, ତମେ ନିଜକୁ ଶକ୍ତ କର। ସଂଗ୍ରାମ ପାଇଁ ପ୍ରସ୍ତୁତ ହୁଅ। ମନେକର ତମର ଗୋଟାଏ ମହାଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା। ତମେ ଏଥର ଫେରିଯାଅ। ଘରେ ଯାଇ ପ୍ରସ୍ତୁତ ହୁଅ। ମୋର ଅନ୍ୟ କାମ ଅଛି।

ରଜନୀଗନ୍ଧା ଆଉ କିଛି କହିଲା ନାହିଁ। ନୀରବ ରହିଲା।

ସତ୍ୟବ୍ରତ ଉଠି ଠିଆହେଲେ: ତମ ସହିତ ମୋର ସବୁ କାମ ଶେଷ ହୋଇଛି। ଯାହା ଜାଣିବାର ମୁଁ ଜାଣି ନେଇଛି। କାଲି ସନ୍ଧ୍ୟା ଛ'ଟା ପରେ ମୁଁ ତମର ଖବର ନେବି। ଯା ଭିତରେ ତମେ ନିଶ୍ଚୟ ଦୈତ୍ୟାୟନର ଡକରା ପାଇବ। ମୁଁ ଆଉ ଥରେ କହିଦେଉଛି ରଜନୀଗନ୍ଧା, ଡକରା ପାଇଲା ମାତ୍ରକେ ଘରୁ ବାହାରି ଚାଲିଯିବ। ଆଦୌ ଡେରି କରିବ ନାହିଁ।

ରଜନୀଗନ୍ଧା ଚେଆରରୁ ଉଠି ଠିଆ ହୋଇଥିଲା। ଧୀରେ ଧୀରେ ସେ ଘରୁ ବାହାରିଲା।

ସତ୍ୟବ୍ରତ ତା' ପଛେ ପଛେ କିଛି ଦୂର ଯାଇ କହିଲେ: ତମେ ମୋ ଗାଡ଼ିରେ ଯାଅ, ଡ୍ରାଇଭର ଅପେକ୍ଷା କରିଛି। ମୁଁ ତାକୁ କହୁଛି ସେ ତୁମକୁ ନେଇ ଘରେ ଛାଡ଼ିଦେଇ ଆସିବ।

: ନା ନା, ମୁଁ ଏକା ଏକା ଚାଲିଯିବି। ମୋର କିଛି ଅସୁବିଧା ହେବନାହିଁ। ରଜନୀଗନ୍ଧା ଦ୍ରୁତ ପାଦରେ ଆଗେଇ ଯିବାକୁ ଲାଗିଲା।

ସତ୍ୟବ୍ରତ କିନ୍ତୁ ଫେରିଆସିଲେ ନାହିଁ। ଶିଡ଼ିରେ ରଜନୀଗନ୍ଧା ସହିତ ତଳକୁ ଓହ୍ଲେଇ ଗଲେ।

ତଳେ ଗୁଲଜାର ସିଂହକୁ ଦେଖି କହିଲେ: ଶୁଣ ଗୁଲ୍‌ଜାର, ତମେ ଏଇ ଦିଦିଙ୍କୁ ଟିକିଏ ଛାଡ଼ିଦେଇ ଆସ।

ତଥାପି ରଜନୀଗନ୍ଧା ଆପତ୍ତି କରୁଥିଲା। ସତ୍ୟବ୍ରତ କିନ୍ତୁ ଶୁଣିଲେ ନାହିଁ। ନିଜେ

ଗାଡ଼ିର ଦରଜା ଖୋଲି ରଜନୀଗନ୍ଧାକୁ ବସେଇ ଦେଇ ଗୁଲ୍‌ଜାର କାନରେ କ'ଣ ଚୁପି ଚୁପି କହିଲେ।

ଗାଡ଼ି ଛାଡ଼ିଦେଲା।

ରଜନୀଗନ୍ଧା ବିମର୍ଷ ମନରେ ସତ୍ୟବ୍ରତଙ୍କ ଆଡ଼େ ଚାହିଁ ବିଦାୟ ନେଲା।

ଗାଡ଼ି ଅଦୃଶ୍ୟ ହେବାଯାଏ ସତ୍ୟବ୍ରତ ସେଇଆଡ଼େ ଅନାଇ ରହିଥିଲେ। ତା' ପରେ ସେ ଧୀରେ ଧୀରେ ଲେଉଟି ଗଲେ ଉପରକୁ। ମନେ ହେଉଥିଲା ସେ ଯେପରି ଭୀଷଣ କ୍ଲାନ୍ତ, ଭୀଷଣ ପରିଶ୍ରାନ୍ତ।

ସତ୍ୟବ୍ରତଙ୍କ କଥା ଅକ୍ଷରେ ଅକ୍ଷରେ ସତ୍ୟ ହେଲା।

ଫୋନ୍ ଆସିଲା ପରଦିନ ଠିକ୍ ସନ୍ଧ୍ୟା ଛ'ଟା ବେଳେ। ଏଥର କିନ୍ତୁ ଫୋନ୍‌ରୁ ସେ ଗୌତମର କଣ୍ଠସ୍ୱର ଶୁଣିଲା।

: ମା', ମୁଁ ଗୌତମ କହୁଛି।

: ତୁ କେମିତି ଅଛୁ ବାବା!

: ଭଲ ଅଛି ମା'।

: ଆଜି ଖାଇଛୁ କିଛି?

: ହଁ ମା' ପ୍ରଚୁର ଖାଇଛି। ଅଙ୍କଲ ମୋତେ ନିଜ ପାଖରେ ବସେଇ ଖୁଆଇଛନ୍ତି। ତମେ ଆଜି ଆସୁଛ ତ ମା'!

: ମୋ ଯିବା ତୁ କେମିତି ଜାଣିଲୁ ବାବା।

: ଅଙ୍କଲ ମୋତେ କହୁଥିଲେ। ସେ ତ ଏଇଠି ମୋ ପାଖରେ ବସିଛନ୍ତି। ସେ କହୁଛନ୍ତି ସେ ଆଉ ଫୋନ୍ କରିବେ ନାହିଁ। ତମେ ଏଇ ଫୋନ୍‌କୁ ତାଙ୍କ ଫୋନ୍ ମନେ କରି ସଙ୍ଗେ ସଙ୍ଗେ ବାହାରି ଆସ। ହଁ ମା' ଅଙ୍କଲ ଆଉ ଗୋଟିଏ କଥା କହୁଛନ୍ତି, ସେ କାଲି କହିଥିଲେ ତମେ ବେଲ୍ ଭେଡ଼ିଆରେ ଅପେକ୍ଷା କରିବା ପାଇଁ, ଆଜି କହୁଛନ୍ତି ତମେ ଭିକ୍‌ଟୋରିଆ ମେମୋରିଆଲ ଯାଏ ଆସି, ସେଉଠୁ କଳା ଆମ୍ବାସାଡାର ଗାଡ଼ିରେ ଉଠିବ। ଆସୁଛ ତ ମା'! ଚଞ୍ଚଳ ଚାଲିଆସ। ଅନେକଦିନ ହେବ ତମକୁ ଦେଖିନି, ମନଟା ଭଲ ଲାଗୁନି।

: ବାବୁ, ତୁ ଭଲ ଅଛୁ ତ।

: ହଁ ମା, ମୁଁ ଖୁବ୍ ଭଲ ଅଛି।

ଗୌତମ କଣ୍ଠସ୍ୱରରେ ଉଚ୍ଛ୍ୱସିତ ଅହ୍ଲାଦ ଶୁଣି ରଜନୀଗନ୍ଧା କିଛି ବୁଝିପାରିଲାନାହିଁ। ହଠାତ୍ ଯେପରି ଗୌତମର ପରିବର୍ତ୍ତନ ହୋଇଛି।

: ମା', ମା, ଚୁପ୍ ହୋଇଗଲ ଯେ!

: ନା ବାବା, ମୁଁ ତୋରି କଥା ଭାବୁଛି।

: ମୋ କଥା ତମକୁ ଭାବିବାକୁ ହେବନାହିଁ ମା, ଅଙ୍କଲ ମୋର ସବୁ ଦାୟିତ୍ୱ ନେଇଛନ୍ତି। ସେ କହିଛନ୍ତି ଆଉ ସପ୍ତାହକ ପରେ ସେ ମୋତେ ସ୍କୁଲକୁ ଛାଡ଼ିବେ। ତମେ ଚାଲିଆସ ମା', ଆଉ ଡେରି କରନି।

: ହଁ ମୁଁ ଯାଉଛି ବାବା। ତୋ ପାଇଁ କ'ଣ ନେବି ?

: ଛେନା ପଲାଉ ଆଣିବ ମା। ଆଉ ସବୁ ମୋତେ ଅଙ୍କଲ୍ ଖୁଆଇଛନ୍ତି।

: ଆଚ୍ଛା, ବାବୁ ! ତୁ କ'ଣ.....

ତା'ପରେ ଲାଇନ୍‌ଟା କଟିଗଲା।

ରଜନୀଗନ୍ଧା ଦୁଇ ଚାରିଥର ହାଲୋ ହାଲୋ କହି, ରିସିଭରଟା ଆଡ଼େ କିପରି ଆକୁଳ ନୟନରେ ଅନାଇ ରହିଲା। ମନେପଡ଼ିଲା ସତ୍ୟବ୍ରତ ମହାପାତ୍ରଙ୍କ କଥା। ସେ ଠିକ୍ କହିଥିଲେ। ଯିବା ଆଗରୁ ତାଙ୍କୁ ଥରେ ଜଣାଇ ଦେଇ ଯିବା ଉଚିତ୍ ନୁହେଁ କି ? କିନ୍ତୁ ସେ ଯେ ମନା କରିଥିଲେ। ଏହାପରେ କୌଣସି ସମ୍ବାଦ ତାଙ୍କୁ ଜଣାଇବା ପାଇଁ ସେ ବାରଣ କରିଥିଲେ।

ରଜନୀଗନ୍ଧା ରିସିଭରଟା ରଖିଦେଲା।

ଆଳସ୍ୟ ଯେପରି ତା' ସମଗ୍ର ଶରୀରରେ ଘୋଟି ଯାଇଥିଲା, ପୁଅ ଡାକୁଛି। ତା' ସହିତ ଦୀର୍ଘ ଦିନ ପରେ ଦେଖାହେବ। ଅଥଚ ମା' ଦେଖା କରିବା ପାଇଁ ବ୍ୟଗ୍ର ନୁହେଁ। ରଜନୀଗନ୍ଧାକୁ ଯେପରି ତା' ଆତ୍ମସତ୍ତା ହରାଇବାକୁ ପଡ଼ିଥିଲା।

କିନ୍ତୁ ତାକୁ ଯିବାକୁ ହିଁ ହେବ। ନ ଯାଇ ଅନ୍ୟ ପଥ ନାହିଁ। ଗୌତମକୁ ଉଦ୍ଧାର କରିବାକୁ ହେଲେ, ତାକୁ ଆହୁରି ବିପଦ ସଙ୍କୁଳ ପଥରେ ଆଗେଇବାକୁ ହେବ। ସତ୍ୟବ୍ରତ ସେହି କଥା କହିଥିଲେ। ରଜନୀଗନ୍ଧା ବି କାଲିଠାରୁ ମନକୁ ଦୃଢ଼ କରି ରଖିଛି। ଯେକୌଣସି ପରିସ୍ଥିତି ତା' ସାମନାରେ ଆସି ଠିଆ ହେଉନା କାହିଁକି ସେ ତାକୁ ମୁକାବିଲା କରିବ। ହଁ, ଗୌତମକୁ ସେ ଦୈତ୍ୟାୟନ କବଳରୁ ଉଦ୍ଧାର କରିବହିଁ କରିବ।

ରଜନୀଗନ୍ଧା ଉଠି ଠିଆ ହେଲା। ଆଲମାରୀ ଖୋଲି ଲୁଗାପଟା ବଦଳେଇଲା। ଘରେ ଧୂପ ଜାଳିଲା। ଠାକୁରଙ୍କୁ ଲମ୍ବ ହୋଇ ପ୍ରଣାମ କଲା। ଭ୍ୟାନିଟି ବ୍ୟାଗଟି ଭିତରେ କିଛି ଟଙ୍କା ପଇସା ଭରିଲା। ତା'ପରେ ସବୁ ଘରର ଚାବି ବନ୍ଦ କରି ଚାକରାଣୀକୁ ଡାକି କହିଲା, : ମୁଁ ଗୋଟାଏ ଜରୁରୀ କାମରେ ଯାଉଛି। ଫେରିବାକୁ ଦୁଇ ତିନିଦିନ ଡେରି ହୋଇପାରେ। ଯିଏ ଆସିବ ତାକୁ ସେଇକଥା କହିବୁ।

ଚାକରାଣୀ ମୁଣ୍ଡ ହଲାଇ ସମ୍ମତି ଜଣାଇଲା।

ରଜନୀଗନ୍ଧା ଆଉଥରେ ହାତଯୋଡ଼ି ଠାକୁରଙ୍କୁ ପ୍ରଣାମ କରି ଘରୁ ବାହାରିପଡ଼ିଲା। ଯାହାଥିବ କପାଳରେ।

ରାସ୍ତାକୁ ବାହାରି ଯାଇ ସେ ଗୋଟିଏ ଟ୍ୟାକ୍‌ସି ପାଇଲା। ଚାଳକକୁ ନିର୍ଦ୍ଦେଶ ଦେଲା, ଭିକ୍‌ଟୋରିଆ ମେମୋରିଆଲ ହଲ୍‌କୁ ଯିବା ପାଇଁ।

ଟ୍ୟାକ୍‌ସି ଛୁଟି ଚାଲିଲା।

ଜନଗହଳି ଭିତର ଦେଇ ଟ୍ୟାକ୍‌ସି ଆଗେଇ ଚାଲିଥିଲା।

ରଜନୀଗନ୍ଧା କିନ୍ତୁ ନୀରବ ନିସ୍ତବ୍ଧ।

ସେ ବାହାରକୁ ଚାହିଁବା କଥା ଭୁଲି ଯାଇଥିଲା।

ମନେ ହେଉଥିଲା, ସେ ଆତ୍ମସତ୍ତା ହରେଇବସିଛି। ତା' ମନ ଭିତରେ କୌଣସି ଚିନ୍ତା ନାହିଁ। ଭାବନା ନାହିଁ ନିଜେ ସେ ଅଛି ନା ନାହିଁ?

ଟ୍ୟାକ୍‌ସିବାଲା ଡାକରେ ରଜନୀଗନ୍ଧାର ଚେତା ହେଲା।

ସେ ଭିକ୍‌ଟୋରିଆ ମେମୋରିଆଲ ହଲର ମୁଖ୍ୟ ଫାଟକ ପାଖରେ ପହଞ୍ଚିଯାଇଛି। ଟ୍ୟାକ୍‌ସି ବାଲାର ଭଡ଼ା ମେଣ୍ଟେଇ ଦେଇ ଓହ୍ଲେଇଲା ତଳକୁ।

ଏଥର କଳା ଆମ୍ବାସାଡାର ଖୋଜିବାକୁ ହେବ। ଅତି ନିକଟରେ ଗୋଟାଏ କଳା ଆମ୍ବାସାଡାର ଠିଆ ହୋଇଥିଲା। ତା' ଭିତରେ ଡ୍ରାଇଭର ନାହିଁ। ତା'ହେଲେ?

ରଜନୀଗନ୍ଧା ବ୍ୟାଗରୁ ଖଣ୍ଡିଏ କାଗଜ ବାହାର କଲା। ନମ୍ବର ମିଳେଇ ଦେଖିଲା, ନା ଏ ଗାଡ଼ିଟା ନୁହେଁ।

ଆହୁରି ଆଗେଇ ଗଲା ଆଗକୁ। ଆହୁରି ଟିକେ ଆଗକୁ। ଆଉ ତ କଳା ଆମ୍ବାସାଡରର ସତ୍ତା ନାହିଁ। କିନ୍ତୁ ସେ ଦେଖିଲା ଗୋଟାଏ ଚଳନ୍ତା ଆମ୍ବାସାଡାର ଯେପରି ତା'ର ଆଡ଼କୁ ଆଗେଇ ଆସୁଛି। ସେ ନମ୍ବର ପଢ଼ିଲା। ହଁ ଏଇଟା। ଇଙ୍ଗିତରେ ରହିବାକୁ କହିଲା। ଗାଡ଼ି ଠିଆ ହେଲା।

ରଜନୀଗନ୍ଧା ଦେଖିଲା ଡ୍ରାଇଭର ପାଖରେ ଜଣେ ବୟସ୍କ ମହିଳା ବସି ରହିଛନ୍ତି। ଡ୍ରାଇଭର ଆଖି ସହିତ ତା'ର ଆଖି ମିଶିବା ମାତ୍ରକେ ଡ୍ରାଇଭର ତିନିଥର ମୁଣ୍ଡ ହଲେଇଲା। ରଜନୀଗନ୍ଧା ଗାଡ଼ିର ଦରଜା ଖୋଲି ଭିତରେ ବସିଲା।

ଗାଡ଼ି ଚାଲିଲା ଗଙ୍ଗା କୂଳେ କୂଳେ। ରଜନୀଗନ୍ଧା ନୀରବରେ ବସି ରହି ପରବର୍ତ୍ତୀ ଘଟଣା କଥା ଚିନ୍ତା କରୁଥିଲା। ଗାଡ଼ି ଆଗେଇ ଚାଲିଥିଲା। ଖିଦରିପୁର ଡକ୍ ପାର ହୋଇ, ଗାଡ଼ି ଛୁଟି ଚାଲିଥିଲା। ରଜନୀଗନ୍ଧା ପ୍ରାଣରେ ଧୀରେଧୀରେ କିପରି ଭିନ୍ନ ସ୍ୱାଦର ସ୍ପନ୍ଦନ ଜାଗୁଥିଲା। ତା'ର ମନେ ହେଉଥିଲା, ସେ ଯେପରି ନୂତନ ଅଭିଯାନରେ ବାହାରିଛି। ଅତୀତର ଦିନ ଗୁଡ଼ିକ ତା' ସ୍ମୃତିପଟରେ ଜାଗ୍ରତ ହୋଇଆସୁଥିଲା। ଯଦିଓ ସବୁ ଘଟଣା ଗୁଡ଼ିକ ଦୀର୍ଘ ଚଉଦ ପନ୍ଦର ବର୍ଷ ତଳର, ତଥାପି ରଜନୀଗନ୍ଧାର ମନେ ହେଉଥିଲା, ସେ ଏକନୂତନ ଅଭିଯାତ୍ରୀ। ସେ ଭୁଲି ଯାଇଥିଲା ସେ ଏକ ସନ୍ତାନହରା ମାତା, ସେ ଧୀରେ ଧୀରେ ଭୁଲିଯାଉଥିଲା, ସେ ଏକ ନିଃସହାୟ ନାରୀ।

ଗାଡ଼ିର ଦ୍ରୁତଗତି ସଙ୍ଗେ ସଙ୍ଗେ ରଜନୀଗନ୍ଧାର ସ୍ମୃତିକୋଷ ଦ୍ରୁତ ଉନ୍ମୁକ୍ତ ହେଉଥିଲା। ତା'ର ମନେ ହେଉଥିଲା, ଜୟନ୍ତ ତା' ପାଖରେ ବସି ଗାଡ଼ି ଚଳାଉଛି। ସେ ବସିଛି ତା' ବାଁ ପାଖରେ। ସେମାନେ ବାହାରିଛନ୍ତି ଅଭିଯାନରେ। ଅଭିଯାନ ଏକ କୋଟିପତି ବିରୁଦ୍ଧରେ। ତାକୁ କାବୁ କରି ଅଙ୍କଲ ଦୈତ୍ୟାୟନଙ୍କ ପାଖକୁ ଆଣିବାକୁ ହେବ। ଲୋକଟା ଭୀଷଣ ସାଂଘାତିକ। ଆଗ୍ନେୟାସ୍ତ୍ର ତା' ପାଖରେ ସବୁବେଳେ ଥାଏ। ତଥାପି ତାକୁ ଯେପରି ହେଉ ଆଣି ପହୁଞ୍ଚାଇବାକୁ ହେବ ଅଙ୍କଲ ଦୈତ୍ୟାୟନଙ୍କ ପାଖରେ। ସେ ଦାୟିତ୍ୱ ଜୟନ୍ତ ଆଉ ରଜୀନଗନ୍ଧାର। ଦୁହେଁ ବାହାରି ପଡ଼ିଲେ ଆଗପଛ ନ ବିଚାରି। ସବୁ କାର୍ଯ୍ୟରେ ଅଗ୍ରଣୀ ଥିଲେ ସେମାନେ। କାର୍ଯ୍ୟ କରିବାର ପ୍ରେରଣା ଥିଲା ସେହିପରି।

ଗାଡ଼ିର ସ୍ପିଡୋମିଟର ଆଡ଼େ ଚାହିଁବାର ଅବସର ନ ଥିଲା କାହାରି। ଜୟନ୍ତ ହାତରେ ଗାଡ଼ି ଉଡ଼ିଥିଲା ତୀର ବେଗରେ। ଯେତେବେଳେ ସେମାନେ ଯାଇ ସେ ଧନୀଲୋକଟି ଘରେ ପହଞ୍ଚିଲେ, ସେତେବେଳକୁ ରାତି ଦଶଟା, ତା'ଘରେ ଭୋଜିସଭା। ଅନେକ ଜନଗହଳି।

ଗେଟ୍‌ରେ ଗାଡ଼ି ଠିଆ କରି ସେମାନେ ସେଇ ଜନଗହଳିରେ ମିଶିଗଲେ। ନାଚ ଗୀତ, ଖିଆପିଆର ଧୂମ୍‌ଧଡ଼ାକ ଭିତରେ ସେମାନେ କାମ ହାସଲ ପାଇଁ ଯେତେବେଳେ ଅସଲ ଲୋକ ପାଖରେ ପହଞ୍ଚିଲେ, ସେତେବେଳେ ସେ ଏମାନଙ୍କୁ ଚିହ୍ନି ପାରିଥିଲା। ତା' ପରେ ଆରମ୍ଭ ହୋଇଥିଲା ତୁମୁଳ ହଟ୍ଟଗୋଳ। ସେଇ ଭୋଜିସଭା ଓ ଲୋକଗହଳି ଭିତରେ ଜୟନ୍ତର ସେଇ ବୀରତ୍ୱ, ସେଇ ଶହ ଶହ ଲୋକମାନଙ୍କ ମଧ୍ୟରେ ଯେଉଁ ତୋଫାନୀ ଆବହାଓ୍ୱା, ରଜନୀଗନ୍ଧା ଆଖି ଆଗରେ ଉଭାସିତ ହୋଇଉଠୁଥିଲା।

ହଠାତ୍ ଗାଡ଼ିଟା ଅଟକି ଗଲା, ଗୋଟାଏ ଜାଗାରେ। ରଜନୀଗନ୍ଧାର ଚିନ୍ତାସ୍ରୋତ ବାଧାପ୍ରାପ୍ତ ହେଲା। ସେ କେଉଁଠି ଆସି ପହଞ୍ଚିଛି!

ଡ୍ରାଇଭର ଓହ୍ଲେଇ ଆସି ଗାଡ଼ିର ଦରଜା ଖୋଲିଦେଲା। ମହିଳାଟି ବାହାରି ଆସି ଠିଆ ହୋଇଥିଲା ରଜନୀଗନ୍ଧାକୁ ସଂଗରେ ନେଇଯିବା ପାଇଁ।

ରଜନୀଗନ୍ଧା ପ୍ରଥମେ ଟିକିଏ ଦ୍ୱିଧାବୋଧ କଲା। ତା'ପରେ ଓହ୍ଲେଇ ଆସିଲା ଗାଡ଼ିରୁ।

ସାମ୍‌ନାରେ ଗୋଟାଏ ବିରାଟ କୋଠା। ଭୂତକୋଠି ପରି ଅନ୍ଧକାରରେ ଠିଆ ହୋଇଛି। କେଉଁ କେଉଁ ଦରଜା ଝରକାରୁ କ୍ଷୀଣ ଆଲୋକଶିଖା ଦିଶୁଛି ମାତ୍ର।

ମହିଳାଟି ମୁହଁ ଖୋଲିଲା: ମୋ ସଙ୍ଗରେ ଆସ।

ରଜନୀଗନ୍ଧା ସେହି ମହିଳାଟି ପଛେ ପଛେ ଆଗେଇଗଲା। କେଉଁଠିକି ସେ ଯାଉଛି, କାହିଁକି ସେ ଯାଉଛି, କାହା ପାଖକୁ ସେ ଯାଉଛି, ତା'ର କିଛି ମନେନଥିଲା। ପରିବେଶ ତାକୁ କିପରି ନିଶାଗ୍ରସ୍ତ କରିପକାଇଥିଲା।

ରାତ୍ରିର ରଜନୀଗନ୍ଧା

ଏକ ସମୟରେ ରଜନୀଗନ୍ଧାର ଚଲାପଥ ଶେଷହେଲା, ସେ ଯାଇ ଯେଉଁଠି ପହଞ୍ଚିଲା, ସେ ଘର ଭିତରେ ଆଲୋକ ଜଳୁଥିଲା। ଘରେ ଗୋଟାଏ ଖଟ ପଡ଼ିଥିଲା। ଚେଆର ଟେବୁଲ୍ ଥିଲା। ତେବେ ଦୃଷ୍ଟି ଆକର୍ଷଣକାରୀ କିଛି ନ ଥିଲା ତା' ଭିତରେ।

ରଜନୀଗନ୍ଧା ଘରଟିର ଚାରିଆଡ଼େ ଆଖି ବୁଲେଇ ନେଇ, ମହିଳାଟିଆଡ଼େ ଚାହିଁ ଠିଆ ହେଲା।

ମହିଳାଟି କହିଲା: ଏହି ଘରଟି ତମ ପାଇଁ ଉଦ୍ଦିଷ୍ଟ। ତମେ ଯାରି ଭିତରେ ଆଜି ରାତି କଟାଇବ।

ରଜନୀଗନ୍ଧା ମହିଳାଟି ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲା କିଛି ସମୟ। ତା'ପରେ ଧୀରେ ଧୀରେ ଗୋଟିଏ ଚେଆର ଦଖଲ କରି ବସିଲା।

ମହିଳାଟି କହିଲା: ଏଠି ତମର କିଛି ଅସୁବିଧା ହେବନାହିଁ। ତମେ ଆରାମରେ ରହିପାରିବ। ମୋ କାମ ଶେଷ ହୋଇଛି। ମୁଁ ଆସୁଛି।

ରଜନୀଗନ୍ଧା କିଛି କହିଲା ନାହିଁ। ମହିଳାଟି ଘରର ଦରଜା ବନ୍ଦ କରି ବାହାରକୁ ଚାଲିଗଲା।

ମହିଳାଟି ଚାଲିଯିବା ପରେ ରଜନୀଗନ୍ଧା ଘରର ଦରଜାଟା ଭିତରୁ ବନ୍ଦ କରିଦେଲା। ଘରର ଚାରିଆଡ଼େ ଥରେ ଭଲ ଭରି ନିରୀକ୍ଷଣ କଲା। ତା'ର ମନେ ହେଲା, ଏ ଯେପରି ସେଇ ଖଟ, ସେଇ ଟେବୁଲ, ସେଇ ଚେୟାର, ସେଇ ସୋଫା, ସେଇ ଆଲମାରୀ। ସବୁ ତା'ରି ଛାଡ଼ି ଆସିଥିବା ଆସବାବପତ୍ର। ଜୟନ୍ତ ଓ ତା'ର ନିଜ ଶୟନକକ୍ଷ ଏଇଟା। ଏଇ କକ୍ଷରେ ତାଙ୍କର ସ୍ୱପ୍ନର ଦିନଗୁଡ଼ିକ କଟିଥିଲା। କେତେ ରାଗ-ରୋଷ। ମାନ-ଅଭିମାନ।

ରଜନୀଗନ୍ଧା ଛୁଟି ଯାଇ ଟେବୁଲ୍ ଡ୍ରୟାରଟା ଟାଣି ପକାଇଲା। ଆରେ, ଏ ଯେ ତା'ରି ଫଟୋ ଆଲବମ୍। ଜୟନ୍ତ ଆଉ ତା'ର ଅଜସ୍ର ଫଟୋଗ୍ରାଫ୍ ଥିଲା ଏଇ ଆଲବମ୍ ଭିତରେ। ସେ କ୍ଷିପ୍ର ହସ୍ତରେ ଖେଳେଇଗଲା ଆଲବମ୍‌ଟାକୁ। ଅଛି ଅଛି। ସବୁ ଅଛି ଅକ୍ଷତ ଅବସ୍ଥାରେ। ପ୍ରତିଟି ଫଟୋଗ୍ରାଫ୍ ରହିଛି ଏହି ଆଲବମ୍ ଭିତରେ। ସେଇଟାକୁ କ୍ଷିପ୍ର ହସ୍ତରେ ଖଟ ଉପରକୁ ଫିଙ୍ଗି ଦେଇ ସେ ଛୁଟିଗଲା ଆଲମାରୀ ପାଖକୁ। ଟାଣି ଖୋଲିଦେଲା। ଖୋଲିଗଲା ଆଲମାରୀଟା। ଜୟନ୍ତର ପୋଷାକପତ୍ର, ତା'ର ଶାଢ଼ି ବ୍ଲାଉଜ। ସବୁ ତ ସେମିତି ରହିଛି, ଅତି ଯତ୍ନରେ। କିଏ ଯେମିତି ସଜେଇ ରଖିଛି ସବୁ। କିନ୍ତୁ, କିନ୍ତୁ....

ରଜନୀଗନ୍ଧା ଡ୍ରେସିଂ ଟେବୁଲ୍ ଆଗରେ ଯାଇ ଠିଆ ହେଲା। ତା' ପ୍ରତିଛବିକୁ ସେ ଚିହ୍ନିପାରିଲା ନାହିଁ। କିଏ ଏ? ଏ ତ ଗୌତମର ମା' ନୁହେଁ। ଏ ଏକ ବିରହିଣୀ, ଜୟନ୍ତର ପ୍ରେମିକା।

ରଜନୀଗନ୍ଧା ଛୁଟିଗଲା ବାଥରୁମ୍ ଭିତରକୁ। ସେଇ ସାୱାର, ସେଇ ବାଥ୍ ଟବ୍।

ସେଇ ପାଉଡର, ସ୍ନୋ, ଫେସ୍ ପାଉଡର। ସବୁ ସିମିତି ଅକ୍ଷତ ଅବସ୍ଥାରେ ଥୁଆ ହୋଇଛି। ଯାହାର ମାୟା ତୁଟେଇ ସେ ଛାଡ଼ି ଚାଲିଯାଇଥିଲା। ସବୁ ଯେପରି ତାକୁ ପ୍ରତୀକ୍ଷା କରି ବସି ରହିଛନ୍ତି।

ରଜନୀଗନ୍ଧା ଆଉ ଧୈର୍ଯ୍ୟ ଧରି ଠିଆ ହୋଇପାରିଲା ନାହିଁ। ବାଥ୍‌ଟବ୍‌ର ପାଇପ୍ ଖୋଲି, ଧୀରେ ଧୀରେ ଶାଢ଼ି ବ୍ଲାଉଜ୍ ଖୋଲି, ସେ ଯାଇ ବାଥ୍‌ଟବ୍ ଭିତରେ ଶୋଇପଡ଼ିଲା।

ଆହାଃ, କି ଶାନ୍ତି। କି ଆରାମ। ଏଇ ବାଥ୍‌ଟବ୍ ଭିତରେ ଜୟନ୍ତ ଆଉ ସେ ଏକା ସାଙ୍ଗରେ ଶୋଇ ଶୋଇ ସ୍ନାନ କରିଛନ୍ତି। ଗଳ୍ପ କରିଛନ୍ତି। ଘଣ୍ଟା ପରେ ଘଣ୍ଟା। ସମୟର ମାପ ସେଠି ହାର ମାନିଛି। ଆଃ....ଜୟନ୍ତ ! ତମେ କୁଆଡ଼େ ଗଲ ଏତେବେଳଯାଏ ? କାମ କ'ଣ ତମର ଶେଷ ହେବନାହିଁ ?

ରଜନୀଗନ୍ଧା ବାଥ୍‌ଟବ୍‌ରେ ଶୋଇ ରହିଲା । ଅନେକ ବେଳଯାଏ ଗୁଣୁ ଗୁଣୁ ହୋଇ ଗୀତ ଗାଇଲା। ଉଠିଯାଇ ସାୱାର ଖୋଲି, ପ୍ରାଣଭରି ସ୍ନାନ କଲା।

ଟାୱାଲରେ ଦେହ ପୋଛି, ଦେହ ସାରା ପାଉଡର ଲଗାଇ, ଲୁଗାପଟା ପିନ୍ଧି ବାହାରକୁ ବାହାରିଲା।

ସେତିକିବେଳେ ବାହାରୁ ଦରଜାରେ କିଏ ନକ୍ କଲା। ରଜନୀଗନ୍ଧା ସ୍ୱାଭାବିକ ସ୍ୱରରେ ପ୍ରଶ୍ନ କଲା: କିଏ ?

: ମୁଁ ନିହାରିକା। ଖାଇବାକୁ ଆଣିଛି।

: ନୀହାରିକା, ତୁ ବଞ୍ଚିଛୁ ନୀହାରିକା ?

ରଜନୀଗନ୍ଧା ଛୁଟି ଯାଇ କ୍ଷିପ୍ର ହସ୍ତରେ ଦରଜା ଖୋଲିଦେଲା।

: ହଁ ମୁଁ ବଞ୍ଚିଛି ଦିଦି। ତମପାଇଁ ପ୍ରତୀକ୍ଷା କରି କରି ମୋ ମୁଣ୍ଡବାଳ ପାଚି ଯାଇଛି।

ରଜନୀଗନ୍ଧା କବାଟ ଖୋଲି ଦେଇ ନୀହାରିକା ଆଡ଼େ ସ୍ତବ୍ଧ ହୋଇ ଅନାଇ ରହିଲା। ହଁ, ଏ ସେଇ, ତା'ରି ପାଚାରିକା ନୀହାରିକା। ବୟସର ଛାପ ତା' ଦେହ ମୁହଁରେ ସର୍ବତ୍ର ପଡ଼ିଯାଇଛି। ରଜନୀଗନ୍ଧା ଧୀରେ ଧୀରେ ପଛକୁ ଘୁଞ୍ଚି ଘୁଞ୍ଚି ଆସିଲା। ନୀହାରିକା ଟ୍ରେ'ଟା ଧରି ଭିତରକୁ ପଶିଲା। ଦୁଇଜଣଙ୍କ ମୁହଁରେ ବିସ୍ମୟ। ଦୁଇଜଣ ଏକା ସଙ୍ଗରେ ଦୁହିଁଙ୍କୁ ଚାହିଁ କିଛି ସମୟ ସ୍ଥିର ରହିଗଲେ।

: ତମେ ଭଲ ଅଛ ତ ଦିଦି ?

ପ୍ରଥମେ ନୀହାରିକା ମୁହଁ ଖୋଲିଲା: ମୁଁ କାଲି ଶୁଣିଲି ତମେ ଏଠିକି ଆସିବ ବୋଲି। ମନଟା ଆନନ୍ଦରେ ଭରିଗଲା। ସେ କ'ଣ କମ୍ ଦିନ ତଳର କଥା ? ମନେ ହେଉଚି, କେଇଟା ଯୁଗ ଯେମିତି ଯା ଭିତରେ ବିତି ଯାଇଛି।

ରଜନୀଗନ୍ଧା ନୀହାରିକାକୁ ଚାହିଁ ରହିଥିଲା। ପ୍ରକୃତିସ୍ଥ ହୋଇ କହିଲା: ତୁ ଭଲ ଅଛୁ ତ ନୀହାର ? ଆଉ ସବୁ ଅନ୍ୟମାନଙ୍କର ଖବର କ'ଣ ?

: ସମସ୍ତେ ଭଲ ଅଛନ୍ତି। ଯେ ଯୁଆଡ଼େ ନିଜ ନିଜ କାମରେ ରହିଯାଇଛନ୍ତି। ମୋତେ ଏଠାକୁ ଆସିବାକୁ ହେଲାରୁ ମୁଁ ଆସିଲି।

: ଆଉ ସବୁ କିଏ ଆସିଛନ୍ତି ?

: ଅନେକ ଆସିଛନ୍ତି। ସମସ୍ତଙ୍କ ସଙ୍ଗରେ ବଳେ ଦେଖା ହେବ ଯେ। ତମେ ଆଉ ଡେରି କରନି। ଖାଇ ପିଇ ନିଅ। ମୋର ଅନ୍ୟ କାମ ଅଛି।

ନୀହାରିକା ବ୍ୟସ୍ତ ହୋଇ କହିଲା।

ରଜନୀଗନ୍ଧା ଦେଖିଲା, ନୀହାରିକା କିପରି ବଦଳି ଯାଇଛି। ସେଦିନର ସେଇ ଶାନ୍ତଶିଷ୍ଟ ମଣିଷଟି ସେ ଆଉ ନାହିଁ। କହିଲା: ତୁ ଚାଲିଯା ନୀହାର; ମୁଁ ନିଜେ ନିଜେ ଖାଇନେବି। ଭୋକ ଲାଗିଲେ ତ ଖାଇବି।

: ନା ଦିଦି। ତୁମକୁ ମୁଁ ନ ଖୋଇ ଯାଇପାରିବି ନାହିଁ। ଏଣେ ମୁଁ ଚାଲିଯିବି ଆଉ ତମେ ଉପବାସରୁ ପେଟେ ଖାଇ ଶୋଇପଡ଼ିବ, ସେ କଥା ହୋଇପାରିବ ନାହିଁ।

ରଜନୀଗନ୍ଧା ଭାବୁଥିଲା, ସେ ତାକୁ ଅଙ୍କଲ ଦୈତ୍ୟାୟନଙ୍କ କଥା ପଚାରିବ। ଦଳର ବର୍ତ୍ତମାନର ପରିସ୍ଥିତି କଥା ପଚାରିବ। କିନ୍ତୁ ଲାଭ କ'ଣ ? ନୀହାରିକା ତାକୁ କିଛି କହିବ ନାହିଁ। ସେମାନେ କେତୋଟି ଦରକାରୀ କଥା ଛଡ଼ା ଅନ୍ୟ କିଛି କହନ୍ତି ନାହିଁ। ସେହିପରି ତାଙ୍କୁ ଶିକ୍ଷା ଦିଆ ହୋଇଛି। ତଥାପି ସେ ପଚାରିଲା: ଅଙ୍କଲ କିମିତି ଅଛନ୍ତି ?

ନୀହାରିକା ହସିଲା।

କହିଲା: ଦିଦି, ତୁମେ କ'ଣ ସବୁ ଭୁଲି ଗଲଣି ? ତମେତ ଜାଣ ବର୍ତ୍ତମାନ ମୋର ତୁମକୁ ଖୋଇବା ଛଡ଼ା ଦ୍ୱିତୀୟ କାମ କିଛି ନାହିଁ କି ଦ୍ୱିତୀୟ କଥା କହିବାର ଅଧିକାର ନାହିଁ।

: ହଁ, ଜାଣିଥିଲି ଯେ, ଏଇଖିଣାକୁ ସବୁ ଭୁଲି ଗଲିଣି। ହଉ ଦେ, ମୋତେ ବାଢ଼ିଦେ, ମୁଁ ଖାଇ ଦେଉଛି। ତତେ ଶାସ୍ତି ଦେଇ କିଛି ଲାଭ ନାହିଁ।

ନୀହାରିକା ଟ୍ରେରୁ ଘୋଡ଼ଣୀ କାଢ଼ି, ଗୋଟି ଗୋଟି କରି ପ୍ଲେଟ୍ ସଜେଇ ଦେଲା ରଜନୀଗନ୍ଧା ସାମ୍ନାରେ। ନୀରବରେ ସେ ଖାଇବାକୁ ଲାଗିଲା। ନୀହାରିକାକୁ ଅନେକ କଥା ପଚାରିବାକୁ ଇଚ୍ଛା ହେଉଥିଲେ ବି, ସେ ଜାଣିଥିଲା, କୌଣସିଟିର ଉତ୍ତର ପାଇବ ନାହିଁ। ତେଣୁ ବୃଥା ସମୟ ନଷ୍ଟ କରି ଲାଭ ନାହିଁ।

ରଜନୀଗନ୍ଧା ଖାଇବା ଶେଷ କଲା। ନୀହାରିକା ଗୋଟି ଗୋଟି କରି ପ୍ଲେଟ୍ ଉଠାଇ ନେଇ ଟ୍ରେରେ ରଖିଲା। କହିଲା: ମୁଁ ଆସୁଛି ଦିଦି। ତମେ ଶୋଇ [illegible] କାଲି ସକାଳେ ଦେଖାହେବ।

ରଜନୀଗନ୍ଧା ନୀହାରିକାର ଯିବା ପଥକୁ ଅନାଇ ରହିଲା। ଏ ପର୍ଯ୍ୟନ୍ତ ସେ କିପରି ଏକ ମୋହଗ୍ରସ୍ତ ପରି ସବୁ କାମ କରି ଯାଉଥିଲା। ହାତ ଧୋଇ ଆସି ସେ ଯେତେବେଳେ ବିଛଣା ଉପରେ ଗଡ଼ି ପଡ଼ିଲା, ତା'ର ମନେପଡ଼ିଲା ଗୌତମ କଥା। ଏଠାକୁ ଆସିବାର ପ୍ରାୟ ଦୁଇଘଣ୍ଟା ଅତିକ୍ରମ ହେବାକୁ ବସିଲାଣି। ଗୌତମ କାହିଁ? ଅଙ୍କଲ ଦୈତ୍ୟାୟନ ବା ଗଲେ କୁଆଡ଼େ?

ସେ କ'ଣ ତାକୁ ପୁଣି ସେଇ ପୂର୍ବ ପେଶାକୁ ଫେରାଇ ଆଣିବାକୁ ଚାହାନ୍ତି? କିନ୍ତୁ ସେ ଯେ ତା' ଜୀବନକୁ ଗୌତମ ପାଇଁ ଉତ୍ସର୍ଗ କରିଛି। ବର୍ତ୍ତମାନ ଆଉଥରେ ସେ ଅନ୍ଧାରୀ ମୁଲକରେ ପକ୍ଷ ବିସ୍ତାର କରି ଉଡ଼ି ବୁଲିବ କିପରି?

ଜୟନ୍ତ ବଞ୍ଚିଥିଲେ ଆଜି କ'ଣ ସେ ଏଇ ନରକ ଯନ୍ତ୍ରଣା ଭୋଗ କରୁଥାଆନ୍ତା! ନିଜର ପୁଅ ପାଖରେ ଆତ୍ମଗୋପନ କରି ଭିନ୍ନ ପରିଚୟ ଦେଇ ମନସ୍ତାପ ଭୋଗୁ ଥାଆନ୍ତା!!

ହାତ ପାଖରେ ଫଟୋ ଆଲବମ୍‌ଟା ପଡ଼ିଥିଲା। ଆନମନା ହୋଇ ଖୋଲେଇ ଗଲା ସେଇଟା। ଅଧିକାଂଶ ଛବି ତା'ର ଜୟନ୍ତ ସହିତ ରହିଛି। ଅନ୍ୟାନ୍ୟ ବନ୍ଧୁବାନ୍ଧବ, ସହକର୍ମୀମାନଙ୍କର କିଛି କିଛି ଛବି ମଧ୍ୟ ସେ ଆଲବମ୍‌ରେ ରହିଛି। ସବୁ ମୁହଁ ତା'ର ପରିଚିତ। ସେମାନେ ବର୍ତ୍ତମାନ କିଏ କେଉଁଠି କିଏ ଜାଣେ!

ରଜନୀଗନ୍ଧା କିପରି ଅସ୍ୱସ୍ତି ବୋଧ କରୁଥିଲା। ଉପରକୁ ଚାହିଁଲା, ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଚାଲିଛି। କିନ୍ତୁ ତଥାପି ତାକୁ ଏତେ ଗରମ ଲାଗୁଛି କାହିଁକି?

ଆଲବମ୍‌ଟା ବନ୍ଦ କରିଦେଇ ରଜନୀଗନ୍ଧା ଉଠି ଠିଆ ହେଲା। ଏ ଘରେ ତା'ରି ବ୍ୟବହାରିକ ସମସ୍ତ ଜିନିଷପତ୍ର ରହିଛି। ସବୁ ଗୁଡ଼ିକ କିଏ କାହିଁକି ଆଣି ଏଠାରେ ସଜାଇ ରଖିଛି? ତା'ମନଟାକୁ କ'ଣ ଅତୀତକୁ ଫେରାଇ ନେବା ପାଇଁ?

କିଛି ଭଲ ଲାଗୁନାହିଁ। ସେ ଯାଇ ଆଉଥରେ ଆଲମାରୀଟା ଖୋଲିଲା। ଜୟନ୍ତର ପୋଷାପତ୍ର ସବୁ ବାହାର କରି ଦେଖିଲା। ପୁଣି ଯଥା ସ୍ଥାନରେ ରଖିଦେଲା। ଏ ଘରେ ପ୍ରବେଶ କରିବା ପର ମୁହୂର୍ତ୍ତଠାରୁ ଜୟନ୍ତ ତା'ର ବେଶୀ ମନେପଡୁଛି। ଏଇ ଖଟ, ଏଇ ଟେବୁଲ୍, ଏଇ ଚେଆର ସବୁଠାରେ ସେ ଜୟନ୍ତର ଛାୟା ଦେଖୁଛି। କିନ୍ତୁ ସେ ତ ଏଠାକୁ ଜୟନ୍ତର ସ୍ମୃତି ସନ୍ଧାନରେ ଆସି ନ ଥିଲା। ସେ ଆସିଥିଲା ଗୌତମକୁ ଦେଖିବା ପାଇଁ। କିନ୍ତୁ ଗୌତମ କାହିଁ?

ମନେପଡ଼ିଲା ତା'ର ସତ୍ୟବ୍ରତ ମହାପାତ୍ରଙ୍କ କଥା। ସେ ବୋଧହୁଏ ତାକୁ ଠକିଦେଲେ। ଦାୟିତ୍ୱ ଏଡ଼େଇବା ପାଇଁ ସେ ତାକୁ ପୁଣି ପଠାଇଦେଲେ ବନ୍ଦୀଶାଳାକୁ।

ହେଉ, ଯାହା ଥିବ କପାଳରେ!!

ରଜନୀଗନ୍ଧା କ୍ଲାନ୍ତ ହୋଇପଡ଼ିଥିଲା। ସେ ଘରର ଆଲୋକ ଲିଭେଇ ଚୁପ୍‌ଚାପ୍

ଶୋଇ ପଡ଼ିବାକୁ ଯାଉଥିଲା। କିନ୍ତୁ ପଛରୁ ଠୁକ୍ କରି ଗୋଟାଏ ଶବ୍ଦ ଶୁଣି ବୁଲି ପଡ଼ି ଦେଖିଲା, ଦରଜା ଖୋଲି ଭିତରକୁ ନୀହାରିକା ପଶୁଛି। ତା'ହାତରେ ଗୋଟିଏ ଛୋଟ ଟ୍ରେ।

ହସି ହସି ନୀହାରିକା କହିଲା: ଖାଇସାରିବା ପରେ କଫି ପିଇବା ତମର ଅଭ୍ୟାସ ଥିଲା ଦିଦି, ସେ କଥା ମୁଁ ଭୁଲିନାହିଁ।

ରଜନୀଗନ୍ଧା ମୁହୂର୍ତ୍ତେ ତାରି ଆଡ଼େ ଚାହିଁ ଠିଆ ହେଲା। ହଁ, ଖାଇସାରି ତା'ର କଫି ପିଇବା ଅଭ୍ୟାସ ଥିଲା। ସେ କୋଉଯୁଗର କଥା । ଏବେ ରଜନୀଗନ୍ଧା ସବୁ ଭୁଲି ସାରିଲାଣି। ଏବେ ଖାଇ ସାରିଲେ ବିଛଣାରେ ଶୋଇ ପାରିଲେ ସେ ବଞ୍ଚିଯାଏ। କିନ୍ତୁ ନୀହାରିକା କଫି ଧରି ଆସିଛି ଯେତେବେଳେ, ପିଇବାକୁ ହେବ।

ଟ୍ରେ'ଟା ନୀହାରିକା ଆଣି ଟେବୁଲ୍ ଉପରେ ରଖିଲା। କହିଲା: ମୁଁ ଆସୁଛି ଦିଦି। କାଲି ସକାଳେ ଆସି ଟ୍ରେ ଓ ପଟ୍ ନେଇଯିବି।

ନୀହାରିକା ଚାଲିଗଲା।

ରଜନୀଗନ୍ଧା ଯାଇ କବାଟଟା ବନ୍ଦ କରି ଦେଇ ଆସିଲା। ଭାବିଥିଲା କଫି ପିଇବ ନାହିଁ। କିନ୍ତୁ କଫି ପଟ୍‌ରେ ଆଉଥରେ ନଜର ପଡ଼ିବା ମାତ୍ରକେ ତା'ର ଲାଳସା ସଜାଗ ହୋଇ ଉଠିଲା। ଧୀରେ ଧୀରେ ସେ ଆଗେଇ ଗଲା କଫି ପଟ୍ ପାଖକୁ। ଚେଆରରେ ବସିଲା। କଫି ପଟ୍‌ଟିକୁ ଚାହିଁଲା ମୁହୂର୍ତ୍ତେ, ଏ ଯେ ତା'ର ପରିଚିତ ପଟ୍। ଜୟନ୍ତ ଏଇଟା ସିଙ୍ଗାପୁରରୁ ଆଣିଥିଲା ତା' ପାଇଁ। ସେଇ ପଟ୍ ଭିତରେ ଦୁଧ ଓ ଚିନି ରଖିବା ପାଇଁ ଦୁଇଟା କୋଠରି ଅଛି।

ରଜନୀଗନ୍ଧା ପଟ୍‌ର ଢାଙ୍କୁଣୀ ଖୋଲିଦେଲା। କୋଠରି ଦୁଇଟିଯାକ ଖାଲି। କିନ୍ତୁ ଗୋଟାଏ କୋଠରିରେ ଖଣ୍ଡେ କାଗଜ ଭଙ୍ଗା ହୋଇ ରଖା ହୋଇଛି। ରଜନୀଗନ୍ଧା ପ୍ରାଣରେ ହଠାତ୍ କିପରି ଏକ ତଡ଼ିତ୍ ପ୍ରବାହ ଖେଳିଗଲା। ସେ ସେହି ମୁହୂର୍ତ୍ତରେ କାଗଜଟିକୁ ଟାଣି ବାହାର କରି ଆଣିବାକୁ ଯାଉଥିଲା। କିନ୍ତୁ ପୁଣି ସେ ଆତ୍ମସମ୍ଭରଣ କରିନେଲା। ନା, ବର୍ତ୍ତମାନ ପଟ୍ ଭିତରୁ କାଗଜ ବାହାର କରିବାର ସମୟ ନୁହେଁ, ଯଦି କାଗଜ ଖଣ୍ଡିକ କୌଣସି ଗୋପନ ବାର୍ତ୍ତା ବହନ ବହନ କରିଆସିଥାଏ।

ରଜନୀଗନ୍ଧା ସତର୍କ ଦୃଷ୍ଟି ମେଲି ଘରର ଚାରିଆଡ଼କୁ ଥରେ ଚାହିଁଲା । ଦୁଆର ଝରକା ସବୁ ବନ୍ଦ। ତଥାପି କିଏ ଜାଣେ କାହାର ସତର୍କ ଦୃଷ୍ଟି କେଉଁ ଫାଙ୍କରେ ତାକୁ ଲକ୍ଷ୍ୟ କରୁଛି!! ଏ ଶିକ୍ଷା ତା'ର ଅତୀତର। ଦଳ ପାଇଁ ନାନା ଶିକ୍ଷା ସେମାନଙ୍କୁ ଦିଆ ହୋଇଥିଲା ଅତୀତରେ। ଆଜି ନିଜ ପାଇଁ ସେଇ ଶିକ୍ଷା ରଜନୀଗନ୍ଧା କାମରେ ଲଗାଇଲା। କାଗଜଟି ସେ ପଟ୍ ଭିତରୁ ଟାଣିଲା ନାହିଁ। ଘୋଡ଼ଣି ବନ୍ଦ କଲା। ସ୍ୱାଭାବିକ ଭାବରେ

ପଟ୍‌ରୁ କଫି ଢାଳିଲା କପ୍‌ରେ। ଧୂଆଁ ଉଠୁଥିଲା। ରଜନୀଗନ୍ଧା କଫି ପିଇଲା ଅତି ସ୍ୱାଭାବିକ ଭଙ୍ଗୀରେ।

ଅତୀତରେ ଏକ ପଟ୍‌ଟି ଥରେ ତାକୁ ମହାବିପଦରୁ ରକ୍ଷା କରିଥିଲା। ସେ ତାଙ୍କ ନିଜ ଘର ଭିତରେ। ଜଣେ ଆଗନ୍ତୁକ ଆସିଥିଲେ ଜୟନ୍ତ ସଙ୍ଗରେ ଦେଖା କରିବା ପାଇଁ। ସେ ଅନ୍ୟ ଶିବିରରେ ଲୋକ। ସେ କିନ୍ତୁ ଅଙ୍କଲ ଦୈତ୍ୟାୟନଙ୍କ ଜାଲ ପରିଚୟପତ୍ର ଧରି ଆସିଥିଲା ଜୟନ୍ତକୁ ସଂଗରେ ଧରିଯିବା ପାଇଁ। ଜୟନ୍ତ, ରଜନୀଗନ୍ଧା ଓ ଆଗନ୍ତୁକ ତିନିଜଣ ବସି କଥାବାର୍ତ୍ତା ହେଉଥିଲେ ତାଙ୍କ ଡ୍ରଇଂ ରୁମ୍‌ରେ। ଖିଆପିଆ ପର୍ବ ଶେଷକରି ଜୟନ୍ତ ପ୍ରସ୍ତୁତ ହେଉଥିଲା ଆଗନ୍ତୁକ ସହିତ ବାହାରିବା ପାଇଁ। ସେତିକିବେଳେ ପରିଚାରିକା ନୀହାରିକା ଏଇ ପଟ୍‌ଟିରେ କଫି ଧରି ଆସି ପହଞ୍ଚିଲା। ରଜନୀଗନ୍ଧା କଫି ପ୍ରସ୍ତୁତ କରିବା ପାଇଁ ପଟ୍‌ର ମୁହଁ ଖୋଲି ଦେଖିଲା, ଦୁଧ କୋଠରିଟି ପୂର୍ଣ୍ଣ, କିନ୍ତୁ ଚିନି କୋଠରିରେ ଖଣ୍ଡିଏ ସଂକେତପତ୍ର। ସେ କପ୍ ଆଣିବା ବାହାନାରେ ଉଠି ଚାଲିଗଲା ଅନ୍ୟ କୋଠରିକୁ। ସଂକେତପତ୍ରଟି ଖୋଲି ଦେଖିଲା, ଏହି ଲୋକଠାରୁ ସାବଧାନ ରହିବା ପାଇଁ ଦଳର ଜଣେ ସତର୍କ କରାଇ ସଂକେତପତ୍ର ପଠାଇଛି। ପରେ ଜଣାଗଲା ଯେ ଜୟନ୍ତକୁ ହତ୍ୟା କରିବା ପାଇଁ ଅନ୍ୟ ଶିବିରରୁ ଚକ୍ରାନ୍ତ ହୋଇଥିଲା।

ଆଜି ପୁଣି ସେଇ ପଟ୍‌ର ଖାଲି କୋଠରିଟିରେ ଖଣ୍ଡିଏ ସାଦା କାଗଜ ଦେଖି ରଜନୀଗନ୍ଧା ଚିନ୍ତିତ ହୋଇପଡ଼ିଥିଲା। ସେଇ କାଗଜ ଖଣ୍ଡିକ ନିଶ୍ଚୟ ତା' ପାଇଁ କୌଣସି ଗୁପ୍ତବାର୍ତ୍ତା ବହନ କରି ଆସିଛି। କିନ୍ତୁ ଏଇ ପରିବେଶରେ, ମୁକ୍ତଗୃହରେ ସେଇଟିକୁ ସେ ଖୋଲି ପଢ଼ିବା ଉଚିତ୍ ହେବନାହିଁ।

ରଜନୀଗନ୍ଧା ଧୀରେ ଧୀରେ କଫି କପ୍ ନିଃଶେଷ କଲା। କ୍ଷଣକ ପୂର୍ବର କ୍ଳାନ୍ତି ତା'ଦେହ ମନରୁ ଅପସରି ଯାଇଥିଲା। କଫି ପଟ୍ ଭିତରେ ଥିବା ସେଇ ସାଦା କାଗଜ ଖଣ୍ଡିକ ତା' ଦେହ ମନରେ ଉତ୍ତେଜନା ସୃଷ୍ଟି କରି ସାରିଥିଲା।

ନିଃଶେଷିତ କଫି କପ୍‌ଟି ଟେବୁଲ୍ ଉପରେ ରଖି ଦେଇ ରଜନୀଗନ୍ଧା ଆଉଥରେ ଘରର ଚାରିଆଡ଼କୁ ଚାହିଁଲା। ନା, ନୂଆଘଟଣା କିଛି ଘଟିନାହିଁ। ଧୀରପଦ ଚାଳି ସେ ଯାଇ ସୁଇଚ୍ ଅଫ୍ କଲା। ନିବିଡ଼ ଅନ୍ଧକାର। ରଜନୀଗନ୍ଧା ସ୍ଥିର ହୋଇଯାଇ କିଛି ସମୟ ବିଛଣା ଉପରେ ବସି ରହିଲା। ସବୁ ଆଡ଼ ନୀରବ ନିସ୍ତବ୍ଧ। ଆହୁରି କିଛି ସମୟ ଅତିବାହିତ ହୋଇଗଲା। ଏଥର ରଜନୀଗନ୍ଧା ଅତି ସନ୍ତର୍ପଣରେ ଉଠିଲା ବିଛଣା ଉପରୁ। ଯେଉଁ ଟେବୁଲ୍ ଉପରେ କଫି ପଟ୍‌ଟି ଥୁଆ ହୋଇଥିଲା, ଧୀରପାଦ ଚାଳି ସେଇଠାକୁ ଗଲା। ଅନ୍ଧକାର ଭିତରେ ଅଣ୍ଡାଳି ଅଣ୍ଡାଳି କଫି କପ୍‌ର ଘୋଡ଼ଣି ଖୋଲିଲା। ଭିତରେ ଥିବା ସାଦାକାଗଜ ଖଣ୍ଡିକ ଆଣି ପୁଣି କଫି ପଟ୍ ଉପରେ ଘୋଡ଼ଣୀଟି ଘୋଡ଼େଇ ପାଦ

ଚିପି ଚିପି ଫେରିଆସିଲା ଖଟ ଉପରକୁ। ଏହାପରେ ସେ କାଗଜ୍‌ଟି ଖୋଲିବ ଯାଇ ବାଥ୍ ରୁମ୍‌ରେ। ବାଥ୍‌ରୁମ୍ ଭିତରେ ନିଶ୍ଚୟ ବାହାରି ସତର୍କ ଦୃଷ୍ଟି ସଜାଗ ହୋଇ ରହିନଥିବ।

ରଜନୀଗନ୍ଧା ଆହୁରି କିଛିସମୟ ସେଇ ଅନ୍ଧକାର ଭିତରେ ନୀରବରେ ବସିରହିଲା। ତା'ପରେ ଧୀରେ ଧୀରେ ଚାଲିଲା ସେ ବାଥ୍‌ରୁମ୍ ଆଡ଼େ। ବାଥ୍‌ରୁମ୍‌ର କବାଟ ଖୋଲି ଲାଇଟ୍ ଜଳାଇ ଭିତରୁ କବାଟ ବନ୍ଦ କଲା।

ସର୍ବପ୍ରଥମେ କଫି ପଟ୍‌ରୁ ଆଣିଥିବା କାଗଜ ଖଣ୍ଡିକ ଖୋଲି ପଢ଼ିଲା। କାହାର ଲେଖା ଏ? ଗୌତମ, ଗୌତମ ଲେଖିଛି ତାକୁ।

ମା,

ମୋ ପାଇଁ ତମେ ବିଶେଷ ଚିନ୍ତା କରିବନାହିଁ। ମୋତେ ଏମାନେ ଯେଉଁଥିପାଇଁ ହରଣ କରି ଆଣିଛନ୍ତି ମୁଁ ଜାଣି ସାରିଲିଣି। ତମେ ବି ଏଠାକୁ ଆସିଲଣି। ମୋତେ ଯେ ସହଜରେ ତମ ସହିତ ଦେଖା କରାଇବେ ନାହିଁ, ସେ କଥା ମୁଁ ଜାଣି ସାରିଲିଣି। ଅଙ୍କଲ କିନ୍ତୁ ମୋତେ ଭଲରେ ରଖିଛନ୍ତି। ସେ ତମକୁ ଯେଉଁ ଉଦ୍ଦେଶ୍ୟରେ ଆଣିଛନ୍ତି, ତମେ ଯଦି ତାଙ୍କ କଥାରେ ରାଜି ହୋଇଯାଅ ସେ ମୋତେ ଛାଡ଼ିଦେବେ। କିନ୍ତୁ ମା, ସେ ତମକୁ କିଛି ଅନ୍ୟାୟ କଥା କରିବାକୁ କହିଲେ, ତମେ ରାଜି ହେବନାହିଁ। ମୋ ପାଇଁ ଚିନ୍ତା କରିବ ନାହିଁ। ମୋତେ ମାଉସୀ ସାହାଯ୍ୟ କରୁଛନ୍ତି। ମୁଁ ନିଜେ ଏଠୁ ଉଧୁରିବାର ବାଟ କରୁଛି। ତମ ସହିତ ଦେଖା କରିବାର ଚେଷ୍ଟା କରୁଛି। ତମେ ମୋ ପାଇଁ ବ୍ୟସ୍ତ ହେବନାହିଁ। ଆଜି ପରି ମୋ ଖବର ତମେ ପ୍ରତିଦିନ ପାଇବ। ଗୌତମ।

ରଜନୀଗନ୍ଧା ଏତେଟା ଆଶା କରିନଥିଲା। ଚିଠିଟି ପଢ଼ି ତା'ର ସମଗ୍ର ଦେହରୁ ଝାଳ ବୋହିଗଲା। ଗୌତମ ଯେ ନିଜେ ନିଜକୁ ବଞ୍ଚାଇବା ପାଇଁ ପ୍ରସ୍ତୁତ ହୋଇଛି, ସେ କଥା ସେ ଚିନ୍ତା କରିପାରୁନଥିଲା। କୋଉ ମାଉସୀ ଗୌତମକୁ ସାହାଯ୍ୟ କରୁଛି? ସେଦିନ ଯିଏ ଫୋନ୍‌ରେ ଗୌତମ କଥା କହୁଥିଲା! କିନ୍ତୁ କିଏସେ ସେ? ନିଶ୍ଚୟ କେହି ତା'ର ପରିଚିତ ଲୋକ ହୋଇଥିବ। ହେ ଭଗବାନ! ତୁମେ ହିଁ ଭରସା। ରଜନୀଗନ୍ଧା ହାତଯୋଡ଼ି ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା। ଚିଠିଟି ଆଉଥରେ ଭଲ କରି ପଢ଼ିଲା। ତା'ପରେ ଚିରି, ଟିକି ଟିକି କରି ପାଇଖାନା ଭିତରେ ପକାଇ ଫ୍ଲସ ଟାଣିଦେଲା।

ଏଥର ସେ ନିଶ୍ଚିନ୍ତ ମନରେ ଫେରି ଆସିଲା ବିଛଣା ଉପରକୁ। ଗୌତମର ସେ ଖବର ପାଇଛି। ଗୌତମ ଭଲ ଅଛି। ଆଉ ତା'ର ଚିନ୍ତା କ'ଣ। ଅଙ୍କଲ ଦୈତ୍ୟାୟନ ତାକୁ ଯଦି ଦଳରେ ମିଶି କାମ କରିବା ପାଇଁ କହନ୍ତି ଦେଖାଯିବ। ସେ ବେଳ ଆସୁ।

ରଜନୀଗନ୍ଧା ଶାନ୍ତ ମନରେ ଶୋଇବାକୁ ଯାଉଥିଲା। କିନ୍ତୁ ବାହାରୁ କବାଟରେ କିଏ ନକ୍ କରିବାରେ ସେ ଶୁଣିଲା। ଏତେ ରାତିରେ କିଏ ପୁଣି ଆସିଲା? ଅନିଚ୍ଛା ସତ୍ତ୍ୱେ ରଜନୀଗନ୍ଧା ବିଛଣାରୁ ଉଠିଲା। ଲାଇଟ୍ ଜଳେଇଲା। ଦରଜା ପାଖରେ ପହଞ୍ଚି ପ୍ରଶ୍ନ କଲା: କିଏ?

: ମୁଁ, ଅଙ୍କଲ ଦୈତ୍ୟାୟନ। ତୁ ଘରର ଲାଇଟ୍ ବନ୍ଦ କରି ଦରଜା ଖୋଲି ଦେ।

ରଜନୀଗନ୍ଧା ସେ ଗମ୍ଭୀର ଓ ତୀକ୍ଷ୍ଣ ସ୍ୱରକୁ ଅବଜ୍ଞା କରିପାରିଲା ନାହିଁ। ତା'ଦେହ ସାରା କିପରି ଏକ ଶୀତଳ ପ୍ରବାହ ଖେଳିଗଲା। ସେ ଧୀରେ ଧୀରେ ଯାଇ ପ୍ରଥମେ ଘରର ଆଲୋକ ନିଭେଇଲା। ତା' ପରେ ଗଲା ଦରଜା ଖୋଲିବାକୁ। ଠକ୍ କରି ଘରର ଦରଜା ଖୋଲିଯିବା ମାତ୍ରକେ ଏକ ଛାୟାମୂର୍ତ୍ତି ଅଂଧକାର ଭିତରେ ଆଗେଇଆସିଲା। ରଜନୀଗନ୍ଧା ହାତଗୋଡ଼ କିପରି ଶୀତଳ ହୋଇ ଆସୁଥିଲା। ସେ ତା'ର ପରବର୍ତ୍ତୀ କର୍ତ୍ତବ୍ୟ ନିର୍ଦ୍ଧାରଣ କରିପାରୁନଥିଲା।

ଛାୟାମୂର୍ତ୍ତିଟି ଅନ୍ଧକାର ଭିତରେ ଆଗେଇ ଯାଇ ଗୋଟିଏ ଚେଆର ଦଖଲ କରିବସିଲା। ରଜନୀଗନ୍ଧା କଂପିତ ପଦରେ ଆସି ଟେବୁଲ ପାଖରେ ଠିଆ ହେଲା।

ଛାୟାମୂର୍ତ୍ତିଟି କହିଲା: ବହୁତ ବର୍ଷ ପରେ ମୁଁ ତୋର ସନ୍ଧାନ ପାଇଛି ରଜନୀଗନ୍ଧା। ଆଗ ଅପେକ୍ଷା ଦଳ ମୋର ଅଧିକ ଶକ୍ତିଶାଳୀ। ମୁଁ ଚାହେଁ ଏଠାରେ ଗୋଟିଏ କେନ୍ଦ୍ର ଖୋଲିବା ପାଇଁ। ସେହି ଅନୁସାରେ ସମସ୍ତ ଆୟୋଜନ ଶେଷ କରିସାରିଛି। ଏଠାକାର କାର୍ଯ୍ୟକ୍ରମ ପରିଚାଳନା ପାଇଁ କେନ୍ଦ୍ରମଣି ରୂପେ, ମୁଁ ତତେ ସ୍ଥାପନା କରିବାକୁ ଚାହେଁ। ମୋର ବିଶ୍ୱାସ ଅତୀତରେ ତୋତେ ଯେଉଁ ଶିକ୍ଷା ମୁଁ ଦେଇଛି, ସେହି ଶିକ୍ଷା ଫଳରେ ଏଠାକାର କେନ୍ଦ୍ରଟି ତୁ ସୁଚାରୁ ରୂପେ ପରିଚାଳନା କରିପାରିବୁ।

ଛାୟାମୂର୍ତ୍ତିର କଥା ଶୁଣି ରଜନୀଗନ୍ଧାର ଗୋଡ଼ ହାତ କମ୍ପୁଥିଲା। ସେ ବହୁ କଷ୍ଟରେ ଚେଆର ଉପରେ ଭରା ଦେଇ ଠିଆ ହୋଇଥିଲା। ତଣ୍ଟିରୁ ଛେପ ଶୁଖିଯାଇଥିଲା। ମୁହଁରୁ ଉତ୍ତର ବାହାରୁ ନଥିଲା।

ଛାୟାମୂର୍ତ୍ତିଟି ପୁଣି କହିଲା: ଏ ସମ୍ବନ୍ଧରେ ମୋତେ ତୁ ପ୍ରତିଶ୍ରୁତି ଦେଲେ, ମୁଁ ଗୌତମକୁ ମୁକ୍ତ କରିଦେବି। ସେ ମୁକ୍ତ ଆଲୋକରେ ଚଲାବୁଲା କରିବ। ତା'ର କୌଣସି ବନ୍ଧନ ରହିବ ନାହିଁ। ସେ ବି କିଛି ଜଣିପାରିବ ନାହିଁ। ତୁ କାମ କରିଯିବୁ। ଅବସର ସମୟରେ ଗୌତମ ସହିତ ହସି ଖେଳି ସମୟ କଟାଇବୁ। ତୁ ବର୍ତ୍ତମାନ ଯେଉଁ ଘୃଣ୍ୟ ଜୀବନଯାପନ କରୁଛୁ, ତା'ଠାରୁ ଏ ଜୀବନ ତୋ ପାଇଁ ବହୁ ସମ୍ମାନୀୟ ହେବ।

ତଥାପି ରଜନୀଗନ୍ଧା ନୀରବରେ ଠିଆ ହୋଇଥିଲା।

ଛାୟାମୂର୍ତ୍ତିଟି କହିଲା: ତୁ ମୋତେ କଥା ଦିଏ ରଜନୀଗନ୍ଧା। ତୁ ଯଦି ମୋ ପ୍ରସ୍ତାବରେ

ରାଜି ହେଉ, ତେବେ ମୁଁ ନିଶ୍ଚିନ୍ତ ହେବି। ମୋତେ ଦୁଇଦିନ ପରେ ଗୋଟିଏ ଜରୁରୀ କାମରେ ବାହାରକୁ ଚାଲି ଯିବାକୁ ହେବ। ଏଠାରେ କେତେଗୁଡ଼ିଏ ଲାଭଜନକ କାମ ହାତକୁ ଆସୁଛି। କିନ୍ତୁ ପରିଚାଳକ ଅଭାବରୁ ତାହା କାର୍ଯ୍ୟକାରୀ ହୋଇପାରୁନାହିଁ। ମୋତେ ଏ ଦୁଇଦିନ ଭିତରେ ଏହି ସଂସ୍ଥାର ସୁପରିଚାଳନାର ଗୋଟିଏ ବ୍ୟବସ୍ଥା କରି ଚାଲିଯିବାକୁ ହେବ। ତେଣୁ ହାତରେ ସମୟ ଅତି ଅଳ୍ପ। ତୋ ସମ୍ମତି ଉପରେ ସବୁ ନିର୍ଭର କରୁଛି।

ଏଥର ରଜନୀଗନ୍ଧା ନିଜକୁ ଆଉ ସମ୍ଭାଳି ରଖି ନ ପାରି ଧୀରେ ଧୀରେ ସାମ୍ନା ଚେଆରଟା ଉପରେ ବସିପଡ଼ିଲା। ତା'ର ମନେ ହେଉଥିଲା, ଆଉ କିଛି ସମୟ ପରେ ସେ ମରିଯିବ।

ତଥାପି ଛାୟାମୂର୍ତ୍ତିଟି ରଜନୀଗନ୍ଧାକୁ କହି ଚାଲିଥିଲା,

: ମୁଁ ଜାଣେ ରଜନୀଗନ୍ଧା, ଜୀବନର ବହୁ ଘାତ ପ୍ରତିଘାତ ସହି ଗୌତମକୁ ତୁ ମଣିଷ କରୁଛୁ। ଗୌତମ ତୋର ପ୍ରାଣ। ଗୌତମ ଛଡ଼ା ତୁ ବଞ୍ଚିପାରିବୁ ନାହିଁ। ତୋର ସବୁ ସମ୍ବାଦ ମୁଁ ଟିକି ନିଖି କରି ସଂଗ୍ରହ କରିଛି। ତୁ ତ ମୋତେ ଜାଣୁ, ମୋର ଅସାଧ୍ୟ କିଛି ନାହିଁ। ଯାହା ମୁଁ ଚାହିଁବି, ତାହା ମୁଁ କରିବି। ତେଣୁ ତୁ ଯଦି ମୋ ପ୍ରସ୍ତାବରେ ରାଜି ନ ହେଉ, ତା'ହେଲେ ପରିଣତି କ'ଣ ହେବ ମୋଠାରୁ ତୁ ଅଧିକ ଜାଣିଥିବୁ। ତା'ଛଡ଼ା ତୁ ମୋ ପ୍ରସ୍ତାବରେ ଅସମ୍ମତ ହେବୁ ବା କାହିଁକି? ଏତେବଡ଼ ଗୋଟାଏ ବିଶାଳ ସହରରେ ଆମ କେନ୍ଦ୍ରରେ ତୁ ହେବୁ କେନ୍ଦ୍ରମଣି। ତୋର ସମ୍ମାନ, ତୋର ପ୍ରତିପତ୍ତି କଥା ତୁ ଚିନ୍ତା କରିପାରୁଛୁ? ଆଶା କରୁଛି, ମୋ ପ୍ରସ୍ତାବରେ ଅସମ୍ମତ ହେବୁନାହିଁ।

ଏକ ସମୟରେ ଜୟନ୍ତ ଆଉ ତୁ, ତମେ ଦୁଇଜଣ ଥିଲ ମୋର ଡାହାଣ ହାତ। ଜୟନ୍ତକୁ ହତ୍ୟା କରି ମୁଁ ଆଜି ଅନୁତାପ କରୁଛି। ମୋ ଜୀବନର ସେ ଗୋଟାଏ ବିରାଟ ଭୁଲ୍ ହୋଇଛି। ଜୟନ୍ତ ଥିଲେ ଏଠା କେନ୍ଦ୍ରର ପରିଚାଳନା ପାଇଁ ମୋତେ ଚିନ୍ତା କରିବାକୁ ପଡ଼ନ୍ତା ନାହିଁ। ଆଗ ଅପେକ୍ଷା ଏବେ ବି ସମୟର ସ୍ରୋତ ଅନେକଟା ବଦଳି ଯାଇଛି। ଶାସନ କ୍ଷେତ୍ରର ବହୁ ଅଦଳବଦଳ ହୋଇଯାଇଛି। ତେଣୁ ସବୁ ଆଡ଼କୁ ଦୃଷ୍ଟି ଦେଇ ଚଳିବାକୁ ହେଉଛି। ମୋର ସିଦ୍ଧାନ୍ତକୁ ତୁ ସମ୍ମାନ ଦେବୁ ଆଶା କରୁଛି।

: କିନ୍ତୁ ଅଙ୍କଲ?

ବହୁ ଚେଷ୍ଟା କରି ରଜନୀଗନ୍ଧା କ'ଣ କହିବାକୁ ଯାଇ କହିପାରିଲା ନାହିଁ।

ଛାୟାମୂର୍ତ୍ତିଟି କହିଲା: ମୁଁ ତୋର କୌଣସି ଆପତ୍ତି ଅଭିଯୋଗ ଶୁଣିବି ନାହିଁ ରଜନୀଗନ୍ଧା। ମୋ ସିଦ୍ଧାନ୍ତର ମହତ୍ୱ ତୋତେ ଦେବାକୁ ହିଁ ହେବ। ନ ହେଲେ ଗୌତମକୁ ତୁ ଆଉ ଫେରି ପାଇବୁ ନାହିଁ। ମୁଁ ଆଜି ଯାଉଛି। ତୁ ରାତି ଭରି ଚିନ୍ତା କର। ତୋର ମୋ ପ୍ରସ୍ତାବରେ ଅରାଜି ହେବାର କିଛି କାରଣ ତ ମୁଁ ଖୋଜି ପାଉନାହିଁ। ବର୍ତ୍ତମାନ ପ୍ରଥମେ

ପ୍ରଥମେ କାମ କରିବାକୁ ଟିକିଏ ଅସୁବିଧା ହେବ। ଦିନ କେଇଟା ପରେ ଯେତେବେଳେ ତୁ ତୋର ପୂର୍ବ ପ୍ରେରଣା ଫେରି ପାଇବୁ, ସେତେବେଳେ ଦେଖିବୁ ସବୁ କାମ ଅତି ସହଜରେ ହୋଇଯାଉଛି। ଏଠାରେ ତୋତେ ସହଯୋଗ କରିବା ପାଇଁ ମୁଁ ଭଲ ଲୋକ ଦେବି। ତୋତେ ବିଶେଷ କିଛି କଷ୍ଟ ହେବନାହିଁ।

ଛାୟାମୂର୍ତ୍ତିଟି ଉଠି ଠିଆ ହେଲା। ଏଥର ସେ ଚାଲିଯିବ। ରଜନୀଗନ୍ଧା ମନ ଭିତରେ ବହୁ ଶକ୍ତି ସଞ୍ଚୟ କରି କହିଲା: ଅଙ୍କଲ, ମୋ ଗୌତମ...

: ଗୌତମ ଅଛି, ଭଲରେ ଅଛି। ଏବଂ ଖୁସିରେ ଅଛି। ଗୌତମ ପାଇଁ ତୁ ଚିନ୍ତା କରନାହିଁ। ଦଳରେ ଯୋଗ ଦେବାର ପ୍ରତିଶ୍ରୁତି ନ ପାଇଲା ପର୍ଯ୍ୟନ୍ତ ଗୌତମ ସମ୍ବନ୍ଧରେ କୌଣସି କଥା ତୁ ଜାଣିପାରିବୁ ନାହିଁ। ମୁଁ ପୁଣି କାଲି ଆସିବି। ଯେ କୌଣସି ମୁହୂର୍ତ୍ତରେ। ଭାବିଚିନ୍ତି ପ୍ରସ୍ତୁତ ହୋଇଥିବୁ। ମୁଁ ଆସୁଛି। ଦରଜା ଦେଇ ତୁ ନିଶ୍ଚିନ୍ତରେ ଶୋଇପଡ଼।

: କିନ୍ତୁ ଅଙ୍କଲ !

ରଜନୀଗନ୍ଧା ଛାୟାମୂର୍ତ୍ତିର ଗୋଡ଼ ଦୁଇଟି ଜାବୁଡ଼ି ଧରି ଲୋଟି ପଡ଼ିଲା।

ଛାୟାମୂର୍ତ୍ତିଟି ଅଟକିଗଲା। ଫେରିଆସି ଚେଆରରେ ବସିଲା। କହିଲା: କ'ଣ କହ। ଖୋଲାଖୋଲି ଭାବରେ ମୁଁ ତୋର ସବୁ କଥା ଶୁଣିବାକୁ ଚାହେଁ। ଭୟର କିଛି କାରଣ ନାହିଁ। ତୁ କହ।

: ମୁଁ କିନ୍ତୁ ମୁକ୍ତି ଚାହେଁ ଅଙ୍କଲ। ଆପଣ ମୋତେ ମୁକ୍ତି ଦିଅନ୍ତୁ। ଯେଉଁ କାମରୁ ମୁଁ ଥରେ ବିଦାୟ ନେଇ ଚାଲିଆସିଛି, ସେ କାମରେ ମୋତେ ଆଉ ନିଯୁକ୍ତି ଦିଅନ୍ତୁ ନାହିଁ, ମୋତେ କ୍ଷମା କରନ୍ତୁ ଅଙ୍କଲ। ମୋର ଗୌତମକୁ ମୋତେ ଫେରେଇ ଦେଇ ମୋତେ ମୁକ୍ତି ଦିଅନ୍ତୁ।

ଛାୟାମୂର୍ତ୍ତିଟି କେତୋଟି ମୁହୂର୍ତ୍ତ ଚେୟାର ଉପରେ ନୀରବରେ ବସିରହିଲା।

କହିଲା: କିନ୍ତୁ କାହିଁକି? ମୁକ୍ତି ତୁ କାହିଁକି ଚାହୁଁଛୁ? ତୁ ଚାହୁଁ ଗୌତମକୁ ମଣିଷ କରିବା ପାଇଁ, ସେ ଦାୟିତ୍ୱ ମୁଁ ନେଉଛି। ତୁ ମୋତେ ବିଶ୍ୱାସ କରିପାରୁନାହୁଁ?

ରଜନୀଗନ୍ଧାର ଉତ୍ତର ଦେବାକୁ ବୋଧହୁଏ ଆଉ ଭାଷା ନ ଥିଲା। ସେ କେବଳ କଇଁ କଇଁ ହୋଇ କାନ୍ଦୁଥିଲା। ଛାୟାମୂର୍ତ୍ତିଟିର କଠୋର ହୃଦୟ ସେ କାନ୍ଦଣାରେ ତରଳିଲା ନାହିଁ। ସେ ଉଠି ଠିଆ ହେଲା। ଦୃଢ଼ କଣ୍ଠରେ କହିଲା: ତୁ ତ ଜାଣୁ ରଜନୀଗନ୍ଧା, ମୋ ସିଦ୍ଧାନ୍ତରେ ମୁଁ ସବୁବେଳେ ଅଟଳ ଥାଏ। ତୁ ବୃଥା ଚିନ୍ତାରେ ସମୟ ନଷ୍ଟ କରୁଛୁ। କାଲି ମୁଁ ଆଉ ତୋ'ଠାରୁ ପ୍ରତିଶ୍ରୁତି ଶୁଣିବାକୁ ଆସିବି ନାହିଁ। କାଲି ଦଶଟା ବେଳକୁ ତୁ ମୋର କାର୍ଯ୍ୟର ନିର୍ଦ୍ଦେଶ ପାଇବୁ। ସେହି ଅନୁସାରେ ତୋତେ କାର୍ଯ୍ୟ କରିବାକୁ ହେବ। ତୁ ତ ଜାଣୁ କାହାରି ଆଖିର ଲୁହ ମୋ ପଥର ମନକୁ ତରଳାଇ ପାରେ ନାହିଁ। ମୁଁ ତରଳେ

କାର୍ଯ୍ୟର ସାଫଲ୍ୟରେ। ମୋ ନିର୍ଦ୍ଦେଶ, ଅନୁସାରେ କାର୍ଯ୍ୟ କରି ସଫଳତା ଅର୍ଜନ କଲେ ନିଶ୍ଚୟ ପୁରସ୍କୃତ ହେବୁ। କାଲି ଦଶଟା ବେଳକୁ ପ୍ରସ୍ତୁତ ହୋଇ ରହିଥିବୁ। ମୁଁ ଆସୁଛି।

ଛାୟାମୂର୍ତ୍ତିଟି ଆଉ ମୁହୂର୍ତ୍ତେ ଅପେକ୍ଷା କଲା ନାହିଁ। ଝଡ଼ବେଗରେ ଘରୁ ବାହାରି ଚାଲିଗଲା।

ରଜନୀଗନ୍ଧା କାଠ ପାଲଟି ଯାଇଥିଲା । ସେ ତା'ର ଚେତନାଶକ୍ତି ହରାଇଥିଲା। ସେ ପୁଣି ଫାନ୍ଦରେ ଗୋଡ଼ ପୂରାଇଛି, ଆଉ ତା'ର ନିସ୍ତାର ନାହିଁ।

ଠିକ୍ ଘଡ଼ିରେ ଦଶଟା ବାଜିବା ବେଳକୁ ଯମଦୂତ ପରି ଏକ ବିଶାଳକାୟ ଲୋକ ଘର ଭିତରେ ପ୍ରବେଶ କଲା। ସେ କହିଲା: ମୋନା ଭାର୍ଗବ। ଅଙ୍କଲ ମୋତେ ପଠାଇଛନ୍ତି।

ରଜନୀଗନ୍ଧା ଏହା ଭିତରେ ନିଜର ନିତ୍ୟକର୍ମ ଶେଷ କରି ପ୍ରସ୍ତୁତ ହୋଇ ଅପେକ୍ଷା କରିଥିଲା। କହିଲା: ମୁଁ ପ୍ରସ୍ତୁତ।

ଭାର୍ଗବ ରଜନୀଗନ୍ଧା ହାତକୁ ଆଟାଚି କେସ୍‌ଟିଏ ବଢ଼ାଇ ଦେଇ କହିଲା: ଅଙ୍କଲ ପଠାଇଛନ୍ତି। ଏହାରି ଭିତରେ ସବୁ ଅଛି। ଆପଣଙ୍କୁ ସହଯୋଗ କରିବା ପାଇଁ ମୁଁ ପାଖ ଘରେ ଅପେକ୍ଷା କରୁଛି। ଆପଣଙ୍କ ନିର୍ଦ୍ଦେଶ ପାଇବା ମାତ୍ରକେ ହୁକୁମ୍ ତାମିଲ୍ କରିବି।

ରଜୀନଗନ୍ଧା ଆଟାଚି କେସ୍‌ଟି ଭାର୍ଗବ ହାତରୁ ନେଲା। ଭାର୍ଗବ ପର ମୁହୂର୍ତ୍ତରେ ଘରୁ ବାହାରି ଚାଲିଗଲା। ରଜନୀଗନ୍ଧାର ହାତ ଥରୁଥିଲା। କିନ୍ତୁ ସେ ଶକ୍ତ ହାତରେ ଆଟାଚିକେସ୍‌ଟି ଖୋଲିଲା।

ଆଟାଚି ଭିତରେ ଗୋଟିଏ ନିଯୁକ୍ତିପତ୍ର। ଶହେଟଙ୍କିଆ ନୋଟ୍ ବଣ୍ଡିଲ୍ ଗୋଟିଏ। ଏବଂ ନାଲିକାଳିରେ ଲେଖା କେଇଧାଡ଼ି ଚିଠି।

ରଜନୀଗନ୍ଧା ଚିଠିଟି କାଢ଼ି ଆଣିଲା। ସେଇଟି ହୁକୁମ୍‌ନାମା। ଇତି ପୂର୍ବରୁ ବହୁଥର ସେ ପାଇଚି ସେହିପରି ପତ୍ର। ଠିକ୍ ସେମିତି। ସେହିପରି ଦସ୍ତଖତ୍, ସେହିପରି ସିଲ୍‌ଦିଆ। ସବୁ ଯେପରି ସେମିତି ଅଛି।

ଚାରିଧାଡ଼ି ଲେଖା।

ଏତଦ୍ଦ୍ୱାରା ନିର୍ଦ୍ଦେଶ ଦିଆହେଉଛି କି, ଆଜି ରାତି ୯ଟା ବେଳକୁ ଭାର୍ଗବ ସଙ୍ଗରେ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚିବାକୁ ହେବ। ଭାର୍ଗବ ଯଥା ସମୟରେ ସମସ୍ତ ବିବରଣୀ ଅବଗତ କରାଇବ ।

ରଜନୀଗନ୍ଧା ହୁକୁମ୍‌ନାମାଟିକୁ ସେଇ ଆଟାଚି ଭିତରେ ରଖି ବନ୍ଦ କରିଦେଲା। ରାତି ନଅଟା ବର୍ତ୍ତମାନ । ଦଶଘଣ୍ଟା ଡେରି ଅଛି। ସେତେବେଳେ ଯାହା କରିବାକୁ ହେବ ଦେଖାଯିବ। ବର୍ତ୍ତମାନର କଥା ବର୍ତ୍ତମାନ ଚିନ୍ତା କରାଯାଉ।

ରାତ୍ରିର ରଜନୀଗନ୍ଧା

ଖଟ ବାଡ଼ରେ ଥିବା କଲିଂବେଲ୍‌ର ସୁଇଚ୍ ଟିପିଲା। ପାଖ ଘରୁ ଭାର୍ଗବ ଆସି ସାମ୍‌ନାରେ ଠିଆ ହେଲା।

: ଭାର୍ଗବ !

: ଆଜ୍ଞା !

: ତମେ ମୋତେ ଚିହ୍ନିଛ ?

: ଆପଣ ଆମ ଦଳର ନେତ୍ରୀ।

: ଅନ୍ୟମାନେ ?

: ସମସ୍ତଙ୍କୁ ଜଣାଇ ଦିଆ ହୋଇଛି।

: ଆମର ଏ କେନ୍ଦ୍ରର ମେମ୍ବର ସଂଖ୍ୟା କେତେ ?

: ମୋତେ ଜଣାନାହିଁ। ହୁଏତ ଆପଣ ଯଥା ସମୟରେ ସମସ୍ତ କାଗଜପତ୍ର ପାଇବେ।

: ତମେ କେତେଦିନ ହେବ ଏଠାକୁ ଆସିଛ ?

: ପ୍ରାୟ ଏକମାସ ହେବ।

: କାମ ଦାମ କିମିତି ଚାଲିଛି ?

: ଏବେ ଚାଲିବ। ଆପଣ ଯୋଗ ଦେଲେଣି। ଏଥର କାମ ଆରମ୍ଭ ହେବ।

: ମୋ ପୂର୍ବରୁ କ'ଣ... ?

: ନା, ଏ କେନ୍ଦ୍ରରେ ଦଳପତି କେହି ନଥିଲେ।

: ହୁଁ, ତମେ ତା'ହେଲେ ମୋତେ ସାହାଯ୍ୟ କରିବା ପାଇଁ ଆସିଛ। ଭଲକଥା। ତମଭଳି ଉତ୍ସାହୀ ଯୁବକମାନେ ସହଯୋଗ ନ କରିଲେ ଦଳର କୌଣସି କାର୍ଯ୍ୟ ହେବା ସମ୍ଭବ ନୁହେଁ। ତମକୁ ଦେଖି ମୁଁ ଖୁସି ହେଲି ଭାର୍ଗବ। ତମେ ତା'ହେଲେ ରାତି ନଅଟା ବେଳକୁ ଆସ। ବର୍ତ୍ତମାନ ତ ଆଉ କରିବାର କିଛି ନାହିଁ।

ଭାର୍ଗବ ମଥା ନତ କଲା। କହିଲା: ଆପଣ ଯାହା କହିବେ। ଅଙ୍କଲ କିନ୍ତୁ କହିଥିଲେ ଆପଣଙ୍କ ପାଖେ ପାଖେ ରହିବାପାଇଁ। କାଳେ କେତେବେଳେ କ'ଣ ଦରକାର ପଡ଼ିପାରେ।

: ନା ମୋର ଏବେ କିଛି ଦରକାର ନାହିଁ। ରାତି ନଅଟାବେଳେ ତମେ ଆସିଲେ ଏକତ୍ର ମିଶି ଆମେ ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବା। ତା'ପରେ ତମ ସହିତ ମୋର ସଂପର୍କ।

ଭାର୍ଗବ ବିଦାୟ ନେଲା।

ରଜନୀଗନ୍ଧା ଶୋଇଲା ଯାଇ ଖଟ ଉପରେ। ବୋଧହୁଏ ସତ୍ୟବ୍ରତଙ୍କ କଥାରେ ପଡ଼ି ସେ ଏଠାକୁ ଆସିବା ଠିକ୍ ହେଲାନାହିଁ। ବର୍ତ୍ତମାନ ତା'ର ହାତପାଦରେ ଶିକୁଳୀ ପଡ଼ିଗଲା। ସେ ସଂପୂର୍ଣ୍ଣ ନ ଜାଣିଲେ ବି ଅନୁମାନ କରିପାରୁଛି, ଅଙ୍କଲ ଦୈତ୍ୟାୟନ ତାକୁ କାହିଁକି ଏଠାରେ ଦଳପତି ରୂପେ ନିଯୁକ୍ତି ଦେଉଛି। ନିଶ୍ଚୟ କୌଣସି କଠିନ କାର୍ଯ୍ୟ ସେ

ହାତକୁ ନେଇଛି। ପୂର୍ବରୁ ସେ କେତେଜଣ ଦଳପତିଙ୍କୁ ଦେଖିଛି। ଦଳପତି ନିର୍ବାଚିତ ହେବା ପରେ ସେମାନେ କରୁଣ ଆର୍ତ୍ତନାଦ କରିଛନ୍ତି। କେହି କେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି, ଆଉ କେହି କେହି ମୃତ୍ୟୁବରଣ କରିଛନ୍ତି। ଅଙ୍କଲ ଦୈତ୍ୟାୟନଙ୍କ ଦଳର ଦଳପତିମାନେ ଜୀବନମୃତ୍ୟୁ ସମସ୍ୟାରେ ସଦାଜର୍ଜରିତ ।

ରଜନୀଗନ୍ଧା ମରଣକୁ କେବେ ଭୟ କରିନାହିଁ। ଅତୀତରେ ସେ ସବୁଠାରୁ ଭୟଙ୍କର ପରିସ୍ଥିତିର ମୁକାବିଲା କରିବା ପାଇଁ ନିଜେ ନିଜେ ଆଗେଇ ଯାଇଛି। କିନ୍ତୁ ସେଦିନ ଆଉ ଆଜି ଭିତରେ ଆକାଶ ପାତାଳ ପ୍ରଭେଦ। ସେଦିନ ସେ ଥିଲା ସ୍ୱେଚ୍ଛାଚାରିଣୀ। ଆଜି ସେ ମା।

ଏ ପର୍ଯ୍ୟନ୍ତ ଅଙ୍କଲ ଦୈତ୍ୟାୟନଙ୍କର ଉଦ୍ଦେଶ୍ୟ ସେ ବୁଝିପାରୁନଥିଲା। ପୃଥିବୀରେ ଏତେ ଲୋକ ଥାଉ ଥାଉ ସେ କାହିଁକି ତାକୁ ଧରି ଆଣିଛି ଏଠାକୁ। ପୁଣି ମନଟାକୁ ତା'ର ପୂର୍ବ ପେଶାକୁ ଫେରେଇ ନେବାପାଇଁ ସେ ତା'ର ଅତୀତର ସମସ୍ତ ସ୍ମୃତିକୁ ଠୁଳ କରିଛି ଆଣି ଏଇ ଘର ଭିତରେ। ଅଦ୍ଭୁତ ଧୈର୍ଯ୍ୟ ଏଇ ଲୋକଟାର।

ରଜନୀଗନ୍ଧା ଏ ଘରେ ପାଦ ଦେବା ପରଠାରୁ ତା'ର କିପରି ମାନସିକ ପରିବର୍ତ୍ତନ ଘଟିଛି। ସେ ସ୍ଥିର ଭାବରେ କିଛି ଚିନ୍ତା କରି ପାରୁନାହିଁ। ତା'ର ଅନିଚ୍ଛାସତ୍ତ୍ୱେ ତା'ମନରେ ବିପରୀତ ଭାବନା ଢେଉ ଖେଳୁଛି। ତା'ର ପୂର୍ବ ପ୍ରବୃତ୍ତି ଧୀରେ ଧୀରେ ଜାଗ୍ରତ ହେଉଛି। କାଲି ରାତ୍ରିର ରଜନୀଗନ୍ଧାର ଆଜି ସୂର୍ଯ୍ୟୋଦୟ ପରେ ଅନେକ ପରିବର୍ତ୍ତନ ହୋଇଛି।

ସେ ହେବ ଦଳନେତ୍ରୀ । କାଲିପରି ଆଜି ଆଉ ପ୍ରତିବାଦ କରିବାର ସ୍ପୃହା ନାହିଁ। ଦଳନେତ୍ରୀ ହେବାର ଯେଉଁ ଉନ୍ମାଦନା, ରଜନୀଗନ୍ଧା ପ୍ରାଣରେ ଧୀରେ ଧୀରେ ଜାଗ୍ରତ ହୋଇଛି। ସବୁପରେ ଯେତେବେଳେ ଗୌତମ ଆସି ତା' ଆଖି ଆଗରେ ଠିଆ ହେଉଛି, ରଜନୀଗନ୍ଧା ଗୋଟିଏ ଅସହାୟା ଶିଶୁପରି କାନ୍ଦି ପକାଉଛି। ଗୌତମ। ତା' ପ୍ରାଣର ଗୌତମ। ଜୟନ୍ତର ଏକମାତ୍ର ସ୍ମୃତି।

କିନ୍ତୁ....

ହଠାତ୍ ରଜନୀଗନ୍ଧାର ଚିନ୍ତାଧାରା ଅଟକିଗଲା। ଜୟନ୍ତ କଥା ମନେପଡ଼ିଲେ ସବୁ ତା'ର ଗୋଳମାଳ ହୋଇଯାଏ। ଜୟନ୍ତ ତାକୁ କେତେ ଆପଣାର କରି ପାରିଥିଲା। ପ୍ରାଣର ଜୟନ୍ତ ତା'ର ! ଅକାରଣେ ବିନାଦୋଷରେ ଅଙ୍କଲ ତାକୁ ହତ୍ୟା କଲେ। ସେଇ ହତ୍ୟାକାରୀ ଆଜି ବି ନିର୍ବିଘ୍ନରେ ତାଙ୍କରିମାନଙ୍କ ଉପରେ ଅଧିପତ୍ୟ ବିସ୍ତାର କରି ବଞ୍ଚିରହିଛି। କିନ୍ତୁ କି ଅଧିକାରରେ ସେ ଜୟନ୍ତକୁ ହତ୍ୟା କରିପାରିଲା ?

ରଜନୀଗନ୍ଧାର ମନ ବିଦ୍ରୋହୀ ହୋଇଉଠିଲା।

ଅଙ୍କଲ ଦୈତ୍ୟାୟନ ତ ଜଣେ ମଣିଷ ! କିଏ ତାକୁ ଅଧିକାର ଦେଲା ଅନ୍ୟ ମଣିଷ

ଉପରେ ସେ ଅକଥନୀୟ ଅତ୍ୟାଚାର କରି ଯିବା ପାଇଁ ? ସେମାନେ ସମସ୍ତେ, ଯେଉଁମାନେ ଅତ୍ୟାଚାରିତ, ଯଦି ଏକତ୍ର ହୋଇ ପ୍ରତିରୋଧ କରନ୍ତେ, ତା'ହେଲେ କ'ଣ ଅତ୍ୟାଚାରୀ ଲୋକଟା ଆଉ ଆଗକୁ ବଢ଼ି ପାରନ୍ତା ?

ରଜନୀଗନ୍ଧାର ଭାବନାରେ ବାଧାଦେଲା ଆସି ନୀହାରିକା। ସେ ଖାଦ୍ୟ ସାମଗ୍ରୀ ଧରି ପ୍ରବେଶ କରିଛି। ମୁହଁରେ ତା'ର ହସ ଲାଗି ରହିଛି। କହିଲା: ଆସ ଗୋ ଦିଦି। ଦିନ ରାତି ଏତେ କ'ଣ ଭାବୁଛ ? ହାତୀ ତ ତମ ମୁଣ୍ଡରେ ସୁନା କଳସ ଢାଳିଛି।

ରଜନୀଗନ୍ଧା ହଠାତ୍ ଚମକି ଉଠିଲା। ନୀହାରିକା କ'ଣ କହୁଛି ? ହାତୀ ତା' ମୁଣ୍ଡରେ ସୁନା କଳସ ଢାଳିଛି।

: ତମେ ଦିଦି କାଲିଠାରୁ ଏଠାରେ ରାଣୀ ହେବ। ଏ ଗରିବ ନୀହାରକୁ ପାଶୋରି ଯିବ ନାହିଁ ଦିଦି। ତମରି ଖିଦ୍‌ମଦ୍ କରି ତ କାଳକ ଗଲା। ଆଉ କେଇଟା ଦିନ, କଟିଗଲେ ଯାଏ।

ରଜନୀଗନ୍ଧା କହିଲା: ତତେ କିଏ କହିଲା ! ମୁଁ ରାଣୀ ହେଉଛି।

ନୀହାରିକା ସେମିତି ହସି ହସି କହିଲା: କଥା କ'ଣ ଅଛପା ରୁହେ ଦିଦି। ତମେ ସିନା ସବୁ ପେଟରେ ପୂରେଇ ବସିଛ। ସମସ୍ତେ କ'ଣ ସବୁ କଥା ହଜମ କରିପାରନ୍ତି।

: ହଉ ଦେ, ଖାଇବାକୁ ଦେଲୁ। ଯିଏ ଯାହା କହୁଛି କହୁଥାଉ। କା' ମୁହଁରେ ତ ଆଉ ହାତ ଦେଇ ହେବନାହିଁ।

ନୀହାରିକା ଖାଦ୍ୟସାମଗ୍ରୀ ଗୋଟିକ ପରେ ଗୋଟିଏ ଟେବୁଲ ଉପରେ ସଜାଇ ରଖିଲା। ସେ ଆଜି ଖୁବ୍ ଫୂର୍ତ୍ତି ମନେ ହେଉଥିଲା।

ରଜନୀଗନ୍ଧା କହିଲା: ଆଚ୍ଛା ନୀହାର। ମୁଁ ଏଠାକୁ ଆସିଥିବା କଥା ସମସ୍ତେ ଜାଣିଲେଣି ?

: ଜାଣିଲେଣି ମାନେ ? ସମସ୍ତେ ଆନନ୍ଦରେ ନାଚୁଛନ୍ତି। ତମେ କୁଆଡ଼େ ଦଳନେତ୍ରୀ ହେଲେ ସମସ୍ତଙ୍କର ଖୁବ୍ ସୁବିଧା ହେବ।

: ସେମାନେ ସମସ୍ତେ କ'ଣ ମତେ ଚିହ୍ନିଛନ୍ତି ?

: ସମସ୍ତେ ନୁହେଁ, କିଛି କିଛି ଲୋକ ଚିହ୍ନନ୍ତି, ସେଇମାନେ ସମସ୍ତଙ୍କୁ ମତେଇ ସାରିଲେଣି।

: କେତେଲୋକ ଏଠି ଅଛନ୍ତି ନୀହାର ?

ନୀହାରିକା ହସିଲା, କହିଲା: ପୁଣି ସେଇ ପ୍ରଶ୍ନ ଦିଦି। ସେ ହିସାବ ଦେଲାଭଳି ସାମର୍ଥ ମୋର ଅଛି ?

ରଜନୀଗନ୍ଧା ଆଉ କିଛି ପଚାରିଲା ନାହିଁ। ନୀରବରେ ଖାଇବାକୁ ଆରମ୍ଭ କରିଦେଲା। ନୀହାରିକା ଠିଆ ହୋଇ ରହିଲା।

ଖାଉ ଖାଉ ହଠାତ୍ ରଜନୀଗନ୍ଧା ପଚାରିଲା: ତୁ ଗୌତମକୁ ଦେଖିଚୁ ?

: ଗୌତମ ! ଗୌତମ କିଏ ଦିଦି ?

: ଓଃ, ତୁ ତା'ହେଲେ ଦେଖିନାହୁଁ। ଠିକ୍ ଅଛି।

ରଜନୀଗନ୍ଧା ପୁଣି ନୀରବରେ ଖାଇବାକୁ ଲାଗିଲା। ସେ ବଡ଼ ଦୁଶ୍ଚିନ୍ତାରେ ପଡ଼ି ଯାଇଥିଲା। ଯାହାପାଇଁ ସେ ସବୁ ତ୍ୟାଗ କରି ଏଠାକୁ ଛୁଟି ଆସିଥିଲା, ତା'ର ଗନ୍ଧ ବି ସେ ପାଉନାହିଁ। ଅବଶ୍ୟ ଗୌତମର ନିଜ ହାତଲେଖା ଚିଠି ଖଣ୍ଡିଏ ସେ ଗତକାଲି ରାତିରେ ପାଇଛି। ସେଇ ଚିଠି ଖଣ୍ଡିକ ତ ସବୁ ନୁହେଁ। ତାକୁ ଉଦ୍ଧାର କରିବା ପାଇଁ ସେ ପୁଣି ଏଇ ଦଳରେ ମିଶିବାକୁ ବାହାରିଲାଣି। ଇଚ୍ଛା ନ ଥିଲେ ବି ଉପାୟ ନାହିଁ। ଅଙ୍କଲ ଦୈତ୍ୟାୟନକୁ ସେ ଚିହ୍ନିଚି। ତା' ପାଖରେ କଥାର ଖିଲାଫ୍ ମାନେ ନିଜର ସର୍ବନାଶ ଡାକି ଆଣିବା।

ଖିଆ ଶେଷ ହେବା ମାତ୍ରେ ନୀହାରିକା ବାସନପତ୍ର ଗୋଟେଇ ବାହାରିଗଲା। ରଜନୀଗନ୍ଧା ହାତରେ ଏଇକ୍ଷିଣା ଆଉ କିଛି କାମ ନାହିଁ। ରାତି ନଅଟାରେ ଭାର୍ଗବ ଆସିବ। ତା'ପରେ ସେ ଯିବ କୌଣସି ଏକ ଅଜ୍ଞାତ ସ୍ଥାନ୍‌କୁ। ସେଇଠି ତା'ର ଭାଗ୍ୟ ନିର୍ଦ୍ଧାରଣ ହେବ।

ନିଶ୍ଚୟ କୌଣସି ଗୁରୁତର କାର୍ଯ୍ୟର ଦାୟିତ୍ୱ ଅର୍ପଣ ପାଇଁ ତାକୁ ଏଠାକୁ ଅଣାହୋଇଛି। ଏପରି ଗୁରୁଭାର ଯାହା ସାଧାରଣତଃ କେହି ବହନ କିରବାକୁ ସମର୍ଥ ହେବନାହିଁ। ତାକୁ କିନ୍ତୁ ତାହା କରିବାକୁ ହେବ ଗୌତମ ମୁହଁକୁ ଚାହିଁ। ହୁଏତ ସେ କାର୍ଯ୍ୟ ହାସଲ କରିବାକୁ ଯାଇ ମୃତ୍ୟୁବରଣ କରିବାକୁ ବି ପଡ଼ିପାରେ। ସେ କ'ଣ ଅଙ୍କଲଙ୍କ ନିର୍ଦ୍ଦେଶ ବିରୁଦ୍ଧରେ ପ୍ରତିବାଦ କରିପାରିବ ? ପାରନ୍ତା ନାହିଁ କାହିଁକି ? ଅଙ୍କଲ ହାତ ମୁଠାରେ ତା' ଜୀବନ ନାଟିକା ମୁଠେଇ ବସିଛି। ଗୌତମ, ଗୌତମ। ବାବୁରେ... ....

ରଜନୀଗନ୍ଧା ଆଖିରେ ଲୁହ ଜକେଇ ଆସିଲା। ତା' ଆଖି ଆଗରେ ସବୁ ଝାପ୍‌ସା ଦେଖାଗଲା।

ନୀହାରିକା ପୁଣି କଫି ପଟ୍ ଧରି ଘର ଭିତରକୁ ପଶୁଥିବାର ଦେଖି ସେ ଟିକିଏ ଆଶ୍ୱସ୍ତ ହେଲା। ଆଜି କ'ଣ କଫି ପଟ୍‌ର ଖାଲି କୋଠରିରୁ ସେ କିଛି ସମ୍ବାଦ ପାଇବ ? କିଏ ଜାଣେ।

ନୀହାରିକା ହସି ହସି ଆସି କଫି ପଟ୍‌ଟି ଟେବୁଲ ଉପରେ ଥୋଇଲା। କହିଲା: ଦିଦି, ଆଉ କିଛି କରିବାକୁ ହେବ ? ମୁଁ ଚାଲିଲି, ପୁଣି ଯାଇ ରାତିରେ ଦେଖାହେବ।

ରଜନୀଗନ୍ଧା ନୀରବରେ ବସିଥିଲା। ନୀହାରିକା ପ୍ରଶ୍ନର ଉତ୍ତର ନ ଦେଇ କେବଳ ମୁଣ୍ଡ ହଲେଇ ନା କହିଲା।

ନୀହାରିକା ଚାଲିଗଲା। ରଜନୀଗନ୍ଧା ଖଟ ଉପରୁ ଉଠିଯାଇ ପ୍ରଥମେ ଦରଜା ବନ୍ଦ

କଲା, ତା'ପରେ ଛୁଟି ଆସିଲା କଫି ପଟ୍ ପାଖକୁ। ଢାଙ୍କୁଣୀ ଖୋଲି ସେ ଆନନ୍ଦରେ ଶିହରି ଉଠିଲା। ହଁ, କଫି ପଟ୍‌ର ଖାଲି କୋଠରିରେ ଖଣ୍ଡିଏ ସାଦା କାଗଜ ରହିଛି। ତା' ସତର୍କ ଦୃଷ୍ଟି ଘରର ଚାରିଆଡ଼େ ଥରେ ବୁଲିଗଲା। ନାଁ, କେହି କୁଆଡ଼େ ନାହିଁ। ତଥାପି ସେ କାଗଜ ଖଣ୍ଡିକ କାଢ଼ିଲା ନାହିଁ ଭିତରୁ। କପ୍‌ରେ କଫି ଢାଳିଲା, ଅତି ସ୍ୱାଭାବିକ ଭଙ୍ଗୀରେ। କଫି ପିଇଲା।

ମନ ଭିତରେ ତା'ର ଝଡ଼ ଉଠିଥିଲା। ପଟ୍ ଭିତରେ କାହାର ଲେଖା ତା' ପାଇଁ ସଙ୍କେତ ବହନ କରି ଆସିଛି ? ନିଶ୍ଚୟ ଗୌତମ ତାକୁ କିଛି ଜଣାଇଛି, ନା ଆଉ କିଏ ? ରଜନୀଗନ୍ଧା ଆଉ ଆତ୍ମସମ୍ବରଣ କରିପାରିଲା ନାହିଁ। ଖୁବ୍ ସନ୍ତର୍ପଣରେ କାଗଜ ଖଣ୍ଡିକ ଟାଣି କ୍ଷିପ୍ର ହସ୍ତରେ ବ୍ଲାଉଜ୍ ଭିତରେ ଭରି ଦେଲା। କଫି କପ୍ ସେମିତି ଅଧା ପକାଇ ସେ ଉଠିଗଲା ବାଥ୍ ରୁମ୍ ଭିତରକୁ।

କାଗଜ ଖଣ୍ଡିକ ଖୋଲି ଦେଖିଲା, ନା ଏଇଟା ଗୌତମର ଚିଠି ନୁହେଁ। ଆଉ କାହା ହାତର ଲେଖା। କିଏ ଲେଖିଛି:

ଦିଦି ! ମୁଁ ତମର ପରିଚିତ। ଗୌତମକୁ ମୁଁ ଚିହ୍ନିଚି। ସେ ଆଜି ଏଠି ନାହିଁ। ତାକୁ ଅନ୍ୟ ଆଡ଼କୁ ପଠାଇ ଦିଆହୋଇଛି। ଗୌତମ ପାଇଁ ତମେ ଭାବିବ ନାହିଁ। ତା' ପ୍ରତି ଆମର ସତର୍କ ଦୃଷ୍ଟି ଅଛି। କିନ୍ତୁ ତା'ର ଭଲ ମନ୍ଦ ସବୁ ତମ ଉପରେ ନିର୍ଭର କରୁଛି। ତମେ ଯଦି ଅଙ୍କଲଙ୍କ ପ୍ରସ୍ତାବରେ ରାଜି ନ ହୁଅ, ତା'ହେଲେ ଗୌତମ ଉପରେ ତା'ର ପ୍ରତିକ୍ରିୟା ହେବ।

ଗୌତମ କିନ୍ତୁ ସବୁ କଥା ଜାଣିପାରିଛି। ସେ ପିଲା ହେଲେ ବି ଖୁବ୍ ବୁଦ୍ଧିମାନ। ଆତ୍ମରକ୍ଷା କରିବା ପାଇଁ ସେ ହୁଏତ ସମର୍ଥ ହେବ। କିନ୍ତୁ ଗୌତମକୁ ଏଠାରୁ ଅନ୍ୟତ୍ର ପଠାଇ ଦେବା ଦ୍ୱାରା ତା'ର ଟିକିଏ ଅସୁବିଧା ହେଲା। ସେ ହୁଏତ ସେଠାରେ ଆମମାନଙ୍କର ସାହାଯ୍ୟ ନ ପାଇ ବିବ୍ରତ ହୋଇପାରେ। ତଥାପି ମୁଁ ତା' ସହିତ ଯୋଗସୂତ୍ର ସ୍ଥାପନ କରିବା ପାଇଁ ଚେଷ୍ଟା କରୁଚି।

ଅଙ୍କଲଙ୍କ ବର୍ତ୍ତମାନର କାର୍ଯ୍ୟକଳାପରେ ଆମେ ପୁରୁଣା ଲୋକମାନେ କେହି ସନ୍ତୁଷ୍ଟ ନୋହୁଁ। ଦଳ ଅନେକ ଦିନରୁ ଭାଙ୍ଗି ଯାଇଥିଲା। ଆମକୁ ଜୋରଜବରଦସ୍ତ ଆଣି ପୁଣି ସେ ଦଳରେ ଭିଡ଼େଇଛନ୍ତି। ତୁମକୁ ମଧ୍ୟ ଅକଳରେ ପକାଇ ଭିଡ଼ି ଆଣିଛନ୍ତି। ଏଠି ଗୌତମ ମୋ ତତ୍ତ୍ୱାବଧାନରେ ଥିଲା। ଅଙ୍କଲ ଜାଣିନାହାନ୍ତି ଯେ, ମୁଁ ଗୌତମକୁ ଚିହ୍ନିପାରିଛି। ତମ ସହିତ ମୋର ଯେ ଦିନେ ପରିଚୟ ଥିଲା, ସେ କଥା ମଧ୍ୟ ଅଙ୍କଲ ଜାଣିନାହାନ୍ତି। ମୋ ପରିଚୟ ବର୍ତ୍ତମାନ ବି ମୁଁ ତୁମକୁ ଦେଉନାହିଁ। ବଳେ ଦେଖା ହେବ ଯେ। ସେତେବେଳେ କଥା ହେବା।

ରାତ୍ରିର ରଜନୀଗନ୍ଧା

ବର୍ତ୍ତମାନ ଗୌତମ ପାଇଁ ମୁଁ ବି ଚିନ୍ତିତ ହୋଇପଡ଼ିଛି। ଅଙ୍କଲଙ୍କର ମାନସିକ ପରିସ୍ଥିତି ଆଦୌ ଭଲ ନୁହେଁ। ତାଙ୍କ ପଛରେ ପୋଲିସର ସଜାଗ ଦୃଷ୍ଟି ଘୂରି ବୁଲୁଚି ଏବଂ ସବୁଠାରୁ ତାଙ୍କୁ ଅସୁବିଧାରେ ପକାଇଛି ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଆଉ ଗୋଟାଏ ଦଳ। ସେଇ ଦଳର ଦଳପତିକୁ କାବୁ କରିବା ପାଇଁ ଅଙ୍କଲ ବର୍ତ୍ତମାନ ଜୀବନ ପଣ କରି ଲାଗିପଡ଼ିଛନ୍ତି। ସେଇଥିପାଇଁ କାହା ପ୍ରତି ସେ କେବେହେଲେ ଯେ କି ବ୍ୟବହାର କରିବେ, କହିବା ସମ୍ଭବ ନୁହେଁ। ଯାହାହେଉ ତୁମେ ଟିକିଏ ସତର୍କ ଥିବ। ତମେ ଆସି ଦଳରେ ମିଶିବା କଥା ଶୁଣି ଅବଶ୍ୟ ଆମେ ସମସ୍ତେ ଆଶାନ୍ୱିତ।

ଆଜି ଆଉ ଅଧିକ ସମ୍ବାଦ କିଛି ନାହିଁ। ପରେ ପରେ ସବୁ ଜଣାଉଥିବି। ମୁଁ ଶୁଣୁଛି ଅଙ୍କଲ ତମକୁ ଏଠାକାର ଦଳନେତ୍ରୀ କରିବାକୁ ଚାହୁଁଛନ୍ତି। ତମେ ଦଳନେତ୍ରୀ ହେଲେ ଆମେ ସମସ୍ତେ ଖୁସି ହେବୁ। ତେବେ ତମ ଅବସ୍ଥା କ'ଣ ହେବ ଜାଣିନାହିଁ। ଏଠାକାର ଦଳ ଗଠନର ପ୍ରଧାନ ଉଦ୍ଦେଶ୍ୟ ହେଉଛି, ପ୍ରତିଦ୍ୱନ୍ଦ୍ୱୀ ସହିତ ସମ୍ମୁଖ ସମର। ତମେ ଅବଶ୍ୟ ସେ ଦୃଷ୍ଟିରୁ ଯୋଗ୍ୟଲୋକ। କିନ୍ତୁ ତଥାପି ପ୍ରତିପକ୍ଷ ଖୁବ୍ ଶକ୍ତିଶାଳୀ। ଉପର ମହଲରେ ତା'ର ଖୁବ୍ ହାତ ଅଛି। ସେହି ଅନୁସାରେ ତୁମକୁ ପ୍ରସ୍ତୁତ ହେବାକୁ ପଡ଼ିବ।

ଆଜି ଏତିକିରୁ ରହୁଛି। ଚିଠିଟିର ସଙ୍ଗେ ସଙ୍ଗେ ସଦ୍‌ଗତି କରିବ। ହଁ, ଆଉ ଗୋଟିଏ କଥା। ତମେ କାହାରି ସହିତ କୌଣସି ଗୋପନ କଥା ଖୋଲାଖୋଲି ଭାବରେ ଆଲୋଚନା କରିବ ନାହିଁ। ଏଠି ପ୍ରତିଟି ଘରେ ମାଇକ୍ରୋଫୋନ୍ ଖଞ୍ଜା ହୋଇଛି। ବୁଝି ପାରୁଥିବ। ଅଙ୍କଲଙ୍କୁ ତ ତମେ ଚିହ୍ନିଛ। ତାଙ୍କ ସମ୍ବନ୍ଧରେ ମୋର ବେଶୀ କିଛି କହିବାର ନାହିଁ।

ନୀହାରିକା ତମର ପୁରୁଣା ପରିଚାରିକା। ସେ ଅଙ୍କଲଙ୍କ ପାଖେ ପାଖେ ଅନେକଦିନ ଥିଲା। ତାଙ୍କର ଗତିବିଧି ସମ୍ବନ୍ଧରେ ସେ ବହୁତ କଥା ଜାଣିଚି। ଜାଣିଲେ ବି ସେ ମୁହଁ ଖୋଲୁ ନାହିଁ। ତମେ ଯଦି ତା' ମୁହଁ ଖୋଲିପାର! ତେବେ ହଁ, ମୋର ଧାରଣା ଗୌତମ ସମ୍ବନ୍ଧରେ ସେ କିଛି ଜାଣିନାହିଁ। ତଥାପି ଗୌତମକୁ କୁଆଡ଼େ ସ୍ଥାନାନ୍ତରିତ କରା ହୋଇଛି, ସେ ଖବର ସେ ହୁଏତ କହିପାରିବ।

ଆଉ ଥରେ କହୁଛି ଦିଦି, ଚିଠିଟିର ସଦ୍‌ଗତି ସଙ୍ଗେ ସଙ୍ଗେ କରିଦେବ।

ରଜନୀଗନ୍ଧା ଚିଠିଟି ପଢ଼ିସାରି ସ୍ତବ୍ଧ ହୋଇଯାଇଥିଲା। ଗୌତମ ତା'ହେଲେ ଏଠି ନାହିଁ! ତାକୁ ସ୍ଥାନାନ୍ତରିତ କରାହୋଇଛି! ତେବେ ଲକ୍ଷଣ ତ କିଛି ଭଲ ନୁହେଁ।

ହଉ, ରଜନୀଗନ୍ଧା ମନକୁ ଦୃଢ଼ କଲା। ଚିଠିଟି ଉପରେ ଆଉ ଥରେ ଦୃଷ୍ଟି ବୁଲେଇ ନେଲା। ତା'ପରେ ଟିକି ଟିକି କରି ଚିରି ପାଇଖାନା ଭିତରେ ପକାଇ ଚେନ୍ ଟାଣିଦେଲା। ଏଥର ନୂତନ କରି ତା'ର କର୍ମଧାରା ସ୍ଥିର କରିବାକୁ ହେବ।

ରଜନୀଗନ୍ଧା ବାଥ୍‌ରୁମ୍‌ରୁ ବାହାରି ଆସିଲା।

ଅଙ୍କଲଙ୍କ ପରିସ୍ଥିତି ସେତେ ନିଦା ନୁହେଁ।

କିନ୍ତୁ ଏଇ ଚିଠି। ଏ ଚିଠିଟା ବିଶ୍ୱାସଯୋଗ୍ୟ ତ। ଚିଠିରେ ଯାହାସବୁ ଲେଖାହୋଇଛି, ଯଦିଓ ତାଙ୍କୁ କରୁଣା ପ୍ରଦର୍ଶନ କରି ବା ପକ୍ଷ ସମର୍ଥନ କରି, ପ୍ରକାରାନ୍ତରେ କୁହା ହୋଇଛି ଦଳରେ ଯୋଗ ଦେବାପାଇଁ। କାହାକୁ ସେ ବିଶ୍ୱାସ କରିବ?

ଗୌତମକୁ ଏଠାରୁ ସେମାନେ ନେଇ ଯାଇଛନ୍ତି। କୁଆଡ଼େ ନେଇଗଲେ? ନେଇ ଯିବାର ବା ଉଦ୍ଦେଶ୍ୟ କ'ଣ?

ରଜନୀଗନ୍ଧା ମନେମନେ ଦୃଢ଼ ହେଲା। ହଁ, ସେ ଅଙ୍କଲ ଦୈତ୍ୟାୟନଙ୍କ ଦଳରେ ଯୋଗଦେବ। ତା'ପରେ ସେ ଦେଖିବ କ'ଣ କରିପାରେ। ଯାହା କରିବାକୁ ହେବ ଭିତରେ ଥାଇ। ବାହାରକୁ ବାହାରିଗଲେ, ହୁଏତ ସେତେବେଳେ ଆଉ କରଣୀୟ କିଛି ନ ଥିବ। ଶେଷ ପର୍ଯ୍ୟନ୍ତ ସେ ଗୌତମକୁ ବି ହରାଇ ପାରେ।

ଏହିପରି ନାନା ଭାବନା ଦୁର୍ଭାବନା ଭିତରେ ରଜନୀଗନ୍ଧାର ଆଖି ଦୁଇଟା ବୁଜି ହୋଇପଡ଼ିଲା। ସେ ଶୋଇ ପଡ଼ିଲା।

ରାତି ନଅଟାବେଳେ ଭାର୍ଗବ ସହିତ ଯାଇ ରଜନୀଗନ୍ଧା ଯେତେବେଳେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା, ତା'ର ମନେ ହେଲା ତାକୁ ଯେପରି ହାଣ ମୁହଁକୁ ନିଆହେଉଛି। ଅବଶ୍ୟ ଭାର୍ଗବ ତା' ସଙ୍ଗରେ ଥିଲା। ଯେଉଁ ଘରର କବାଟ ଠେଲି ଭାର୍ଗବ ତାକୁ ଭିତରକୁ ନେଲା, ସେ ଘରଟି ଅନ୍ଧକାରରେ ବୁଡ଼ି ରହିଥିଲା। କେବଳ ଗୋଟିଏ ଚେଆର ଉପରେ ସ୍ପଟ୍ ଲାଇଟ୍ ପଡ଼ିଲା ପରି ଦରନିମୀଳିତ ଆଲୋକରେ ସ୍ଥାନଟି ନିରୂପିତ ହେଉଥିଲା। ଭାର୍ଗବ ଇଙ୍ଗିତରେ ରଜନୀଗନ୍ଧାକୁ କହିଲା, ସେଇ ଚେଆରରେ ଯାଇ ବସିବା ପାଇଁ।

ପ୍ରଥମେ ରଜନୀଗନ୍ଧା ଦ୍ୱିଧାବୋଧ କରୁଥିଲା। କିନ୍ତୁ ଭାର୍ଗବ ତା' ସଙ୍ଗେସଙ୍ଗେ ଆଗେଇଗଲା ଚେଆର ପର୍ଯ୍ୟନ୍ତ। ରଜନୀଗନ୍ଧା ଚେଆରରେ ବସିଲା। ଅନ୍ଧକାରରେ ଆଖି ସହିଯିବାରୁ ସେ ସେଇ ଅସ୍ପଷ୍ଟ ଆଲୋକରେ ଦେଖିଲା, ଘରଟି ଛୋଟକାଟର ଗୋଟିଏ ହଲ୍ ଘର। ଭିତରେ ଅନେକ ଗୁଡ଼ିଏ ଚେଆର ପଡ଼ିଛି। ମଝିରେ ଗୋଟାଏ ଲମ୍ବା ଟେବୁଲ ପଡ଼ିଛି ବୋଧହୁଏ।

: ରଜନୀଗନ୍ଧା !

କାହାର ତୃପ୍ତ ଓ ତୀକ୍ଷ୍ଣ ସ୍ୱରରେ ତା' ନାମ ଉଚ୍ଚାରିତ ହେବାର ଶୁଣି ରଜନୀଗନ୍ଧା ଶିହରି ଉଠିଲା। ବାଁ ପାଖକୁ ଅନେଇଲା ଭାର୍ଗବ ନାହିଁ। ସେ ଅସହାୟାଙ୍କ ପରି କରୁଣ ଚାହାଣିରେ କେବଳ ଅନ୍ଧକାର ଭିତରେ କାହାରି ଆଶ୍ରୟ ଖୋଜୁଥିଲା।

: ମୁଁ ଜାଣେ ତୁ ଏ କେତେବର୍ଷ ହେବ ଖୁବ୍ କଷ୍ଟ ପାଇଛୁ। କିନ୍ତୁ ତୁ ଯେପରି ଭାବରେ ନିରୁଦ୍ଦେଶ ହେଲୁ ମୋର କରିବାର କିଛି ନ ଥିଲା। ଯାହାହେଉ ମୁଁ ପୁଣି ତୋର ପୂର୍ବ ବୈଭବ ଫେରେଇ ଦେବାକୁ ଚାହୁଁଛି। ତୁ ତ ଦେଖିପାରିଥିବୁ ତୋ'ର ସମସ୍ତ ରାତ୍ରିର ରଜନୀଗନ୍ଧା

ବ୍ୟବହାରିକ ଜିନିଷପତ୍ର ସଂଗ୍ରହ କରି ମୁଁ ଆଣି ତୋ ରହିବା ଘରେ ସଜାଡ଼ି ରଖିଛି। ସବୁ ମୁଁ ତୋର ଫେରାଇ ଦେଇଛି। କିନ୍ତୁ ଫେରାଇ ଦେଇପାରିନାହିଁ ଜୟନ୍ତକୁ। ଯାହା ଫେରିବାର ନୁହେଁ, ତାହା ଆଉ ଫେରିବ ନାହିଁ। କିନ୍ତୁ ଜୟନ୍ତର ପ୍ରତିନିଧିକୁ ମୁଁ ତୋତେ ଫେରାଇଦେବି।

ସେହି ଗମ୍ଭୀର କଣ୍ଠସ୍ୱର ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା।

ରଜନୀଗନ୍ଧା ଲକ୍ଷ୍ୟ କରି ବୁଝି ପାରୁଥିଲା, ତା'ଠାରୁ ଖଣ୍ଡେ ଦୂରରେ ଗୋଟିଏ ଛାୟା ମୂର୍ତ୍ତି ବସି ରହିଛି। ଏ ସ୍ୱର ତା'ର କଣ୍ଠରୁ ନିର୍ଗତ ହେଉଛି। ସେ ଯେ ଅଙ୍କଲ ଦୈତ୍ୟାୟନ, ସେଥିରେ ସନ୍ଦେହ କରିବାର କିଛି ନଥିଲା।

: ଗୌତମ ବର୍ତ୍ତମାନ ମୋ ପାଖରେ ଆରାମରେ ଅଛି। ସେ ସେହିପରି ନିର୍ବିଘ୍ନରେ ରହିବ। କିନ୍ତୁ ତାକୁ ଫେରି ପାଇବାକୁ ହେଲେ ତୋତେ ମୋର କେତୋଟି କାର୍ଯ୍ୟ ଉଦ୍ଧାର କରି ଦେବାକୁ ହେବ। ଅବଶ୍ୟ ବିନା ପାରିଶ୍ରମିକରେ ମୁଁ ତୋଠାରୁ କୌଣସି କାର୍ଯ୍ୟ ଆଦାୟ କରିବାକୁ ଚାହେଁ ନାହିଁ। ଲାଭ ଭୟଙ୍କର ହେବ। ତୋ ପ୍ରତିଶ୍ରୁତି ଉପରେ ଗୌତମର ଭବିଷ୍ୟତ ନିର୍ଭର କରୁଛି।

ପୁଣି କ୍ଷଣିକର ନୀରବତା।

: ମୋତେ କ'ଣ କରିବାକୁ ହେବ?

ଏଥର ରଜନୀଗନ୍ଧା ମୁହଁ ଖୋଲିଲା।

: ଯାହା କରିବାକୁ ହେବ ମୁଁ କହିବି। ଖାଲି ତୋର ସମ୍ମତି ପ୍ରୟୋଜନ।

: ମୁଁ ରାଜି ଅଛି, କିନ୍ତୁ ଗୋଟାଏ ସର୍ତ୍ତରେ।

: ସର୍ତ୍ତଟା କ'ଣ?

: ମୁଁ କାମରେ ଯୋଗଦେବା ଆଗରୁ ଗୌତମକୁ ଥରେ ଦେଖିବି। ତା' ସହିତ କଥା ହେବି। ତା'ପରେ ମୁଁ କାମରେ ଯୋଗ ଦେବି।

: ନା, ନା ସେ ପ୍ରତିଶ୍ରୁତି ମୁଁ ଦେଇପାରିବି ନାହିଁ। ପ୍ରଥମରେ କାର୍ଯ୍ୟ ଉଦ୍ଧାର କରିବାକୁ ହେବ। ତା'ପରେ ଗୌତମକୁ ମୁଁ ଆଣି ତୋ' ଘରେ ଛାଡ଼ିଦେବି। ମା'ପୁଅ ଦୁହେଁ ଏକା ସଙ୍ଗରେ ରହିବ। ତେଣିକି ଖାଲି ଦଳ ପରିଚାଳନାର ଭାର ରହିବ ତୋ ଉପରେ। ସେତେବେଳେ ବିଶେଷ କିଛି ଦାୟିତ୍ୱ ନ ଥିବ।

ରଜନୀଗନ୍ଧା କୌଣସି ପ୍ରତିବାଦ କରି ପାରିଲା ନାହିଁ। ନୀରବ ରହିଲା।

ପୁଣି ସେଇ ଛାୟାମୂର୍ତ୍ତିର କଣ୍ଠସ୍ୱର ଶୁଣାଗଲା: ତୋର ମନେଥିବ ରଜନୀଗନ୍ଧା, ଜୟନ୍ତ ଆଉ ତୋତେ ମୁଁ ଗୋଟାଏ କାର୍ଯ୍ୟହାସଲ ପାଇଁ ଏଇ ସହରକୁ ପଠାଇଥିଲି। ତମେ ଦୁଇଜଣ ଆସି ପ୍ରାୟ ସାତ ଆଠଦିନ ରହିଥିଲ। ଦକ୍ଷତାର ସହ କାର୍ଯ୍ୟ ହାସଲ କରିବାକୁ ଯାଇ ଦେଖିଥିଲ, ସବୁ ପରିଶ୍ରମ ପଣ୍ଡଶ୍ରମ ହୋଇଛି। ଯାହା ହସ୍ତଗତ କରିବା

ପାଇଁ ତମେ ଏଠାକୁ ଆସିଥିଲ, ତାହା କିଛିଦିନ ଆଗରୁ ଏଠାରୁ ସ୍ଥାନାନ୍ତରିତ ହୋଇଯାଇଛି। ସମ୍ବାଦରେ ସତ୍ୟତା ଥିଲା। ବାଧ୍ୟ ହୋଇ ମୋତେ ଚୁପ୍ ରହିବାକୁ ପଡ଼ିଥିଲା।

: ଆପଣ କାହା କଥା କହୁଛନ୍ତି ?

ରଜନୀଗନ୍ଧା ପଚାରିଲା।

: ସେଇ ହୀରାର ନେକ୍‌ଲେସ। ଯାହାପାଇଁ ମୁଁ ପାଞ୍ଚଲକ୍ଷ ଟଙ୍କା ଅଗ୍ରୀମ ନେଇଥିଲି। ତୁ ତ ସେକଥା ସବୁ ଜାଣିଛୁ ରଜନୀଗନ୍ଧା। ସେଇ ଐତିହାସିକ ହୀରାର ନେକ୍‌ଲେସ୍‌ଟି ମୁଁ ଉଦ୍ଧାର କରି ଯଥାସ୍ଥାନରେ ପହୁଞ୍ଚାଇ ନପାରିଲେ, ମୋର ମାନ ଇଜ୍ଜତ କିଛି ରହିବ ନାହିଁ।

ରଜନୀଗନ୍ଧା ଗୋଟାଏ ଦୀର୍ଘନିଃଶ୍ୱାସ ପକାଇଲା।

ତା'ର ମନେପଡ଼ିଲା, ଦୀର୍ଘ ପନ୍ଦର ଷୋଳବର୍ଷ ତଳର କଥା। ସେ କଥା ସେ ଏକଦମ୍ ଭୁଲି ଯାଇଥିଲା। ଜୟନ୍ତ ଆଉ ସେ ଏହି ହୀରାର ନେକ୍‌ଲେସଟି ହସ୍ତଗତ କରିବା ପାଇଁ କଲିକତା ଆସିଥିଲେ। ସଫଳତା ଅର୍ଜନ କରିଥିଲେ। କିନ୍ତୁ ସେଇ ନେକ୍‌ଲେସଟି ନିର୍ଦ୍ଦିଷ୍ଟ ସ୍ଥାନରୁ କିଛିଦିନ ପୂର୍ବରୁ ସ୍ଥାନାନ୍ତରିତ ହୋଇଯାଇଥିଲା। ସେମାନେ ବ୍ୟର୍ଥ ହୋଇ ଫେରିଯାଇଥିଲେ। ପୁଣି ଆଜି ଦୀର୍ଘଦିନ ପରେ ସେହି ନେକ୍‌ଲେସ କାହାଣୀ ଶୁଣି ରଜନୀଗନ୍ଧା ଦେହମନରେ କିପରି ଉତ୍ତେଜନା ସୃଷ୍ଟି ହୋଇଯାଇଥିଲା।

ଛାୟାମୂର୍ତ୍ତିଟି କହିଲା: ସେଇ ହୀରାର ନେକ୍‌ଲେସଟି ହସ୍ତଗତ କରିବା ପାଇଁ ଆଉ ଗୋଟାଏ ଦଳ ଚେଷ୍ଟା କରୁଛି ଏବଂ ସେ ଏ କଥା ଜାଣିପାରିଛି ଯେ, ଆମେ ମଧ୍ୟ ସେଇ ନେକ୍‌ଲେସଟି ଉଦ୍ଧାର କରିବା ପାଇଁ ଚେଷ୍ଟା କରୁଛୁ। ତେଣୁ ଗତଥରର ପରିସ୍ଥିତି ଅପେକ୍ଷା ବର୍ତ୍ତମାନର ପରିସ୍ଥିତି ଆହୁରି ଜଟିଳ। କିନ୍ତୁ ଯେପରି ହେଉ ଆମକୁ ଲକ୍ଷ୍ୟ ହାସଲ କରିବାକୁ ପଡ଼ିବ । ସେଇ ନେକ୍‌ଲେସଟିର ମୂଲ୍ୟ ବିଦେଶ ବଜାରରେ ବର୍ତ୍ତମାନ ଚାଳିଶ ଗୁଣ ବଢ଼ିଯାଇଛି। ତେଣୁ ସେଇଟିକୁ ହସ୍ତଗତ କରିପାରିଲେ, ଆମ ଦଳ ନିଶ୍ଚିନ୍ତରେ ପାଞ୍ଚବର୍ଷ ଚଳିଯାଇପାରିବ। ଏବଂ ସେଇଥିପାଇଁ ମୁଁ ବହୁ ଚେଷ୍ଟା କରି ତୋତେ ଖୋଜି ବାହାର କରିଛି।

ରଜନୀଗନ୍ଧା ସେଇ ହୀରାର ନେକ୍‌ଲେସ କାହାଣୀ ଶୁଣିବା ପରଠୁ ତା'ଦେହମନରେ କିପରି ପ୍ରତିକ୍ରିୟା ସୃଷ୍ଟି ହୋଇଯାଇଥିଲା। ଜୟନ୍ତ ଆଉ ତା'ର ଏକତ୍ର କାର୍ଯ୍ୟ କରିବାର ସେଇ ଥିଲା ପ୍ରଥମ ସୁଯୋଗ। ଦୁହେଁଯାକ ସେଇ ପ୍ରଥମ ଥର ପାଇଁ ଏକତ୍ର ହୋଇଥିଲେ। ରାତ୍ରିଯାପନ କରିଥିଲେ। ନୂତନ ଜୀବନର ସ୍ୱପ୍ନ ଦେଖିଥିଲେ। ସେ ଅନେକ ଅନେକ ଦିନର ତଳର କଥା।

ସେଦିନ ଗୋଟାଏ ନିରୋଳା ରାତି।

ଜୟନ୍ତ ଆଉ ସେ ଶୋଇଥିଲେ ହୋଟେଲ ଇଣ୍ଟର ନାସନାଲର୍ ଏକ ରୁମ୍ ଭିତରେ।

ଦୁଇଟି ଖଟରେ ଦୁଇଜଣ। କାହାରି ଆଖିରେ ନିଦ ନାହିଁ। ରାତି ଅନେକ ହେଲାଣି। ଦୁହିଁଙ୍କ ମନରେ ଅଜସ୍ର ସ୍ୱପ୍ନ। କିନ୍ତୁ ତୁଣ୍ଡ ଖୋଲି କେହି କାହାକୁ କିଛି କହିପାରୁନାହାନ୍ତି।

ଜୟନ୍ତ ଡାକିଲା: ଏ, ଶୁଣୁଛ।

: କ'ଣ ?

: ଶୋଇଲଣି ?

: ନା, ଆଜି କାହିଁକି ଆଖିକି ନିଦ ଆସୁନାହିଁ।

: ମୋର ବି।

ପୁଣି ନୀରବତା।

: ଏ! ଶୁଣୁଛ ?

ଏଥର ରଜନୀଗନ୍ଧା ଡାକିଲା।

: କ'ଣ କୁହ।

: ମୁଁ କ'ଣ କହୁଥିଲି କି....

: କହୁନ।

: ଭବିଷ୍ୟତରେ ଆମେ......

ରଜନୀଗନ୍ଧା ତେଣିକି ଆଉ କିଛି କହିପାରିଲା ନାହିଁ। ସେ ଅନୁଭବ କଲା, ତା' ଦେହରେ କାହା ହାତର ଯେପରି ମୃଦୁସ୍ପର୍ଶ।

ଜୟନ୍ତ ଆର ଖଟରୁ ହାତ ବଢ଼େଇଛି ତା'ଆଡ଼େ।

ରଜନୀଗନ୍ଧା ତା' ହାତକୁ ଠେଲି ଦେଇପାରିଲା ନାହିଁ।

: ଚୁପ୍ ହେଇଗଲ ଯେ।

ଜୟନ୍ତ କହିଲା।

: ସତରେ ଆମ ସ୍ୱପ୍ନ ସଫଳ ହେବ ଜୟନ୍ତ ? ଆମେ, ଆମେ କ'ଣ....

ରଜନୀଗନ୍ଧା ନିଜ ଅଜ୍ଞାତସାରରେ ଜୟନ୍ତର ହାତ ଧରି ଭିଡ଼ି ଆଣିଲା ତା' ଖଟ ଉପରକୁ।

ସେଦିନ ସେଇ ରାତିରେ ସେମାନେ ପ୍ରତିଜ୍ଞାବଦ୍ଧ ହେଲେ, ଭବିଷ୍ୟତରେ ସୁନାର ସଂସାର ଗଢ଼ିବେ। ତା'ପରେ, ତା'ପରେ... ରଜନୀଗନ୍ଧା ଆବେଗରେ ଜୟନ୍ତ ଛାତିରେ ମୁହଁ ଲୁଚେଇଲା।

: ତୁ କ'ଣ ଚେତା ହରେଇଲୁ ରଜନୀଗନ୍ଧା ? ଏକ କର୍କଶ କଣ୍ଠସ୍ୱର ଶୁଣି ରଜନୀଗନ୍ଧାର ସ୍ୱପ୍ନ ଭଙ୍ଗ ହେଲା।

: ନା, ନା, ମୁଁ ରାଜି ଅଛି ଅଙ୍କଲ। ମୁଁ ପାରିବି। ସେଇ ହୀରାର ନେକ୍‌ଲେସ୍ ଉଦ୍ଧାର କରିବା ପାଇଁ ମୁଁ ଜୀବନ ପଣ କରି ଲାଗି ପଡ଼ିବି।

ରାତ୍ରିର ରଜନୀଗନ୍ଧା

ରଜନୀଗନ୍ଧା କିପରି ଏକ ଆବେଗରେ କହି ପକାଇଲା।

: ସାବାସ୍। ମୁଁ ତ ତୋଠାରୁ ସେଇଆ ଆଶା କରେ ରଜନୀଗନ୍ଧା। ଏବଂ ସେଇ ବିଶ୍ୱାସ ତୋ ଉପରେ ସ୍ଥାପନ୍ କରି ନିଶ୍ଚିତ ହେବାକୁ ଚାହେଁ। ଏଥର କିନ୍ତୁ ଏହି କାର୍ଯ୍ୟରେ ଖୁବ୍ ସାବଧାନତାର ସହ ଅବତୀର୍ଣ୍ଣ ହେବାକୁ ହେବ। ପଛରେ ଶତ୍ରୁପକ୍ଷ। ବାହାରେ ପୋଲିସ୍ ପକ୍ଷ। ତା'ରି ଭିତରେ ଆମକୁ କାର୍ଯ୍ୟ ହାସଲ କରିବାକୁ ହେବ।

: ମୁଁ ପାରିବି। ସବୁ ପାରିବି ଅଙ୍କଲ। ଗୌତମ ପାଇଁ ମୁଁ ସବୁ ପାରିବି। ଆପଣ ଖାଲି ମୋତେ କଥା ଦିଅନ୍ତୁ ମୋ ଗୌତମକୁ ଫେରାଇ ଦେବେ ଏବଂ ମୋତେ ମୁକ୍ତ କରିଦେବେ। ମୋତେ ଆଉ କୌଣସି ଲୋଭ ଆକର୍ଷଣ କରାଇପାରିବ ନାହିଁ।

ଧନ, ମାନ, ଯଶ କିଛି ମୁଁ ଚାହେଁ ନାହିଁ ଅଙ୍କଲ। ମୋର ଗୌତମକୁ ମୋତେ ଫେରାଇ ଦିଅନ୍ତୁ। ମୁଁ ଆପଣଙ୍କ କାର୍ଯ୍ୟ ହାସଲ କରିଦେବି। ପାରିଶ୍ରମିକ, ପୁରସ୍କାର, ଦଳର ଅଧିନାୟକତ୍ୱ, କିଛି ମୋର ଦରକାର ନାହିଁ। ମୋର ଗୌତମ, ଗୌତମ, ବାବୁରେ...

ରଜନୀଗନ୍ଧା ଆଖିରେ ଲୁହ ଜମି ଆସିଲା।

: ହଁ, ଯାକୁ ଯେ କହନ୍ତି ସୁନାଝିଅ। ତୁ ନିଶ୍ଚୟ ତୋ ଗୌତମକୁ ଫେରି ପାଇବୁ ରଜନୀଗନ୍ଧା। ସର୍ତ୍ତ ତ ସେଇ ଗୋଟିଏ। ଡାଇମଣ୍ଡ ନେକ୍‌ଲେସ୍‌ଟି ଆଣି ତୁ ମୋ ହାତରେ ଦେବୁ, ସଙ୍ଗେ ସଙ୍ଗେ ଗୌତମକୁ ପାଇବୁ। ଏଥର ମୁଁ ନିଶ୍ଚିନ୍ତ ହେଲି। ତୋର ଜାଣିବା ପାଇଁ ମୁଁ ଖାଲି ଏତିକି କହି ରଖୁଛି, ଡାଇମଣ୍ଡ ନେକ୍‌ଲେସ୍‌ଟି ଗତଥର ଯେଉଁଠି ଥିଲା, ଏଥର ଠିକ୍ ସେଇଠି ଆସି ରହିଛି। ସେଠାକାର ବାଟଘାଟ ତୋତେ ତ ସବୁ ଜଣାଅଛି। ସେଥର ତୋ ସଙ୍ଗରେ ଥିଲା ଜୟନ୍ତ, ଏଥର ରହିବ ଭାର୍ଗବ। ଭାର୍ଗବ ମୋର ଖୁବ୍ ବିଶ୍ୱାସୀ ଅନୁଚର। କର୍ମଠ ବି। ତାକୁ ସନ୍ଦେହ କରିବାର କିଛି ନାହିଁ। କାର୍ଯ୍ୟ ହାସଲ ପାଇଁ ତୋର ଆବଶ୍ୟକୀୟ ସାମଗ୍ରୀ ସବୁ ସେ ଯୋଗେଇ ଦେବ। ତୋତେ ସହଯୋଗ କରିବ। ମଝିରେ ମୋ ସହିତ ତୋର ଆଉ ଭେଟ ହେବାର ସମ୍ଭାବନା ନାହିଁ। ମୁଁ କାଲି ମର୍ଣ୍ଣିଂ ଫ୍ଲାଇଟ୍‌ରେ ବାହାରକୁ ଚାଲିଯାଉଛି। ଫେରିବି ଦିନେ ଦୁଇଦିନ ପରେ। ଯା ଭିତରେ ତୁ ତୋର ଅଭିଯାନର ଆୟୋଜନ ଶେଷ କରିସାରିଥିବୁ।

ଧୀରେ ଧୀରେ ଘରର ସେଇ ମୃଦୁ ଆଲୋକଟି ମଧ୍ୟ ଆହୁରି ମଳିନ ହୋଇ ଆସୁଥିଲା। ରଜନୀଗନ୍ଧା ଦେଖିଲା ଅଙ୍କଲ ଦୈତ୍ୟାୟନଙ୍କର ଛାୟା ସେଇ ଅନ୍ଧକାର ଭିତରେ ମିଶିଯାଉଛି। ସେ କ'ଣ ରହିବାକୁ ଯାଇ ଆଉ କହିପାରିଲା ନାହିଁ।

କିଛିକ୍ଷଣ ପରେ ପୁଣି ଘରର ଆଲୋକ ପୂର୍ବ ଅବସ୍ଥାକୁ ଫେରିଆସିଲା।

ରଜନୀଗନ୍ଧା ଦେଖିଲା, ଭାର୍ଗବ ଆସି ତା' ଚେୟାର ପାଖରେ ଠିଆ ହୋଇଛି।

: ଏହା ପରେ କୁଆଡ଼େ ଯିବା ଭାର୍ଗବ ?

ରଜନୀଗନ୍ଧା ପଚାରିଲା।

: ଆମେ ଫେରିଯିବା। ଅଙ୍କଲ କହିଗଲେ, ଆପଣ ପ୍ରସ୍ତୁତ ହେବେ। ଯାହା ପ୍ରୟୋଜନ ମୋତେ କହିଲେ, ମୁଁ ସବୁ ଆଣି ଆପଣଙ୍କ ପାଖରେ ପହଞ୍ଚାଇବି। ତା'ପରେ ଅଭିଯାନ ଆରମ୍ଭ କରିବା।

: ଆଚ୍ଛା ଭାର୍ଗବ! ଦଳରେ ଏତେସବୁ ବିଚକ୍ଷଣ ଲୋକ ଥାଉ ଥାଉ ଅଙ୍କଲ ମୋ ଉପରେ ପୁଣି ଏ ବୋଝ ନଦିଲେ କାହିଁକି କହିପାରିବ?

ରଜନୀଗନ୍ଧା ସ୍ୱରରେ କାରୁଣ୍ୟ ଫୁଟି ଉଠିଥିଲା।

ଭାର୍ଗବ କହିଲା: କାରଣଟା ମୋତେ କିଛି ଜଣାନାହିଁ। ତେବେ ମୁଁ ଭାବୁଛି ଆପଣଙ୍କ ଛଡ଼ା ସେ ଅସାଧ୍ୟ କେହି ସାଧନ କରିପାରିବେ ନାହିଁ। ପୂର୍ବରୁ ସେ ସମ୍ବନ୍ଧରେ ଆପଣଙ୍କର ଜ୍ଞାନ ଅଛି। ତା'ଛଡ଼ା କାମଟା ବଡ଼ କଠିନ।

ରଜନୀଗନ୍ଧା ହସିଉଠିଲା।

କହିଲା: ହଁ କାମଟା ବଡ଼ କଠିନ ଭାର୍ଗବ। ଦିନ ଥିଲା, ଯେତେବେଳେ କୌଣସି କାମ ମୁଁ କଠିନ ବୋଲି ମନେ କରୁନଥିଲି। କିନ୍ତୁ ଆଜି ସେ ଦିନ ନାହିଁ। ମୋତେ ବି ଆଜି କିଛି କିଛି କାର୍ଯ୍ୟ କଠିନ ବୋଲି ମନେ ହେଉଛି। ତା' ନହେଲେ, ଗୌତମ ପାଇଁ ମୋତେ...

ରଜନୀଗନ୍ଧା ତା କଥା ଶେଷ କରିପାରିଲା ନାହିଁ। ସେ ଅଟକି ଗଲା। ତା'ର ଚେତନା ହେଲା ସେ କେଉଁଠି ବସି କ'ଣ କହିବାକୁ ଯାଉଛି। ଚାହିଁଲା, ଭାର୍ଗବ ତା' ଆଡ଼କୁ ବିସ୍ଫାରିତ ନେତ୍ରରେ ଅନାଇ ରହିଛି।

ରଜନୀଗନ୍ଧା ହସିବାକୁ ଚେଷ୍ଟା କଲା।

କହିଲା: ଚାଲ ଭାର୍ଗବ। ଏଥର ମୋ ସହିତ ତମ ଭାଗ୍ୟ ଛନ୍ଦା ହେଲା। ଦେଖ, ତମ କପାଳରେ କ'ଣ ଅଛି।

ଭାର୍ଗବ କିଛି କହିଲା ନାହିଁ।

ନୀରବରେ ରଜନୀଗନ୍ଧାକୁ ଅନୁସରଣ କଲା।

ସେମାନେ ଯାଇ ଗାଡ଼ିରେ ବସିଲେ। ଏଥର ରଜନୀଗନ୍ଧା ଗାଡ଼ିର ପଛ ସିଟ୍‌କୁ ନ ଯାଇ ଭାର୍ଗବ ପାଖରେ ବସିଲା।

ଭାର୍ଗବ ଆପତ୍ତି କରିଥିଲା। ରଜନୀଗନ୍ଧା ଶୁଣିଲା ନାହିଁ।

ଗାଡ଼ି ଆଗେଇ ଚାଲିଥିଲା। ରଜନୀଗନ୍ଧା ଚିନ୍ତାରାଜ୍ୟରେ ବୁଡ଼ି ଯାଇଥିଲା। ସେ ବୁଝିପାରୁନଥିଲା, ଆଗକୁ ଆଗକୁ କ'ଣ ଘଟିବାକୁ ଯାଉଛି।

ଡାଇମଣ୍ଡ ନେକ୍‌ଲେସ୍‌ଟି ଉଦ୍ଧାର କରିବାଟା ମୋଟେ ସହଜ କାମ ନୁହେଁ। ନ୍ୟାସନାଲ ମିଉଜିଅମର ଅଣ୍ଡରଗ୍ରାଉଣ୍ଡରେ ଗୋଟିଏ ଭଲଟ ଅଛି। ସେହି ଭଲ୍‌ଟ ମଧ୍ୟରେ

ଦେଶର ବହୁ ମୂଲ୍ୟବାନ ଐତିହାସିକ ପଦାର୍ଥମାନ ଭରି ରହିଛି। ସେଗୁଡ଼ିକର ନିରାପତ୍ତା ପାଇଁ ଏପରି ସୁଦୃଢ଼ ବ୍ୟବସ୍ଥା କରାହୋଇଛି ଯେ, ସେଠାରୁ କୌଣସି ପଦାର୍ଥ ଅପହରଣ କରି ଆଣିବା ଆଦୌ ସମ୍ଭବ ନୁହେଁ। ସେଥର ଜୟନ୍ତ ଆଉ ସେ କିପରି ତ୍ରାହି ପାଇଥିଲେ, ସେକଥା ଚିନ୍ତା କଲେ ରଜନୀଗନ୍ଧାକୁ ଆଜି ହସ ମାଡୁଛି। ଅବଶ୍ୟ ସେମାନେ ଚେଷ୍ଟା ଯେ କରି ନଥିଲେ ତା' ନୁହେଁ। ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚି ବି ଯାଇଥିଲେ। ହୁଏତ ଆଉ ତେଣିକି ଅଗ୍ରସର ହେବା ସମ୍ଭବ ହୋଇନଥାନ୍ତା। ପରଦିନ ପୁଣି ତାଙ୍କର ଅଭିଯାନ ଆରମ୍ଭ ହୋଇଥାଆନ୍ତା, କିନ୍ତୁ ସେଦିନ ରାତିରେ ସେମାନେ ହୋଟେଲକୁ ଫେରିଯାଇ ବାର୍ତ୍ତା ପାଇଲେ ଫେରିଯିବା ପାଇଁ। ଫେରିଗଲେ ପରଦିନ। ସେଠାରେ ଯାଇ ଶୁଣିଲେ ଡାଏମଣ୍ଡ ନେକ୍‌ଲେସ୍‌ଟି କଲିକତା ନ୍ୟାସନାଲ ମିଉଜିୟମରୁ ଦିଲ୍ଲୀ ଚାଲିଯାଇଛି, ଠିକ୍ ଦିନକ୍ ପୂର୍ବରୁ।

ଅବଶ୍ୟ ସେଠାରେ ପହଞ୍ଚି ଜୟନ୍ତ ବାହାଦୁରୀ ନେବାପାଇଁ ଟିକିଏ ଅଧିକ କଥା କହି ପକାଇଥିଲା। ସେ ଯେ ଲକ୍ଷ୍ୟ ସ୍ଥଳରେ ପହଞ୍ଚପାରିଥିଲା ଏବଂ ସେଫ୍ ଖୋଲିବାକୁ ସକ୍ଷମ ହୋଇଥିଲା, ଏ କଥା ଦଳରେ ପ୍ରଚାରିତ ହୋଇଯାଇଥିଲା। ସେଇ ପ୍ରତିକ୍ରିୟା ଯେ ପନ୍ଦର ଷୋଳବର୍ଷ ପରେ ଆଜି ରଜନୀଗନ୍ଧା ଉପରେ ପଡ଼ିବ, ସେକଥା ରଜନୀଗନ୍ଧା ଭାବି ପାରିଥାଆନ୍ତା କିପରି!

ଏହି ହୀରକ ନେକ୍‌ଲେସ ସମ୍ବନ୍ଧରେ ସେତେବେଳେ ସେ ଯାହା ଶୁଣିଥିଲା, ନେକ୍‌ଲେସ୍‌ଟି କୁଆଡ଼େ କୋଉ ବାଦ୍‌ଶାହା ଅମଳର। ସେଥିରେ ଏପରି ଖଣ୍ଡେ ହୀରା ସେଟ୍ କରା ହୋଇଛି, ଯାହା ଖୁବ୍ ଦୁର୍ଲଭ ବସ୍ତୁ। ଦାମ୍ ହିସାବରେ ସେହି ନେକ୍‌ଲେସ୍‌ର ମୂଲ୍ୟ କେହି କଳନା କରି ପାରୁନାହାନ୍ତି। ଏ କଥା କାଗଜରେ ପ୍ରଚାରିତ ହେବା ପରେ ବିଦେଶ ବଜାରରେ ଏହି ନେକ୍‌ଲେସଟିର ଚାହିଦା ଖୁବ୍ ବେଶୀ ବଢ଼ିଯାଇଥିଲା। ସେ ତ ସେତେବେଳକାର କଥା। ବର୍ତ୍ତମାନ ସୁଦ୍ଧା ସେଇ ଚାହିଦା ଯେ ରହିଛି, ଏବଂ ଅଙ୍କଲ ଦୈତ୍ୟାୟନ ସେଇ ମୁନାଫାର ଆଶା ଛାଡ଼ି ନାହାନ୍ତି, ସେ କଥା ରଜନୀଗନ୍ଧା ଜାଣିଥାଆନ୍ତା କିମିତି ?

: ଭାର୍ଗବ। ଏଇଠି ଗାଡ଼ି ଅଟକାଅ। ହଠାତ୍ ରଜନୀଗନ୍ଧା କହି ଉଠିଲା।

ଭାର୍ଗବ ଗାଡ଼ି ଅଟକାଇଲା ନାହିଁ ସତ, ଗାଡ଼ିର ବେଗ କମାଇ ଦେଇ କହିଲା: ମୋତେ ତ ଗାଡ଼ି ଅଟକେଇବାର ହୁକୁମ୍ ନାହିଁ ମାଡାମ୍।

: ତମେ ମୋ ସହକାରୀ ନା ?

ରଜନୀଗନ୍ଧା ତୀକ୍ଷ୍ଣ ସ୍ୱରରେ ପ୍ରଶ୍ନ କଲା।

: ହଁ।

ଭାର୍ଗବ କହିଲା।

: ତମେ ମୋ ହୁକୁମ୍ ମାନି ନ ଚଳିଲେ କାମ ହାସଲ ହେବ କିପରି ? ତୁମକୁ ମୋତେ ବିଶ୍ୱାସ କରିବାକୁ ହେବ। ବୁଝିଲ ଭାର୍ଗବ। ତମେ କାହାଠାରୁ କି ନିର୍ଦ୍ଦେଶ ପାଇ

କିପରି ପରିଚାଳିତ ହେଉଛ ମୋତେ ଜଣାନାହିଁ। କିନ୍ତୁ ଆମେ ଯେତେବେଳେ ଦଳରେ ଥିଲୁ, ଯେଉଁ ମୁହୂର୍ତ୍ତରେ ଦଳପତିର ହୁକୁମ୍ ପାଉଥିଲୁ କୌଣସି ନିର୍ଦ୍ଦିଷ୍ଟ ଲୋକ ସହିତ କାମ କରିବା ପାଇଁ, ପର ମୁହୂର୍ତ୍ତଠାରୁ ଆମେ ତା'ର ହୁକୁମ୍‌ର ଦାସ ହୋଇ ଯାଉଥିଲୁ। ଏଇଆ ହେଉଛି ନିୟମ। ତା' ନ ହେଲେ ଦଳ ରହିବ ନାହିଁ।

ଭାର୍ଗବ ନୀରବରେ ଗାଡ଼ି ଠିଆ କଲା।

ରଜନୀଗନ୍ଧା ଅଳ୍ପ ହସି କହିଲା: ନା ଚଲାଅ। ମୁଁ ତୁମକୁ ପରୀକ୍ଷା କରୁଥିଲି।

ଗାଡ଼ି ପୁଣି ଛୁଟି ଚାଲିଲା।

କିଛି ସମୟର ନୀରବତା ପରେ ରଜନୀଗନ୍ଧା କହିଲା: ଇତି ପୂର୍ବରୁ ତୁମେ କୌଣସି ଦୁଃସାହସିକ ଅଭିଯାନରେ ଅଂଶ ଗ୍ରହଣ କରିଛ ଭାର୍ଗବ?

: ହଁ କରିଛି। କିନ୍ତୁ ଦୁଃସାହସିକ କି ନୁହେଁ କହିପାରିବି ନାହିଁ।

: ବୁଝିଲି, କିନ୍ତୁ ଏଥର, ମୋ ସହିତ ଯେଉଁ ଅଭିଯାନରେ ଯୋଗ ଦେବା ପାଇଁ ନିଯୁକ୍ତି ପାଇଛ, ଏଇଟା କିନ୍ତୁ ଖୁବ୍ ଦୁଃସାହସିକ। ଏପରିକି ଜୀବନ ନାଶର ସମ୍ଭାବନା ମଧ୍ୟ ଅଛି। ପାରିବ ତ?

: ଜୀବନକୁ ମୁଁ ପରୁଆ କରେନା।

ଭାର୍ଗବ କହିଲା।

: ସେଇଆ ତ ମୁଁ ଚାହେଁ। ଆଚ୍ଛା ଭାର୍ଗବ, ତମେ କଲିକତା ଆସିବା ପୂର୍ବରୁ କେଉଁଠି ଥିଲ?

: ବମ୍ବେରେ।

: ବମ୍ବେରେ କ'ଣ କରୁଥିଲ?

: ଏଇ ଅଙ୍କଲଙ୍କ ଦଳର କାମ କରୁଥିଲି।

: ଓଃ, ଆଚ୍ଛା।

ପୁଣି ନୀରବତା।

: ଭାର୍ଗବ, ଗାଡ଼ି ବନ୍ଦ କର।

ରଜନୀଗନ୍ଧା ପୁଣି ହଠାତ୍ କହି ଉଠିଲା।

ଗାଡ଼ି ଅଟକିଲା।

ରଜନୀଗନ୍ଧା ନୀରବରେ କିଛି ସମୟ ବାହାରକୁ ଅନାଇ ରହିଲା। ଚିନ୍ତା କରୁଥିଲା ଗାଡ଼ିରୁ ସେ ଓହ୍ଲାଇବ କି ନାହିଁ। ଏଇଠୁ ଆଉ ଟିକିଏ ଆଗେଇ ଗଲେ, ଡାହାଣ ପାଖ ରାସ୍ତାଟାରେ ସତ୍ୟବ୍ରତ ମହାପାତ୍ରଙ୍କ ଘର। ତାଙ୍କୁ ଅନ୍ତତଃ ସମ୍ବାଦଟା ଥରେ ଦେବା ଉଚିତ୍। କିନ୍ତୁ...ଭାର୍ଗବ ଯେ ତା' ଗତିବିଧି ସମ୍ବନ୍ଧରେ ଅବହିତ ହୋଇଯିବ। ଭାର୍ଗବକୁ ଅଙ୍କଲ

ଯେତେବେଳେ ତା' ପଛରେ ମୁତୟନ କରିଛନ୍ତି, ନିଶ୍ଚୟ ଭାର୍ଗବ ତାଙ୍କ ବିଶ୍ୱସ୍ତ ପ୍ରତିନିଧି। ଚତୁର ବି। ତା' ଆଖିରେ ଧୂଳି ଦେବା ବି ସମ୍ଭବ ହେବନାହିଁ। ତା'ଛଡ଼ା ସତ୍ୟବ୍ରତ ବି ବିରକ୍ତ ହୋଇପାରନ୍ତି। ସେ ମନା କରିଥିଲେ ତାଙ୍କୁ କୌଣସି ସମ୍ବାଦ ନ ଦେବାପାଇଁ।

ରଜନୀଗନ୍ଧା ନୀରବରେ ବାହାରକୁ ଚାହିଁ ରହିଥିବା ଦେଖି ଭାର୍ଗବ ପଚାରିଲା: କ'ଣ ହେଲା ମାଡାମ୍। କାହାକୁ ଚାହିଁଛନ୍ତି।

: ନା ଭାର୍ଗବ। ତମେ ଗାଡ଼ି ଚଲାଅ। ମୁଁ ଭାବୁଥିଲି ଜଣକ ସହିତ ଦେଖା କରିବା ପାଇଁ। କିନ୍ତୁ ରାତି ଅଧିକ ହୋଇଗଲାଣି। ଆଉ ତାଙ୍କ ସହିତ ଦେଖା କରିହେବନାହିଁ। ଚାଲ ଆମେ ଫେରିଯିବା।

ଭାର୍ଗବ ପୁଣି ଗାଡ଼ିରେ ଷ୍ଟାର୍ଟ ଦେଲା।

: ଆଚ୍ଛା ମାଡାମ୍ । ଭାର୍ଗବ ପଚାରିଲା, ଅଙ୍କଲ ଆପଣଙ୍କ ଉପରେ ଯେଉଁ କାର୍ଯ୍ୟ ଉଦ୍ଧାରର ଦାୟିତ୍ୱ ଦେଲେ, ସେ କାର୍ଯ୍ୟ ଆପଣ କେବେଠାରୁ ଆରମ୍ଭ କରିବେ ?

: କାହିଁକି ?

: ନା, ଇମିତି ପଚାରୁଥିଲି। ଯଦି ଦି' ଚାରି ଦିନ ଡେରି ଥାଆନ୍ତା ମୁଁ ଆପଣଙ୍କଠାରୁ ଦିନକ ପାଇଁ ଛୁଟି ନେଇ ଥାଆନ୍ତି।

: ଛୁଟି ? ଛୁଟି ନେଇ ତମେ କ'ଣ କରିବ ?

ଭାର୍ଗବ ହସିଲା। କହିଲା: ମୋର ଜଣେ ଆତ୍ମୀୟଙ୍କ ସହିତ ଦେଖା କରିବାକୁ ଯାଇଥାଆନ୍ତି। ସେମାନେ ଏଇ କଲିକତାରେ ରହନ୍ତି।

: ଯିବ, ନିଶ୍ଚୟ ଯିବ। ମୁଁ ତୁମକୁ ଛୁଟି ଦେବି। କିନ୍ତୁ ଭାର୍ଗବ, ଅଙ୍କଲ ଯଦି ଅସନ୍ତୁଷ୍ଟ ହୁଅନ୍ତି।

ରଜନୀଗନ୍ଧା କହିଲା।

: ଅଙ୍କଲ ତ ଦି' ଦିନ ରହୁ ନାହାନ୍ତି। ସେ କିଛି ଜାଣି ପାରିବେ ନାହିଁ। ମୁଁ ସକାଳେ ଯାଇ ସନ୍ଧ୍ୟାକୁ ଫେରିଆସିବି।

: ଆଚ୍ଛା ସେ କଥା ପରେ ଦେଖାଯିବ। ଆଜି ରାତି ପାହୁ। କାଲି ସକାଳ ହେଉ। ତା'ପରେ କାର୍ଯ୍ୟପନ୍ଥା ସ୍ଥିର କରିବା।

ଗାଡ଼ି ଯାଇ ଠିକଣା ସ୍ଥାନରେ ଲାଗି ଯାଇଥିଲା।

ରଜନୀଗନ୍ଧା ଓହ୍ଲେଇ ଗଲା।

-ରାତ୍ରିର ରଜନୀଗନ୍ଧା

ହାତଘଡ଼ିକୁ ଚାହିଁ ଦେଖିଲା, ସାଢ଼େ ଦଶଟା ବାଜିଛି।

ଏଥର ଖାଇପିଇ ଶୋଇବା କଥା ।

କିନ୍ତୁ ରଜନୀଗନ୍ଧା କ'ଣ ନିଶ୍ଚିନ୍ତରେ ଶୋଇପାରିବ ? ତା'ର ଯେ ସମସ୍ୟା ବହୁତ । ଗୋଟିକ ପରେ ଗୋଟିଏ ଆସି ଠିଆ ହେଉଛି । କ'ଣ ସେ କରିବ ? ତା' ଗୌତମ । ଗୌତମର ଖବର କିଏ ଦେବ ତାକୁ ?

ରଜନୀଗନ୍ଧା ଲୁଗାପଟା ବଦଳାଇଦେଇ ଅବସନ୍ନ ଦେହଟାକୁ ଖଟରେ ଲୋଟେଇ ଦେବାକୁ ଯାଉଛି, ନୀହାରିକା ଖାଦ୍ୟସାମଗ୍ରୀ ଧରି ଆସି ପହଞ୍ଚିଲା ।

ରଜନୀଗନ୍ଧାକୁ ବି ଭୋକ କରୁଥିଲା । ସେ ଉଠି ଆସିଲା ଖାଦ୍ୟ ସାମଗ୍ରୀ ପାଖକୁ ।

ନୀହାରିକା ହସି ହସି ଖାଦ୍ୟ ଦ୍ରବ୍ୟ ପରିବେଷଣ କରୁ କରୁ କହିଲା: ଦିଦି, ତମେ ଆଜିଠାରୁ ଆମର ଦଳନେତ୍ରୀ ହେଲ, ନୁହେଁ ?

ରଜନୀଗନ୍ଧା ତା' ମୁହଁକୁ ଚାହିଁଲା: ତତେ କିଏ କହିଲା ?

: ମୁଁ ଜାଣେ ଦିଦି । ମୋତେ ସବୁ ଜଣା ହୋଇଯାଏ । ମୁଁ କିନ୍ତୁ ଭାରି ଖୁସି ଦିଦି ।

: କାହିଁକି, ତୋର ଏତେ ଖୁସି ହେବାର କ'ଣ ଅଛି ?

: ବା, ମୁଁ ଖୁସି ହେବି ନାହିଁ ଆଉ ହେବ କିଏ ? ତମେ ରାଣୀ ହେଲେ ମୁଁ ହେବି ରାଣୀମା'ଙ୍କର ପରିଚାରିକା । ମୋର ଖାତିର ବଢ଼ିଯିବ । ମୋତେ ଲୋକ ଖୋସାମଦ କରିବେ ତମ ସହିତ ଦେଖା କରିବା ପାଇଁ ।

ନୀହାରିକା ଉଚ୍ଛ୍ୱସିତ କଣ୍ଠରେ କହି ଚାଲିଥିଲା ।

ରଜନୀଗନ୍ଧା କହିଲା: ଚୁପ୍ କର । ଏତେ ବଢ଼େଇ ଆଉ କରନାହିଁ । ଜାଣିଛୁ, ଭଗବାନ କାହାରି ଦର୍ପ ସହି ପାରନ୍ତି ନାହିଁ ?

ନୀହାରିକା ଚୁପ୍ ହୋଇଗଲା ।

ରଜନୀଗନ୍ଧା ଖାଇବାକୁ ଆରମ୍ଭ କରିଦେଇଥିଲା । ଖାଉ ଖାଉ ସେ ଟିକିଏ ଅଟକି ଯାଇ ପଚାରିଲା: ଏଠି ରନ୍ଧାବଢ଼ା କିଏ କରେ ନୀହାର ?

: କାହିଁକି ଦିଦି । ତରକାରୀ ପତ୍ର କ'ଣ ଭଲ ଲାଗୁନାହିଁ ?

: ନାରେ, ଭଲ ଲାଗୁଛି ବୋଲି କହୁଛି । ଖୁବ୍ ସୁସ୍ୱାଦୁ, ଥରେ ଖାଇଲେ ଆହୁରି ଖାଇବାକୁ ମନ ହେଉଛି ।

: ତମେ ଖାଅନା, ଆଉଥରେ ଖାଇବାକୁ କିଏ କ'ଣ ବାରଣ କରୁଛି ? କୁହ ଆଉ କ'ଣ ଖାଇବ ।

ରଜନୀଗନ୍ଧା ନୀହାରିକାର କଥା ଏଡ଼େଇ ଯାଇ କହିଲା: ଅଙ୍କଲ କ'ଣ ଏଇ ରୋଷେଇରୁ ଖାଆନ୍ତି ?

: ହଁ, ଅଙ୍କଲ ଆଉ ଅଳ୍ପ କେତେଜଣଙ୍କ ପାଇଁ ଏ ରୋଷେଇ ହୁଏ। ଅନ୍ୟ ସମସ୍ତଙ୍କ ପାଇଁ ଅଲଗା ବ୍ୟବସ୍ଥା ଅଛି।

ନୀହାରିକା ଅତି ସରଳ ଭାବରେ କହିଲା।

: ଏଠି କିଏ କିଏ ଥାଆନ୍ତି ? ଅଙ୍କଲ, ମୁଁ, ତୁ ଆଉ...

ନୀହାରିକା ହସିଲା,କହିଲା: ପୁଣି ଦିଦି ସେଇକଥା। ମୁଁ ସମସ୍ତଙ୍କ ନାଁ ଜାଣିବି କିମିତି ! ତେବେ ମୁଁ ଦେଖେ ଆଠଦଶ ଜଣଙ୍କ ପାଇଁ ରୋଷେଇ ହୁଏ।

: ହଉ ଭଲ କଥା । ତୁ ଏ ବାସନ ପତ୍ର ନେଇଗଲୁ। ମୋତେ ଭାରି ନିଦ ଲାଗିଲାଣି। ମୁଁ ଆଜି ଶୀଘ୍ର ଶୀଘ୍ର ଶୋଇପଡ଼ିବି।

ନୀହାରିକା ବାସନପତ୍ର ଗୋଟଉ ଗୋଟଉ କହିଲା: କଫି ପିଇବ ନାହିଁ ?

: ନିଶ୍ଚୟ । ଅଭ୍ୟାସଟା ଛାଡ଼ି ଯାଇଥିଲା। ତୁ ପୁଣି ମୋତେ ଅଭ୍ୟସ୍ତ କରେଇ ଦେବୁ ଦେଖୁଛି।

ନୀହାରିକା କହିଲା: ତମର ଅଭାବ କ'ଣ ଅଛି ଦିଦି। କଫି କପେ ନ ପିଇ କେତେ ପଇସା ସଞ୍ଚିବ ?

: ହଉ ଉପଦେଶ ଗୁଡ଼ାକ ଅନ୍ୟଦିନ ଦେଲେ ଚଳିବ। ତୁ ଗଲୁ ଶୀଘ୍ର କଫି ପଟଟା ନେଇ ଆସିବୁ। ମୁଁ ଆଜି ଭୀଷଣ ଥକି ପଡ଼ିଛି।

ନୀହାରିକା ଆଉ କିଛି କଥା ନ କହି ବାସନପତ୍ର ଧରି ସଙ୍ଗେସଙ୍ଗେ ଘରୁ ବାହାରି ଚାଲିଗଲା।

ରଜନୀଗନ୍ଧା ମୁହଁହାତ ଧୋଇଆସି କଫି ପାଇଁ ଅପେକ୍ଷା କଲା। ତା'ମନ ଭିତରେ ଉତ୍ତେଜନା ଦେଖାଦେଇଥିଲା। କଫି ପଟ୍‌ର କୋଠରି ଭିତରୁ ସେ ଆଜି କି ସମ୍ବାଦ ପାଇବ କିଏ ଜାଣେ ?

ମନେମନେ ସେ ନିଜକୁ ପ୍ରସ୍ତୁତ କରୁଥିଲା। ସେ ଏଠାକୁ ଆସି ପୁଣି ଛନ୍ଦି ହୋଇପଡ଼ିଛି। ଏ ନାଗଫାଶ ଛିଡ଼େଇ ମୁକୁଳିବା ଆଉ ତା' ପକ୍ଷରେ ସମ୍ଭବ ନୁହେଁ। ଗୌତମଙ୍କୁ ସେ ହୁଏତ ଉଦ୍ଧାର କରିପାରିବ, କିନ୍ତୁ ତାକୁ ସେ ଆଉ ଆଦର୍ଶ ଚରିତ୍ରବାନ କରି ଗଢ଼ି ପାରିବ ନାହିଁ। ତା'ର ସାଧନା ବ୍ୟର୍ଥ ହୋଇଛି। ସେ ହାରି ଯାଇଛି।

ନୀହାରିକା କଫି ପଟ୍ ଧରି ଆସିଲା।

ରଜନୀଗନ୍ଧା ମନର ଉତ୍ତେଜନା ଆହୁରି ବଢ଼ିଗଲା। ସେ ଖଟ ଉପରୁ ଓହ୍ଲେଇପଡ଼ି ଛୁଟିଗଲା ନୀହାରିକା ହାତରୁ କଫି ପଟ୍‌ଟା କାଢ଼ି ଆଣିବା ପାଇଁ। କିନ୍ତୁ ସେ ଚେତା ପାଇଲା ପରି ଅଟକିଗଲା। ବସିଲା ଗୋଟାଏ ଚେଆରରେ। ଉଦାସ କଣ୍ଠରେ କହିଲା: ଏଇଠି ରଖି ତୁ ଚାଲିଯା ନୀହାରିକା। ଆଜି ଅନେକ ରାତି ହେଲାଣି। ତୁ ମୋ ପାଇଁ ଅନେକ କଷ୍ଟ ସହିଲୁଣି।

ନୀହାରିକା ହସିଲା। କହିଲା: ତମେ ଆଜି କ'ଣ ନୂଆ କଥା କହୁଛ ଦିଦି। ତମ

ସେବା କରିବା ପାଇଁ ତ ମୁଁ ଜନ୍ମ ହୋଇଛି। ତମ ପାଇଁ କଷ୍ଟ ସହିଲେ ମୋର ପୁଣ୍ୟ ହେବ। ମୁଁ ସ୍ୱର୍ଗକୁ ଯିବି।

ରଜନୀଗନ୍ଧାକୁ ଚାଟୁକଥା ସବୁ ଆଉ ଭଲ ଲାଗୁନଥିଲା।

ସେ ଶାସନ କଲାଭଳି ଭଙ୍ଗୀରେ ଚିତ୍କାର କରି କହିଲା: ତୁ ଗଲୁ ନୀହାର। ମୋ ସେବା କଲେ ଯଦି ସ୍ୱର୍ଗକୁ ଯାଇପାରିବୁ, ତେବେ ମୁଁ ତୋତେ ନିଶ୍ଚୟ ସେ ସୁଯୋଗ ଦେବି। କିନ୍ତୁ ରାତିଅଧରେ ତୋତେ ହଇରାଣ କରି ମୁଁ କଷ୍ଟ ଦେବାକୁ ଚାହେଁ ନାହିଁ। ତୁ ଯା, ଖାଇପିଇ ଶୋଇବୁ ଯା।

ନୀହାରିକା ଆଉ କିଛି କହିଲା ନାହିଁ। ହସିଲା ମୁହଁରେ ରଜନୀଗନ୍ଧା ଆଡ଼କୁ ଚାହିଁ ଚାହିଁ ଘରୁ ବାହାରିଗଲା।

ରଜନୀଗନ୍ଧା ଉଠିଯାଇ କବାଟଟା ଭିତରୁ ଲଗେଇ ଦେଇ ଫେରିଆସିଲା କଫି ପଟ୍ ପାଖକୁ। ସଙ୍ଗେ ସଙ୍ଗେ ଢାଙ୍କୁଣୀ ଖୋଲିଲା। ତା' ଛାତିରୁ ଯେପରି ଅତଡ଼ା ଖସିପଡ଼ିଲା। ହଁ, ଆଜି ବି ଭିତରେ ଖଣ୍ଡେ ସାଦା କାଗଜ ରହିଛି।

ଆଜି ଆଉ ସେ ଧୈର୍ଯ୍ୟ ଧରି ବସି ପାରିଲା ନାହିଁ। ଚାରିଆଡ଼କୁ ଚାହିଁ ସତର୍କତା ଅବଲମ୍ବନ କରି ପାରିଲା ନାହିଁ। ସେଇ ମୁକ୍ତଆଲୋକ ମଧ୍ୟରେ କ୍ଷିପ୍ର ହସ୍ତରେ ସାଦା କାଗଜ ଖଣ୍ଡିକ ଟାଣି ବ୍ଲାଉଜ୍ ତଳେ ଭରିଦେଲା ଏବଂ ସାଙ୍ଗେସାଙ୍ଗେ ଉଠିଗଲା ବାଥ୍‌ରୁମ୍ ଭିତରକୁ।

କାଗଜ ଖଣ୍ଡିକ ଖୋଲି ପଢ଼ିଲା:

ଦିଦି,

ମୁଁ ଯାହା ଭାବିଥିଲି ମନେ ହେଉଛି ଘଟଣାଟା ତାହା ନୁହେଁ। ଗୌତମ ପାଇଁ ମୁଁ ବି ଆଜି ଚିନ୍ତିତ। କାରଣ କାଲିଠାରୁ ମୁଁ ମୋର ସମସ୍ତ ଶକ୍ତି ଲଗେଇ ଗୌତମର କିଛି ଖବର ପାଇନାହିଁ। ମୋର ମନେ ହେଉଛି, ତାକୁ ଏପରି କୌଣସି ନିଭୃତ ସ୍ଥାନରେ ରଖାହୋଇଛି, ଯେଉଁଠୁ କି ତା'ର ଠାବ କରିବା ଆମ କାହାରି ପକ୍ଷରେ ସମ୍ଭବ ହେବନାହିଁ, ଅଥବା ତାକୁ ଅନ୍ୟ କୌଣସି ସହରକୁ ପଠାଇ ଦିଆହୋଇଛି। ଅଙ୍କଲଙ୍କର ଏପରି ଶକ୍ତ ହାତରେ କାର୍ଯ୍ୟ କରିବାର ମୂଳ କାରଣ ହେଉଛି, ସେଇ ଡାଇମଣ୍ଡ ନେକ୍‌ଲେସ୍। ଯେପରି ଭାବରେ ହେଉ ତାଙ୍କୁ ସେଇଟି ହସ୍ତଗତ କରିବାକୁ ହେବ। କାରଣ ବିଦେଶ ବଜାରରୁ ସେ ଏଥିପାଇଁ ବହୁତ ଟଙ୍କା ଅଗ୍ରୀମ ନେଇ ସାରିଛନ୍ତି ଏବଂ ସେ ଆଶଙ୍କା କରୁଛନ୍ତି, ସେଇ ନେକ୍‌ଲେସ୍‌ଟି ପଛରେ ଅନ୍ୟ ଗୋଟିଏ ଦଳ ବି ଛୁଟିଛି। ସେମାନଙ୍କ ଦଳପତି କୁଆଡ଼େ ଖୁବ୍ ପ୍ରଭାବଶାଳୀ। ଭାରତୀୟ ରାଜନୀତିରେ ତା'ର ଯଥେଷ୍ଟ କର୍ତ୍ତୃତ୍ୱ ଅଛି।

କିନ୍ତୁ ଅଙ୍କଲଙ୍କର ଧାରଣା, ସେ ଲୋକ ବାହାରେ ଯେତେ ପ୍ରଭାବଶାଳୀ ହେଲେ ମଧ୍ୟ, ଆଭ୍ୟନ୍ତରୀଣ କାର୍ଯ୍ୟରେ ତା'ର ଦକ୍ଷତା ଖୁବ୍ କମ୍। ଏ ଯେପରି ଦୁଇ ଦଳପତିଙ୍କ

ମଧ୍ୟରେ ଏକ ପ୍ରତିଯୋଗିତା। ଚାଲେଞ୍ଜ। ମୋର ମନେହେଉଛି, ଅଙ୍କଲ ସେଇଥିପାଇଁ ଗୌତମକୁ ଅନ୍ୟତ୍ର ପଠାଇ ଦେଇଛନ୍ତି। ତମେ ହୁଏତ ଗୌତମକୁ ପାଖରେ ପାଇଲେ ବା ଆଖିରେ ଦେଖିଲେ, ତମର କର୍ମପଦ୍ଧତି ଶିଥିଳ କରିଦେବ। ସେଇଥିପାଇଁ ଗୌତମକୁ ଦୂରକୁ ପଠାଇ, ତମ ମନରେ କାରୁଣ୍ୟ ସଞ୍ଚାର କରି, ତମ କର୍ମରେ ତମକୁ ଏକାଗ୍ର କରାଇବାକୁ ଚାହାନ୍ତି। ଯାହାହେଉ, ମୋଟ କଥା ତମେ ସେଇ ଡାଇମଣ୍ଡ ନେକ୍‌ଲେସ୍‌ଟି ଉଦ୍ଧାର କରି ଆଣିପାରିଲେ, ଅଙ୍କଲ ଗୌତମକୁ ଫେରାଇ ଦେବେ। ମୋର ସେଇ ଧାରଣା ଜନ୍ମିଛି।

ତଥାପି ମୁଁ ଗୌତମର ସନ୍ଧାନରେ ଲାଗିଛି। ସେ କେଉଁଠି ଅଛି ଜାଣି ପାରିଲେ ତମକୁ ଜଣାଇବି। ମୋର ଧାରଣା, ଅଙ୍କଲ ଗୌତମର କିଛି କ୍ଷତି କରିବେ ନାହିଁ। ହୁଏତ ଗୌତମ ନିଜେ ନିଜେ ତା' ମୁକ୍ତିର ପଥ କରିନେବ। କାରଣ ସେ ବୁଝିପାରିଛି। ତାକୁ ବନ୍ଦୀ କରି ରଖା ହୋଇଛି। ମୁଁ ତାକୁ ଅନେକ କଥା ଜଣେଇ ଦେଇଛି। ତା'ମନରେ ଏକ ବିଦ୍ରୋହୀ ଭାବ ଜାଗ୍ରତ କରାଇ ଦେଇଛି।

ଦିଦି, ଆମେ ସବୁ ବଡ଼ ଅଭାଗିନୀ। ଆମ ଜୀବନ ବଞ୍ଚେଇବା ପାଇଁ ଜୀବନ ଭରି ଆମକୁ ଯେ କେତେ ଯନ୍ତ୍ରଣା ଭୋଗ କରିବାକୁ ହେଉଛି, ସେ କଥା ତମେ ତ ନିଜେ ଅଙ୍ଗେ ନିଭଉଛ। ମୁଁ ଆଜି ଏତିକିରୁ ରହିଲି। ସମ୍ଭବ ହେଲେ କାଲି ପୁଣି ଜଣାଇବି।

ରଜନୀଗନ୍ଧା ଚିଠିଟି ପଢ଼ି ସ୍ତବ୍ଧ ହୋଇ ଯାଇଥିଲା, ଗୌତମ ତା'ହେଲେ ଏ ସହରରେ ନାହିଁ? ଗୌତମ, ବାବୁରେ...

ରଜନୀଗନ୍ଧା ଆଖିରେ ଲୁହ ଭରି ଆସିଲା।

ସେ ଫେରିଆସିଲା ଖଟ ଉପରକୁ। ଅଙ୍କଲ ଦୈତ୍ୟାୟନ ତା' ଜୀବନ ନାଟିକା ହାତ ମୁଠାରେ ମୁଠେଇ ଯେଉଁ ନାଟକ ଆରମ୍ଭ କରିଛନ୍ତି, ସେ ନାଟକରେ ସେ କ'ଣ ସାଫଲ୍ୟ ମଣ୍ଡିତ ହେବେ? ଆଉ ନିଜେ ରଜନୀଗନ୍ଧା? ଗୌତମର ଉଦ୍ଧାର ପାଇଁ ଯେଉଁ ପଣ ରଖାହୋଇଛି, ତହିଁରେ କ'ଣ ସେ ସାଫଲ୍ୟ ଅର୍ଜନ କରିପାରିବ?

ହୀରକ ନେକ୍‌ଲେସଟି ଅଙ୍କଲଙ୍କୁ ଆଣିଦେଲେ ସେ ଗୌତମକୁ ଫେରାଇ ଦେବେ। ରଜନୀଗନ୍ଧା କ'ଣ ସଫଳ ହୋଇପାରିବ?

କିନ୍ତୁ ଗୌତମ?

ଗୌତମର ବିଷଣ୍ଣ ମୁଖଟି ତା' ଆଖି ଆଗରେ ଭାସି ଉଠିଲା। ଲୁହ ଛଳଛଳ ଆଖିରେ, ସେ ଯେପରି ଆଗେଇ ଆସି କହୁଛି, ମା, ମା, ମୋର ଭୀଷଣ କଷ୍ଟ। ମୋତେ ଉଦ୍ଧାର କର ମା !

ରଜନୀଗନ୍ଧା କଇଁକଇଁ ହୋଇ କାନ୍ଦି ଉଠିଲା।

ଗୌତମ, ଗୌତମ, ବାବୁରେ....

ରାତ୍ରିର ରଜନୀଗନ୍ଧା।

ସକାଳୁ ଉଠି ରଜନୀଗନ୍ଧା ଅନୁଭବ କଲା, ତା'ର ଦେହମନ କିପରି ପ୍ରଚଣ୍ଡ କଠିନ ହୋଇଯାଇଛି। ତା'ର ମନେ ହେଲା, ସେ ଆଜି ଆଉ ଗୌତମର ମା' ନୁହେଁ। ସେ ଯେମିତି ଏଠାକାର ଦଳନେତ୍ରୀ।

ଖଟ ବାଡ଼ରେ ଥିବା କଲିଂ ବେଲ୍‌ର ବୋତାମ ଟିପିଲା।

ଭାର୍ଗବ ଆସି ଠିଆ ହେଲା ସାମ୍‌ନାରେ।

ରଜନୀଗନ୍ଧା ତୃପ୍ତ କଣ୍ଠରେ କହିଲା: ବସ।

ଭାର୍ଗବ ସାମ୍‌ନା ଚେଆରରେ ବସିଲା।

: ଶୁଣ ଭାର୍ଗବ। ଆମେ ଆଜିଠାରୁ ଆମର କାମ ଆରମ୍ଭ କରିବା।

: ଇଏସ୍ ମାଡାମ୍।

ଭାର୍ଗବ ଉତ୍ତର ଦେଲା।

: ତମର ପ୍ରଥମ କାମ ହେଉଛି, ତମେ ଆଜି ଯାଇ ହୋଟେଲ ଇଣ୍ଟରନ୍ୟାସନାଲରେ ଦୁଇଟି ରୁମ୍ ବୁକ୍ କରିବ। ରୁମ୍ ଦୁଇଟି ପାଖକୁପାଖ ଲଗାଲଗି ହୋଇଥିବ।

: କିନ୍ତୁ ମାଡାମ୍...।

ଭାର୍ଗବ ବାଧାଦେଇ କ'ଣ କହିବାକୁ ଯାଉଥିଲା।

: ତମେ ଚୁପ୍‌କର ଭାର୍ଗବ। ମୁଁ ଯାହା କହୁଛି ମୋ କଥା ଶୁଣ।

ରଜନୀଗନ୍ଧାର କଣ୍ଠସ୍ୱରରେ ଦୃଢ଼ତା ଫୁଟି ଉଠିଥିଲା।

: ଇଏସ୍ ମାଡାମ୍। କୁହନ୍ତୁ।

: ହୋଟେଲ ଇଣ୍ଟର ନ୍ୟାସନାଲରେ ଦୁଇଟି ରୁମ୍ ବୁକ୍ କରିବ। ରୁମ୍ ଦୁଇଟି ପାଖକୁ ପାଖ ଲାଗି ହୋଇଥିବ।

: ହୋଟେଲ ଇଣ୍ଟରନ୍ୟାସନାଲରେ ଦୁଇଟି ରୁମ୍ ବୁକ୍ କରିବ ରାଜକୁମାର ନନ୍ଦନଗଡ଼ଙ୍କ ନାମରେ। ଶନିବାର ରାତି ଗୋଟାଏ ପାର୍ଟିର ଆୟୋଜନ କରିବ ସେଇ ହୋଟେଲ ଇଣ୍ଟରନ୍ୟାସନାଲ 'ପିକକ୍'ରେ। ନୃତ୍ୟଗୀତର ଆୟୋଜନ ମଧ୍ୟ ରହିବ। ସେଠାକୁ କେଉଁମାନେ ନିମନ୍ତ୍ରିତ ହୋଇ ଆସିବେ, ସେ ଲିଷ୍ଟ ମୁଁ ତୁମକୁ ଆଜି ସନ୍ଧ୍ୟାବେଳକୁ ଦେବି। ହଁ, ଆଉ ଗୋଟାଏ କଥା ମନେ ରଖ, ତମେ ରାଜକୁମାର ନନ୍ଦନଗଡ଼ଙ୍କ ପ୍ରାଇଭେଟ୍ ସେକ୍ରେଟାରୀ, ତମ ନାଁ ଅମୃତ ପ୍ରୀତମ୍। କୁମାର ସାହେବ ବର୍ତ୍ତମାନ ଦାର୍ଜିଲିଂରେ ଅଛନ୍ତି। ଆଗାମୀ ଶନିବାର ତାଙ୍କର ଜନ୍ମତିଥି ପଡୁଥିବାରୁ ସେ ଏଠାରେ ଏକ ଉତ୍ସବ ପାଳନ କରିବାକୁ ଚାହୁଁଛନ୍ତି। ଏଠାକାର ତାଙ୍କର ମୁଷ୍ଟିମେୟ ବନ୍ଧୁବାନ୍ଧବୀମାନଙ୍କୁ ସେ ନିମନ୍ତ୍ରଣ କରିବେ। ନିମନ୍ତ୍ରିତ ଅତିଥିମାନେ ସମାଜର ବହୁ ମାନ୍ୟଗଣ୍ୟ ବ୍ୟକ୍ତି। ଉଚ୍ଚ ସରକାରୀ କର୍ମଚାରୀ। ସେମାନଙ୍କର ଯେପରି ଅସମ୍ମାନ ନ ହୁଏ, ସେହିପରି ଆୟୋଜନ କରିବାକୁ ହେବ।

: ଇଏସ୍ ମାଡାମ୍।

: ତମେ କୁମାର ସାହେବଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ହିସାବରେ, ନିମନ୍ତ୍ରଣ ପତ୍ର ନେଇ, ଲିଷ୍ଟ ଅନୁସାରେ ବିତରଣ କରିଆସିବ। ଏବଂ କୁମାର ସାହେବଙ୍କର ସନିର୍ବନ୍ଧ ଅନୁରୋଧ କଥା ଜଣାଇ ନିମ୍ନନ୍ତ୍ରିତମାନଙ୍କୁ ନିଶ୍ଚୟ ଭୋଜିସଭାରେ ଯୋଗ ଦେବାକୁ କହିବ। ଅବଶ୍ୟ ନିମନ୍ତ୍ରିତ ଅତିଥି ହେବେ ମୁଷ୍ଟିମେୟ। କିନ୍ତୁ ସମସ୍ତଙ୍କର ଉପସ୍ଥିତି ଅବଶ୍ୟ ବାଞ୍ଛନୀୟ। ଆଶା କରୁଛି, ତମେ ଏ ଦାୟିତ୍ୱ ସୁଚାରୁ ରୂପେ ପାଳନ କରିପାରିବ।

: ଇଏସ୍ ମାଡାମ୍।

: ତୁମ ନାଁ ଅମୃତପ୍ରୀତମ୍ ଏବଂ ତୁମେ ରାଜକୁମାର ନନ୍ଦନଗଡ଼ଙ୍କର ପ୍ରାଇଭେଟ୍ ସେକ୍ରେଟାରୀ। ମନେ ରହିଲା ?

: ଇଏସ୍ ମାଡାମ୍।

: ତା' ହେଲେ ତୁମେ ବାହାରି ଯାଅ। ପ୍ରସ୍ତୁତି ପର୍ବ ଆରମ୍ଭ କରିଦିଅ। ଅଙ୍କଲ ଆସି ଦେଖନ୍ତୁ ଆମେ ଚୁପ୍‌ଚାପ୍ ବସି ନାହାନ୍ତି।

ଭାର୍ଗବ ବାହାରି ଚାଲିଗଲା।

ରଜନୀଗନ୍ଧା ମନେମନେ ହିସାବ କରି ବସିଲା ଏହି ଭୋଜିସଭାକୁ କାହାକୁ ସେ ନିମନ୍ତ୍ରଣ କରିବ। ବର୍ତ୍ତମାନ ରଜନୀଗନ୍ଧା ମନପ୍ରାଣରେ କିପରି ଉତ୍ତେଜିତ ହୋଇଉଠୁଥିଲା। କାଲି ରାତି ଭରି ସେ ଭଲ କରି ଶୋଇପାରିନଥିଲା।

ତାର ମନେ ହେଉଥିଲା, ଜୟନ୍ତ ଯେପରି ତା' ପାଖେ ପାଖେ ରହି ଉତ୍ତେଜିତ କରୁଛି: ତମେ ଡରି ଯାଉଛ ରଜନୀଗନ୍ଧା ! ଭଲଟ ଭିତରୁ ଗୋଟାଏ ନେକ୍‌ଲେସ୍ ତମେ

ଯଦି ଉଦ୍ଧାର କରିନପାରିବ, ତା'ହେଲେ ତମେ ଜୀବନରେ କ'ଣ କରିପାରିବ ? ଗୌତମ ଆମର ବନ୍ଦୀ। ତାକୁ ଉଦ୍ଧାର କରିବା ପାଇଁ ଯେଉଁ ମୁକ୍ତିପଣ ତୁମ ଆଗରେ, ସେ ଅତି ନଗଣ୍ୟ। ତମେ ଉଠ, ଜାଗ, ତିଆର୍ ହୁଅ- ମୁଁ ତ ତମ ସଙ୍ଗେ ସଙ୍ଗେ ଅଛି। କିନ୍ତୁ ଗୋଟାଏ କଥା ରଜନୀଗନ୍ଧା, ତମେ ନେକ୍‌ଲେସ୍ ଉଦ୍ଧାରର କର୍ମପଦ୍ଧତି ବଦଳାଅ। ଷୋଳବର୍ଷ ତଳେ ଆମେ ଯେମିତି ଲୁଚିଲୁଚି ଯାଇ ନ୍ୟାସନାଲ ମିଉଜିଅମ୍‌ର ଭଲ୍ଟ ପାଖରେ ପହଞ୍ଚିଥିଲେ, ଆଜି କିନ୍ତୁ ସେପରି ପ୍ରଚେଷ୍ଟାରେ କାର୍ଯ୍ୟ ହାସଲ କରିପାରିବ ନାହିଁ। ଆଜି ତମକୁ ନୂତନ ପଦ୍ଧତି, ନୂତନ ପନ୍ଥା ଅବଲମ୍ବନ କରିବାକୁ ହେବ। ସମସ୍ତଙ୍କ ସାମ୍‌ନାରେ, ସେମାନଙ୍କ ଆଖିରେ ଧୂଳି ଫିଙ୍ଗି ତମେ ନେକ୍‌ଲେସ୍‌ଟି ଉଦ୍ଧାର କରିବ। ସେଥିପାଇଁ ବୁଦ୍ଧିର ଲଢ଼େଇ ଦରକାର। ତମେ ପାରିବ ରଜନୀଗନ୍ଧା। ବୁଦ୍ଧିର ଲଢ଼େଇରେ ତମେ ଜିତିଯିବ।

ହଁ, ବୁଦ୍ଧିର ଲଢ଼େଇ। ବୁଦ୍ଧିର ଲଢ଼େଇ କରିବାକୁ ହେବ ରଜନୀଗନ୍ଧାକୁ। କିନ୍ତୁ କି ବୁଦ୍ଧି, କିପରି ବୁଦ୍ଧି ସେ ଖଟାଇବ ଏଠାରେ।

ରାତି ଭରି ରଜନୀଗନ୍ଧା ଆଖିରେ ନିଦ ନ ଥିଲା। ସେ ଚିନ୍ତା କରୁଥିଲା ନ୍ୟାସନାଲ ମିଉଜିଅମ୍‌ର ଅଣ୍ଡର୍ ଗ୍ରାଉଣ୍ଡ ଭଲ୍ଟରୁ ସେ ଐତିହାସିକ ହୀରକ ନେକ୍‌ଲେସ୍‌ଟି ଉଦ୍ଧାର କରିବ। ବୁଦ୍ଧି ଖଟେଇ।

ସମସ୍ତଙ୍କ ଆଖିରେ ଅଙ୍ଗୁଳି ଗୁଞ୍ଜି।

କିନ୍ତୁ କିପରି ? କିପରି ? ?

ରାତ୍ରିର ଶେଷପ୍ରହରରେ, ଯେତେବେଳେ ରଜନୀଗନ୍ଧା ତନ୍ଦ୍ରାଚ୍ଛନ୍ନ, ସେତିକିବେଳେ ସେ ଯେପରି ଅନୁଭବ କଲା, କିଏ ଗୋଟିଏ ଛାୟାମୂର୍ତ୍ତି ତା' ମୁଣ୍ଡ ପାଖରେ ବସି ଧୀରେ ଧୀରେ ତାକୁ କହୁଛି: ଏ କାର୍ଯ୍ୟ ଉଦ୍ଧାର ପାଇଁ ତୁମକୁ ଛଦ୍ମ ଆବରଣରେ ଅଙ୍ଗ ଆବୃତ କରିବାକୁ ହେବ। ତମେ ହେବ କୌଣସି ଏକ ଐତିହାସିକ ରାଜପରିବାରର ରାଜବଧୂ। ତମେ ବି ଐତିହାସିକ ସମ୍ପଦର ଅଧିକାରିଣୀ ହେବ। ଏବଂ ନ୍ୟାସନାଲ ମିଉଜିଅମର ଅଧିକର୍ତ୍ତା ତମ ଐତିହାସିକ ସମ୍ପଦରେ ଆକୃଷ୍ଟ ହୋଇ ତମକୁ ସମ୍ବର୍ଧନା ଜଣାଇବେ। ଆଉ ତମେ ସେଇ ସୁଯୋଗରେ, ସେହି ଐତିହାସିକ ଡାଇମଣ୍ଡ ନେକ୍‌ଲେସ୍‌ଟି...

: କିଏ ?

ହଠାତ୍ ରଜନୀଗନ୍ଧାର ନିଦ ଭାଙ୍ଗିଗଲା। ତା'ର ମନେହେଲା, କିଏ ଜଣେ ତା' ବିଛଣା ପାଖରୁ ଉଠି ଚାଲିଯାଉଛି। ସେ କ'ଣ ଜୟନ୍ତ ! ଜୟନ୍ତ ଛଡ଼ା ଆଉ କିଏ ତା'ର ଦୁଃସମୟରେ ସାଥୀ ହୋଇପାରେ ?

ଏଥର ରଜନୀଗନ୍ଧା ଖଟ ଉପରେ ଉଠି ବସିଲା। ସୂତ୍ର ଗୋଟାଏ ସେ ପାଇଛି। ସେ

ହେବ ଏକ ଐତିହାସିକ ରାଜପରିବାରର ରାଜବଧୂ। ସେ ବି ହେବ ବହୁ ଐତିହାସିକ ସମ୍ପଦର ଅଧିକାରିଣୀ ଏବଂ...

ରଜନୀଗନ୍ଧା ମନେମନେ ଏକ ପରିକଳ୍ପନା କରିଚାଲିଲା। ହଁ, ଏ କାର୍ଯ୍ୟ ଉଦ୍ଧାର କରିବାକୁ ହେଲେ, ତାକୁ ସେହିପରି ପରିବେଶ ସୃଷ୍ଟି କରିବାକୁ ହେବ। ଆଖି ଝଲସା ଜୌଲସ୍ ଭିତରେ ବସି ରହି ତାକୁ କାର୍ଯ୍ୟ ଉଦ୍ଧାର କରିବାକୁ ହେବ।

ରଜନୀଗନ୍ଧା ଆହୁରି କିଛି ସମୟ ଚିନ୍ତା କଲା। ବିଛଣା ଉପରୁ ଉଠିଯାଇ ଆଇନା ସାମ୍ନାରେ ଠିଆହେଲା। ଭଲକରି ମୁହଁ ଦେଖିଲା, ସ୍ଲିପିଂ ଗାଉନ୍ ଖୋଲି ବହୁକ୍ଷଣଯାଏ ନିଜର ଅଙ୍ଗସୌଷ୍ଠବକୁ ନିରୀକ୍ଷଣ କଲା। ହଠାତ୍ ସେ ମନକୁମନ ଚିତ୍କାର କରି ଉଠିଲା, : ଇଉ୍‌ରେକା।

ମିଳିଛି, ମିଳିଛି। ସୂତ୍ର ସେ ଆବିଷ୍କାର କରିଛି।

ରଜନୀଗନ୍ଧା ଆଉ ବିଛଣାକୁ ଲେଉଟିଲା ନାହିଁ। ସେଉଠୁ ସିଧା ଯାଇ ସେ ବାଥ୍‌ରୁମ୍‌ରେ ପଶିଲା। ସକାଳ ହୋଇଗଲାଣି। ନିତ୍ୟକର୍ମ ଶେଷ କରି ତାକୁ କାର୍ଯ୍ୟରେ ଅବତୀର୍ଣ୍ଣ ହେବାକୁ ହେବ। ଆଉ ସମୟ ନଷ୍ଟ କଲେ ଚଳିବ ନାହିଁ।

ନିତ୍ୟକର୍ମ ଶେଷକରି ସେ ଫେରି ଆସିଲା ବିଛଣା ଉପରକୁ। ତା'ପରେ ଭାର୍ଗବକୁ ଡାକି ପଠାଇ ଦେଲା ହୋଟେଲ ଇଣ୍ଟରନ୍ୟାସନାଲରେ ଦୁଇଟି ରୁମ୍ ରିଜର୍ଭ କରିବା ପାଇଁ।

ଗୋଟାଏ ଉତ୍ତେଜନାରେ ରଜନୀଗନ୍ଧା ଏତକ କାମ ଶେଷ କଲା। ଏହାପରେ? ପରବର୍ତ୍ତୀ କାର୍ଯ୍ୟପନ୍ଥା ସମ୍ବନ୍ଧରେ ସେ ଚିନ୍ତା କରିବାକୁ ଲାଗିଲା।

ନ୍ୟାସନାଲ ମିଉଜିଅମର ଡାଇରେକ୍‌ଟରଙ୍କୁ ସେ ଭୋଜିସଭାକୁ ଡାକିବ। ତାଙ୍କର ସେକ୍ରେଟାରୀ, ଅନ୍ୟାନ୍ୟ ପଦସ୍ଥ ଅଫିସର ଏବଂ ଜଣେ ଦି'ଜଣ ଐତିହାସିକ ସେଇ ଭୋଜି ସଭାକୁ ନିମନ୍ତ୍ରିତ ହେବେ। କିନ୍ତୁ ସେମାନେ କ'ଣ ଦେଖି ଆକୃଷ୍ଟ ହେବେ ରଜନୀଗନ୍ଧା ପ୍ରତି ?

ରଜନୀଗନ୍ଧା ଚିନ୍ତା କଲା।

ସେ ଏପରି କୌଣସି ପୋଷାକ ପରିଚ୍ଛଦ ପରିଧାନ କରିବ, ଯହିଁରେ ଐତିହାସିକ କୀର୍ତ୍ତିର ସୂଚନା ଥିବ ବା ବ୍ୟାଖ୍ୟା କରିବାର ସୁଯୋଗ ଥିବ।

ରଜନୀଗନ୍ଧା ଆଖି ବୁଜି ବହୁତ ସମୟ ଚିନ୍ତା କଲା। ତାର ମନେହେଲା, ସେ ଯଦି ସେହି ହୀରକ ନେକ୍‌ଲେସ୍ ଭଳି କୌଣସି ଏକ ଅଳଙ୍କାର ପରିଧାନ କରି ତାହାର ଐତିହାସିକ ପଟଭୂମି ସମ୍ବନ୍ଧରେ ସେଦିନ ଭୋଜିସଭାରେ ବ୍ୟାଖ୍ୟା କରିପାରେ, ତା'ହେଲେ ସେହି ବିଜ୍ଞଜନମାନେ ତା' ପ୍ରତି ଆକୃଷ୍ଟ ହେବେ ଏବଂ ସେମାନଙ୍କ ସହିତ ଯୋଗସୂତ୍ର ସ୍ଥାପନର ସେହି ହେବ ତା' ପକ୍ଷରେ ଏକମାତ୍ର ସୁଯୋଗ।

କିନ୍ତୁ... କିନ୍ତୁ....

ଏ କ୍ଷେତ୍ରରେ କିଏ ତା'ର ପଥପ୍ରଦର୍ଶକ ହେବ? କେଉଁଠୁ ସେ ସଂଗ୍ରହ କରିବ ସେହି ଆକର୍ଷଣୀୟ ଐତିହାସିକ ସମ୍ପଦ!

ମନେ ପଡ଼ିଲା ତା'ର ସତ୍ୟବ୍ରତ ମହାପାତ୍ରଙ୍କ କଥା। ସେଇ ଏକମାତ୍ର ଲୋକ ଯିଏ ତାକୁ ଏ କ୍ଷେତ୍ରରେ ସାହାଯ୍ୟ କରିପାରନ୍ତେ। କିନ୍ତୁ ତାଙ୍କ ପାଖରେ ପହଞ୍ଚିବାର ସବୁ ପଥ ଯେ ବନ୍ଦ।

ତଥାପି ରଜନୀଗନ୍ଧା ମନରେ କ୍ଷୀଣ ଆଲୋକଶିଖା ପ୍ରଜ୍ୱଳିତ ହୋଇଥିଲା।

ସେତିକିବେଳେ ନୀହାରିକା ପ୍ରବେଶ କଲା ଘର ଭିତରେ। ମୁହଁରେ ସ୍ମିତହସ। ହାତରେ ଗୋଟାଏ ଟ୍ରେ। ସକାଳ ଖାଦ୍ୟସାମଗ୍ରୀ।

: କାଲି ରାତିରେ ବୋଧେ ଭଲ ନିଦ ହୋଇନି ଦିଦି। ଆଖି ଇମିତି ପାତାଳକୁ ପଶିଯାଇଛି କାହିଁକି?

ରଜନୀଗନ୍ଧା କିଛି କହିଲା ନାହିଁ। ସେ ବୋଧେ ନୀହାରିକାର ସବୁ କଥା ଶୁଣି ପାରିନଥିଲା। ଉଠିଗଲା ଖାଇବା ଟେବୁଲ୍ ପାଖକୁ।

: କି ଦିଦି କ'ଣ ଏତେ ଚିନ୍ତା କରୁଚ ମ! ତମେ ତ ଏଇକ୍ଷିଣା ଦଳର ମଣି। ଏତେ ଚିନ୍ତା ଭାବନା କ'ଣ! ଆମେ ସବୁ ତମର ମନେ ରହିବୁଟି।

ରଜନୀଗନ୍ଧା ନୀହାରିକା ପ୍ରଶ୍ନର କୌଣସି ଉତ୍ତର ନ ଦେଇ ନୀରବରେ ଖାଇ ବସିଲା। ସେ ଚିନ୍ତା କରୁଥିଲା, କିପରି ସମସ୍ୟାର ସମାଧାନ କରିବ। ଭାର୍ଗବ ଯେତେବେଳେ ଫେରି ଆସି ତାକୁ କହିବ, ହୋଟେଲରେ ରୁମ୍ ବୁକ୍ ହୋଇଯାଇଛି; ତା'ପରର କାର୍ଯ୍ୟଧାରା କ'ଣ ହେବ?

: ଦିଦି ମ!

ନୀହାରିକା ପୁଣି ଡାକିଲା।

ଏଥର ରଜନୀଗନ୍ଧା ତା'ଆଡ଼କୁ ଚାହିଁ କହିଲା: କଣ କହୁଛୁ?

: ମୁଁ ଏତେକଥା କହିଗଲି, ତମେ କ'ଣ କିଛି ଶୁଣିନାହଁ ଦିଦି ? କାହା ସ୍ୱପ୍ନରେ ମଗ୍ନ ଥିଲ?

: ହଁ ସ୍ୱପ୍ନ, ନୀହାର ତୁ ସତ କହିଛୁ। ଏଗୁଡ଼ା ସବୁ ସ୍ୱପ୍ନ। ତୁ ଜାଣିଛୁ ନୀହାର, ସ୍ୱପ୍ନ କେବେ ସଫଳ ହୁଏ?

: ହୁଏ ଦିଦି, ରାତ୍ରିର ଶେଷପ୍ରହରରେ କେହି ଯଦି କିଛି ସ୍ୱପ୍ନ ଦେଖେ, ତା'ହେଲେ ସେ ସ୍ୱପ୍ନ ସଫଳ ହୁଏ।

: କ'ଣ କହିଲୁ? ରାତ୍ରିର ଶେଷପ୍ରହରର ସ୍ୱପ୍ନ ସଫଳ ହୁଏ? ସତ କହୁଛୁ ନୀହାର ? ରଜନୀଗନ୍ଧାର କଣ୍ଠର କିପରି ବ୍ୟାକୁଳତା ଫୁଟି ଉଠିଥିଲା।

ନୀହାରିକା ରଜନୀଗନ୍ଧାକୁ ଟିକିଏ ଅସ୍ୱାଭାବିକ ଦେଖି ନୀରବ ହୋଇଗଲା। ଖିଆ ଶେଷ କରି, ଟାଓ୍ୱାଲରେ ହାତ ପୋଛି, ରଜନୀଗନ୍ଧା ଫେରିଗଲା ତା' ଖଟ ଉପରକୁ।

: କଫି ପିଇବେ ଦିଦି ?

ନୀହାରିକା ବାସନପତ୍ର ଉଠେଇ ନେଉ ନେଉ ପଚାରିଲା।

: ହଁ ।

ରଜନୀଗନ୍ଧା ଛୋଟ ଉତ୍ତରଟିଏ ଦେଇ ଧ୍ୟାନମଗ୍ନ ହୋଇଗଲା। ଗୋଟିଏ ଐତିହାସିକ ନେକ୍‌ଲେସ ଉଦ୍ଧାର କରିବା ପାଇଁ ତାକୁ ଏକ ଐତିହାସିକ ଉପାୟ ସୃଷ୍ଟି କରିବାକୁ ହେବ। ସେଦିନ ଭୋଜିସଭାକୁ ନନ୍ଦନଗଡ଼ର ରାଜବଧୂ ସାଜି ତାକୁ ଯିବାକୁ ହେବ। ସେ ପରିଧାନ କରିବ ବହୁ ପ୍ରାଚୀନ ବେଶପୋଷାକ, ଯହିଁରେ ଐତିହାସିକ ଗନ୍ଧ ଥିବ, ଏପରି ଏକ ଅଳଙ୍କାର ପିନ୍ଧିବାକୁ ହେବ, ଯାହାକୁ ଦେଖିବାମାତ୍ରକେ ସେମାନେ ତା' ପ୍ରତି ଆକର୍ଷିତ ହେବେ। କିନ୍ତୁ ସେଇ ସବୁ ସାଜସରଞ୍ଜାମ ସେ ପାଇବ କେଉଁଠୁ ? ଭାର୍ଗବ କ'ଣ ତାକୁ ଏ ଦିଗରେ ସାହାଯ୍ୟ କରିପାରିବ ?

ସେ ଯଦି ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟରଙ୍କର ଦୃଷ୍ଟି ଆକର୍ଷଣ କରିନପାରିବ, ତା'ହେଲେ ସେଇ ଐତିହାସିକ ଡାଇମଣ୍ଡ ନେକ୍‌ଲେସଟି ଉଦ୍ଧାର କରିବା ତ ଦୂରର କଥା, ସେଇ ପଦାର୍ଥଟିର ଦର୍ଶନ ବି ପାଇବ ନାହିଁ।

ନୀହାରିକା କଫି ପଟ୍ ଧରି ପୁଣି ପ୍ରବେଶ କଲା।

କଫିପଟ୍ ଥୋଇ ଫେରି ବି ଗଲା।

ରଜନୀଗନ୍ଧା ପାଟି ଫିଟେଇଲା ନାହିଁ। କିନ୍ତୁ କଫି ପଟ୍ ଦେଖି କଫି ପିଇବାର ଲାଳସା ତା'ମନରେ ଜାଗ୍ରତ ହୋଇଥିଲା।

ସେ ମନ୍ଥର ଗତିରେ ଉଠିଗଲା କଫି ପଟ୍ ପାଖକୁ।

କପ୍‌ରେ କଫି ଢାଳିଲା। ଧୂମାୟିତ କଫି କପ୍ ଆଡ଼େ କିଛି ସମୟ ଅନାଇ ରହି, କପ୍‌ରୁ କଫି ପିଇଲା।

ସେହି କଫି କପ୍‌କ ପିଇ ଶେଷ କରିବାକୁ ତାକୁ ଅନେକ ସମୟ ଲାଗିଲା। ସେ ସିଦ୍ଧାନ୍ତରେ ପହଞ୍ଚିପାରୁନଥିଲା, କିପରି ସେ ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟରଙ୍କର ମୁକାବିଲା କରିବ।

କଫି ପିଇସାରି କଫି ପଟ୍‌ଟି ଆଡ଼େ ନୀରବରେ କିଛି ସମୟ ଅନାଇ ରହିଲା। ଏଇ ପଟ୍‌ଟି ଯେଉଁଦିନ ଜୟନ୍ତ ଆଣି ତା' ହାତରେ ଦେଇଥିଲା, ସେଦିନ ରଜନୀଗନ୍ଧା କଫି ପଟ୍‌ଟିର ସୌନ୍ଦର୍ଯ୍ୟ ଏବଂ ଗଠନ ପ୍ରଣାଳୀ ଦେଖି ଆନନ୍ଦିତ ହୋଇଥିଲା। ଆଜି କିନ୍ତୁ ତା'ପରି କଫି ପଟ୍‌ଟିର ସୌନ୍ଦର୍ଯ୍ୟ ମଳିନ ପଡ଼ି ଗଲାଣି। କିନ୍ତୁ ଏଇ ପଟ୍‌ଟିର ଗଠନ କୌଶଳ ପାଇଁ....

ହଠାତ୍ ରଜନୀଗନ୍ଧାର ଭାବନା ଥମିଗଲା। ସେ କଫି ପଟ୍‌ଟିର ଢାଙ୍କୁଣୀ ଖୋଲିଦେଇ ଅବାକ୍ ହୋଇ ଦେଖିଲା, ଏଇ ଅସମୟରେ ବି ଖଣ୍ଡିଏ ଧଳା କାଗଜ ପଟ୍ ଭିତରେ ତା' ପାଇଁ ଅପେକ୍ଷା କରିଛି। କ୍ଷିପ୍ର ହସ୍ତରେ ସେ କାଗଜଟି ଟାଣିନେଇ ବାଥ୍‌ରୁମ୍‌କୁ ପଳାଇଲା।

ଏ ଯେ ଆଉ ଏକ ଅପରିଚିତ ହାତର ଲେଖା: ରଜନୀଗନ୍ଧା, ମୁଁ କହିଥିଲି ମୁଁ ତମ ପଛେ ପଛେ ରହିବି। ରହିଛି। ମୋତେ କିଛି ସମ୍ବାଦ ଦେବାକୁ ହେଲେ, ସେଇ କଫି ପଟ୍‌ର ଶୂନ୍ୟ କୋଠରିରେ ଭରିଦେଲେ ମୁଁ ପାଇବି। ସତ୍ୟବ୍ରତ।

ରଜନୀଗନ୍ଧା ଏପରି ଏକ ସମ୍ବାଦ ଆଦୌ ଆଶା କରିନଥିଲା। ସେ ଏଇ ସମ୍ବାଦଟି ପାଇ ଏକ ପ୍ରକାର ଆତ୍ମହରା ହୋଇପଡ଼ିଲା। ଆଉ ତା'ର ଚିନ୍ତା କରିବାର କିଛି ନାହିଁ। ଏଥର ତା' ପରିକଳ୍ପନା କାର୍ଯ୍ୟକାରୀ କରିବାକୁ ଆଉ ଯେ କେହି ଅନ୍ତରାୟ ସୃଷ୍ଟି କରି ପାରିବେ ନାହିଁ, ରଜନୀଗନ୍ଧା ସେ ବିଷୟରେ ଦୃଢ଼ ହୋଇଗଲା।

ସଙ୍ଗେସଙ୍ଗେ ସେ ବାହାରି ଆସିଲା ବାଥ୍‌ରୁମ୍‌ରୁ।

ଘରର କବାଟ ଭିତରୁ ବନ୍ଦ କଲା। କାଗଜ କଲମ ନେଇ ଚିଠି ଲେଖିବାକୁ ବସିଗଲା। ସେ ସତ୍ୟବ୍ରତଙ୍କୁ ତା' ପରିକଳ୍ପନା କଥା ଜଣାଇବ। ସେ ନିଶ୍ଚୟ ତାକୁ ସହାୟତା କରିବେ। ସେ ଯେ ତା' ପଛେ ପଛେ ଆସି ଏତେବାଟ ଯାଏ ପହଞ୍ଚି ପାରିଛନ୍ତି, ଉଃ.... ରଜନୀଗନ୍ଧାର ସମଗ୍ର ଶରୀରରେ କିପରି ଉତ୍ତେଜନା ସୃଷ୍ଟି ହୋଇ ଯାଇଥିଲା।

ରଜନୀଗନ୍ଧା ଚିଠି ଲେଖି ବସିଲା।

ଚିଠିରେ ସେ ଲେଖିଲା, ବର୍ତ୍ତମାନ ସେ ଖୁବ୍ ବିପଦରେ ପଡ଼ିଛି। ଐତିହାସିକ ଡାଇମଣ୍ଡ ନେକ୍‌ଲେସ୍‌ଟି ନ୍ୟାସନାଲ ମିଉଜିଅମ୍‌ର ଭଲ୍‌ଟରୁ ଉଦ୍ଧାର କରି ଆଣି ନଦେଲେ, ଗୌତମଙ୍କୁ ସେ ଫେରି ପାଇବ ନାହିଁ। ଅଙ୍କଲ ଦୈତ୍ୟାୟନ ଗୌତମଙ୍କୁ ଏଠାରୁ ଅନ୍ୟତ୍ର ପଠାଇ ଦେଇଛନ୍ତି। ସେ ଏଠାକୁ ଆସିବା ପରଠାରୁ ଗୋଟିଏ ଘର ଭିତରେ ବନ୍ଦୀ ଜୀବନଯାପନ କରୁଛି କହିଲେ ଚଳେ। ଗୌତମଙ୍କୁ ସେ ଥରଟିଏ ବି ଦେଖିନାହିଁ। ତାକୁ ଯେପରି ହେଉ ନ୍ୟାସନାଲ ମିଉଜିଅମ୍ ଭଲ୍‌ଟରୁ ସେଇ ଡାଇମଣ୍ଡ ନେକ୍‌ଲେସ୍‌ଟି ଉଦ୍ଧାର କରି ଆଣିବାକୁ ହେବ।

ସେଥିପାଇଁ ସେ ଗୋଟିଏ ପ୍ଲାନ୍ କରିଛି। ଆଗାମୀ ଶନିବାରଦିନକୁ ହୋଟେଲ ଇଣ୍ଟରନ୍ୟାସନାଲରେ ସେ ଏକ ଭୋଜିସଭାର ଆୟୋଜନ କରିଛି। ସେଇ ଭୋଜିସଭାର ଆୟୋଜକ ହେଉଛନ୍ତି ରାଜକୁମାର ନନ୍ଦନଗଡ଼। ରାଜକୁମାର ନନ୍ଦନଗଡ଼ଙ୍କ ପାଖରେ କେତେକ ଐତିହାସିକ ଅଳଙ୍କାର ଓ ପୋଷାକପତ୍ର ରହିଛି। ସେଗୁଡ଼ିକ ସେ ଚାହାନ୍ତି ନ୍ୟାସନାଲ ମିଉଜିଅମ୍‌କୁ ଦାନ କରିବେ। ସେଇ ସୁଯୋଗରେ ସେ ମଧ୍ୟ ନ୍ୟାସନାଲ ମିଉଜିଅମ୍‌ର ଐତିହାସିକ ସଂଗୃହୀତ ପଦାର୍ଥମାନ ଦେଖିବେ। ସେଇଥିପାଇଁ ଏ ଭୋଜିସଭାର

ଆୟୋଜନ। ସେଠାକୁ ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟର୍ ଓ ଅନ୍ୟାନ୍ୟ ଉଚ୍ଚସ୍ତର କର୍ମକର୍ତାମାନେ ନିମନ୍ତ୍ରିତ ହୋଇଆସିବେ।

ରଜନୀଗନ୍ଧା ହେବ ନନ୍ଦନଗଡ଼ର ରାଜବଧୂ। ସେ ଅଳଂକୃତ ହେବ ଏପରି ସବୁ ବେଶ ପୋଷାକରେ, ଯାହାକୁ ଦେଖିବା ମାତ୍ରକେ ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟର ଓ ନିମନ୍ତ୍ରିତ ଅତିଥିମାନେ ତା' ଆଡ଼େ ବିସ୍ଫାରିତ ନେତ୍ରରେ ଚାହିଁ ରହିବେ ! !

ରଜନୀଗନ୍ଧା ସବୁ ପରିକଳ୍ପନା ଶେଷ କରିଛି। କିନ୍ତୁ ଏଇଠି ସେ ଅଟକିଯାଇଛି। ସେହି ବେଶ ପୋଷାକ, ଅଳଙ୍କାର, କେଉଁଠୁ ସେ ସଂଗ୍ରହ କରିବ? ତା'ଛଡ଼ା 'ଇତିହାସ' ସମ୍ବନ୍ଧରେ ତା'ର ଜ୍ଞାନ କେତେଟିକେ? ତେଣୁ ସତ୍ୟବ୍ରତ ମହାପାତ୍ର ଯଦି ତା'ର ଏହି ପ୍ଲାନଟି ସମର୍ଥନ କରନ୍ତି (ସମର୍ଥନ ନ କଲେ ସେ ଆଉ ଗୌତମକୁ ଫେରିପାଇବ ନାହିଁ) ତେବେ ତାକୁ ନିଶ୍ଚୟ ସହାୟ ହେବେ ବୋଲି ସେ ବିନୀତ ଭାବରେ ଜଣାଇଲା।

ଆଉ ସେଦିନ, ସେଇ ଭୋଜିସଭାରେ ତାଙ୍କର ଉପସ୍ଥିତି ଏକାନ୍ତ କାମ୍ୟ। ସେ ରଜନୀଗନ୍ଧାର ନିମନ୍ତ୍ରିତ ଅତିଥି ଭାବରେ ସେଠାରେ ଯୋଗ ଦେବେ।

ରଜନୀଗନ୍ଧା ଏଇ ଘଟଣାଟିକୁ ବିକ୍ଷିପ୍ତ ଭାବରେ ଲେଖି, କାଗଜ ଖଣ୍ଡିକ ଭାଙ୍ଗି ଚାରିଆଡ଼େ ସତର୍କ ଦୃଷ୍ଟି ବୁଲାଇ ଧୀରେ ନେଇ କଫି ପଟ୍‌ରେ ଭର୍ତ୍ତି କଲା। ଏଥର ସେ ନିଶ୍ଚିନ୍ତ। ତା'ର ବିଶ୍ୱାସ ଥିଲା, ସତ୍ୟବ୍ରତ ମହାପାତ୍ର ନିଶ୍ଚୟ ତାକୁ ସାହାଯ୍ୟ କରିବେ।

ରଜନୀଗନ୍ଧା ମୁଣ୍ଡ ଉପରୁ ଯେପରି ପଥର ବୋଝ ଖସିଯାଇଥିଲା। ସେ ଘରସାରା ବୁଲି ବୁଲି ଗୁଣୁଗୁଣୁ ହୋଇ ଗୀତ ଗାଇଲା। ଆଲମାରୀ ଖୋଲିଲା। ଟେବୁଲ୍ ଡ୍ରୟାର ଟାଣିଲା। ଆଲବମ୍ ବାହାର କରି ଖେଳେଇ ଛବି ଦେଖିଲା। ତା'ର ମନେ ହେଉଥିଲା, ସେ ଗଡ଼ ଜିତିଛି।

ସେତିକିବେଳେ ଦରଜାରେ ନକ୍ ହେବାରୁ ରଜନୀଗନ୍ଧା ଛୁଟିଯାଇ ଦରଜା ଖୋଲିଦେଲା। ନୀହାରିକା ହସି ହସି ଆଗେଇ ଆସୁଛି।

: କିରେ ନୀହାର !

ଏଥର ରଜୀନଗନ୍ଧା ଆଗେ କଥା କହିଲା: କେମିତି ଅଛୁ ?

ନୀହାରିକା ରଜନୀଗନ୍ଧା ଆଡ଼କୁ କିପରି ବଡ଼ବଡ଼ ଆଖିରେ ମୁହୂର୍ତ୍ତେ ଅନାଇ ରହି କହିଲା: ସ୍ୱପ୍ନ ସଫଳ ହେଲା ତ ଦିଦି ?

: ହେଇନି, ହେବ। ତୁ ପରା କହିଚୁ ରାତ୍ରିର ଶେଷପ୍ରହରରେ ଯେଉଁ ସ୍ୱପ୍ନ ଦେଖାଯାଏ, ସେ ସ୍ୱପ୍ନ ସଫଳ ହୁଏ।

: ହୁଏ ଦିଦି। ସବୁ ତ ଶୁଣା କଥା। କିନ୍ତୁ ତମ ସ୍ୱପ୍ନ ତ ସଫଳ ହୋଇସାରିଛି। ତମେ ...ଳର ଅଧିନାୟିକା ହୋଇଛ। ତମର ପୁଣି ସ୍ୱପ୍ନ କ'ଣ ?

: ଅଛିରେ ଅଛି। ତୁ ସେକଥା ବୁଝି ପାରିବୁନାହିଁ। ମଣିଷ ଯେତେ ପାଏ, ତା' କାମନା ସେତେ ବଢ଼ିଯାଏ। ବୁଝିଲୁ ନୀହାର।

: କିନ୍ତୁ ଦିଦି! ତମେ ମୋତେ ହସି ହସି ଯେତେ ଯାହା କହି ଭୁଲାଇବାକୁ ଚେଷ୍ଟା କର, ମୁଁ କିନ୍ତୁ ଭୁଲିବି ନାହିଁ। ତମର କ'ଣ ହୋଇଛି କହିଲ। ତମେ ଯେମିତି ଆଉ ଗୋଟେ ମଣିଷ ହୋଇ ଯାଇଛ। ତମେ ସବୁବେଳେ କ'ଣ ଯେମିତି ଭାବୁଚ। କ'ଣ ହେଇଚି ତମର....

ନୀହାରିକାର କଥା ଶେଷ ହୋଇନାହିଁ ଦରଜା ଠେଲି ଭାର୍ଗବ ଘର ଭିତରେ ପ୍ରବେଶ କଲା। ନୀହାରିକା ପଛକୁ ଚାହିଁ ନୀରବ ହୋଇଗଲା। ସଙ୍ଗେସଙ୍ଗେ ସେ କଫି ପଟ୍‌ଟି ଉଠାଇ ନେଇ ଘରୁ ବାହାରି ଚାଲିଗଲା।

ଭାର୍ଗବ କହିଲା: ସମସ୍ତ କାର୍ଯ୍ୟ ଶେଷ କରିଆସିଛି ମାଡାମ୍। ଶନିବାର ଦିନକୁ 'ପିକକ୍' ହଲଟି ବି ବୁକ୍ କରିଆସିଲି।

: ଧନ୍ୟବାଦ। ଏହାପରେ ଆମକୁ ଗୋଟିଏ ସୁନ୍ଦର ନିମନ୍ତ୍ରଣ ପତ୍ର ଛପେଇବାକୁ ହେବ। ସେଇଟା ହେବ ରାଜକୁମାର ନନ୍ଦନଗଡ଼ଙ୍କ ନାମରେ। ଭାଷା ତମେ ଠିକ୍ କରିବ। ଉପଲକ୍ଷେ ହେବ, ଜନ୍ମତିଥିର ଭୋଜିସଭା। ଏବଂ ସେହି ନିମନ୍ତ୍ରଣ ପତ୍ର ସହିତ ଅଲଗା ଗୋଟିଏ ଚିଠି ଯିବ। ଯହିଁରେ ଲେଖାଥିବ, (ସେ ଚିଠି ନନ୍ଦନଗଡ଼ ରାଜକୁମାର ଲେଖୁଛନ୍ତି) ରାଜକୁମାରଙ୍କ ପିତା ଓ ପିତାମହଙ୍କର ଗୋଟିଏ ଛୋଟ ମ୍ୟୁଜିୟମ୍ ଅଛି। ଯହିଁରେ କେତେକ ଐତିହାସିକ ବସ୍ତୁ ସେହି ମ୍ୟୁଜିୟମରେ ଶୋଭା ମଣ୍ଡନ କରୁଛି। ସେଗୁଡ଼ିକ ରକ୍ଷଣାବେକ୍ଷଣ ଭାର ଯଦିଓ କୁମାର ସାହେବ ବହନ କରୁ ନ୍ତି, କିନ୍ତୁ ରାଜାସାହେବଙ୍କର ଇଚ୍ଛା ସେଗୁଡ଼ିକ ନ୍ୟାସନାଲ ମିଉଜିଅମ୍‌କୁ ଦାନ କରିବେ। ସେଥିରୁ କେତୋଟି ପଦାର୍ଥ କୁମାର ସାହେବ ସଙ୍ଗରେ ଆଣିଛନ୍ତି, ସେହି ଭୋଜିସଭାରେ ସେ ଦେଖାଇବେ। ଭୋଜିସଭାଟା ଖାଲି ଉପଲକ୍ଷ୍ୟ ମାତ୍ର। ଏହି ଭୋଜି ସଭାକୁ ମଧ୍ୟ କେତେଜଣ ଐତିହାସିକଙ୍କୁ କୁମାର ସାହେବ ନିମନ୍ତ୍ରଣ କରୁଛନ୍ତି। ତେଣୁ ଡାଇରେକ୍ଟର ସାହେବ ଓ ତାଙ୍କ ବନ୍ଧୁଗଣ ଯେପରି ସେଦିନ ନିଶ୍ଚୟ ଏଠାକୁ ଆସନ୍ତି। ସେଥିପାଇଁ ସନିର୍ବନ୍ଧ ଅନୁରୋଧ କରି ଚିଠି ଲେଖିବ।

: ଆଉ ?

: ନନ୍ଦନଗଡ଼ର ରାଜକୁମାର ହେବାପାଇଁ ଜଣେ ଯୋଗ୍ୟ ବ୍ୟକ୍ତି ଦରକାର। ଖାଲି ଚେହେରା ଥିଲେ ହେବନାହିଁ, ପେଟରେ କିଛି ମସଲା ଥିବା ଉଚିତ। ସେଦିନ ଭୋଜିସଭାରେ ସେ ରାଜକୁମାର ସାଜି ସମସ୍ତଙ୍କୁ ଆକୃଷ୍ଟ କରିପାରିବ। ବୁଝିଲ ଭାର୍ଗବ ?

: ଇଏସ୍ ମାଡାମ୍।

ଭାର୍ଗବର ସେହି ଗୋଟିଏ ଉତ୍ତର। ତା' ପାଖରେ ଯେପରି ଅସାଧ୍ୟ କିଛି ନାହିଁ। ଚାନ୍ଦ ମାଗିଲେ ବି ସ୍ୱର୍ଗରୁ ସେ ତୋଳିଆଣି ଦେଇପାରିବ।

: ତା'ହେଲେ ତମେ ସେଇ ଲୋକଟିକୁ ମାନେ ଯିଏ ନନ୍ଦନଗଡ଼ର ରାଜକୁମାର ହେବ, ତାକୁ ମୋ ପାଖକୁ କାଲି ସକାଳୁ ପଠାଅ। ତା' ସହିତ କେତେକ ଆଲୋଚନା କରିବାକୁ ହେବ।

: ଇଏସ୍ ମାଡାମ୍। କାଲି ସକାଳୁ ମୁଁ ତାକୁ ସଙ୍ଗରେ ଧରି ଆସିବି।

ଭାଗର୍ବ କହିଲା।

: ଠିକ୍ ଅଛି। ତମେ ତା'ହେଲେ ବର୍ତ୍ତମାନ ଯାଇପାର।

ଭାର୍ଗବ କିନ୍ତୁ ଗଲା ନାହିଁ। ଠିଆ ହୋଇ ରହିଲା।

: କ'ଣ ଭାର୍ଗବ ?

ରଜନୀଗନ୍ଧା ପଚାରିଲା।

: ମୁଁ ଆପଣଙ୍କୁ କାଲି ଛୁଟି କଥା କହିଥିଲି। ଆଜି ଆଉ ସନ୍ଧ୍ୟା ପୂର୍ବରୁ ତ ସେପରି କିଛି କାମ ନାହିଁ। ଭାବୁଛି, ସେହି ସମୟ ମଧ୍ୟରେ ମୁଁ ଟିକେ ମୋର ଆତ୍ମୀୟଙ୍କ ପାଖରୁ ଘୂରି ଆସିବି।

ରଜନୀଗନ୍ଧା ଟିକିଏ ଚିନ୍ତା କଲା।

କହିଲା: ଆଚ୍ଛା, ତୁମକୁ ମୁଁ ଛୁଟି ଦେଲି ଭାର୍ଗବ। ତୁମେ କିନ୍ତୁ ସନ୍ଧ୍ୟା ଛ'ଟା ସୁଦ୍ଧା ଫେରିଆସିବ। ମୋର କେତେକ କାମରେ ଟିକେ ବାହାରକୁ ବାହାରିବାର ଅଛି। ତମେ ନ ଆସିଲେ ତ ମୁଁ ଯାଇପାରିବି ନାହିଁ।

: ଇଏସ୍ ମାଡାମ୍।

ଭାର୍ଗବ ସଙ୍ଗେ ସଙ୍ଗେ ଘର ବାହାରି ଚାଲିଗଲା। ରଜନୀଗନ୍ଧା ଲକ୍ଷ୍ୟ କଲା, ଭାର୍ଗବ ଏ କେଇଘଣ୍ଟା ଛୁଟି ପାଇ ଯେପରି ଖୁବ୍ ଆନନ୍ଦିତ ହୋଇଛି।

ଏହାପରେ ରଜନୀଗନ୍ଧାର ଆଉ କିଛି କାମ ନ ଥିଲା। ସେ ଖାଲି ଚିନ୍ତା କରୁଥିଲା, ସତ୍ୟବ୍ରତଙ୍କ ଠାରୁ ସହଯୋଗ ପାଇବ ନା ନାହିଁ ? ସେ ଯଦି ଆଗେଇ ନ ଆସନ୍ତି, ତା'ହେଲେ ହୁଏତ ତାର ଉଦ୍ଦେଶ୍ୟ ପୂର୍ଣ୍ଣ ହେବନାହିଁ।

: କିନ୍ତୁ ଗୌତମ। ଯେପରି ହେଉ ଗୌତମକୁ ଉଦ୍ଧାର କରିବାକୁ ହେବ। ଗୌତମ ତା'ର ପ୍ରାଣର ପିତୁଳା, ନୟନର ମଣି।

ଗୌତମ ! ଗୌତମ !! ବାବୁରେ...

ହଠାତ୍ ରଜନୀଗନ୍ଧାର ନିଦ ଭାଙ୍ଗିଗଲା।

ଘରେ ଅନ୍ଧକାର ଘୋଟି ଯାଇଚି। ସେ ତା'ହେଲେ କେତେବେଳଯାଏ ଶୋଇପଡ଼ିଲା ?

ରାତ୍ରିର ରଜନୀଗନ୍ଧା

ବେଡ଼ ସୁଇଚ୍ ଟିପି ଦେଖିଲା ଦିଆଲ ଘଡ଼ିରେ ସାତଟା ବାଜିଛି। ଏତେବେଳଯାଏ କିପରି ସେ ନିଶ୍ଚିନ୍ତରେ ଶୋଇପଡ଼ିଥିଲା, ସେଇ କଥା ଚିନ୍ତା କରୁଥିଲା ରଜନୀଗନ୍ଧା। ଆଜି ସନ୍ଧ୍ୟାବେଳେ ତା'ର କେତେଗୁଡ଼ାଏ ପ୍ରୋଗ୍ରାମ ଥିଲା। ଭାର୍ଗବ ଛୁଟି ନେଇ ଯାଇଥିଲା, ଫେରିଲାଣି କି ନାହିଁ କିଏ ଜାଣେ ?

ରଜନୀଗନ୍ଧା କଲିଂବେଲ୍ ଟିପିଲା।

କିଛି ସମୟ ପରେ ଭାର୍ଗବ ଆସି ଠିଆ ହେଲା ସାମ୍ନାରେ।

: ତମେ କେତେବେଳେ ଫେରିଲ ?

: ଠିକ୍ ଛ'ଟାରେ ମୁଁ ଏଠାରେ ଆସି ପହଞ୍ଚିଲି।

: ବେଶ୍ କରିଛ। ଆମକୁ ଟିକେ ବର୍ତ୍ତମାନ ବାହାରିବାକୁ ହେବ। ଆମେ ଯିବା ସେଇ ହୋଟେଲ ଇଣ୍ଟର ନ୍ୟାସନାଲକୁ। 'ପିକକ୍' ହଲଟା ମୋତେ ଥରେ ଦେଖି ଆସିବାକୁ ହେବ। ବୁଝିଲ ଭାର୍ଗବ ?

: ଇଂଏସ୍ ମାଡାମ୍।

ପୁଣି ନୀରବତା।

: ଭାର୍ଗବ, ତମେ ନନ୍ଦନଗଡ଼ର ରାଜକୁମାର ହେବାପାଇଁ କାଲି ସକାଳେ କାହାକୁ ଆଣୁଛ ତ ?

: ଇଏସ୍ ମାଡାମ୍।

ତା'ପରେ ପୁଣି ଦୀର୍ଘ ନୀରବତା। ଏକ ସମୟରେ ଗାଡ଼ି ଯାଇ ଠିଆ ହେଲା ନିର୍ଦ୍ଦିଷ୍ଟ ସ୍ଥାନରେ ?

ଭାର୍ଗବ ରଜନୀଗନ୍ଧା ମୁହଁକୁ ଚାହିଁଲା।

ଦୁହେଁ ଓହ୍ଲାଇଗଲେ।

ଲିଫ୍ଟମ୍ୟାନ୍ ସାଲ୍ୟୁଟ୍ ବଜାଇ ଦୁହିଁଙ୍କୁ ନେଇ 'ପିକକ୍' ଦୁଆର ମୁହଁରେ ଓହ୍ଲାଇ ଦେଲା।

ଦରଜା ଠେଲି ଭିତରକୁ ପଶିଲେ।

'ପିକକ୍' ଆଜି ସରଗରମ। ନୃତ୍ୟଗୀତର ଆସର ଜମି ଯାଇଛି। ଭାର୍ଗବ ଓ ରଜନୀଗନ୍ଧା ଦୁଇଟି ଚେଆର ଦଖଲ କରି ବସିଲେ। ବୟ ଆସି ପାନୀୟର ଅର୍ଡ଼ର ନେଇ ଚାଲିଗଲା।

ନୃତ୍ୟ ଶେଷ ହେଲା। ହଲ୍‌ରେ ଆଲୋକର ବନ୍ୟା ଖେଳିଗଲା। ଅସଂଖ୍ୟ ଅଚିହ୍ନା ମୁହଁ ଆଡ଼େ ରଜନୀଗନ୍ଧା ଚାହିଁ ଚାହିଁ ଦେଖୁଥିଲା। ଏହା ପରର ପ୍ରୋଗ୍ରାମ ଘୋଷଣା କରାହେଲା, ମିସ୍ ନାଇଟିଙ୍ଗେଲ୍ ଗୀତ ଗାଇବେ।

ହଲ୍‌ରେ ଗୋଟାଏ ଗୁଞ୍ଜନ ଉଠି ସ୍ଥିର ହୋଇଗଲା।

ମିସ୍ ନାଇଟିଙ୍ଗେଲ ଷ୍ଟେଜରେ ଅବତୀର୍ଣ୍ଣ ହେଲା। କରତାଳି ଧ୍ୱନିରେ ଦର୍ଶକମାନେ ତାକୁ ଅଭିନନ୍ଦନ ଜଣାଇଲେ। ମିସ୍ ନାଇଟିଙ୍ଗେଲ୍ ଗୀତ ଆରମ୍ଭ କଲା।

ରଜନୀଗନ୍ଧା ଷ୍ଟେଜ୍ ଆଡୁ ମୁହଁ ଫେରାଇ ଦେଖିଲା ପାଖ ସିଟ୍‌ରେ ଭାର୍ଗବ ଉଠି ଠିଆ ହୋଇଛି। ଅଳ୍ପ ଦୂରରୁ ଗୋଟିଏ ମହିଳା ଭାର୍ଗବକୁ ହାତ ଠାରି ଡାକୁଛି। ଭାର୍ଗବ ତା' ସିଟ୍ ଉପରେ ବସୁଚି, ପୁଣି ଉଠି ଠିଆ ହେଉଚି।

ରଜନୀଗନ୍ଧା ଭାର୍ଗବର ଏହି କରୁଣ ଅବସ୍ଥା ଦେଖି କହିଲା: ତୁମେ ତୁମ ବାନ୍ଧବୀ ପାଖକୁ ଯାଅ ଭାର୍ଗବ। ମୁଁ ଏଇଠି ଅଛି। ପ୍ରୋଗ୍ରାମ୍ ଶେଷ ହେଲେ ମୁଁ ତୁମକୁ ଡାକିବି।

ଭାର୍ଗବ ରଜନୀଗନ୍ଧା ମୁହଁକୁ କିଛି ସମୟ କୃତଜ୍ଞ ଦୃଷ୍ଟିରେ ଅନାଇ ରହିଲା। ତା'ପରେ ଧୀରେ ଧୀରେ ଆଗେଇ ଗଲା ତା' ବାନ୍ଧବୀ ପାଖକୁ।

ମିସ୍ ନାଇଟିଙ୍ଗେଲ ଗୀତ ଆରମ୍ଭ କରି ଦେଇଥିଲା। ସେ ଷ୍ଟେଜ୍‌ରୁ ତଳକୁ ଓହ୍ଲାଇ ପଡ଼ିଥିଲା। ଦର୍ଶକମାନଙ୍କ ମେଳରେ ଘୂରି ବୁଲି ବିତରଣ କରି ଚାଲିଥିଲା ସଂଗୀତ ସୁଧା। କାହା କାନ ପାଖରେ ମୁହଁ ରଖି, କାହା ଦେହରେ ଦେହ ଘଷି, ସେ ବାତ୍ୟାଚକ୍ର ପରି ଘୂରି ବୁଲୁଥିଲା ଦର୍ଶକମାନଙ୍କର ମନ ବିନୋଦନ କରି।

ହଠାତ୍ ସେ ଆସି ପହଞ୍ଚିଗଲା ରଜନୀଗନ୍ଧା ପାଖରେ।

ଗୀତର ତାଳ ସହିତ ତାଳ ରଖି, ରଜନୀଗନ୍ଧାର କାନ ପାଖରେ ତିନିଥର ଉଚ୍ଚାରଣ କଲା, ଗୌତମ, ଗୌତମ, ଗୌତମ ! ପୁଣି ବଡ଼ ପାଟିରେ ଗାଇଲା, ସେ ଯେ ବିପନ୍ନ, ତାକୁ ବଞ୍ଚାଅ। ବଞ୍ଚାଅ, ବଞ୍ଚାଅ, ବଞ୍ଚାଅ....

ମିସ୍ ନାଇଟିଙ୍ଗେଲ୍ ପୁଣି ଡେଇଁ ଡେଇଁ ଛୁଟି ପଳାଇଲା।

ମୁହଁରେ ହସ, ଦେହରେ ଯୌବନର ତରଙ୍ଗ, ସମଗ୍ର ଦର୍ଶକ ମଣ୍ଡଳୀ ମୁଗ୍ଧ।

ରଜନୀଗନ୍ଧାର ସମଗ୍ର ଶରୀର କଂପି ଉଠିଲା।

ମିସ୍ ନାଇଟିଙ୍ଗେଲ କ'ଣ ଗୌତମକୁ ଚିହ୍ନେ ? ନ ହେଲେ ସେ କିପରି ଜାଣିଲା ଗୌତମ ବିପନ୍ନ ? କ'ଣ କରିବ ସେ ? କାହାକୁ ପଚାରିବ ଗୌତମ କଥା ?

ନାଇଟିଙ୍ଗେଲ ପୁଣି ଗୀତ ଗାଇ ଗାଇ, ନାଚି ନାଚି ଆସିଲା ଅଡିଟୋରିଅମ୍ ଭିତରକୁ। କାନ ପାଖରେ ମୁହଁ ରଖି, ଦେହ ସହିତ ଦେହ ଘଷି, ଡେଇଁ ଡେଇଁ ପୁଣି ଆସି ରଜନୀଗନ୍ଧା କାନରେ ଚୁପି ଚୁପି କହିଲା: ଗୌତମ, ଗୌତମ, ଗୌତମ ! ପୁଣି ବଡ଼ ପାଟିରେ ଗାଇଲା, ତାକୁ ଚିହ୍ନେ ମୁଁ, ତାକୁ ଜାଣେ ମୁଁ, ସେ ଯେ ବିପନ୍ନ, ତାକୁ ବଞ୍ଚାଅ। ହା ହା ହା ହା, ହି ହି ହି ହି।

ନାଇଟିଙ୍ଗେଲ ଗାଇ ଗାଇ ଚାଲିଗଲା ଅନ୍ୟ ଜଣକ ପାଖକୁ।

ସେ ଏକ ସୁସ୍ଥ ଓ ସୁନ୍ଦର ଯୁବକ ସାମ୍ନାରେ ଠିଆ ହୋଇ, ତା' ମୁଣ୍ଡ ବାଳରେ ଆଙ୍ଗୁଳି ବୁଲେଇ କହିଲା ଦେଖ ଦେଖ, ୟାଡ଼େ ଚାହଁ,ଏ ଯେ ରକ୍ଷା କବଚ।

ପୁଣି ରଜନୀଗନ୍ଧା ପାଖକୁ ଛୁଟିଯାଇ ତା' ପାଖରେ ଚୁପି ଚୁପି କହିଲା: ଗୌତମ, ଗୌତମ, ଗୌତମ ! ଟିକକ ପରେ ବଡ଼ ପାଟିରେ ଗାଇଲା, ସେ ଯେ ବିପନ୍ନ, ତାକୁ ବଞ୍ଚାଅ। ମୁହୂର୍ତ୍ତକ ମଧ୍ୟରେ ପୁଣି ନାଇଟିଙ୍ଗେଲ ସେହି ଯୁବକଟି ପାଖକୁ ଛୁଟି ଯାଇ କହିଲା, ଏ ଯେ ରକ୍ଷାକବଚ।

ହା ହା ହା ହା ହି ହି ହି ହି।

ନାଇଟିଙ୍ଗେଲ ଗାଇ ଗାଇ ଷ୍ଟେଜକୁ ଉଠିଗଲା। ଅର୍କେଷ୍ଟ୍ରାର ସମବେତ ସ୍ୱର ବାଜି ଉଠିଲା। ନାଇଟିଙ୍ଗେଲ ଲୁଚିଗଲା ପର୍ଦ୍ଦା ଅନ୍ତରାଳରେ।

ପୁଣି ମୁହୂର୍ତ୍ତକ ପାଇଁ ହଲ୍‌ରେ ଆଲୋକ ଜଳି ଉଠିଲା। ରଜନୀଗନ୍ଧା ଲେଖିଲା, ଭାର୍ଗବ ତା' ବାନ୍ଧବୀ ସହିତ ଏକାନ୍ତରେ ବସି ଗଳ୍ପ କରୁଛି। ତା' ଆଡୁ ଆଖି ଫେରାଇ ଆଣି ଚାହିଁଲା ସେଇ ଯୁବକଟି ଆଡ଼େ। ଯାହା ପାଖରେ ନାଇଟିଙ୍ଗେଲ୍ ଠିଆ ହୋଇ ବାରମ୍ବାର ଉଚ୍ଚାରଣ କରୁଥିଲା, ଏ ଯେ ରକ୍ଷାକବଚ।

ଯୁବକଟି କିନ୍ତୁ ନିଶ୍ଚିନ୍ତରେ ବସି ରହିଛି। ତା' ବାଁ ପାଖ ସିଟ୍‌ଟି ଖାଲିପଡ଼ିଛି।

ରଜନୀଗନ୍ଧାର ମନପ୍ରାଣରେ କିପରି ବିଦ୍ୟୁତ୍ ପ୍ରବାହ ଖେଳିଯାଇଥିଲା। ନାଇଟିଙ୍ଗେଲ୍ ଇଙ୍ଗିତ ସେ ବୁଝି ପାରିଥିଲା। ନାଇଟିଙ୍ଗେଲ୍ ତାକୁ କହିଗଲା, ଗୌତମ ବିପନ୍ନ। ତାକୁ ବଞ୍ଚାଇବାର ରକ୍ଷାକବଚ ହେଉଛି ଏହି ଯୁବକଟି। ତା'ର ଶରଣାପନ୍ନ ହୁଅ।

କିନ୍ତୁ କିଏ ଏହି ନାଇଟିଙ୍ଗେଲ ? ସେ କିପରି ଚିହ୍ନିଲା ଗୌତମକୁ ? ଏହି ଯୁବକଟି ବା କିଏ? ଯାହାର ଶରଣାପନ୍ନ ହେବାକୁ ନାଇଟିଙ୍ଗେଲ ତାକୁ ଇଙ୍ଗିତ ଦେଇଗଲା?

ରଜନୀଗନ୍ଧା ବଡ଼ ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲା। ସେ ବୁଝିପାରୁନଥିଲା, ନାଇଟିଙ୍ଗେଲର ଉଦ୍ଦେଶ୍ୟ। ରଜନୀଗନ୍ଧା ଯେ ଗୌତମର ମା, ସେ ବା ଜାଣିଲା କିପରି?

ତଥାପି ତାକୁ ଏ କ୍ଷେତ୍ରରେ କିଛି ଗୋଟାଏ କରିବାକୁ ହେବ। ଶୁଣିବାକୁ ହେବ ଏମାନେ କିଏ, କ'ଣ ୟାଙ୍କର ଉଦ୍ଦେଶ୍ୟ? ଏମାନେ ଅଙ୍କଲ ଦୈତ୍ୟାୟନଙ୍କର ବିରୋଧୀ ଦଳ ନୁହଁନ୍ତି ତ?

ପୁଣି ଷ୍ଟେଜ୍‌ରେ ନୂଆ ପ୍ରୋଗ୍ରାମ ଆରମ୍ଭ ହୋଇଯାଇଥିଲା। ଏଥର ନୃତ୍ୟ। ଅଡେିଟୋରିମ୍ ଅନ୍ଧାର ହୋଇଗଲା। ରଜନୀଗନ୍ଧା ଭାର୍ଗବକୁ ଚାହିଁ ଦେଖିଲା, ଦୂରରେ, ଅନ୍ଧକାରରେ ସେ ମିଶିଯାଇଛି।

ସେ ସିଟ୍‌ରୁ ଉଠିଲା। ଧୀରେ ଧୀରେ ଆଗେଇଗଲା ସେହି ଯୁବକଟି ପାଖକୁ। ଖାଲି ଚେୟାର ଉପର ଯାଇ ବସିପଡ଼ିଲା। ଯୁବକଟି ନିର୍ବିକାର। ସେ ରଜନୀଗନ୍ଧା ଆଡ଼େ ଚାହିଁଲା ବି ନାହିଁ।

ପ୍ରୋଗ୍ରାମ ଚାଲିଥିଲା। ନୃତ୍ୟର ତାଳେତାଳେ ଦର୍ଶକମହଲରୁ ରହିରହି ଗୁଞ୍ଜନ ଉଠୁଥିଲା।

ରଜନୀଗନ୍ଧା କିନ୍ତୁ ଛଟପଟ ହେଉଥିଲା। ନୃତ୍ୟ ଶେଷ ହୋଇଗଲେ, ହଲ୍‌ରେ ଆଲୋକ ଜଳି ଉଠିଲେ, ଭାର୍ଗବ ଯଦି ରଜନୀଗନ୍ଧାକୁ ଏଠାରେ ଦେଖେ, ତେବେ ସେ କଥା ହୁଏତ ଅଙ୍କଲ.....

ରଜନୀଗନ୍ଧାର ଭାବନା ବାଧାପ୍ରାପ୍ତ ହେଲା। ସେ ଅନୁଭବ କଲା, ସେହି ଯୁବକଟିର ବାଁ ହାତଟି ଧୀରେ ତା' ଦେହ ସ୍ପର୍ଶ କରୁଚି। ଯୁବକଟି ନୃତ୍ୟମଣ୍ଡପ ଆଡ଼େ ଚାହିଁ ରହି ଧୀରେ ଧୀରେ କହୁଛି, ଗୌତମର ସମସ୍ତ ବିବରଣୀ ଏହା ଭିତରେ ଅଛି। ଆମ ସହିତ ଅସହଯୋଗ କଲେ ଫଳ ବିଷମୟ ହେବ। ତମେ ତମ ସ୍ଥାନକୁ ଫେରିଯାଅ।

ରଜନୀଗନ୍ଧା ହାତରେ ଯୁବକଟି ଗୋଟିଏ ଖାମ ଗୁଞ୍ଜିଦେଲା। ଖାମ୍‌ଟି ହାତରେ ଧରି ରଜନୀଗନ୍ଧା ସେଇ ଅନ୍ଧକାର ଭିତରେ ଫେରି ଆସିଲା ତା' ଜାଗାକୁ। ଏ ପୁଣି କି ନୂତନ ସଂକେତ ?

ରଜନୀଗନ୍ଧା ଚିନ୍ତା କରିପାରୁନଥିଲା।

ନୃତ୍ୟ ଶେଷ ହୋଇଯାଇଥିଲା। ହଲ୍‌ରେ ଲାଇଟ୍ ଜଳି ଉଠିଥିଲା। ଭାଗର୍ବ ତା' ବାନ୍ଧବୀଠାରୁ ବିଦାୟ ନେଇ ଫେରି ଆସୁଥିଲା। ରଜନୀଗନ୍ଧା ବନ୍ଦ ଖାମ୍‌ଟି ତା ଭ୍ୟାନିଟି ବ୍ୟାଗରେ ଭରି, ଭାର୍ଗବ ଆଡ଼େ ଚାହିଁଥିଲା।

ଭାର୍ଗବ ନିଃଶବ୍ଦରେ ତା' ପୂର୍ବସିଟ୍ ଅଧିକାର କରି ବସିବାକୁ ଯାଉଥିଲା। ରଜନୀଗନ୍ଧା ଉଠିପଡ଼ି କହିଲା: ନା, ଆଉ ସମୟ ନଷ୍ଟ କରି ଲାଭ ନାହିଁ। ଯିବା ଚାଲ।

ଭାର୍ଗବ ରଜନୀଗନ୍ଧା ପଛେ ପଛେ ହଲ୍‌ରୁ ବାହାରି ଯାଉଥିଲା।

ନାଇଟିଙ୍ଗେଲ୍ ଷ୍ଟେଜ୍ ଉପରେ ଗାଉଥିଲା: ବୁଝି ବିଚାରି, ଆଗେ ବଢ଼ିଲେ, ନାହିଁ ବିପଦ।

ସେମାନେ ବାହାରି ଯାଇଥିଲେ।

ରଜନୀଗନ୍ଧା ନାଇଟିଙ୍ଗେଲର ସେଇ ଗୀତର ଭାଷା ବୁଝି ପାରିଥିଲା। କିନ୍ତୁ ସେ ଯେ ବିସ୍ତୀର୍ଣ୍ଣ ମରୁଭୂମିରେ ନିଃସହାୟ ତୃଷିତ ପଥିକ। ଜଳ କାହିଁ? କାହିଁ ଜଳ?

ଗାଡ଼ିରେ ବସି ରଜନୀଗନ୍ଧା ପଚାରିଲା: ତମର ସେହି ବାନ୍ଧବୀଟି କିଏ ଭାର୍ଗବ?

ଭାର୍ଗବ ଷ୍ଟିଅରିଂ ଉପରେ ହାତ ପକେଇ ରଜନୀଗନ୍ଧା ମୁହଁକୁ ଥରେ ଚାହିଁଲା। ପୁଣି ତା' ଦୃଷ୍ଟି ଫେରେଇ ନେଲା ପଥ ଉପରକୁ। କୌଣସି ଉତ୍ତର ଦେଲା ନାହିଁ।

ରଜନୀଗନ୍ଧା ପୁଣି କହିଲା: ଝିଅଟି ସହିତ ତମର କେତେ ଦିନର ପରିଚୟ?

ଭାର୍ଗବ ଏଥର ମୁହଁ ଖୋଲିଲା। କହିଲା: ସେ ପ୍ରସଙ୍ଗ ନ ଉଠାଇଲେ ଖୁସି ହେବି ମାଡାମ୍।

ରଜନୀଗନ୍ଧା ନୀରବ ରହିଲା।

ଆଉ କିଛିବାଟ ଆଗେଇ ଯିବା ପରେ ପୁଣି ରଜନୀଗନ୍ଧା ପଚାରିଲା: ତମେ ମିସ୍ ନାଇଟିଙ୍ଗେଲକୁ ଚିହ୍ନ ଭାର୍ଗବ ?

: ଚିହ୍ନିନି, ଶୁଣିଚି ଭଲ ଗାଏ।

: ସେଦିନ ଆମ ଉତ୍ସବରେ କିଏ ଗାଇବାର ବ୍ୟବସ୍ଥା କରୁଛ ?

: କିଛି କରିନାହିଁ। ଆପଣ ଯାହାକୁ କହିବେ। ମିସ୍ ନାଇଟିଙ୍ଗେଲ ସହିତ କଣ୍ଟାକ୍ଟ କରିବି ?

ଭାର୍ଗବ ପଚାରିଲା।

: ନା, ସେଦିନ ଆମ ଅନୁଷ୍ଠାନଟି ରୁଚିପୂର୍ଣ୍ଣ ଓ ଗମ୍ଭୀର ପରିବେଶ ମଧ୍ୟରେ ହେବ। ମିସ୍ ନାଇଟିଙ୍ଗେଲ ତା'ର ମର୍ଯ୍ୟାଦା ରକ୍ଷା କରିପାରିବ ନାହିଁ।

ଗାଡ଼ି ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଯାଇଥିଲା।

ରଜନୀଗନ୍ଧା ଗାଡ଼ିରୁ ଓହ୍ଲେଇ ଗଲା। ପଛେ ପଛେ ଭାର୍ଗବ।

ନିଜ ରୁମ୍ ଭିତରେ ପଶି ଭିତରୁ ସେ କବାଟ ବନ୍ଦ କରିଦେଲା। ହୋଟେଲ ଇଣ୍ଟରନ୍ୟାସନାଲରୁ ବାହାରି ଏଠି ପହଞ୍ଚିବା ପର୍ଯ୍ୟନ୍ତ, ସମସ୍ତ ରାସ୍ତାଟି ସେ କିପରି ଉତ୍ତେଜନାରେ କଟାଇ ଆସିଛି। ଦେହସାରା ଝାଳରେ ବୁଡ଼ିଯାଇଛି। ଏଇ ମୁହୂର୍ତ୍ତରେ ତା'ର ଫୁଲ୍ ସ୍ପିଡ୍‌ରେ ପଙ୍ଖା ଚଳେଇ ଟିକିଏ ଆରାମ କରିବା କଥା। କିନ୍ତୁ ତା' ନ କରି ସଙ୍ଗେସଙ୍ଗେ ସେ ଛୁଟିଗଲା ବାଥ୍‌ରୁମ୍ ଭିତରକୁ।

ଭ୍ୟାନିଟି ବ୍ୟାଗ୍‌ଟି ଖୋଲି ଖାମ୍‌ଟି ବାହାର କଲା। କିଏ କ'ଣ ତା' ପାଇଁ ଏହା ଭିତରେ ପଠାଇଛି ? ସୁଖର ନା ଦୁଃଖର ?

ରଜନୀଗନ୍ଧା ଖାମ୍‌ଟି ଚିରି ଖୋଲି ପକାଇଲା। ଖଣ୍ଡିଏ କାଗଜରେ ତାକୁ ଉଦ୍ଦେଶ୍ୟ କରି ଚିଠି ଲେଖା ହୋଇଛି।

ରଜନୀଗନ୍ଧା !

ତୁମେ ଯେଉଁ ଡାଇମଣ୍ଡ ନେକ୍‌ଲେସଟି ଉଦ୍ଧାର କାର୍ଯ୍ୟରେ ନିଯୁକ୍ତି ହୋଇଛ, ସେଇ ଡାଇମଣ୍ଡ ନେକ୍‌ଲେସଟି ମୋର ବି ଲକ୍ଷ୍ୟ। ଉଦ୍ଧାର କରି ଆଣିପାରିଲେ ମୁଁ ବି ଖୁସି ହେବି। କିନ୍ତୁ ସେ ନେକ୍‌ଲେସଟି ଦୈତ୍ୟାୟନଙ୍କୁ ନୁହେଁ, ମୋ ହାତରେ ତୁମକୁ ଅର୍ପଣ କରିବାକୁ ହେବ।

ଅବଶ୍ୟ ବଦଳରେ ତମେ ପାରିଶ୍ରମିକ ପାଇବ। ପାରିଶ୍ରମିକ ଅପେକ୍ଷା ଆହୁରି ଏକ ବଡ଼ ପୁରସ୍କାର ମୁଁ ତୁମକୁ ଦେବି। ତାହା କ'ଣ ଜାଣ ? ଗୌତମ।

ଗୌତମ ବର୍ତ୍ତମାନ ମୋ କବଳରେ। ମୁଁ ତାକୁ ଦୈତ୍ୟାୟନ ହାତରୁ ଝାମ୍ପି ଆଣିଛି। ସେ ଖବର ତମେ ଜାଣି ନାହଁ, ଜାଣି ପାରିବ ନାହିଁ ବି।

ଗୌତମ ଭଲରେ ଅଛି। ତା' ପ୍ରତି କୌଣସି ଅସଦ୍‌ବ୍ୟବହାର ମୁଁ କରିବି ନାହିଁ। କିନ୍ତୁ ସେଇ ଡାଇମଣ୍ଡ ନେକ୍‌ଲେସଟି ମୋର ଦରକାର। ନ ପାଇଲେ ଗୌତମକୁ ନୃଶଂସ ଭାବରେ ହତ୍ୟା କରିବି। କେହି ମୋତେ ପ୍ରତିରୋଧ କରି ପାରିବେ ନାହିଁ।

ରଜନୀଗନ୍ଧା, ତୁମେ ସେଇ ଡାଇମଣ୍ଡ ନେକ୍‌ଲେସଟି ମୋତେ ଦେଇପାରିଲେ ମୁଁ ସାରା ଜୀବନ ତମର ଶୁଭାକାଂକ୍ଷୀ ଓ ହିତାକାଂକ୍ଷୀ ହୋଇ ରହିବି। ଆଜି ଏତିକି। ପରେ. ଧୀରେ ଧୀରେ ତୁମେ ମୋର ପରିଚୟ ପାଇବ। ଇତି। ତମର ଶୁଭାକାଂକ୍ଷୀ-ନିରଛଞ୍ଚାଣ।

ଚିଠିଟି ଶେଷ ହେଲା। ରଜନୀଗନ୍ଧା ଚିଠିଟି ଚିରି ଟିକି ଟିକି କରି ଫିଙ୍ଗି ଦେବାକୁ ଯାଉଥିଲା, କିନ୍ତୁ ହଠାତ୍ କ'ଣ ଭାବି ସେ ଚିଠିଟିକୁ ଚିରିଲା ନାହିଁ। ଭ୍ୟାନିଟି ବ୍ୟାଗରେ ଭରି, ବାଥ୍‌ରୁମ୍‌ରୁ ବାହାରି ଆସିଲା।

ତା' ମନରେ ଯେପରି ପ୍ରତିକ୍ରିୟା ହେବାର କଥା, ତାହା ହେଲା ନାହିଁ। ଧୀରେ ଧୀରେ ତା' ଦେହମନ କଠିନ ହୋଇଆସୁଥିଲେ। ସେ ଜାଣିଥିଲା. ଅଙ୍କଲ ଦୈତ୍ୟାୟନଙ୍କର ରାତ୍ରିର ରଜନୀଗନ୍ଧା।

ଜଣେ ପ୍ରତିଦ୍ୱନ୍ଦ୍ୱୀ ଅଛି। ତେଣୁ ନରଛଆଁଣ ନାମଧାରୀ ଏହି ପ୍ରତିଦ୍ୱନ୍ଦ୍ୱୀଟିର ଚିଠି ପାଇ ସେ ବିଶେଷ ଚିନ୍ତିତ ହେଲାନାହିଁ। ବରଂ ସେ ଟିକିଏ ଆଶ୍ୱସ୍ତ ହେଲା। ଅଙ୍କଲ ଦୈତ୍ୟାୟନ ଠାରୁ ଏହି ନରଛଆଁଣ ବେଶୀ ନୃଶଂସ ହୋଇପାରିବ ନାହିଁ। ଯାହାହେଉ, ତାକୁ ଏଥିପାଇଁ ପ୍ରସ୍ତୁତ ହେବାକୁ ହେବ। ଏସବୁ ପରେ ବି ତା'ର ଏକମାତ୍ର ଲକ୍ଷ୍ୟ ଗୌତମ।

ରାତି ସେତେବେଳକୁ ଅନେକ ହୋଇଯାଇଥିଲା ।

ନୀହାରିକା ଖାଦ୍ୟସାମଗ୍ରୀ ଧରି ପ୍ରବେଶ କଲା। ରଜନୀଗନ୍ଧା ନୀରବରେ ଖିଆ ଶେଷ କଲା। ସେ ଯେପରି ଯନ୍ତ୍ରଚାଳିତ ପରି ସବୁ କରି ଯାଉଥିଲା। ନୀହାରିକାର କଥା ତା' କାନରେ ପ୍ରବେଶ କରୁନଥିଲା। ସେ ଏକ ପ୍ରକାର ମୋହଗ୍ରସ୍ତ ହୋଇଯାଇଥିଲା।

ଜୀବନରେ ବହୁ ଘାତ ପ୍ରତିଘାତ ଭିତର ଦେଇ ସେ ଗତି କରିଛି। କିନ୍ତୁ ଆଜି ଯେପରି ସେ ଚରମ ମୁହୂର୍ତ୍ତରେ ଆସି ପହଞ୍ଚିଛି। ଏଇଠି ତା' ଜୀବନର ଯବନିକାପାତ ହେବ। ଶେଷ ଦୃଶ୍ୟରେ ସମାପ୍ତିପର୍ବ କ'ଣ ଯେ ଘଟିବ, କଳନା କରି ହେଉନାହିଁ।

ରଜନୀଗନ୍ଧା ପ୍ରକୃତରେ ମୋହଗ୍ରସ୍ତ ହୋଇପଡ଼ିଥିଲା। ସେ ଖାଇସାରି ସିଧାସଳଖ ବିଛଣା ଉପରକୁ ଉଠି ଯାଇଥିଲା। ଶୋଇ ପଡ଼ିଲେ ଟିକିଏ ଶାନ୍ତି ପାଇବ।

କିନ୍ତୁ ଆଖିରେ ନିଦ କାହିଁ?

ଗୌତମକୁ ନଗଛଆଁଣ ଝିଙ୍କି ନେଇଛି। ସେ କ'ଣ ଅଙ୍କଲ ଦୈତ୍ୟାୟନଠାରୁ ଅଧିକ ଶକ୍ତିଶାଳୀ? ତା'ନହେଲେ ଏତେବଡ଼ ଦୁଃସାହସ....

ପୁଣି ଘର ଭିତରେ ପ୍ରବେଶ କଲା ନୀହାରିକା। ହାତରେ କଫିପଟ୍।

ରଜନୀଗନ୍ଧାର କଫିପଟ୍ ଉପରେ ଦୃଷ୍ଟି ପଡ଼ିବା କ୍ଷଣି ତଡ଼ିତ୍ ବେଗରେ ଉଠି ବସିଲା। ସେ ଛୁଟିଗଲା ନୀହାରିକା ପାଖକୁ। ତା' ହାତରୁ କଫି ପଟ୍‌ଟି କାଢ଼ି ଆଣିଲା।

ନୀହାରିକା ହସିଲା। କହିଲା: ଦିଦି, ତମକୁ ଦେଖି ମୋର ମନେ ହେଉଛି ତମର ଧୀରେ ଧୀରେ ମତିଭ୍ରମ ଘଟୁଛି।

ରଜନୀଗନ୍ଧା ବୋକୀଙ୍କ ଭଳି ନୀହାରିକା ମୁହଁକୁ ଅନାଇ ରହି କହିଲା: ମତିଭ୍ରମ, ସତରେ ମୋର ମତିଭ୍ରମ ଘଟୁଛି ନୀହାର? ତୁ ବିଶ୍ୱାସ କର, ମୋତେ ଏଠି ଆଦୌ କିଛି ଭଲ ଲାଗୁନାହିଁ। ମୁଁ ମୁକ୍ତି ଚାହେଁ, ମୁକ୍ତି। ମୋତେ ତୁ ମୁକ୍ତି ଦେଇ ପାରିବୁ ନୀହାର?

ନୀହାରିକା ମୁହଁର ରଙ୍ଗ ଲାଲ ହୋଇଗଲା। ସେ ରଜନୀଗନ୍ଧା ପାଖକୁ ଛୁଟି ଯାଇ, ତା' ମୁହଁରେ ହାତ ଚାପି ଇଙ୍ଗିତରେ ଚୁପ୍ ରହିବାକୁ କହିଲା। କୋଉଠି କି କଥା କହୁଛି ରଜନୀଗନ୍ଧା ? ସେ କ'ଣ ଜାଣିନାହିଁ ଏ ଘରେ ଯାହା କଥା ହେଲେ ବି ସବୁ ଯାଇ ଅଙ୍କଲଙ୍କ ଡାଇରିରେ ରେକର୍ଡ଼ ହେବ?

ରଜନୀଗନ୍ଧା ନୀହାରିକାର ଆଚରଣ ଦେଖି ପ୍ରକୃତିସ୍ଥ ହେଲା।

ଏଥର ସେ ହସି ହସି କହିଲା: ମୁଁ ଆଜି ଭାରି କ୍ଳାନ୍ତ ନୀହାର। ତୁ ଏଥର ଚାଲିଯା। ମୁଁ ଟିକେ ଶୋଇପଡ଼େ। ହଁ, ମୁଁ ଟିକେ ଶୋଇ ନ ପଡ଼ିଲେ ପାଗଳୀ ହୋଇଯିବି।

ନୀହାରିକା ପଛକୁ ଚାହିଁ ଚାହିଁ, ଇଙ୍ଗିତରେ ରଜନୀଗନ୍ଧାକୁ ସତର୍କ କରାଇ ଧୀରେ ଧୀରେ ଘରୁ ବାହାରିଗଲା। ରଜନୀଗନ୍ଧା ନୀରବରେ କିଛି ସମୟ ବସି ରହି, ଉଠିଯାଇ ଘରର କବାଟ ବନ୍ଦ କଲା। ଫେରିଆସି କଫି ପଟ୍‌ର ଢାଙ୍କୁଣୀ ଖୋଲିଲା।

କିନ୍ତୁ ରଜନୀଗନ୍ଧା ହଠାତ୍ ଏତେ ଉଦାସ ହେଲା କିପରି? କଫପଟ୍‌ର କୋଠରି ଭିତରେ ତା ଈପ୍‌ସିତ ପଦାର୍ଥଟି ଦେଖି ମଧ୍ୟ ସେ ପୁଣି ଢାଙ୍କୁଣୀ ବନ୍ଦ କରିଦେଲା ଏବଂ କପ୍‌ରେ କଫି ଢାଳି ପିଇବାକୁ ଲାଗିଲା। ଭିତରେ କାହାର ଲେଖା, କିଏ ଲେଖିଛି, କ'ଣ ଲେଖିଛି ? ସେ ସବୁ ଜାଣିବା ପାଇଁ ଯେପରି ରଜନୀଗନ୍ଧା ମନରେ ଆଦୌ ଆଗ୍ରହ ନ ଥିଲା।

ବହୁତ ବେଳ ଯାଏ ବସି ବସି ସେ କଫି ପିଇଲା।

ସେ ଭାବୁଥିଲା ସେଇ ନରଛଞ୍ଚାଣ ଛଦ୍ମନାମଧାରୀ ଲୋକଟି କଥା। ସେ ତା' ସହିତ ଲୁଚକାଳି ଖେଳୁ ନାହିଁ ତ? କିଏ ଜାଣେ ସେଇଟା ଯଦି ତା'ର ଗୋଟାଏ ଚାଲ୍ ହୋଇଥାଏ ?

ରଜନୀଗନ୍ଧା ଏ କ୍ଷେତ୍ରରେ କ'ଣ କରିବ? ସେ କାହାର ହୋଇ କାମ କରିବ? ଅଙ୍କଲ ଦୈତ୍ୟାୟନର ନା ନରଛଞ୍ଚାଣର ?

ଯଦି ଗୌତମକୁ ନରଛଞ୍ଚାଣ ତା' କବଳରୁ ନେଇ ଯାଇଥାଏ, ତେବେ ରଜନୀଗନ୍ଧା ଚାହିଁଲେ ସେ ହୁଏତ ତାକୁ ତା' ସହିତ ସାକ୍ଷାତ କରିବାର ସୁଯୋଗ ଦେବ। ସେମାନେ ଯେତେବେଳେ ରଜନୀଗନ୍ଧା ପାଖରେ ଦାବି କରିପାରୁଛନ୍ତି, ରଜନୀଗନ୍ଧା କ'ଣ ତାଙ୍କ ପାଖରେ ପଣ ରଖିପାରିବ ନାହିଁ?

ହଁ ସେ ନରଛଞ୍ଚାଣକୁ କହିବ, ଗୌତମକୁ ଯଦି ତା' ସହିତ ଭେଟ୍ କରାଏ, ତା'ହେଲେ ତା'ର ହୋଇ ସେ କାମ କରିବ। ନ ହେଲେ ସେ କାହିଁକି ଅଙ୍କଲ ଦୈତ୍ୟାୟନଙ୍କର ବିରାଗ ଭାଜନ ହେବ ?

ଘଡ଼ିରେ ବାରଟା ବାଜିଲା।

ରଜନୀଗନ୍ଧା ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ଉଠି ଠିଆ ହେଲା। କଫି ପଟ୍‌ର ଢାଙ୍କୁଣୀ ଖୋଲି କାଗଜ ଖଣ୍ଡିକ ବାହାର କଲା। ତା'ପରେ ସିଧା ସେ ଚାଲିଗଲା ବାଥ୍‌ରୁମ୍ ଭିତରକୁ।

କାଗଜଟିର ଭାଙ୍ଗ ଖୋଲି ପଢ଼ିଲା:

ରଜନୀଗନ୍ଧା,

ତମ ଉଦ୍ଦେଶ୍ୟ ମୋତେ ଯାହା ଜଣାଇଛ, ମୁଁ ବୁଝି ପାରିଛି। ପ୍ଲାନଟି ଭଲ। ତମେ ସେଇ ପଥରେ ଅଗ୍ରସର ହୁଅ। ମୁଁ ତୁମକୁ ସାହାଯ୍ୟ କରିବି। ତମର ଐତିହାସିକ ପୋଷାକ ପରିଚ୍ଛଦ ଯାହା ଦରକାର, ମୁଁ ତୁମକୁ ଯଥା ସମୟରେ ଯୋଗାଇଦେବି। କିନ୍ତୁ ତମେ ସେଦିନ ଭୋଜିସଭାକୁ ଏକା ଯିବ। କୁମାର ସାହେବ ଅସୁସ୍ଥ ଥିବା ହେତୁ ସଭାରେ ଯୋଗ ଦେଇପାରିବେ ନାହିଁ। ମୁଁ ସେଠାରେ ଉପସ୍ଥିତ ରହିବି ଏବଂ ସେ ଦିନର କାର୍ଯ୍ୟଧାରା ସମ୍ବନ୍ଧରେ ତୁମକୁ ଯଥା ସମୟରେ ସୂଚନା ଦେବି।

ତମର ମାନସିକ ଯନ୍ତ୍ରଣା କଥା ମୁଁ ବୁଝି ପାରୁଛି। ଚେଷ୍ଟା କରୁଛି, ତମକୁ ଯଥା ସମ୍ଭବ ଶୀଘ୍ର ଯନ୍ତ୍ରଣାମୁକ୍ତ କରିବା ପାଇଁ। ଯଦି କିଛି ସମ୍ବାଦ ଥାଏ, ମୋ ପାଖକୁ ପଠାଇବ।

ତମେ ତମ ପ୍ରସ୍ତୁତି ପଥରେ ଆଗେଇ ଯାଅ। ଆଶା କରୁଛି ସଫଳତା ଅର୍ଜନ କରିବ। ସତ୍ୟବ୍ରତ।

ରଜନୀଗନ୍ଧା ଚିଠିଟି ପଢ଼ିଲା।

ଯେପରି ତା' ମନରେ କୌଣସି ପ୍ରତିକ୍ରିୟା ହୋଇନାହିଁ। ସେ ଧୀରେ ଧୀରେ ଚିଠିଟିକୁ ଚିରିଲା। ଫିଙ୍ଗିଦେଲା ପାଇଖାନା ଭିତରେ। ଚେନ୍ ଟାଣିଦେଇ ଫେରିଆସିଲା ବିଛଣା ଉପରକୁ।

ଚିଠି ଲେଖି ବସିଲା ରଜନୀଗନ୍ଧା।

ଅନ୍ତତଃ ଆଜିର ସମ୍ବାଦଟା ଜଣେଇବାକୁ ହେବ ସତ୍ୟବ୍ରତ ମହାପାତ୍ରଙ୍କୁ।

ସେ ଲେଖିଲା- ହୋଟେଲ ଇଣ୍ଟରନ୍ୟାସନାଲରେ ଯାହାସବୁ ଘଟିଗଲା। ନରଛଆଣ ଅଙ୍କଲ ଦୈତ୍ୟାୟନର ପ୍ରତିଦ୍ୱନ୍ଦୀ। ସେ ଚାହେଁ ସେଇ ଡାଇମଣ୍ଡ ନେକ୍‌ଲେସଟି। ଏବଂ ସେ ଗୌତମକୁ ଝାମ୍ପିନେଇଛି ଅଙ୍କଲ ଦୈତ୍ୟାୟନଙ୍କ କବଳରୁ ।

ନରଛଆଣ ତାକୁ ଲେଖିଥିବା ଚିଠିଟିକୁ ମଧ୍ୟ ରଜନୀଗନ୍ଧା ନିଜ ଚିଠି ସହିତ ଭାଙ୍ଗି କଫି ପଟ୍‌ର କୋଠରିରେ ଭରିଦେଲା। ଢାଙ୍କୁଣୀ ବନ୍ଦ କରିଦେଲା। ଘରର ଲାଇଟ୍ ଲିଭେଇଦେଇ, ସିଧା ଯାଇ ଖଟ ଉପରେ ଶୋଇପଡ଼ିଲା।

ସେ ଟିକିଏ ଆଖି ବୁଜି ଶୋଇପାରିଲେ ବଞ୍ଚିଯିବ।

ସକାଳ ସାତଟା ଭିତରେ ରଜନୀଗନ୍ଧା ନିତ୍ୟକର୍ମ ଶେଷ କରି ପ୍ରସ୍ତୁତ ହୋଇଯାଇଥିଲା।

କଲିଂବେଲ୍ ଟିପିବା ମାତ୍ରକେ ଭାର୍ଗବ ଆସି ଉପସ୍ଥିତ ହେଲା।

: ନିମନ୍ତ୍ରଣ ପତ୍ର ଛାପିବାକୁ ଦେଇଛ ?

: ଇଏସ୍ ମାଡାମ୍।

: ମିସ୍ ନାଇଟିଙ୍ଗେଲର ଠିକଣା ଜାଣିଛ ?

: ଇଏସ୍ ମାଡାମ୍।

: ଗାଡ଼ି ବାହାର କର। ପ୍ରଥମେ ମିସ୍ ନାଇଟିଙ୍ଗେଲ ସହିତ ଭେଟ କରିବାକୁ ହେବ। ସେଦିନର ପ୍ରୋଗ୍ରାମ ସମ୍ବନ୍ଧରେ ତା' ସହିତ ପ୍ରାରମ୍ଭିକ ଆଲୋଚନା କରି, ଗୋଟାଏ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ସ୍ଥିର କରିବାକୁ ହେବ।

: କିନ୍ତୁ ମାଡାମ୍, ଆପଣ ଯେ କହୁଥିଲେ ମିସ୍ ନାଇଟିଙ୍ଗେଲକୁ ଆମେ ଆଣିବା ନାହିଁ ?

: ନା, ବର୍ତ୍ତମାନ ମୁଁ ମତ ବଦଳାଇଛି। କେତେକ ଦୃଷ୍ଟିରୁ ନାଇଟିଙ୍ଗେଲର ଉପସ୍ଥିତି ସେଦିନ ବାଞ୍ଛନୀୟ। ତମେ ଗାଡ଼ି ବାହାର କର।

: ଇଏସ୍ ମାଡାମ୍।

ଭାର୍ଗବ ଘରୁ ବାହାରି ଚାଲିଗଲା। ରଜନୀଗନ୍ଧା ଭାର୍ଗବ ପଛେ ପଛେ ଘରୁ ବାହାରିଗଲା। ତା'ର ମିସ୍ ନାଇଟିଙ୍ଗେଲ ସହିତ ଦେଖା କରିବା ନିତାନ୍ତ ପ୍ରୟୋଜନ।

ରଜନୀଗନ୍ଧା ଭାର୍ଗବ ପାଖରେ ଯାଇ ଗାଡ଼ିରେ ବସିଲା।

କିଛିବାଟ ଆଗେଇଯିବା ପରେ ରଜନୀଗନ୍ଧା ପଚାରିଲା: ଅଙ୍କଲ ଫେରିଲେଣି ?

: ନୋ ମାଡାମ୍।

ଭାର୍ଗବ ସେହିପରି ଗମ୍ଭୀର ଓ ନିର୍ବିକାର।

ଗାଡ଼ି ଆଗେଇ ଚାଲିଥିଲା। ଦୁହେଁ ନୀରବରେ ବସିଥିଲେ। ମିସ୍ ନାଇଟିଙ୍ଗେଲ ପାଖକୁ ରଜନୀଗନ୍ଧା ଯେଉଁ ଉଦ୍ଦେଶ୍ୟରେ ଯାଉଛି, ଭାର୍ଗବ ସଂଗରେ ଥିଲେ ତା' ଉଦ୍ଦେଶ୍ୟ ସଫଳ ହେବ କିପରି ? ସେ ତ ଖୋଲାଖୋଲି ଭାବରେ କିଛି କଥାବାର୍ତ୍ତା ତା'ସହିତ କରିପାରିବ ନାହିଁ। ତା'ହେଲେ....

: ଆଚ୍ଛା ଭାର୍ଗବ। ତମର ଆଜି ସକାଳୁ ରାଜକୁମାର ନନ୍ଦନଗଡ଼ଙ୍କୁ ମୋ ପାଖକୁ ଆଣିବାର ଥିଲା, କ'ଣ ହେଲା ?

: ସବୁ ଠିକ୍ ଅଛି। କେବଳ ମୁଁ ଯାଇ ଆଣିବା କଥା। ଆପଣ ଏ ଆଡ଼େ ଆସିବାକୁ କହିଲେ। ତେଣୁ....

: ତମେ ଗୋଟାଏ କଥା କର ଭାର୍ଗବ। ମୋତେ ମିସ୍ ନାଇଟିଙ୍ଗେଲ ପାଖରେ ପହୁଞ୍ଚାଇ ଦେଇ, ତମେ ଚାଲିଯାଅ। ରାଜକୁମାର ନନ୍ଦନଗଡ଼କୁ ଧରି ରାସ୍ତାରେ ଅପେକ୍ଷା କର। ମୁଁ ନାଇଟିଙ୍ଗେଲ୍ ସଙ୍ଗରେ କଥା ଶେଷ କରି ତମ ପାଖକୁ ଫେରିଆସିବି।

: ଏକ୍ସକିଉଜ୍ ମି, ମାଡାମ୍। ମୁଁ ଆପଣଙ୍କୁ ଏକା ଛାଡ଼ି ଯାଇପାରିବି ନାହିଁ। ଅଙ୍କଲଙ୍କର ନିର୍ଦ୍ଦେଶ ନାହିଁ।

: ହୁଁ, ବୁଝିଲି। ଠିକ୍ ଅଛି।

ଭାର୍ଗବ ମିଡିଲ୍‌ଟନ ଷ୍ଟ୍ରିଟ୍‌ରେ ଗୋଟାଏ ତିନିତାଲା କୋଠା ସାମ୍‌ନାରେ ଗାଡ଼ି ଠିଆ କରେଇଲା। କହିଲା: ଏଇଠି ଦୋତାଲାରେ ମିସ୍‌ନାଇଟିଙ୍ଗେଲ ରୁହେ। ଆପଣ ମୋ ସହିତ ଆସନ୍ତୁ।

ଭାର୍ଗବ ପଛେ ପଛେ ରଜନୀଗନ୍ଧା ଚାଲିଥିଲା। ସେମାନେ ଦୋତାଲାକୁ ଉଠିଲେ। ଭାର୍ଗବ ନାଇଟିଙ୍ଗେଲର କଲିଂବେଲ୍ ଟିପିଲା।

ପରିଚାରିକା ଦୁଆର ଖୋଲିଦେଲା।

ରଜନୀଗନ୍ଧା ଅଗେଇ ଯାଇ କହିଲା: ମିସ୍ ନାଇଟିଙ୍ଗେଲ ଅଛନ୍ତି ?

: ହଁ ବର୍ତ୍ତମାନ ସେ ବାଥ୍‌ରୁମ୍‌ରେ। ଆପଣମାନେ ବସନ୍ତୁ।

ପରିଚାରିକାଟି ଏମାନଙ୍କୁ ଡ୍ରଇଂରୁମ୍‌ରେ ବସାଇଲା।

ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ିଲା ନାହିଁ। ମିସ୍ ନାଇଟେଙ୍ଗଲ ଏକ ହାଲ୍‌କା ପୋଷାକ ପିନ୍ଧି ହସି ହସି ଅଭିନନ୍ଦନ ଜଣାଇଲା।

ଭାର୍ଗବ ଉଠି ଠିଆ ହୋଇପଡ଼ିଲା।

ସେ କ'ଣ କହିବାକୁ ଯାଉଥିଲା, କିନ୍ତୁ ରଜନୀଗନ୍ଧା ବାଧା ଦେଇ କହିଲା: ଆମେ ଆପଣଙ୍କ ପାଖକୁ ଆସିଛୁ ଗୋଟାଏ ଉଦ୍ଦେଶ୍ୟରେ, ଆଗାମୀ ଶନିବାର ରାତି ଆଠଟାବେଳେ, ଆମର ଏକ ସମ୍ଭ୍ରାନ୍ତ ହୋଟେଲରେ ଗୋଟାଏ ଘରୋଇ ପାର୍ଟି ଅଛି। ଅଳ୍ପ କେତେଜଣ ଉଚ୍ଚସ୍ତରର ସରକାରୀ ଲୋକ ଓ ଗୁଣୀଜନ ଆସିବେ ନିମନ୍ତିତ ହୋଇ। ସେମାନଙ୍କର ମନୋରଞ୍ଜନ ପାଇଁ କିଛି ନୃତ୍ୟଗୀତର ଏକ ଛୋଟ ପ୍ରୋଗ୍ରାମ ଆମେ କରିବାକୁ ଚାହୁଁ।

ରଜନୀଗନ୍ଧା ନୀରବ ହୋଇଗଲା।

: ବେଶ୍ ତ, କରନ୍ତୁ। ମୋତେ କ'ଣ କରିବାକୁ ହେବ?

ନାଇଟିଙ୍ଗେଲ ପଚାରିଲା।

: ଆପଣ! ଆପଣ ଆମକୁ ସହଯୋଗ କରିବେ।

: ମୋଠାରୁ କି ଧରଣର ସହଯୋଗ ଆପଣମାନେ ଚାହାନ୍ତି?

: ଆପଣ ସେଦିନ ଆମ ପାର୍ଟିରେ ଗୀତ ଗାଇ ଅତିଥିମାନଙ୍କୁ ଆପ୍ୟାୟନ କରିବେ।

ରଜନୀଗନ୍ଧା କହିଲା।

: ଠିକ୍ ଅଛି ମୁଁ ରାଜି। ଆପଣମାନେ ମୋତେ ପ୍ରୋଗ୍ରାମ ଦେଇଯିବେ। ମୁଁ ଠିକ୍ ସମୟରେ ଯାଇ ଆପଣଙ୍କ ପାର୍ଟିରେ ଯୋଗଦେବି।

ରଜନୀଗନ୍ଧାର ବୋଧହୁଏ କଥା ଶେଷ ହୋଇଯାଇଥିଲା, ସେ ଆଉ କ'ଣ କହିବ ଚିନ୍ତା କରି ପାରୁନଥିଲା। ଚାହିଁ ଦେଖିଲା, ଭାର୍ଗବ ସ୍ଥିର ହୋଇ ପଥର ମୂର୍ତ୍ତିଟି ଭଳି ବସି ରହିଛି। ରଜନୀଗନ୍ଧା ନାଇଟଙ୍ଗେଲ ସଂଗରେ ଅସଲ କଥା କହିବାର କିଛି ସୁଯୋଗ କରିପାରୁନଥିଲା।

ପରିଚାରିକା ଟ୍ରେ ଓ ଧୂମାୟିତ ଚା'କପ୍ ଧରି ପ୍ରବେଶ କଲା।

ନାଇଟିଙ୍ଗେଲ ସେମାନଙ୍କ ଆଡ଼କୁ ଚା' କପ୍‌ଟି ଲେଖା ଟ୍ରେ'ରୁ ବଢ଼ାଇ ଦେଲା।

ରଜନୀଗନ୍ଧା ଚା' କପ୍‌ଟି ଟେବୁଲ୍ ଉପରେ ରଖି ନାଇଟିଙ୍ଗେଲ୍‌କୁ କହିଲା: ଆପଣଙ୍କ ବାଥ୍‌ରୁମ୍‌ଟା....

ନାଇଟିଙ୍ଗେଲ ସଙ୍ଗେସଙ୍ଗେ ଉଠି ପଡ଼ିଲା: ଆପଣ ଆସନ୍ତୁ ମୋ ସହିତ।

ସେମାନେ ଭିତରକୁ ପଶିଗଲେ। ଭାର୍ଗବ ଚେଆରରୁ ଉଠିପଡ଼ି ମଧ୍ୟ ଆଗେଇ ପାରିଲା ନାହିଁ। ବସି ବସି ନୀରବରେ ଚା'ପାନ କରିବାକୁ ଲାଗିଲା।

ରଜନୀଗନ୍ଧା ଭାର୍ଗବ ଦୃଷ୍ଟିର ଅନ୍ତରାଳ ହେବାକ୍ଷଣି ନାଇଟିଙ୍ଗେଲକୁ କହିଲା: ଆପଣ ଗୌତମକୁ ଦେଖିଛନ୍ତି ?

: ନା, ତେବେ ଶୁଣିଛି। ସେ ଯେଉଁଠି ଅଛି ନିରାପଦରେ ଅଛି। ଆପଣ ଚାହିଁଲେ ସେ ମୁକ୍ତି ପାଇ ଆପଣଙ୍କ କୋଳକୁ ଆସିଯିବ।

ନାଇଟିଙ୍ଗେଲ କହିଲା।

: ମୁଁ ସବୁ ଜାଣେ। ମୁଁ ନରଛଞ୍ଚାଣ ସର୍ତ୍ତରେ ରାଜି ଅଛି। କିନ୍ତୁ କାର୍ଯ୍ୟ ହାସଲ ପୂର୍ବରୁ ମୁଁ ଥରେ ଗୌତମ ସଙ୍ଗରେ ଦେଖା କରିବାକୁ ଚାହେଁ। ଆପଣ ବ୍ୟବସ୍ଥା କରାଇ ଦେଇପାରିବେ ?

ରଜନୀଗନ୍ଧା ପଚାରିଲା ।

: ସେମାନେ ବୋଧହୁଏ ରାଜି ହେବେନାହିଁ। ତେବେ ମୁଁ ଚେଷ୍ଟା କରିବି। ସେମାନେ ରାଜି ହେଲେ ଆପଣ କେଉଁଠି କିପରି ଗୌତମ ସହିତ ଦେଖା କରିବେ ? ଆପଣ ତ କଡ଼ା ପହରାର ଘେର ଭିତରେ ଅଛନ୍ତି।

: ମୁଁ ପାରିବି ମିସ୍ ନାଇଟିଙ୍ଗେଲ। ଗୌତମ ପାଇଁ ମୁଁ ସବୁ ପାରିବି। କଡ଼ା ପହରାର ଘେର ମୋତେ ଅଟକାଇ ପାରିବ ନାହିଁ। ଆପଣ ଖାଲି ମୋତେ କଥା ଦିଅନ୍ତୁ, ମୋ ଗୌତମ ସହିତ ମତେ ଦେଖା କରାଇଦେବେ। ତା'ହେଲେ ମୁଁ ଆପଣଙ୍କ ପାଖରେ ଚିରଜୀବନ ଋଣୀ ହୋଇ ରହିବି।

ମିସ୍ ନାଇଟିଙ୍ଗେଲ୍ ହସିଲା।

କହିଲା: ଆପଣ ତ ଜାଣନ୍ତି ଆମ ଜୀବନଯାତ୍ରା କଥା। ଆମର ନିଜସ୍ୱ ସତ୍ତା ବୋଲି କିଛି ନାହିଁ। ନିଜ ଇଚ୍ଛା ଅନୁସାରେ ଆମେ ପାଦେ ବି ଚାଲି ପାରନ୍ତି ନାହିଁ। ତେଣୁ ମୁଁ ଆପଣଙ୍କୁ କଥା ଦେଇପାରୁନାହିଁ। ଚେଷ୍ଟା କରିବି। ଯଦି ପାରେ ଗୌତମ ସହିତ ଆପଣଙ୍କର ଦେଖା କରାଇବାର ବ୍ୟବସ୍ଥା କରିଦେବି।

: ଗୌତମକୁ ଆପଣ ନିଜ ଆଖିରେ ଦେଖିଛନ୍ତି ?

ରଜନୀଗନ୍ଧା କଣ୍ଠରେ ବ୍ୟାକୁଳତା ଫୁଟି ଉଠିଥିଲା।

: ନା, ତେବେ ଜାଣିଛି ଗୌତମ ସେଠାରୁ ଅପହୃତ ହୋଇ ଆସି ଏଠାରେ ଅଛି। ଦୁଇ ଶିବିରରେ ସେଥିପାଇଁ ତୁମୂଳ ଦ୍ୱନ୍ଦ୍ୱ ଲାଗିଛି। ସେ ସବୁ ଆମ ଅଧିକାରର ବାହାରର କଥା।

ମିସ୍ ନାଇଟିଙ୍ଗେଲ୍‌ର କଣ୍ଠସ୍ୱର୍ ମଧ୍ୟ କିପରି ଉଦାସ ହୋଇଉଠିଥିଲା।

ରଜନୀଗନ୍ଧା କହିଲା: ମୁଁ ମୋ ଜୀବନ ପଣ କରି କାର୍ଯ୍ୟ ଉଦ୍ଧାର କରିବାକୁ ଚେଷ୍ଟା କରୁଛି। ଆପଣ ଖାଲି ଖବରଟା କହିଦେବେ। ମୋତେ ଯିଏ ଗୌତମକୁ ଫେରାଇ ଦେବ, ମୁଁ ତାକୁହିଁ ସେହି ବହୁ ଆକାଂକ୍ଷିତ ନେକ୍‌ଲେସଟି ଦେବି। କେବଳ ଏତିକି ଆପଣ ସେମାନଙ୍କୁ ଜଣାଇଦେବେ ଆଉ ତା' ପୂର୍ବରୁ ମୁଁ ଥରେ ଗୌତମକୁ ଦେଖିବି।

ରଜନୀଗନ୍ଧା ଫେରିଆସିଲା।

ଭାର୍ଗବର ଚା' ପିଆ ଶେଷ ହୋଇଯାଇଥିଲା।

ରଜନୀଗନ୍ଧା କହିଲା: ଚାଲ ଭାର୍ଗବ। କାମ ଶେଷ ହୋଇଛି। ଆମେ ଏଥର ଫେରିଯିବା।

ଭାର୍ଗବ ଉଠିଲା।

ରଜନୀଗନ୍ଧା ମିସ୍ ନାଇଟିଙ୍ଗେଲ୍ ଆଡ଼େ ଚାହିଁ କହିଲା: ଭାର୍ଗବ ଆସି ଆପଣଙ୍କୁ ପ୍ରୋଗ୍ରାମ ଦେଇଯିବ। ଶନିବାର ରାତି ଆଠଟା ବେଳକୁ ଆପଣ ଆମ ଆସରରେ ଯୋଗଦେବେ।

ମିସ୍ ନାଇଟିଙ୍ଗେଲ୍ ମୁଣ୍ଡ ହଲାଇ ସମ୍ମତି ଜଣାଇଲା।

ରଜନୀଗନ୍ଧା ମନେମନେ ପ୍ରସ୍ତୁତ ହେଉଥିଲା।

ଶନିବାର ଦିନ ଭୋଜି ସଭାରେ ସେ କିପରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିବ। ସେଇ ଐତିହାସିକ ବେଶ ପୋଷାକ ଓ ଅଳଙ୍କାର, ଯାହା ସେ ପରିଧାନ କରି ଆସରରେ ଆବିର୍ଭାବ ହେବ, ସେଗୁଡ଼ିକ ସମ୍ବନ୍ଧର ସତ୍ୟବ୍ରତ ତାକୁ କିଛି ଜଣାଇନାହାନ୍ତି। ଅଥଚ ହାତରେ ଆଉ ବେଶୀ ସମୟ ନାହିଁ। ଏ ଆଡ଼େ ପ୍ରସ୍ତୁତିପର୍ବ ସମାପ୍ତ ପ୍ରାୟ।

ରଜନୀଗନ୍ଧା ଶୁଣିଛି, ଅଙ୍କଲ ଦୈତ୍ୟାୟନ ଫେରି ଆସିଛନ୍ତି। ସେ ମଧ୍ୟ ରଜନୀଗନ୍ଧାର ଏହି ଭୋଜି ପର୍ବ ସମ୍ବନ୍ଧରେ ଅବହିତ ହୋଇଛନ୍ତି। ସେ କିଛି ମନ୍ତବ୍ୟ କରି ନାହାନ୍ତି କିମ୍ବା ରଜନୀଗନ୍ଧାକୁ ଆଉ ଡାକିନାହାନ୍ତି।

ଭାର୍ଗବ ନିର୍ଦ୍ଦେଶ ଅନୁସାରେ ସବୁ କାମ କରିଚାଲିଛି। ଅତିଥିମାନଙ୍କୁ ନିମନ୍ତ୍ରିତ କରିଆସିଛି। ସବୁ ଠିକ୍‌ଠାକ୍। ମଝିରେ ମାତ୍ର ଗୋଟିଏ ରାତ୍ରି। ଆଉ ଚବିଶ ଘଣ୍ଟା ପରେ ଭୋଜି ଉତ୍ସବ।

କିନ୍ତୁ ହେଲା କ'ଣ ? ମିସ୍ ନାଇଟିଙ୍ଗେଲ ତ ଗୌତମ ସମ୍ବନ୍ଧରେ କିଛି ଖବର ଦେଲା ନାହିଁ। କାଲି ଆସରରେ ଦେଖାହେବ। ତଥାପି ଯଦି ଆଶାନୁରୂପ କିଛି ସମ୍ବାଦ ନ ଦିଏ, ସେ କ'ଣ କରିବ ?

ଏ ଦୁଇଦିନ ହେବ କାହାରି କିଛି ସମ୍ବାଦ ନାହିଁ। ସତ୍ୟବ୍ରତ ମହାପାତ୍ର ମଧ୍ୟ କୁଆଡ଼େ

ଆତ୍ମଗୋପନ କରି ରହିଲେ। ସେ କାଲି ଭୋଜିସଭାରେ ଯାଇ କରିବ କ'ଣ? ତାଙ୍କ ନିର୍ଦ୍ଦେଶ ଅନୁସାରେ ସେ ରାଜକୁମାର ନନ୍ଦନଗଡ଼ଙ୍କୁ ସେଠାକୁ ନେଉନାହିଁ। ନିଜେ ସେ ଅବସ୍ଥା ସମ୍ଭାଳିବ କିପରି?

ଏହା ଭିତରେ ଦୁଇଦିନ ଦୁଇ ରାତି ବିତି ଗଲାଣି। ସେ କିନ୍ତୁ ଖାଲି କଫିପଟ୍‌ର ଢାଙ୍କୁଣି ଖୋଲୁଛି। କିନ୍ତୁ ସମ୍ବାଦ କାହିଁ? କିଏ ବା ତାକୁ ସେଇ ସମ୍ବାଦ ସରବରାହ କରୁଥିଲା? ଅଙ୍କଲ ଦୈତ୍ୟାୟନ କ'ଣ ଜାଣି ପାରି ତାକୁ ଏଠାରୁ ଅନ୍ୟତ୍ର ପଠାଇଦେଲେ?

ରଜନୀଗନ୍ଧାକୁ କିଛି ଭଲ ଲାଗୁନଥିଲା।

ସେ ବିଚଳିତ ହୋଇପଡ଼ିଥିଲା।

ରାତି ପ୍ରାୟ ନଅଟା ବାଜିବାକୁ ଯାଉଛି। ଆଉ ଘଣ୍ଟାକ ପରେ ତାକୁ ଘରର ଦରଜା ବନ୍ଦ କରି ଶୋଇପଡ଼ିବାକୁ ହେବ। କାଲି ଭୋଜିସଭା। ଅଥଚ....

ରଜନୀଗଂଧା ମନରେ ନୈରାଶ୍ୟ ଭରି ଯାଇଥିଲା।

ସେ ଖଟ ଉପରେ ଶୋଇରହି ଛଟପଟ ହେଉଥିଲା।

ହଠାତ୍ ଦରଜା ଖୋଲିବାର ଶବ୍ଦ ଶୁଣି ରଜନୀଗଂଧା ବୁଲି ଅନେଇଲା।

ସେ ଦେଖିଲା ନୀହାରିକା କଫି ପଟ୍‌ଟି ଟ୍ରେ'ରେ ଥୋଇ ବିଚଳିତ ଭଙ୍ଗୀରେ ଘର ଭିତରେ ପ୍ରବେଶ କରୁଛି। ରଜନୀଗଂଧା କ'ଣ କହିବାକୁ ଯାଉଥିଲା, ହୁଏତ ସେ କହି ଥାଆନ୍ତା, ଆଜି ତୋର ଏ ବ୍ୟତିକ୍ରମ କାହିଁକି ନୀହାର, ଘରେ ଗୋଡ଼ ଦେବା ମୁହୂର୍ତ୍ତରୁ ଇଙ୍ଗିତରେ ନୀରବ ରହିବା ପାଇଁ କହି ଆସୁଛି।

ରଜନୀଗନ୍ଧା ଅବାକ୍ ହୋଇ ନୀହାରିକା ମୁହଁକୁ ଅନାଇ ରହିଛି। ଘଟଣା କ'ଣ? ଆଜି ହଠାତ୍ ଏ ବ୍ୟତିକ୍ରମ କାହିଁକି?

ରଜନୀଗନ୍ଧା ସେହିପରି ଖଟ ଉପରେ ଶୋଇ ରହି, ଅଳସ ଭଙ୍ଗୀରେ ନୀହାରିକା ଆଡ଼େ ଅନାଇ ରହିଛି।

ନୀହାରିକା କିନ୍ତୁ ଭୀତତ୍ରସ୍ତ, କିପରି ତା' ଚଳନ୍‌ଭଙ୍ଗୀରେ ଗୋଟାଏ ସଂତ୍ରସ୍ତ ଭାବ। ସେ ଘର ଭିତରେ ପଶି କଫି ପଟ୍‌ଟା ଟେବୁଲ୍ ଉପରେ ଥୋଇ ରଜନୀଗନ୍ଧା ଆଡ଼େ କରୁଣ ଆଖିରେ ଚାହିଁଲା ମୁହୂର୍ତ୍ତେ। ସେଠାରେ କୌଣସି ପରିବର୍ତ୍ତନ ଦେଖିଲା ନାହିଁ। ସେ ଯେପରି ନିସ୍ତେଜ, ନିର୍ବିକାର।

ଏଥର ନୀରିକା ଆଉ ସ୍ଥିର ରହିପାରିଲା ନାହିଁ। ନିଜେ ସେ କଫି ପଟ୍ ପାଖରେ ନଇଁପଡ଼ି, କଫି ପଟ୍‌ର ଢାଙ୍କୁଣୀ ଖୋଲିଲା ଏବଂ ଇଙ୍ଗିତରେ ରଜନୀଗନ୍ଧାକୁ କଫି ପଟ୍‌ର କୋଠରି ଦେଖାଇ ଶୀଘ୍ର ଆସିବାକୁ କହିଲା।

ରଜନୀଗନ୍ଧା ଅବାକ୍ ହୋଇ ନୀହାରିକା ମୁହଁକୁ ଅନାଇ ରହିଲା ମୁହୂର୍ତ୍ତେ। ତେବେ କ'ଣ ନୀହାରିକା ସବୁ ଜାଣେ ଏବଂ ସେ ଏଠାକୁ ଆସିବା ଦିନଠାରୁ ନୀହାରିକା ତାକୁ ଗୋପନରେ ସାହାଯ୍ୟ କରି ଆସୁଛି ?

ରଜନୀଗନ୍ଧା କେବଳ ଅବାକ୍ ହୋଇ ଚାହିଁଥିଲା।

ନୀହାରିକା ମୁହଁରେ ବିରକ୍ତିର ଭାବ ଫୁଟି ଉଠିଲା।

ସେ ହାତଠାରି ଡାକିଲା ଶୀଘ୍ର ଏଠାକୁ ଆସିବା ପାଇଁ।

ପର ମୁହୂର୍ତ୍ତରେ ରଜନୀଗନ୍ଧା ଯେପରି ଚେତା ଫେରିପାଇଲା। ସେ ଛୁଟି ଚାଲିଗଲା ନୀହାରିକା ପାଖକୁ ଏବଂ ନୀହାରିକାକୁ ଦୁଇ ହାତରେ ଜାବୁଡ଼ି ଧରି ଆଲିଙ୍ଗନ କରିବାକୁ ଯାଉଥିଲା। ନୀହାରିକା କିନ୍ତୁ ଧରା ଦେଲାନାହିଁ। ସେ ଛୁଟି ପଳାଇଲା ତୀର ବେଗରେ।

ରଜନୀଗନ୍ଧା ପରିସ୍ଥିତିର ଗୁରୁତ୍ୱ ହୃଦୟଙ୍ଗମ କଲା। କଫି ପଟ୍‌ର ଢାଙ୍କୁଣୀ ଖୋଲି ଶୂନ୍ୟ କୋଠରିରୁ ତା ଈପ୍‌ସିତ ବସ୍ତୁଟି ଧରି, ଘରର କବାଟ ଭିତରୁ ବନ୍ଦ କରି ଛୁଟି ପଳାଇଲା ବାଥ୍‌ରୁମ୍ ଭିତରକୁ। କାଲି ତା'ର ଶେଷ ପରୀକ୍ଷା। ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇନପାରିଲେ...

କାଗଜ ଖଣ୍ଡିକ ଖୋଲି ପ୍ରଥମେ ସେ ମୂଳରୁ ଶେଷ ଯାଏ ଆଖି ବୁଲାଇଲା। ସତ୍ୟବ୍ରତ ମହାପାତ୍ର ଲେଖିଛନ୍ତି।

ରଜନୀଗନ୍ଧା !

କାଲିର ପ୍ରୋଗ୍ରାମ ପାଇଁ ମୋର ଏହି ନିର୍ଦ୍ଦେଶାବଳୀ ଅନୁସାରେ ତୁମେ କାମ କରିବ।

କାଲି ରାତି ଆଠଟା ବେଳକୁ ତୁମର ପ୍ରୋଗ୍ରାମ ଅଛି। ମୋ ପୂର୍ବ ନିର୍ଦ୍ଦେଶ କଥା ମନେ ଥିବ। ରାଜକୁମାର ନନ୍ଦନଗଡ଼ ଅସୁସ୍ଥ ହୋଇଥିବାରୁ ଏ ଭୋଜିସଭାରେ ଯୋଗ ଦେଇପାରୁନାହାନ୍ତି।

ତୁମେ ଭୋଜିସଭାରେ ଆବିର୍ଭାବ ହେବା ପୂର୍ବରୁ ତୁମର ଯେଉଁ ବେଶପୋଷାକରେ ସଜ୍ଜିତ ହେବା କଥା, ମୁଁ ତା'ର ପୂର୍ଣ୍ଣ ବ୍ୟବସ୍ଥା କରିଛି। ତୁମେ କାଲି ସନ୍ଧ୍ୟା ୬ଟା ବେଳକୁ ନିଉ ମାର୍କେଟର ସି ବ୍ଲକରେ ଠାକୁର ଦାସ ସୁରେଖା କମ୍ପାନୀକୁ ଯିବ। ତାଙ୍କ ସହିତ ମୋର ସଂକ୍ଷିପ୍ତ କଥାବାର୍ତ୍ତା ହୋଇଛି। ତୁମେ ସେଠାରେ ପହଞ୍ଚି କେବଳ ତୁମର ନାଁ କହିବ। ସେମାନେ ଘଣ୍ଟାକ ଭିତରେ ତମକୁ ଇତିହାସର ରାଜରାଣୀ କରି ସଜାଇଦେବେ। ଗଳାରେ ଏପରି ଗୋଟାଏ ନେକ୍‌ଲେସ୍ ପିନ୍ଧାଇଦେବେ, ଯାହା ଦେଖିଲେ ନ୍ୟାସନାଲ ମିଉଜିଅମ୍‌ର ଡିରେକ୍ଟର କାହିଁକି ତମର ସମସ୍ତ ନିମନ୍ତ୍ରିତ ଅତିଥି ହତଚକିତ ହୋଇଯିବେ। ଏପରିକି ଯଦି ତମ ଅଙ୍କଲ ଦୈତ୍ୟାୟନଙ୍କର ଦୃଷ୍ଟି ତା' ଉପରେ ପଡ଼େ, ସେ ବି ସେଇ ମୁହୂର୍ତ୍ତରେ ସେଇଟିକୁ ହାତ ପଇଠ କରିବା ପାଇଁ ଉତ୍ତେଜିତ ହୋଇପଡ଼ିବେ।

ରାତ୍ରିର ରଜନୀଗନ୍ଧା

ସେ ଯା'ହେଉ, ତମେ କିନ୍ତୁ ସେଦିନ ଭୋଜିସଭାରେ ନ୍ୟାସନାଲ ମିଉଜିଅମ୍‌ର ଡିରେକ୍ଟରଙ୍କୁ କହିବ, କୁମାର ସାହେବ ମୋ ଦେହରେ ଥିବା ଏଇ କେତୋଟି ନମୁନା ଦେଇ ପଠାଇଛନ୍ତି । ଆଜି ଡାକ୍ତର ବାରଣ କରିବାରୁ ସେ ଭୋଜିସଭାରେ ଯୋଗ ଦେଇ ପାରିଲେ ନାହିଁ । ଦିନେ ଦୁଇଦିନ ଭିତରେ ସେ ଆପଣଙ୍କ ସହିତ ଦେଖାକରି ଆମ ମ୍ୟୁଜିଅମ୍‌ର ସମସ୍ତ ଐତିହାସିକ ପଦାର୍ଥ ସମ୍ବନ୍ଧରେ କଥାବାର୍ତ୍ତା କରିବେ ଏବଂ ତାଙ୍କର ଇଚ୍ଛା ସେ ଆପଣଙ୍କ ମ୍ୟୁଜିଅମ୍ ଥରେ ପରିଦର୍ଶନ କରିବେ ।

ମୋର ବିଶ୍ୱାସ, ଡାଇରେକ୍ଟର ଏଥିରେ ସମ୍ମତି ପ୍ରକାଶ କରିବେ । ତମେ ସଙ୍ଗେସଙ୍ଗେ ତାଙ୍କ ସହିତ ପ୍ରୋଗ୍ରାମ ଠିକ୍ କରିନେବ । ସୋମବାର ପାଞ୍ଚଟା ବେଳକୁ ତମେ ରାଜକୁମାରଙ୍କ ସହ ନ୍ୟାସନାଲ ମ୍ୟୁଜିଅମ୍ ପରିଦର୍ଶନ କରି ସେଇଦିନ ରାତିରେ ଫେରିଯିବା କଥା କହିବ ।

ସୋମବାର ସନ୍ଧ୍ୟାକୁ ମ୍ୟୁଜିଅମ ପରିଦର୍ଶନର ପ୍ରୋଗ୍ରାମ ଠିକ୍ ହୋଇଗଲେ, ତମେ ରାଜକୁମାରଙ୍କୁ ଧରି ସେଦିନ ଠିକ୍ ସମୟରେ ନ୍ୟାସନାଲ ମ୍ୟୁଜିଅମ୍‌ରେ ପହଞ୍ଚିବ । ଯେଉଁ ନେକ୍‌ଲେସ୍‌ଟି ତମର ସେଠାରୁ ଅପହରଣ କରିବା କଥା, ଠିକ୍ ଅନୁରୂପ ଗୋଟିଏ ନକଲ ନେକ୍‌ଲେସ ମୁଁ ପ୍ରସ୍ତୁତ କରାଇଛି । ସେଇ ନେକ୍‌ଲେସ୍‌ଟି ମଧ୍ୟ ଠାକୁର ଦାସ ସୁରେଖା କମ୍ପାନୀରୁ ତମେ ପାଇବ । ସେ ତୁମକୁ ଦେଇଦେବେ । ତମେ ସେଇଟିକୁ ନେଇ ଅତି ସାବଧାନରେ ଗୋପନରେ ତମ ପାଖରେ ରଖିଥିବ ।

ନ୍ୟାସନାଲ ମିଉଜିଅମ୍ ପରିଦର୍ଶନ କରିବା ବେଳେ ତମ ସହିତ ଡାଇରେକ୍ଟର ଓ ତାଙ୍କର ଜଣେ ସହଯୋଗୀ ଥିବେ । ତମେ ବିଭିନ୍ନ ଐତିହାସିକ ବସ୍ତୁ ବୁଲି ବୁଲି ଦେଖିସାରିବା ପରେ, ଯେତେବେଳେ ସେଇ ଡାଇମଣ୍ଡ ନେକ୍‌ଲେସଟି ପାଖରେ ପହଞ୍ଚିବ, ସେତେବେଳେ ତମେ ସେହି ନେକ୍‌ଲେସଟି ଦେଖିବା ମାତ୍ରକେ ମୁଗ୍ଧ ହୋଇଯିବ,ଏବଂ ସେଇଟିକୁ ଉଠାଇ ନେଇ ସମସ୍ତଙ୍କ ସାମନାରେ ଗଳାରେ ପିନ୍ଧିବ । ରାଜକୁମାରକୁ କହିଥିବ ସେହି ମୁହୂର୍ତ୍ତରେ ସେ ଡାଇରେକ୍ଟର ଓ ତାଙ୍କର ସହଯୋଗୀକୁ ଟିକିଏ ଅନ୍ୟମନସ୍କ କରାଇଦେବେ । ସେଇ ସୁଯୋଗରେ ତମେ ଅସଲ ଡାଇମଣ୍ଡ ନେକ୍‌ଲେସଟି ତମ ଅଣ୍ଟାରେ ଖୋସିଦେଇ, ନକଲଟିକୁ ଯଥା ସ୍ଥାନରେ ରଖିଦେବ, ଦୂରରୁ ଦେଖି କେହି କିଛି ଜାଣିପାରିବେ ନାହିଁ । ରଖି ସାରିବା ପରେ, ଡାଇରେକ୍ଟରଙ୍କୁ ପାଖକୁ ଡାକି ଆଙ୍ଗୁଳି ଦେଖାଇ, ନେକ୍‌ଲେସଟିର ସୌନ୍ଦର୍ଯ୍ୟ ଓ ଐତିହାସିକ ମୂଲ୍ୟ ସମ୍ବନ୍ଧରେ ଦି'ଚାରିକଥା କହି ଅନ୍ୟାନ୍ୟ ପଦାର୍ଥ ଦେଖିବାକୁ ଚାଲିଯିବ ।

ସେଦିନ କିନ୍ତୁ ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟର ତାଙ୍କ ଲାଉଞ୍ଜରେ ଗୋଟିଏ ଛୋଟ ଭୋଜିସଭାରେ ତମମାନଙ୍କୁ ଆପ୍ୟାୟିତ କରିବାର ଆୟୋଜନ କରିବେ । ସେଥିରେ ସହରର ମାନ୍ୟଗଣ୍ୟ କେତେକ ବ୍ୟକ୍ତି ଯୋଗଦେବେ । ନନ୍ଦନଗଡ଼ ରାଜକୁମାରଙ୍କ ବଦାନ୍ୟତା କଥା ସେଦିନ ସେ ଘୋଷଣା କରିବେ ।

ରାତ୍ରିର ରଜନୀଗନ୍ଧା

ତମେ କିନ୍ତୁ ସେଇ ଡାଇମଣ୍ଡ ନେକ୍‌ଲେସଟି ଧରି ଖୁବ୍ ସାବଧାନରେ ଥିବ। ଆଦୌ ଆତ୍ମବିସ୍ମୃତ ହେବନାହିଁ। ସବୁବେଳେ ମନେ ରଖିଥିବ, ତମ ପାଖରେ କୋଟି କୋଟି ଟଙ୍କାର ଅମୂଲ୍ୟ ସମ୍ପଦ ରହିଛି ଏବଂ ଯେକୌଣସି ସମୟରେ ତାହା ଲୁଟ୍ ହୋଇପାରେ।

ଆଜି ଆଉ ଅଧିକ କିଛି ଜଣେଇବାର ନାହିଁ। କାଲିର ପ୍ରୋଗ୍ରାମର ମୁଁ ହୋଟେଲ ଇଣ୍ଟରନ୍ୟାସନାଲରେ ଉପସ୍ଥିତ ଥିବି, ଭିନ୍ନ ବେଶରେ। ତମେ ମୋତେ ଚିହ୍ନି ନ ପାରିଲେ ବି ଚିନ୍ତା କରିବ ନାହିଁ।

ସୋମବାର ଦିନ ମଧ୍ୟ ନ୍ୟାସନାଲ ମିଉଜିଅମ୍‌ରେ ତମର ସମ୍ବର୍ଦ୍ଧନା ସଭାରେ ଉପସ୍ଥିତ ଥିବି।

ଏସବୁର ସାଫଲ୍ୟ ନିର୍ଭର କରେ ତମର ଧୈର୍ଯ୍ୟ ଉପରେ। ଖୁବ୍ ଧୀରମନ ସ୍ଥିରଚିତ୍ତରେ ସମସ୍ତ କାର୍ଯ୍ୟ ସମାଧାନ କରିବାକୁ ହେବ। ମନେ ରଖିବାକୁ ହେବ,ତମେ ଗୋଟାଏ ପ୍ରଚଣ୍ଡ ଶକ୍ତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛ। ତେଣୁ ହାତେ ମାପି ଚାଖଣ୍ଡେ ଆଗେଇ ସାଫଲ୍ୟର ଶୀର୍ଷ ଯାଏ ଉଠିବାକୁ ହେବ। ତମେ ପାରିବ ରଜନୀଗନ୍ଧା, ମୋର ବିଶ୍ୱାସ ତମେ ସଫଳ ହେବ। ଗୌତମ ଫେରି ଆସିବ ତମ କୋଳକୁ।

ଗୌତମ ଯେ ତମର ଏକମାତ୍ର ସମ୍ବଳ।

ତେଣୁ ତା'ରି ମୁହଁକୁ ଚାହିଁ ତମେ ସଫଳତା ଅର୍ଜନ ପାଇଁ ଚେଷ୍ଟା କରିବ। ମନେରଖିବ ସବୁବେଳେ ମୁଁ ତମ ପଛେ ପଛେ ଅଛି।

ସତ୍ୟବ୍ରତ।

ରଜନୀଗନ୍ଧା ଚିଠିଟି ପଢ଼ିସାରି ଆଶ୍ଚର୍ଯ୍ୟ ହେଲା ନାହିଁ। ବରଂ ମନରେ ତା'ର ଦମ୍ଭ ଆସିଲା। ବାଥ୍‌ରୁମ୍‌ରୁ ଫେରି ଆସିଲା ଘର ଭିତରକୁ।

ଏଥର ନୀହାରିକା ଖାଦ୍ୟସାମଗ୍ରୀ ଧରି ଆସିଲା।

ରଜନୀଗନ୍ଧା ଦରଜା ଖୋଲିଦେଲା।

ନୀହାରିକା ପ୍ରତି କୃତଜ୍ଞତାରେ ତା' ମନ ଭରିଯାଇଥିଲା। ଏତେ ଭଲପାଏ ସେ ତାକୁ! ତା'ରି ପାଇଁ ତ ସେ ଆଜି ବାହାର ସହିତ ସହଯୋଗ ସ୍ଥାପନ କରିପାରିଛି।

ନୀହାରିକା ହସି ହସି ଖାଦ୍ୟସାମଗ୍ରୀ ତା' ସାମ୍ନାରେ ସଜାଇ ଦେଲା। ରଜନୀଗନ୍ଧା କେବଳ ମୁଗ୍ଧ ନେତ୍ରରେ ଚାହିଁଥିଲା ନୀହାରିକାର ମୁହଁକୁ। କେଉଁ ଜନ୍ମରେ ନୀହାରିକା ତା'ର ମା' ଥିଲା। ତା' ନ ହେଲେ...

ରଜନୀଗନ୍ଧାର ଆଖି ଲୁହରେ ଛଳଛଳ ହୋଇ ଆସିଲା। ନୀହାରିକା ବୋଧହୁଏ ବୁଝି ପାରିଲା, ତା'ମନର ଗୋପନକଥା। ସେ ଯାଇ ପିନ୍ଧା କାନିରେ ତା' ଲୁହ ପୋଛିଦେଲା। କହିଲା: ଖାଇଦିଅ ଦିଦି। ରାତି ଅନେକ ହେଲାଣି। କାମକା ଲୋକ ତୁମେ।

ରଜନୀଗନ୍ଧା ଖାଇବାକୁ ଚେଷ୍ଟା କଲା। କିନ୍ତୁ ସେ ଖାଇପାରୁନଥିଲା। ଅନେକ କଥା ନୀହାରିକାଠାରୁ ତା'ର ଜାଣିବାକୁ ଇଚ୍ଛା ହେଉଥିଲା, କିନ୍ତୁ...

ଘରର ଦରଜା ଠେଲି ଭିତରେ ପ୍ରବେଶ କଲା ଭାର୍ଗବ।

: ମାଡାମ୍, କାଲିର ସମସ୍ତ ପ୍ରୋଗ୍ରାମ ପ୍ରସ୍ତୁତ ହୋଇଯାଇଛି। ଆଉ କିଛି କାମ ଥିଲେ କୁହନ୍ତୁ।

ରଜନୀଗନ୍ଧା ହାତ ଅଟକିଗଲା। ସେ ଖାଦ୍ୟସାମଗ୍ରୀ ଆଡୁ ଦୃଷ୍ଟି ଫେରାଇ ନେଇ, ଭାର୍ଗବ ଆଡ଼େ ଚାହିଁ କହିଲା: ତମେ ନନ୍ଦନଗଡ଼ର ରାଜକୁମାର ଭୂମିକାରେ ଯାହାକୁ ବାଛିଥିଲ, ସେଇ ଲୋକଟି ସହିତ ଟିକିଏ ଦେଖାହେବା ଆବଶ୍ୟକ।

: ଆପଣ ତାକୁ ଏଠାକୁ ଆଣିବାକୁ ମନା କଲେ ଯେ।

: ହଁ, ମନା କରିଥିଲି, ବର୍ତ୍ତମାନ ଭାବୁଛି ପ୍ରୟୋଜନ। ତାକୁ କେତେବେଳେ ପାଇ...

: ଏଇକ୍ଷିଣି ଚାହିଁଲେ ଏଇକ୍ଷିଣି ସେ ଆସିଯିବ। ମାତ୍ର ଦଶ ପନ୍ଦର ମିନିଟ୍‌ର ବାଟ। ଆପଣ ଖିଆପିଆ ଶେଷ କରନ୍ତୁ। ମୁଁ ତାକୁ ସଙ୍ଗେସଙ୍ଗେ ଡାକି ଆଣୁଛି।

: କିନ୍ତୁ...ରଜନୀଗନ୍ଧା କ'ଣ ଟିକିଏ ଚିନ୍ତା କରି କହିଲା, ଠିକ୍ ଅଛି ଆଜି ତାକୁ ଡାକି ଆଣ। କାଲି ଆମେ ଆଉ ତା' ସହିତ କଥା କହିବାକୁ ସମୟ ପାଇବା ନାହିଁ। ଇତ୍ୟବସରରେ ମୁଁ ଖାଇ ନେଉଛି।

ଭାର୍ଗବ ଆଉ ଦ୍ୱିତୀୟ କଥା ନ କହି ଘରୁ ବାହାରି ଚାଲିଗଲା।

ନୀହାରିକା ପାଖକୁ ଆସି କହିଲା: ରାଜକୁମାର କିଏ ଦିଦି? ସେ କ'ଣ କରିବ?

: ତୋର ସେ ସବୁ ବୁଝିବା ଦରକାର ନାହିଁ ନୀହାର। ତୁ ଯିବୁଟି। ବାସନପତ୍ର ଗୋଟେଇ ନେଇ ଚାଲି ଯା।

ରଜନୀଗନ୍ଧା ଆଖିରେ ଇଂଗିତ ଦେଇ ନୀହାରିକାକୁ ବୁଝାଇ ଦେଲା ଯେ, ସେ ତାକୁ ଯାହା ଉତ୍ତର ଦେଲା ସେ ତା' ପ୍ରାଣର କଥା ନୁହେଁ।

ନୀହାରିକା ବି ହସିଲା। ଇଂଗିତରେ ବୁଝାଇ ଦେଲା, ମୁଁ ସବୁ ଜାଣେ ଦିଦି। ତମେ ମୋ ପାଇଁ ଚିନ୍ତା କରନାହିଁ।

ନୀହାରିକା ଘରୁ ବାସନପତ୍ର ଗୋଟେଇ ନେଇ ଚାଲିଗଲା। ଗଲାବେଳେ କହିଗଲା: ଶୀଘ୍ର ଶୀଘ୍ର କାମ ସାରି ଶୋଇ ପଡ଼ିବ ଦିଦି, ରାତି ଅନେକ ହେଲାଣି।

ରଜନୀଗନ୍ଧା ଖଟ ଉପରେ ବସି ଭାର୍ଗବକୁ ଅପେକ୍ଷା କରିଥିଲା। ସେ ଆଉ ଏତେ ଚିନ୍ତାଗ୍ରସ୍ତ ନୁହେଁ। ସତ୍ୟବ୍ରତ ମହାପାତ୍ର ଯେତେବେଳେ ତା' ପଛେ ପଛେ ଅଛନ୍ତି, ସେ ନିଶ୍ଚୟ ଗୌତମ କଥା ସବୁ ଜାଣିଥିବେ। କିପରି ତାକୁ ଘଣ୍ଟ ଘୋଡ଼େଇବାକୁ ହେବ, ସେ ବ୍ୟବସ୍ଥା ମଧ୍ୟ ସେ କରିଥିବେ।

ଭାର୍ଗବ ଆସିଲା।

ତା' ପଛେ ପଛେ ଯେଉଁ ଯୁବକଟି ଘରେ ପ୍ରବେଶ କଲା, ରଜନୀଗନ୍ଧା ତା' ଆଡ଼କୁ ଚାହିଁ, ଆଖି ଦୁଇଟା ତା'ର ସ୍ଥିର ହୋଇଗଲା। ସତରେ ଲୋକଟି ସୁପୁରୁଷ।

ଭାର୍ଗବର ପସନ୍ଦ ଅଛି। ସେ ଠିକ୍ କୁମାର ସାହେବ ପରି ଲୋକଟିଏ ଯୋଗାଡ଼ କରି ଆଣିଛି।

କିଛି ସମୟ ଏକ ଦୃଷ୍ଟିରେ ଯୁବକଟି ଆଡ଼େ ଚାହିଁ ରହିବା ପରେ, ରଜନୀଗନ୍ଧା ସେମାନଙ୍କୁ ବସିବାକୁ କହିଲା।

ଦୁହେଁ ବସିଲେ।

କୌଣସି ଭୂମିକା ନ କରି ରଜନୀଗନ୍ଧା ଆରମ୍ଭ କଲା: ଆଗାମୀ ସୋମବାର ତୁମକୁ ମୋ ସହିତ ଏକ ବିଶେଷ ସ୍ଥାନକୁ ଯିବାକୁ ହେବ। ତୁମେ ନନ୍ଦନଗଡ଼ର ରାଜକୁମାର ଭୂମିକାରେ ଅଭିନୟ କରିବ। ମୁଁ ହେବି ରାଜବଧୂ। ଗଳ୍ପଟା ମୁଁ ତୁମକୁ ଶୁଣାଇ ଦେଉଛି। ସେହି ଭୂମିକାରେ ଅଭିନୟ କରିବାକୁ ତୁମେ ପ୍ରସ୍ତୁତ ହୋଇଯିବ।

ଆମେ ନ୍ୟାସନାଲ୍ ମିଉଜିୟମ୍‌ର ଡାଇରେକ୍ଟରଙ୍କ ନିମନ୍ତ୍ରିତ ଅତିଥି। ସେମାନେ ଆମକୁ ତାଙ୍କର ଐତିହାସିକ ସଂଗ୍ରହ ସବୁ ଦେଖାଇବେ। ଅବଶ୍ୟ ନନ୍ଦନଗଡ଼ର ରାଜକୁମାର ସେଗୁଡ଼ିକ ଦେଖିବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି।

ତମ ସହିତ ମୁଁ ଥିବି। ଆମେ ବୁଲିବୁଲି ସବୁ ଦେଖିବା। ଏକ ବିଶେଷ ସ୍ଥାନରେ ମୁଁ ଅଟକି ଯିବି। ସେମାନଙ୍କ ପାଖରେ ଏକ ଐତିହାସିକ ହୀରାର ନେକ୍‌ଲେସ୍ ଅଛି। ଯେଉଁଟା ହାତପଇଠ କରିବା ଆମର ଅସଲ ଉଦ୍ଦେଶ୍ୟ। ମୁଁ ଯେତେବେଳେ ସେଇ ନେକ୍‌ଲେସଟି ପାଖରେ ଅଟକି ଯିବି, ସେତିକିବେଳେ ତମର କର୍ମଦକ୍ଷତା ଦେଖେଇବାକୁ ହେବ। ତମେ ସେଠାକାର ଡାଇରେକ୍ଟର ଓ ତାଙ୍କର ସହକର୍ମୀମାନଙ୍କୁ କଥା ଛଳରେ ଟିକିଏ ଅନ୍ୟମନସ୍କ କରାଇ ଦେବାକୁ ହେବ। ସେଇ ମୁହୂର୍ତ୍ତରେ ମୁଁ ଗୋଟିଏ ନକଲି ହୀରକ ନେକ୍‌ଲେସ୍ ସେଠାରେ ରଖି, ଅସଲଟିକୁ ହାତପଇଠ କରିନେବି। ତା'ପରେ ଆମର କାମ ଶେଷ।

ଯୁବକଟି ମନଯୋଗ ସହକାରେ ରଜନୀଗନ୍ଧାର କଥା ଶୁଣୁଥିଲା। ଉଠି ଠିଆ ହୋଇ କହିଲା: ଏତିକି କାମ, ମୁଁ ଅତି ଅକ୍ଳେଶରେ ତୁଲେଇ ଦେବି।

ରାତ୍ରିର ରଜନୀଗନ୍ଧା

: ବେଶ୍ ! ରଜନୀଗନ୍ଧା ଭାର୍ଗବ ଆଡ଼କୁ ଚାହିଁ କହିଲା, ତା'ହେଲେ ତମେମାନେ ଆଜି ଆସ। କାଲି ପାଇଁ ପ୍ରସ୍ତୁତ ହୁଅ। କାଲିର ସାଫଲ୍ୟ ଉପରେ ସବୁକଥା ନିର୍ଭର କରୁଛି।

: ଆଚ୍ଛା ମାଡାମ୍, ଆପଣ ସେଇ ଅସଲ ଡାଇମଣ୍ଡ ନେକ୍‌ଲେସଟି ହସ୍ତଗତ କରିବା ପରେ କ'ଣ କରିବେ ? ଭାର୍ଗବ ପ୍ରଶ୍ନ କଲା।

: ତେଣିକି ଆମକୁ ଆଉ ଭାବିବାକୁ ହେବନାହିଁ ଭାର୍ଗବ। ଅଙ୍କଲ ନିଶ୍ଚୟ ତା'ପରର ସମସ୍ତ କର୍ତ୍ତବ୍ୟ ସମ୍ପାଦନ କରିବେ। ଆମେ କାଲି ସେହି ସମ୍ବର୍ଦ୍ଧନା ସଭାରୁ ବିଦାୟ ନେଇ ବଡ଼ରାସ୍ତା ପର୍ଯ୍ୟନ୍ତ ଫେରିଆସିଲେ, ସେଠାରେ ହୁଏତ ଅଙ୍କଲ ଆମକୁ ଅପେକ୍ଷା କରିଥିବେ, ଅଥବା ସେ ଆମକୁ ନିରାପଦରେ ଉଦ୍ଧାର କରି ନେବା ପାଇଁ ବିଧିବଦ୍ଧ ବ୍ୟବସ୍ଥା କରିରଖିଥିବେ। ନା କ'ଣ କହୁଛ ଭାର୍ଗବ।

: ଇଏସ୍ ମାଡାମ୍। ଆମେ ତା'ହେଲେ ଆଜି ଆସୁଛୁ।

ଭାର୍ଗବ କହିଲା।

: ତମର ନିଜ ନିଜର ଭୂମିକା କଥା ମନେ ରହିଲା ତ ? ତମେ ହେଲ ନନ୍ଦନଗଡ଼ କୁମାର ସାହେବଙ୍କର ସେକ୍ରେଟାରୀ, ତୁମ ନାଁ ଅମୃତ ପ୍ରୀତମ୍। ଆଉ ତୁମେ କୁମାର ସାହେବ ନନ୍ଦନଗଡ଼।

: ଇଏସ୍ ମାଡାମ୍।

ଦୁହେଁ ଏକ ସଙ୍ଗରେ କହି ଉଠିଲେ।

ଶନିବାର ଦିନ ରାତି ଆଠଟା ବେଳେ, ହୋଟେଲ ଇଣ୍ଟର ନ୍ୟାସନାଲ ପିକକ୍‌ରେ ଭୋଜି ସଭାଟା ସରଗରମ ହୋଇ ଉଠିଥିଲା। କୁମାର ସାହେବ ନନ୍ଦନଗଡ଼ଙ୍କ ସେକ୍ରେଟାରୀ ନିମନ୍ତ୍ରିତ ଅତିଥିମାନଙ୍କୁ ଅଭ୍ୟର୍ଥନା ଜଣାଉଥିଲେ।

ଯେତେବେଳେ ସମସ୍ତ ନିମନ୍ତ୍ରିତ ଅତିଥିମାନେ ଆସି ସମବେତ ହୋଇଥିଲେ, ସେତିକିବେଳେ ଧୀର ଚରଣ ଚାଲି, ଭୋଜି ସଭାରେ ଆବିର୍ଭାବ ହେଲା ରଜନୀଗନ୍ଧା। ସେ ନନ୍ଦନଗଡ଼ର ରାଜବଧୂ। ସମସ୍ତ ନିମନ୍ତ୍ରିତ ଅତିଥି ସ୍ତବ୍ଧ ହୋଇଗଲେ। ରଜନୀଗନ୍ଧାର ବେଶ ପୋଷାକ, ଚଳନ ଭଂଗୀ ସମସ୍ତ ନିମନ୍ତ୍ରିତ ଅତିଥିମାନଙ୍କୁ ଟାଣିନେଇଗଲା ପାଞ୍ଚଶହ ବର୍ଷ ତଳକୁ। ରଜନୀଗନ୍ଧା ସେଦିନ ମନେ ହେଉଥିଲା ଯେପରି ଇତିହାସର ଗୋଟିଏ ଚଳନ୍ତ ପ୍ରତିମା।

ବିନୀତ ସ୍ୱରରେ ରଜନୀଗନ୍ଧା ଜଣାଇଲା: କୁମାର ସାହେବ ଅସୁସ୍ଥ। ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାଙ୍କୁ ଅନିଚ୍ଛା ସତ୍ତ୍ୱେ ଶୋଇରହିବାକୁ ହେଲା। ସେଥିପାଇଁ ସେ ସମସ୍ତଙ୍କ ପାଖରୁ କ୍ଷମା ଚାହିଁଛନ୍ତି।

ଭୋଜିସଭା ସରଗରମ୍ ହୋଇଉଠିଲା। ନ୍ୟାସନାଲ ମିଉଜିଅମ୍‌ର ଡିରେକ୍‌ଟର ଓ ନିମନ୍ତ୍ରିତ ଐତିହାସିକମାନେ, ରଜନୀଗନ୍ଧା ପିନ୍ଧିଥିବା ବେଶପୋଷାକ ଓ ଅଳଙ୍କାର ଗୁଡ଼ିକ ମଧ୍ୟରୁ କେଉଁଟି କେବେକାର, କେଉଁଟି କେଉଁଠୁ ସଂଗ୍ରହ ହୋଇଛି ଇତ୍ୟାଦି ଇତ୍ୟାଦି ନାନା ତଥ୍ୟ ସେମାନେ ପଚାରିଲେ।

ରାତ୍ରିର ରଜନୀଗନ୍ଧା

ରଜନୀଗନ୍ଧା ଯଥାସମ୍ଭବ ଉତ୍ତର ଦେଇ କହିଲା: କୁମାର ସାହେବ ଏ ସବୁର ଟିକିନିଖି ଖବର ରଖିଛନ୍ତି, ସେ ଆପଣମାନଙ୍କୁ ଯଥାଯଥ ଉତ୍ତର ଦେବାକୁ ସକ୍ଷମ ହେବେ।

ତା'ପରେ ନୃତ୍ୟ ଗୀତ, ଖିଆପିଆର ଧୂମ୍‌ଧାମ୍ ଭିଡ଼ରେ ସେ ଦିନର ଭୋଜିସଭା ଶେଷ ହେଲା। ଭାର୍ଗବର ସଦାସତର୍କ ଦୃଷ୍ଟି ରଜନୀଗନ୍ଧା ଉପରେ ଲାଗି ରହିଥିଲା।

ସଭା ଶେଷ ହେଲା।

ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟର କହିଲେ: ମୁଁ କୁମାର ସାହେବଙ୍କର ଚିଠି ପାଇଛି। ସେ ତାଙ୍କର ସମସ୍ତ ସଂଗ୍ରହ ଆମକୁ ଦାନ କରିବାକୁ ଚାହାନ୍ତି ଶୁଣି ଆମେ ବିଶେଷଜ୍ଞ ଖୁସି ହେଇଛୁ। ସେ ମଧ୍ୟ ଆମ ସଂଗ୍ରହଶାଳା ଥରେ ବୁଲି ଦେଖିବାକୁ ଆଗ୍ରହୀ। ଏହା ଆମ ପକ୍ଷରେ ବଡ଼ ଗୌରବର କଥା। ମିଉଜିଅମ୍ ତରଫରୁ ମୁଁ ଆପଣଙ୍କୁ ଓ କୁମାର ସାହେବଙ୍କୁ ନିମନ୍ତ୍ରଣ କରୁଛି। ଆଗାମୀ ସୋମବାର ଚାରିଟା ବେଳକୁ ଆପଣମାନେ ଆସନ୍ତୁ। ଆମେ ଆପଣମାନଙ୍କ ପାଇଁ ସଂଗ୍ରହଶାଳା ଖୋଲା ରଖିଥିବୁ। ରାଜକୁମାରଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଜଣାଇବେ।

ସେଦିନ ସେତିକିରେ ସଭା ଶେଷ ହେଲା।

ରଜନୀଗନ୍ଧା ଆଶା କରିଥିଲା ନାଇଟିଙ୍ଗେଲ ତାକୁ ଗୌତମ ସମ୍ବନ୍ଧରେ କିଛି ସମ୍ବାଦ ଦେବ। କିନ୍ତୁ ନାଇଟିଙ୍ଗେଲ ବ୍ୟର୍ଥତା ପ୍ରକାଶ କଲା। ନା, ଗୌତମ ସହିତ ତା'ର ଭେଟ ସେ କରାଇପାରିବ ନାହିଁ। କିନ୍ତୁ ଏ କଥା ସତ୍ୟ ସେ ନଉଛଅାଣ ଡାଇମଣ୍ଡ ନେକ୍‌ଲେସଟି ପାଇଲେ, ନିଶ୍ଚୟ ଗୌତମକୁ ଫେରାଇଦେବ।

ଆଉ କରିବାର କିଛି ନଥିଲା ରଜନୀଗନ୍ଧାର।

ସେ ଟିକେ ସୁଯୋଗ ଖୋଜୁଥିଲା ସତ୍ୟବ୍ରତ ମହାପାତ୍ରଙ୍କ ସହିତ କଥା କହିବା ପାଇଁ। କିନ୍ତୁ ଭାର୍ଗବର ଶ୍ୟେନଦୃଷ୍ଟି ଏଡ଼ାଇ ସେ ଆଗେଇ ପାରିଲା ନାହିଁ।

ସତ୍ୟବ୍ରତ ମହାପାତ୍ର ନ୍ୟାସନାଲ ମିଉଜିଅମର ଡାଇରେକ୍ଟରଙ୍କ ସହିତ ଆସିଥିଲେ। ତେଣୁ ଭାର୍ଗବର ତାଙ୍କୁ ସନ୍ଦେହ କରିବାର କିଛି ନଥିଲା। ଖାଲି ଭାର୍ଗବ ନୁହେଁ, ଅଙ୍କଲ ବୈତ୍ୟାୟନଙ୍କର ଆହୁରି କେତେଜଣ ଗୁପ୍ତଚର ସେ ଭୋଜିସଭାରେ ଯୋଗ ଦେଇଥିଲେ. ବୋଧହୁଏ ରଜନୀଗନ୍ଧାକୁ ପହରା ଦେବାପାଇଁ।

ରଜନୀଗନ୍ଧା କିନ୍ତୁ ସତ୍ୟବ୍ରତ ମହାପାତ୍ରଙ୍କ ଅଙ୍ଗିତ ଇଂଗିତରୁ ଅନେକ କଥା ବୁଝି ନେଇଥିଲା। ତା'ର ଆତ୍ମବିଶ୍ୱାସ ଜନ୍ମିଥିଲା, ସତ୍ୟବ୍ରତ ମହାପାତ୍ର ତା' ପଛେ ପଛେ ଅଛନ୍ତି। କାରଣ ସେ ଯେତେବେଳେ ନିଉମାର୍କେଟରେ ଠାକୁର ଦାସ ସୁଟେଖାଙ୍କ

ଦୋକାନରେ ପହଞ୍ଚିଥିଲା, ସେଠାରେ ଦୋକାନ ମାଲିକଙ୍କର ଆନ୍ତରିକତାରୁ ସେ ବୁଝି ପାରିଥିଲା ସତ୍ୟବ୍ରତଙ୍କ ଆନ୍ତରିକତାର କଥା।

ସଭା ଶେଷରେ ଭାର୍ଗବ ନିମନ୍ତ୍ରିତ ଅତିଥିବର୍ଗଙ୍କୁ କୁମାର ସାହେବଙ୍କ ତରଫରୁ ଅଭିନନ୍ଦନ ଜଣାଇଲା। ତା'ପରେ ଜଣ ଜଣ କରି ବିଦାୟ ନେଲେ ଭୋଜିସଭାରୁ। ରଜନୀଗନ୍ଧା କିନ୍ତୁ ପିକ୍‌ରେ ଏକ ବିଶେଷ ଆସନରେ ବସି ରହିଥିଲା ନନ୍ଦନଗଡ଼ର ରାଜବଧୂ ସାଜି।

ସମସ୍ତଙ୍କୁ ବିଦାୟ ଦେଇ ଭାର୍ଗ ଯେତେବେଳେ ଫେରିଆସିଲା ରଜନୀଗନ୍ଧା ପାଖକୁ, ସେ ସେତେବେଳକୁ ଆତ୍ମସ୍ଥ ହୋଇ ବସିଥିଲା।

ଭାର୍ଗବର ଡାକରେ ଚେତା ଫେରିପାଇଲା ଯେମିତି।

: ରାତି ଏଗାରଟା ବାଜିଲାଣି। ଏଥର ଯିବା ଚାଲନ୍ତୁ ମାଡାମ୍। ଭାର୍ଗବ କହିଲା।

: ହଁ ଯିବା। ରଜନୀଗନ୍ଧା ସ୍ୱରରେ ଆଳସ୍ୟ ଫୁଟି ଉଠିଥିଲା। ସେ ଅନିଚ୍ଛା ସତ୍ତ୍ୱେ ଆସନରୁ ଧୀରେ ଧୀରେ ଉଠି ଠିଆ ହେଲା। ଆଖିଖୋଲି ଚାରିଆଡ଼କୁ ଥରେ ଚାହିଁଲା। ନା କେହି ନାହାନ୍ତି। ଏତେବଡ଼ ବିରାଟ ହଲ୍‌ଟା ଖାଁ ଖାଁ କରୁଛି।

: ଭାର୍ଗବ! ମୁଁ ବଡ଼ କ୍ଲାନ୍ତ ହୋଇପଡ଼ିଛି। ଆଜି ରାତିଟା ଏଇ ହୋଟେଲରେ ରହିଗଲେ ହୁଅନ୍ତା ନାହିଁ?

: ନା ମାଡାମ୍। ଆପଣ ତ ସବୁ ଜାଣନ୍ତି। ମୁଁ ହେଉଛି ହୁକୁମ୍‌ର ଚାକର। ଚାଲନ୍ତୁ, ଆଉ ଡେରି କରନ୍ତୁ ନାହିଁ।

ରଜନୀଗନ୍ଧା ଟଳି ଟଳି ଆଗକୁ ଆଗକୁ ପାଦ ବଢ଼ାଇଲା। ସେତେବେଳଯାଏ ସେ ନନ୍ଦନଗଡ଼ର ରାଜବଧୂ ସାଜି ବସି ରହିଥିଲା।

ଏଇ ବେଶ ପୋଷାକ ଅଳଙ୍କାର ପିନ୍ଧି ସତରେ ସେ ରାଜବଧୂ ପରି ଦେଖାଯାଉଛି। ସେ ଶେଷଥର ପାଇଁ ଅଇନା ସାମନାରେ ଠିଆ ହେଲା। ନିଜର ପ୍ରତିଚ୍ଛବିକୁ ମୁଗ୍ଧ ନେତ୍ରରେ ଚାହିଁ ରହିଲା ଅନେକ ବେଳଯାଏ। ତା'ପରେ ଧୀରେ ଧୀରେ ଗୋଟିକ ପରେ ଗୋଟିଏ ପୋଷାକପତ୍ର ଖୋଲିବାରେ ଲାଗିଲା। କପାଳ ତା'ର ମନ୍ଦ। ନ ହେଲେ ରାଜବଧୂ ଠାରୁ ସେ କେଉଁ ଗୁଣରେ କମ୍ ଥିଲା?

ସେଦିନ ଫେରିଆସି ଆରାମରେ ଶୋଇପାରିଲା ନାହିଁ।

ମନେହେଲା ସେ ଯେପରି କଣ୍ଟକଶଯ୍ୟାରେ ଶୟନ କରିଛି। ସେ ଆଜି ସର୍ବହରା, ନିଃସ୍ୱ, ନିଃସହାୟ!

ଠିକ୍ ଚାରିଟାବେଳେ ନ୍ୟାସନାଲ ମିଉଜିଅମ ଦୁଆରେ ରାଜକୁମାର ନନ୍ଦନଚନ୍ଦ୍ରଙ୍କର ଗାଡ଼ି ଲାଗିଲା।

ରାତ୍ରିର ରଜନୀଗନ୍ଧା

ମିଉଜିଅମ୍‌ର ଡାଇରେକ୍ଟର ନିଜେ ଉପସ୍ଥିତ ଥିଲେ ଅଭିନନ୍ଦନ ଜଣାଇବା ପାଇଁ। କୁମାର ସାହେବ, ରାଜବଧୂ, ଅମୃତ ପ୍ରୀତମ ତିନିଜଣଯାକ ଗାଡ଼ିରୁ ଓହ୍ଲାଇ ନିର୍ଦ୍ଦିଷ୍ଟ ସ୍ଥାନଯାଏ ଗଲେ। ସେଠାରେ ଏକ ଛୋଟ ସଭାର ଆୟୋଜନ କରାହୋଇଥିଲା। ଆଠଦଶ ଜଣ ଲୋକ ଅପେକ୍ଷା କରିଥିଲେ କୁମାର ସାହେବଙ୍କୁ। ଅଭିନନ୍ଦନ ଗ୍ରହଣ କରିବା ପରେ, କୁମାର ସାହେବ ସେଦିନର ଅନୁପସ୍ଥିତି ପାଇଁ ଦୁଃଖ ପ୍ରକାଶ କଲେ। ତା'ପରେ ତାଙ୍କ ଘରେ ଥିବା ଐତିହାସିକ ସଂପଦ ସଂପର୍କରେ ଏକ ଭାଷଣ ଦେବା ପରେ ମିଉଜିଅମ୍‌ର ଐତିହାସିକ ସମ୍ପଦ ସବୁ ଦେଖିବାକୁ ଇଚ୍ଛା ପ୍ରକାଶ କଲେ।

ମିଉଜିଅମ୍‌ର ଡାଇରେକ୍ଟର ଓ ତାଙ୍କର ଦୁଇଜଣ ସହକର୍ମୀ କୁମାର ସାହେବ ଏବଂ ରାଜବଧୂଙ୍କୁ ବୁଲାଇ ବୁଲାଇ ଐତିହାସିକ ସଂପଦମାନ ଦେଖାଇଲେ।

ଯେତେବେଳେ ନିର୍ଦ୍ଦିଷ୍ଟ ଡାଇମଣ୍ଡ ନେକ୍‌ଲେସ୍‌ଟି ପାଖରେ ରଜନୀଗନ୍ଧା ପହଞ୍ଚିଲା, ସେ ଯେତେବେଳେ ଜାଣିପାରିଲା ଏଇ ନେକ୍‌ଲେସ୍‌ଟି ତାକୁ ଉଦ୍ଧାର କରିବାକୁ ହେବ, ସେତେବେଳେ ତା' ସର୍ବାଙ୍ଗ ଘର୍ମାକ୍ତ ହୋଇଉଠିଲା।

ତଥାପି ସେ ନେକ୍‌ଲେସ୍‌ଟି ମୁଗ୍‌ଧ ହୋଇ ଦେଖିଲା। ମିଉଜିଅମ୍‌ର ଲୋକେ ନେକ୍‌ଲେସ୍‌ଟିର ପ୍ରାଚୀନତ୍ୱ ଓ ଦୁର୍ମୂଲ୍ୟତା ସମ୍ବନ୍ଧରେ ନାନା କଥା ବୁଝାଇଲା। ଶେଷରେ ରଜନୀଗନ୍ଧା ନେକ୍‌ଲେସଟି ହାତରେ ଉଠାଇ ଆଣି ଗଠନ କୌଶଳ ଓ ସେଟିଂ ହୋଇଥିବା ହୀରକ ଖଣ୍ଡମାନ ଧ୍ୟାନ ସହକାରେ ଦେଖିଲା।

କୁମାର ସାହେବ ଡାଇରେକ୍ଟର ଓ ତାଙ୍କର ଅନ୍ୟ ସହକର୍ମୀମାନଙ୍କୁ ସେତିକିବେଳେ ଆଉ ଗୋଟିଏ ଐତିହାସିକ ସମ୍ପଦ ସମ୍ପର୍କରେ କେତେକ ପ୍ରଶ୍ନ ପଚାରିଲେ, ସେମାନେ ସମସ୍ତେ ତାଙ୍କରି ଆଡ଼େ ଆକର୍ଷିତ ହୋଇପଡ଼ିଲେ।

ରଜନୀଗନ୍ଧା ସେଇ ସୁଯୋଗରେ ଅସଲ ଡାଇମଣ୍ଡ ନେକଲେସଟି ନିଜେ ଲୁଚାଇ ରଖି ସଙ୍ଗରେ ଆଣିଥିବା ନକଲ ନେକଲେସଟି ଯଥା ସ୍ଥାନରେ ରଖିଦେଲା। ଡାଇରେକ୍ଟରଙ୍କୁ ଡାକି, ନେକ୍‌ଲେସଟି ଆଡ଼େ ଆଙ୍ଗୁଳି ଦେଖେଇ କହିଲା: ପ୍ରକୃତରେ ଏହି ନେକ୍‌ଲେସଟିର ତୁଳନା ହୁଏନାହିଁ। ଆପଣଙ୍କର ସଂଗ୍ରହ, ଆମର ଜାତିର ଗୌରବ। ଦିନେ ଆମେ ସମସ୍ତେ ଚାଲିଯିବା। କିନ୍ତୁ ଏଇସବୁ ପଦାର୍ଥ ଆମ ସଭ୍ୟତାର ଗୁଣଗାନ କରୁଥିବ।

ରାଜକୁମାର ନନ୍ଦନଚନ୍ଦ୍ର, ରାଜବଧୂ ଓ ସେକ୍ରେଟାରୀ ଅମୃତ ପ୍ରୀତମ୍, ସେଦିନ ମିଉଜିଅମ୍‌ର ସବୁ ଐତିହାସିକ ସଂପଦମାନ ଦେଖିସାରି, ଭୋଜପର୍ବ ଶେଷ କରି ଯେତେବେଳେ ବିଦାୟ ନେଲେ, ସେତେବେଳକୁ ସନ୍ଧ୍ୟା ସାତଟା ବାଜିଯାଇଥିଲା।

ବାହାରେ ରାସ୍ତା ଉପରେ ଦଣ୍ଡାୟମାନ ଗାଡ଼ିରେ ସେମାନେ ଯାଇ ଉଠିଲେ। ଗାଡ଼ି ଛାଡ଼ିଦେଲା।

ରଜନୀଗନ୍ଧା ସେଇ ଡାଇମଣ୍ଡ ନେକ୍‌ଲେସ୍‌ଟିକୁ ମୁଠାଇ ଧରିଥିଲା। କାରଣ ସେ ଜାଣିଥିଲା ଏହି ନେକ୍‌ଲେସ୍‌ଟିର ମୂଲ୍ୟ ଅତୁଳନୀୟ। ତା'ଛଡ଼ା ଏହାରି ଉପରେ ତା' ଭାଗ୍ୟ ବନ୍ଧା ହୋଇଛି। ଶେଷ ପର୍ଯ୍ୟନ୍ତ ସେ ଯେ ସଫଳ ହୋଇଛି, ସଫଳତାର ଆନନ୍ଦ କଥା ସେ ଭୁଲି ଯାଇଥିଲା। ସେ ଚିନ୍ତା କରୁଥିଲା ପରବର୍ତ୍ତୀ କର୍ମ ପନ୍ଥା ତା'ର କ'ଣ ହେବ। କାହାକୁ ସେ ଦେବ ଡାଇମଣ୍ଡ ନେକ୍‌ଲେସଟି। କିଏ ଫେରାଇ ଦେବ ତାକୁ ଗୌତମକୁ। ସେ ସବୁଠାରୁ ଚିନ୍ତିତ ହୋଇ ପଡ଼ିଥିଲା ସେଇ ସମ୍ବର୍ଦ୍ଧନା ସଭାରେ ସତ୍ୟବ୍ରତ ମହାପାତ୍ରଙ୍କୁ ନ ଦେଖି।

ହଠାତ୍ ଗାଡ଼ିଟା ଅଟକି ଯିବାର ସେ ଅନୁଭବ କଲା ଏବଂ ସେ ଦେଖିଲା ତା' ବାଁ ପାଖରୁ କୁମାର ସାହେବ ଓହ୍ଲେଇଗଲେ। ଠିକ୍ ପର ମୁହୂର୍ତ୍ତରେ ଆଉ ଜଣେ ଲୋକ ଆସି ବସିଲା ତା' ବାଁ ପାଖରେ। ସଙ୍ଗେସଙ୍ଗେ ଗାଡ଼ି ଚାଲିବାକୁ ଆରମ୍ଭ କରିଦେଲା। ମୁହୂର୍ତ୍ତକ ପରେ ସେ ଶୁଣିଲା, ସେଇ କଠିନ ଗମ୍ଭୀର କଣ୍ଠସ୍ୱର।

: ରଜନୀଗନ୍ଧା! ତୋର ସାଫଲ୍ୟରେ ମୁଁ ଆନନ୍ଦିତ।

: କିଏ ଅଙ୍କଲ, ଆପଣ, ଆପଣ...

: ହଁ ରଜନୀଗନ୍ଧା, ତୁ ଯେ ସଫଳତା ଅର୍ଜନ କରିବୁ ସେ କଥା ମୁଁ ଜାଣିଥିଲି, ସେଇଥିପାଇଁ ମୋତେ ସମଗ୍ର ଦେଶଟା ଓଲଟପାଲଟ କରି ତୋତେ ଖୋଜିବାକୁ ହୋଇଥିଲା।

: କିନ୍ତୁ ଅଙ୍କଲ, ମୋର ଗୌତମ। କଥା ଥିଲା, ନେକ୍‌ଲେସଟି ପାଇଲେ ଆପଣ ମୋତେ ଗୌତମକୁ ଫେରାଇ ଦେବେ।

: ଦେବି ରଜନୀଗନ୍ଧା, କଥାର ମୁଁ ଖିଲାଫ୍ କରିବି ନାହିଁ। ତୋ ଗୌତମକୁ ମୁଁ ତୋତେ ଫେରାଇ ଦେବି। ଦେଖ୍ ରଜନୀଗନ୍ଧା, ମୋର ବହୁ ଦିନର ସେହି ଈପ୍‌ସିତ ବସ୍ତୁକୁ ଥରେ ଦେଖେଇଲୁ ମୋତେ।

ରଜନୀଗନ୍ଧା ସେଇ ଡାଇମଣ୍ଡ ନେକ୍‌ଲେସଟିକୁ ଡାହାଣ ହାତରେ ଚିପି ଧରିଥିଲା। ବର୍ତ୍ତମାନ ଏଇଟି ହେଉଚି ତା'ର ଏକମାତ୍ର ସମ୍ବଳ, ଯାହା ବଳରେ ସେ ଗୌତମକୁ ଫେରିପାଇବ। କିନ୍ତୁ ଗୌତମ ଯେ ଅଙ୍କଲ ବୈଦ୍ୟାୟନଙ୍କ ପାଖରେ ନାହିଁ। ନେକ୍‌ଲେସଟି ହାତଛଡ଼ା ହୋଇଗଲେ ଗୌତମ ଯେ...

ହଠାତ୍ ସେ ଅନୁଭବ କଲା ଗାଡ଼ିଟା ପୁଣି ମଝି ରାସ୍ତାରେ ଅଟକି ଯାଇଛି।

ଚାହିଁ ଦେଖିଲା ତାଙ୍କ ଗାଡ଼ି ସାମ୍ନାରେ ଏକ ବିରାଟ ଟ୍ରକ୍ ପଥ ଅବରୋଧ କରି ଠିଆ ହୋଇଛି। ପର ମୁହୂର୍ତ୍ତରେ ତୀବ୍ର ବେଗରେ ଗୋଟାଏ ଗାଡ଼ି ଛୁଟି ଆସି ଠିଆ ହୋଇଗଲା

ତାଙ୍କ ଗାଡ଼ିର ଡାହାଣ ପାଖରେ ଏବଂ ସଙ୍ଗେସଙ୍ଗେ ଦୁଇଜଣ ଲୋକ ଓହ୍ଲାଇପଡ଼ି, ରଜନୀଗନ୍ଧା ଗାଡ଼ିର ଦରଜା ଖୋଲି ଭିଡ଼ି ନେଇଗଲେ ତାଙ୍କୁ ଅନ୍ୟ ଗାଡ଼ି ଭିତରକୁ।

ଆଉ ଅଙ୍କଲ ଦୈତ୍ୟାୟନ କ'ଣ ଚୁପ୍ ହୋଇ ବସି ରହି ଥାଆନ୍ତେ? ତାଙ୍କ ଆଗ୍ନେୟାସ୍ତ୍ରଟି ଅଗ୍ନି ଉଦ୍‌ଗୀରଣ କରି ଉଠିଲା।

ଆଉ ପର ମୁହୂର୍ତ୍ତରେ ଦେଖାଗଲା ଅନେକ ଗୁଡ଼ିଏ ପୁଲିସ୍ ଭ୍ୟାନ୍ ଆଗରେ ପଛରେ ଏବଂ ଦୁଇ ପାଖରେ ବେଢ଼ି ଯାଇଛନ୍ତି। ଦୁଇଟିଯାକ ଗାଡ଼ି ସହ ସମସ୍ତ ଆସାମୀ ପୁଲିସ୍ ଘେରରେ ବନ୍ଦୀ ହୋଇଛନ୍ତି।

ପଥ କାହିଁ?

କେଉଁ ବାଟେ ପଳାଇବେ ସେମାନେ?

ସଶସ୍ତ୍ର ପୁଲିସ୍ ବାହିନୀ ଚାରିପଟରେ।

ସେଇ ଘେରାଉ ଭିତରୁ ଅଙ୍କଲ ଦୈତ୍ୟାୟନ, ଭାର୍ଗବ, ରଜନୀଗନ୍ଧା ଏବଂ ଅନ୍ୟ ଗାଡ଼ିରୁ ତିନିଜଣ ଯୁବକ ପୁଲିସ୍ ଘେର ଭିତରେ ବନ୍ଦୀ ହୋଇପଡ଼ିଥିଲେ। ଜଣ ଜଣ କରି ସେମାନଙ୍କୁ ପୁଲିସ୍ ଭ୍ୟାନ୍ ଭିତରେ ଭରି ଥାନାକୁ ନିଆ ହେଲା।

ରଜନୀଗନ୍ଧା କିନ୍ତୁ ସେଇ ହୀରକ ନେକ୍‌ଲେସ୍‌ଟିକୁ ଜାବୁଡ଼ି ଧରିଥିଲା। ସେଇଟି ଯେ ଗୌତମର ରକ୍ଷାକବଚ।

କିନ୍ତୁ ହଠାତ୍ ଏ କି ଦୁର୍ଘଟଣା ଘଟିଗଲା !

ଏହାପରେ ସେ କ'ଣ ଗୌତମକୁ ଫେରି ପାଇବ ?

ସେମାନଙ୍କ ଗାଡ଼ି ଯେତେବେଳେ ଯାଇ ଲାଲବଜାର ପୁଲିସ୍ ଷ୍ଟେସନ ଭିତରେ ପଶିଲା, ଜଣ ଜଣ କରି ଯେତେବେଳେ ସେମାନେ ପୁଲିସ୍‌ର ବନ୍ଦ ଗାଡ଼ି ଭିତରୁ ଓହ୍ଲାଇଲେ, ରଜନୀଗନ୍ଧା ଦେଖିଲା, ଦୂରରେ ଜଣେ ପୁଲିସ୍ ଅଫିସରଙ୍କ ପାଖରେ ସତ୍ୟବ୍ରତ ମହାପାତ୍ର ଠିଆ ହୋଇଛନ୍ତି। ଆଉ ତାଙ୍କ ପାଖରେ, ସେଇ ଛୋଟ ପିଲାଟି କିଏ ?

ଗୌତମ ନା ?

ଗୌତମ! ଗୌତମ! ବନ୍ଧୁରେ....

ରଜନୀଗନ୍ଧା ଚିତ୍କାର କରି ଉଠିଲା।

ଗୌତମ ମା' ମା' ଡାକି ଛୁଟି ଆସୁଥିଲା ତା'ପାଖକୁ, କିନ୍ତୁ ସେ ଯେପରି ବାଧା ପାଇଲା। ସାମ୍ନାରେ ସେ ଯାହାଙ୍କୁ ଦେଖିଲା, ସେମାନଙ୍କୁ ହୁଏତ ସେ ଏଠାରେ ଆଶାକରି ନଥିଲା। ହୁଏତ ଅଜାଣତରେ ତା' ପାଟିରୁ ବାହାରିଗଲା: କିଏ ଅଙ୍କଲ ?

ଅଙ୍କଲ ବୈଦ୍ୟାୟନ ଟିକିଏ ଅଟକି ଯାଉଥିଲେ। କିନ୍ତୁ ହୃଦୟହୀନ କନ୍‌ଷ୍ଟେବଲଟା ତାଙ୍କ ମନର କଥା ବୁଝିପାରିଲା ନାହିଁ, ସେ ଧକ୍କା ମାରି ଦୂରକୁ ଟାଣି ନେଇଗଲା।

ରାତ୍ରିର ରଜନୀଗନ୍ଧା

ତାଙ୍କ ପଛରେ ଯେଉଁ ଲୋକଟି ରୁମାଲ୍‌ରେ ମୁହଁ ଲୁଚେଇ ଆଗଉଥିଲା, ଗୌତମ ତା' ଆଡ଼େ ଚାହିଁ ପାଟି କରି ଉଠିଲା: କିଏ ରଙ୍ଗାଚାଚା ?

ରଙ୍ଗାଚାଚା କିନ୍ତୁ ଅଟକିଲେ ନାହିଁ। ସେ ସେହିପରି ରୁମାଲରେ ମୁହଁ ଘୋଡ଼େଇ ଆଗେଇଗଲେ।

ସତ୍ୟବ୍ରତ କହିଲେ: ଏଇ ରଙ୍ଗା ଚାଚାର କିନ୍ତୁ ଆଉ ଗୋଟିଏ ନାମ ଅଛି, ନରଛଞ୍ଚାଣ।

ଗୌତମ ସେ କଥା ଶୁଣି ପାରିଥିଲା କି ନାହିଁ, ସେ ଛୁଟି ଯାଇଥିଲା ରଜନୀଗନ୍ଧା ଆଡ଼କୁ। ମା ମା ଚିତ୍କାର କରି ରଜନୀଗନ୍ଧାକୁ ଦୁଇ ହାତରେ ଜାବୁଡ଼ି ଧରି କାନ୍ଦି ପକାଇଲା।

ରଜନୀଗନ୍ଧାର କିନ୍ତୁ ଗୌତମ ଆଡ଼େ ଦୃଷ୍ଟି ନ ଥିଲା। ଏତେଦିନ ପରେ, ତା' କଷ୍ଟ ଅର୍ଜିତ ଗୌତମକୁ କୋଳକୁ ଟାଣି ନେଇପାରୁନଥିଲା, ସେ ଗୌତମକୁ ବାଁ ହାତରେ ଆଡ଼େଇ ଦେଇ ସିଧା ଛୁଟିଥିଲା ପୁଲିସ୍ ଅଫିସରଙ୍କ ପାଖକୁ।

ପୁଲିସ୍ ଅଫିସରଙ୍କ ପାଦ ଧରି ଲୋଟିପଡ଼ିଲା ରଜନୀଗନ୍ଧା। ଡାଇମଣ୍ଡ ନେକ୍‌ଲେସ୍‌ଟି ତାଙ୍କ ହାତରେ ଧରାଇ ଦେଇ କହିଲା, : ଦେଶର ଓ ଜାତିର ଏ ବହୁମୂଲ୍ୟ ସଂପଦଟି ଆପଣ ଫେରାଇ ନିଅନ୍ତୁ। ମୁଁ ଟିକେଏ ସ୍ୱସ୍ତିର ନିଃଶ୍ୱାସ ମାରେ।

ପୁଲିସ୍ ଅଫିସର ଡାଇମଣ୍ଡ ନେକ୍‌ଲେସ୍‌ଟି ହାତରେ ଧରି ଦେଖିଲେ। ହସିଲେ।

ଗୌତମ ମା'ର ଏପରି ଆଚରଣରେ ହତବାକ୍ ହୋଇଯାଇଥିଲା।

ପୋଲିସ୍ ଅଫିସର ସେଇ ଡାଇମଣ୍ଡ ନେକ୍‌ଲେସଟି ଦୂରକୁ ଫିଙ୍ଗିଦେଇ, ଗୌତମର ହାତଧରି ରଜନୀଗନ୍ଧା ପାଖକୁ ଟାଣି ନେଇଗଲେ। କହିଲେ: ଏଇ ନେକ୍‌ଲେସ୍‌ଟା ତ ନକଲ। ଯାହା ଅସଲ, ସେ ହେଉଛି ତମର ଗୌତମ, ସେଇ ହେଉଛି ତମର ସଂପଦ, ସେଇ ହେଉଛି ଦେଶର ସଂପଦ। ତା'ରି ପାଇଁ, ତା'ରି ଦୁଃସାହସିକ ପଦକ୍ଷେପ ଫଳରୁ ଆଜି ଦୁଇଟା ଦୁର୍ଦ୍ଦାନ୍ତ ଦସ୍ୟୁ ଆମର କବଳିତ ହୋଇଛନ୍ତି।

ରଜନୀଗନ୍ଧା କାନରେ ସତେ ଯେପରି କାହାରି କଥା ପଶୁ ନ ଥିଲା, ସେ ସ୍ତବ୍‌ଧ ହୋଇ ଗୌତମ ମୁହଁକୁ ଅନାଇ ରହିଥିଲା। ଗୌତମ ହାତ ବଢ଼ାଇଲା। ଆଗେଇ ଗଲା ମା' ପାଖକୁ।

ରଜନୀଗନ୍ଧା ଦୁଇ ହାତ ପ୍ରସାରିତ କରି ଛୁଟି ଆସିଲା ଗୌତମ ପାଖକୁ, : ବାବୁରେ...

ଦୁଇ ହାତରେ ଜାବୁଡ଼ି ଧରିଲା ଗୌତମକୁ। ଆଖିରୁ ଝରଝର ହୋଇ ଲୁହ ଝରିଲା। ସେ ନିର୍ବାକ୍ ହୋଇଯାଇଥିଲା।

ସେଦିନ ପୋଲିସ୍ ଅଫିସରଙ୍କ ଘରେ ବସି ସତ୍ୟବ୍ରତ ମହାପାତ୍ର କହୁଥିଲେ ତାଙ୍କର ଏହି ଅଭିଯାନର କାହାଣୀ। ପାଖରେ ବସିଥିଲେ ରଜନୀଗନ୍ଧା ଓ ଗୌତମ।

: ଯେଉଁଦିନ ରଜନୀଗନ୍ଧା ମୋପାଖରେ ଯାଇ ପହଞ୍ଚିଲା, ସେଦିନ ମୁଁ ତା' କଥା ଉପରେ ସେତେ ଗୁରୁତ୍ୱ ଦେଇ ନଥିଲି, କିନ୍ତୁ ଯେତେବେଳେ ତା' ମାତୃହୃଦୟ ବାହୁନି ବାହୁନି କାନ୍ଦି ଉଠିଲା, ମୋ ବିବେକ ତାକୁ ଏଡ଼େଇ ଯାଇପାରିଲାନାହିଁ।

: ମୁଁ ଜାଣିଲି ଗୌତମ ବନ୍ଦୀ । ବୁଝିଲି ସେମାନେ ରଜନୀଗନ୍ଧାକୁ ଚାହାନ୍ତି। ଉତ୍ସାହିତ କଲି ରଜନୀଗନ୍ଧାକୁ ତାଙ୍କ ଦଳରେ ଯୋଗଦେବା ପାଇଁ, ତା'ନହେଲେ ଗୌତମକୁ ଉଦ୍ଧାର କରିବାର ସୂତ୍ର କାହିଁ ?

: ଯେଉଁଦିନ ରଜନୀଗନ୍ଧା ସେମାନଙ୍କ ଡାକରା ପାଇଗଲା, ତା' ଆଗରୁ ମୋ ଡ୍ରାଇଭର ଗୁଲଜାର ସିଂହ ତାକୁ ପହରା ଦେଉଥିଲା। ରଜନୀଗନ୍ଧାର ଟ୍ୟାକ୍ସି ପଛେ ପଛେ ସେ ଛୁଟିଥିଲା ଭିକ୍ଟୋରିଆ ମେମୋରିଆଲ୍ ପର୍ଯ୍ୟନ୍ତ ଏବଂ ସେଠାରୁ ବି କଳା ଆମ୍ବାସାଡାର ପଛରେ ଛୁଟିଯାଇ ଘାଟି ମୁଣ୍ଡର ଠିକଣା ଯୋଗାଡ଼ କରିଆଣିଥିଲା।

ମୁଁ ଯେତେବେଳେ ସେଠାରେ ଯାଇ ପହଞ୍ଚିଲି, ସେତେବେଳକୁ ରଜନୀଗନ୍ଧା ବନ୍ଦୀ। କିନ୍ତୁ ଗୌତମ ! ସେ ସେଠାରେ ସମସ୍ତଙ୍କର ମନ କିଣିସାରିଥିଲା। ଏପରିକି

ଦୈତ୍ୟାୟନର ମଧ୍ୟ ସେ ବିଶ୍ୱାସଭାଜନ ହୋଇଉଠିଥିଲା। ଏଣେ ସେଠାରୁ ଖସି ଆସିବା ପାଇଁ ବାଟ ଖୋଜୁଥିଲା। ଠିକ୍ ସେତିକିବେଳେ ମୁଁ ଯାଇ ସେଠାରେ ପହଞ୍ଚିଲି ଏବଂ ମୋତେ ସାହାଯ୍ୟ କଲା ନୀହାରିକା। ଯାହାଫଳରେ ଗୋପନରେ ମୁଁ ସେଠାକାର ସମସ୍ତ ତଥ୍ୟ ସଂଗ୍ରହ କରିବାକୁ ସମର୍ଥ ହେଲି ଏବଂ ଗୌତମ ସହିତ ଯୋଗାଯୋଗ କରିପାରିଲି।

ରଜନୀଗନ୍ଧା ଯେତେବେଳେ ଗୌତମକୁ ଉଦ୍ଧାର କରିବାର ପଥ ଖୋଜି ପାଉନଥିଲା, ଗୌତମ ମୁକ୍ତିପଣ ପାଇଁ ସେ ବିବ୍ରତ ହୋଇପଡ଼ିଥିଲା, ସେତିକିବେଳେ ଦିନେ ରାତ୍ରିର ଶେଷ ପ୍ରହରରେ, ମୁଁ ତା' କାନରେ କହିଥିଲି ନନ୍ଦନଗଡ଼ର ରାଜବଧୂ ସାଜିବା କଥା। ରଜନୀଗନ୍ଧାକୁ ସେଇଟା ସ୍ୱପ୍ନ ପରି ମନେ ହୋଇଥିଲା। ଏବଂ ସେ ସେଇପଥରେ ଆଗେଇଥିଲା।

ସତ୍ୟବ୍ରତ ଟିକିଏ ଅଟକି ପୋଲିସ ଅଫିସରଙ୍କ ମୁହଁକୁ ଚାହିଁ ପୁଣି ଆରମ୍ଭ କଲେ: ତା'ପରେ ମୁଁ ଆପଣଙ୍କ ସହିତ ଯୋଗସୂତ୍ର ସ୍ଥାପନ କରିଥିଲି, ଆମେ ପରାମର୍ଶ କରି ଯାଇଥିଲେ ନ୍ୟାସନାଲ ମିଉଜିଅମ୍‌ର ଡାଇରେକ୍ଟରଙ୍କ ପାଖକୁ। ଦେଶର ଏହ ବିରାଟ ଦସ୍ୟୁ ସର୍ଦ୍ଦାରକୁ କବଳିତ କରିବା ପାଇଁ ସେ ମଧ୍ୟ ଆମ ସହିତ ଏକମତ ହୋଇଥିଲେ ଏବଂ ତା'ପରେ ଆମେ କାମରେ ଲାଗି ଯାଇଥିଲେ।

ପ୍ରୋଗ୍ରାମ ଅନୁସାରେ କାମ ଆଗେଇ ଚାଲିଥିଲା।

ହଠାତ୍ ଆଉ ଗୋଟାଏ ଘଟଣା ଘଟିଲା। ମଝି ବାଟରେ ଆବିର୍ଭାବ ଘଟିଲା ନରଛଞ୍ଚାଣ ରୂପୀ ରଙ୍ଗା ଚାଚାର। ସେ ବି ତା' ଦଳବଳ ଧରି ଗୁଜରାଟରୁ ଆବିର୍ଭାବ ହେଲା କଲିକତାରେ, ସେଇ ଡାଇମଣ୍ଡ ନେକ୍‌ଲେସଟି ହସ୍ତଗତ କରିବା ପାଇଁ। ମୁଁ ଦେଖିଲି ଏ ସୁଯୋଗ ହରେଇବାର ନୁହେଁ।

କିନ୍ତୁ ଏହା କିପରି ସମ୍ଭବ? ଦୈତ୍ୟାୟନ ହାତରୁ ନେକ୍‌ଲେସ୍ ଛଡ଼େଇ ନେବା ରଙ୍ଗା ପକ୍ଷରେ ଆଦୌ ସମ୍ଭବ ନୁହେଁ। କିନ୍ତୁ ଲୋକଟା ମହାଧୂର୍ତ୍ତ। ତାକୁ ଧରିବାକୁ 'ଚତୁରେ ଚାତୁରୀ' ନୀତି ଅବଲମ୍ବନ କରିବାକୁ ହେବ। ଗୌତମକୁ ପଠାଇ ଦେବାକୁ ହେବ ତାଙ୍କ ଶିବିରକୁ। ତା'ହେଲେ ନାଟକଟା ଜମିବ ଏବଂ ଯବନିକାପାତ ପୂର୍ବରୁ ଦୁଇ ସର୍ଦ୍ଦାର ସାମ୍ନା ସାମ୍ନି ହେବାର ସୁଯୋଗ ମିଳିବ।

ମୁଁ କାମରେ ଲାଗିଗଲି।

ଗୌତମ ଧରାଦେଲା ନରଛଞ୍ଚାଣ ହାତରେ।

ରାତ୍ରିର ରଜନୀଗନ୍ଧା!

ଚାଲିଲା ଦୁଇ ଶିବିରରେ ଛକାପଞ୍ଝା।

ରଜନୀଗନ୍ଧା କିନ୍ତୁ ଏ ସବୁର ଖବର ପାଉନଥିଲା। ତାକୁ କେବଳ ଜଣାଇ ଦିଆହେଲା ଯେ ଗୌତମ ଅଙ୍କଲଙ୍କର ହାତଛଡ଼ା ହୋଇଯାଇଛି। ତାକୁ ଝାମ୍ପି ନେଇଛି ନରଛଞ୍ଚାଣ।

ରଜନୀଗନ୍ଧାର ଦୁଶ୍ଚିନ୍ତା ବଢ଼ିଯାଇଥିଲା। ସେ ଯେ ଅସହାୟ ହୋଇପଡ଼ିଛି ଏବଂ ହୁଏତ ଗୌତମକୁ ଉଦ୍ଧାର କରିବା ତା' ପକ୍ଷରେ ଆଉ ସମ୍ଭବ ହେବନାହିଁ, ଏହିପରି ଗୋଟାଏ ନିଃସହାୟ ଭାବ ତା' ମନରେ ଜାଗି ଉଠିଥିଲା। କିନ୍ତୁ ସେ ମନେମନେ ପ୍ରତିହିଂସାପରାୟଣ ହୋଇଉଠୁଥିଲା। ମୁଁ ବି ଇଚ୍ଛା କରି ରଜନୀଗନ୍ଧାକୁ ସେଇପରି ଏକ ସ୍ତରକୁ ଟାଣିନେବା ପାଇଁ ଚେଷ୍ଟା କରୁଥିଲି। ତା' ନହେଲେ ମୋର ଉଦ୍ଦେଶ୍ୟ ସଫଳ ହୋଇପାରିନଥାନ୍ତା।

ଧୀରେ ଧୀରେ ଦୁଇ ଶିବିର ମଧ୍ୟରେ ମୁଁ ଯୋଗସୂତ୍ର ସ୍ଥାପନ କରି ପକାଇଲି। ନୀହାରିକା ଆଉ ନାଇଟିଙ୍ଗେଲ ହେଲେ ମୋର ସମ୍ବାଦ ସରବରାହର ମାଧ୍ୟମ। ଆଉ ଗୌତମ! ସେ ମୋତେ ସେମାନଙ୍କର ସମସ୍ତ ତଥ୍ୟ ଯୋଗାଇ ଚାଲିଥିଲା ତା'ର ଶକ୍ତି ଅନୁଯାୟୀ।

ମୋର କାର୍ଯ୍ୟଧାରା ଠିକ୍ ଆଗେଇ ଚାଲିଲା।

ନ୍ୟାସନାଲ ମିଉଜିଅମରେ ଡାଇରେକ୍ଟର ଅସୁବିଧାରେ ପଡ଼ିଲେ। ସେ କହିଲେ: ଅସମ୍ଭବ। ମୁଁ ଡାଇମଣ୍ଡ ନେକ୍‌ଲେସଟି କୌଣସି ପ୍ରକାର ହାତଛଡ଼ା କରିବି ନାହିଁ। ଆପଣଙ୍କର ଯେତେ ପୋଲିସ୍ ପହରା ଅଛି, ଯାହା ଥାଉ, ମୁଁ ଦେଶର ଅମୂଲ୍ୟ ସମ୍ପଦକୁ ବାହାରକୁ ଯିବାକୁ ଦେବି ନାହିଁ।

ମୁଁ ମହାଚିନ୍ତାରେ ପଡ଼ିଗଲି।

ଶେଷରେ ଗୋଟାଏ ଉପାୟ ଉଦ୍ଭାବନ କରିବାକୁ ପଡ଼ିଲା। ଦୁଇଟି ନକଲି ଡାଇମଣ୍ଡ ନେକ୍‌ଲେସ ତିଆରି କରାଗଲା; ଗୋଟାଏ ରହିଲା ରଜନୀଗନ୍ଧା ପାଖରେ ଏବଂ ଆଉ ଗୋଟିଏ ରହିଲା ମିଉଜିଅମ୍ ଭଲ୍ଟରେ। ଅସଲଟାକୁ ଅନ୍ୟତ୍ର ନିରାପଦ ସ୍ଥାନରେ ବନ୍ଦ କରି ଦିଆଗଲା।

ମୋର ଏଇ ପ୍ରସ୍ତାବରେ ଡାଇରେକ୍ଟର ରାଜି ହେଲେ ଏବଂ ମୋ ଯୋଜନା ଅନୁସାରେ କାମ ଆଗେଇ ଚାଲିଲା।

ମୁଁ ଜାଣିଥିଲି ରଜନୀଗନ୍ଧା ଯେତେବେଳେ ମିଉଜିଅମ୍ ଭଲ୍ଟ ଭିତରୁ ଡାଇମଣ୍ଡ

ନେକ୍‌ଲେସଟି ନେଇ ଫେରିବ, ସେତେବେଳେ ନିଶ୍ଚୟ ଦୁଇ ସର୍ଦ୍ଦାର ତା' ପଥ ଚାହିଁ ବସିଥିବେ ଏବଂ ପଥରେ ସେମାନଙ୍କର ଭେଟ ନିଶ୍ଚୟ ହେବ।

ସେହି ଏକମାତ୍ର ସୁଯୋଗ, ଯେତେବେଳେ ଦୁଇ ଅସଲ ସର୍ଦ୍ଦାରଙ୍କୁ ଆମେ ଆରେଷ୍ଟ କରିପାରିବୁ।

ସେଇ ସୁଯୋଗର ଅପେକ୍ଷାରେ ଆମେ ଥିଲେ।

ନିର୍ଭୁଲ ଅଙ୍କ ପାଠ ଭଳି ସେ ସୁଯୋଗ ଆସିଲା।

ସତ୍ୟବ୍ରତ ମହାପାତ୍ରଙ୍କର କଥା ଶେଷ ହୋଇଥିଲା। ସେ ନୀରବରେ ରଜନୀଗନ୍ଧା ମୁହଁକୁ ଚାହିଁ ରହିଲେ।

ରଜନୀଗନ୍ଧା ପ୍ରାଣ କୃତଜ୍ଞତାରେ ଭରିଯାଇଥିଲା। ସେ ଉଠିଯାଇ ନଇଁପଡ଼ି ସତ୍ୟବ୍ରତ ମହାପାତ୍ର ଏବଂ ପୋଲିସ୍ ଅଫିସରଙ୍କ ପାଦଧୂଳି ନେଲା।

ରଚନାକାଳ: ଅଗଷ୍ଟ ୧୯୭୮



ରାତ୍ରି ମୌନାବତୀ ନୁହେଁ, ମାୟାବିନୀ । କଥା କୁହେ - ଭାଷାତୀତ ଭଂଗିମାରେ, ଇତିହୀନ ଇସାରାରେ - ଅନେକ ଅକୁହା କଥା । କେତେବେଳେ ମିଡ୍‌ନାଇଟ୍ ହୋଟେଲ୍‌ର ଅର୍ଦ୍ଧାଲୋକିତ ଆସରରେ ସେ ରାତ୍ରିର ରଂଗ ନୀଳ ତ ଆଉକେତେବେଳେ ଉର୍ବଶୀ ଆଖିର ଅଂଧକାରରେ ସେ ରାତ୍ରିର ରହସ୍ୟ ସର୍ପିଳ ...

ରାତି ଆସେ - ଯେମିତି ଯୋଜନଗଂଧା ।

ରାତି ବାସେ - ଯେମିତି ରଜନୀଗଂଧା ।

ଏ ରାତିରେ କେଉଁଠି ହସେ ମଧୁଛଂଦା ତ କେଉଁଠି ବି ବାହୁନେ ଅଳକନଂଦା !

ଦିନେ ରାତିରେ...

ନାମହୀନ ନକ୍ଷତ୍ରର ନିଦ୍ରାଭଂଗ ! ଫେରାର୍ ହୁଏ ଫୁଲବାସ୍ନା... କରୁଣ ଦିଶେ କାକଜ୍ୟୋସ୍ନା - ତା'ପରେ ?

ରାତିକୁ କଥା କୁହାଇଛଂତି ଅନବଦ୍ୟ ସ୍ପଂଦନ-ଉପନ୍ୟାସକାର ଶ୍ରୀ କସ୍ତୁରିଚରଣ ଦାସ । ଏ କଥନରେ ଅଛି ଚଟୁଳ ଚୁଂବକୀୟତା, ଚାରୁ ଚମତ୍କାରିତା, ଚିତ୍ତରୋଚୀ ଚିତ୍ରମୟତା ।

କାହାଣୀ

ISBN 978-93-81756-63-8

